# ଅପରାପର

(କବିତା ୧୯୭୧-୨୦୧୭)

ଜଗନ୍ନାଥ ପ୍ରସାଦ ଦାସ

ଶିକ୍ଷାସନ୍ଧାନ, ଭୁବନେଶ୍ୱର

# ଅପରାପର

ଲେଖକ
ଜଗନ୍ନାଥ ପ୍ରସାଦ ଦାସ

ପ୍ରକାଶନ :
ଶିକ୍ଷାସନ୍ଧାନ, ଏନ୍.ଡି-୭, ଭି.ଆଇ.ପି. ଏରିଆ
ଆଇ.ଆର.ସି. ଭିଲେଜ, ଭୁବନେଶ୍ୱର - ୭୫୧୦୧୫,
ସହଯୋଗ ରୂପାନ୍ତର, ଭୁବନେଶ୍ୱର
ମୁଦ୍ରଣ : ଶିକ୍ଷା ପ୍ରକାଶନୀ,
ଏନ୍.ଡି-୭, ଭି.ଆଇ.ପି. ଏରିଆ
ନୂଆପଲ୍ଲୀ, ଭୁବନେଶ୍ୱର - ୭୫୧୦୧୫
ପ୍ରଥମ ପ୍ରକାଶନ : ୨୦୧୭
ମୂଲ୍ୟ : ୫୦୦ଟଙ୍କା
ଆଇଏସ୍‌ବିଏନ୍ : ୯୭୮-୯୩-୮୦୯୬୮-୧୨-୪



**APARAPAR**

**Jagannath Prasad Das**

Published by :
Sikshasandhan, ND-7, VIP area,
IRC, Village, Bhubaneswar-751015 in collaboration with
Rupantar, Bhubaneswar
Printed at :
Siksha Prakashani, ND-7, VIP area,
IRC, Village, Bhubaneswar-751015
First Edition : 2017
Price : 500/-
ISBN : 978-93-80968-12-4

# ଜଗନ୍ନାଥ ପ୍ରସାଦ ଦାସ

ଜଗନ୍ନାଥ ପ୍ରସାଦ ଦାସ(ଜନ୍ମ ୧୯୩୬) : କବି, ନାଟ୍ୟକାର, ଗାଳ୍ପିକ, ପ୍ରାବନ୍ଧିକ ଓ ଗବେଷକ। ଉତ୍କଳ ଓ ଆଲାହାବାଦ ବିଶ୍ୱବିଦ୍ୟାଳୟରୁ ଶିକ୍ଷାପ୍ରାପ୍ତ।
କଳା ଇତିହାସରେ ପିଏଚ୍.ଡି। ଭାରତୀୟ ପ୍ରଶାସନ ସେବାରୁ ସ୍ୱେଚ୍ଛାରେ ଅବସର ନେଇ ବିଗତ ପଚିଶ ବର୍ଷରୁ ଊର୍ଦ୍ଧ୍ୱ ସାହିତ୍ୟ ରଚନାରେ ସଂପୂର୍ଣ୍ଣ ଭାବେ ନିଯୁକ୍ତ। ତାଙ୍କର ରଚନା ଅନେକ ଭାରତୀୟ ଭାଷା ତଥା ଇଂରେଜୀରେ ଅନୁବାଦିତ ଓ ତାଙ୍କର ନାଟକ ଦେଶର ବିଭିନ୍ନ ସ୍ଥାନରେ ମଞ୍ଚସ୍ଥ। ଊନବିଂଶ ଶତାବ୍ଦୀ ଓଡ଼ିଶାର ପୃଷ୍ଠଭୂମିରେ ଲିଖିତ ତାଙ୍କର ଉପନ୍ୟାସ ଦେଶ କାଳ ପାତ୍ର ଓ ନାଟକ ସୁନ୍ଦର ଦାସ କ୍ଲାସିକ୍ ରୂପେ ସ୍ୱୀକୃତ। କବିତା ସଂକଳନ ପରିକ୍ରମା ପାଇଁ 'ସରସ୍ୱତୀ ସମ୍ମାନ' ପ୍ରାପ୍ତ। ୧୯୭୩ରୁ ଦିଲ୍ଲୀରେ ଅବସ୍ଥାନ : ୩୦୫ ହାଉଜ୍‌ଖାସ୍ ଆପାର୍ଟମେଣ୍ଟ୍‌ସ, ନୂଆଦିଲ୍ଲୀ-୧୧୦୦୧୬।
ଏହି ସଂକଳନରେ ସେ ଏପର୍ଯ୍ୟନ୍ତ ଲେଖିଥିବା ସମସ୍ତ କବିତାକୁ ଏକତ୍ର କରାଯାଇଛି; ଏଥିରୁ ତାଙ୍କର ଲେଖନଶୈଳୀର ବିବର୍ତ୍ତନ ଓ ବିଷୟବସ୍ତୁର ବିବିଧତା ବିଷୟରେ ସମ୍ୟକ୍ ଧାରଣା କରିହେବ। ଏହି କବିତାମାନ ପୂର୍ବରୁ ଯେଉଁ ସଂକଳନମାନଙ୍କରେ ପ୍ରକାଶିତ ହୋଇଥିଲା, ସେଗୁଡ଼ିକ ହେଲା- ପ୍ରଥମ ପୁରୁଷ(୧୯୭୧), ଅନ୍ୟସବୁ ମୃତ୍ୟୁ(୧୯୭୬), ଯେ ଯାହାର ନିର୍ଜନତା(୧୯୭୯), ଅନ୍ୟଦେଶ ଭିନ୍ନ ସମୟ(୧୯୮୨), ଯାତ୍ରାର ପ୍ରଥମ ପାଦ(୧୯୮୮), ଆହ୍ନିକ(୧୯୯୦), ସ୍ଥିରଚିତ୍ର(୧୯୯୧), ସଚରାଚର(୧୯୯୪), ସ୍ମୃତିର ସହର(୧୯୯୫), ପରିକ୍ରମା(୧୯୯୮), ଅସମୟ(୨୦୦୪)।
ଏଥିରେ ଥିବା ଅନୁବାଦ କବିତା, ପିଲାଙ୍କ ପାଇଁ କବିତା ଇତ୍ୟାଦିର ସଂକଳନମାନ ହେଉଛି : ସ୍ୱପ୍ନ ବିଚାର(୧୯୯୨), ଆଳିମାଳିକା(୧୯୯୩), ଆଲୁକୁଚି ମାଲୁକୁଚି(୧୯୯୩), ଅନାବନା(୨୦୦୮) ଓ ଆନମାନ(୨୦୧୬)

# କ୍ରମ

## ପ୍ରଥମ ପୁରୁଷ (୧୯୭୧)


| | | |
|---|---|---|
| କବଚ | : | ୧୯ |
| ଗୋଟିଏ ଫୁଲର ନାଁ | : | ୨୧ |
| ଦର୍ପଣ | : | ୨୩ |
| ମୁଖା | : | ୨୫ |
| ପ୍ରଥମ ପ୍ରେମ | : | ୨୭ |
| ଶବ | : | ୨୮ |
| ପ୍ରତୀକ୍ଷା | : | ୨୯ |
| ପ୍ରିୟତମା ତମକୁ | : | ୩୧ |
| ପ୍ରହରୀ | : | ୩୩ |
| ଘର ବାହୁଡା | : | ୩୪ |
| ଚଉମୁହାଣି | : | ୩୬ |
| କୋଠରୀ | : | ୩୮ |
| ବିଜେତା | : | ୩୯ |
| ଗୋପନୀୟ ସତ୍ୟ | : | ୪୨ |
| କିଛି ମୁହଁ | : | ୪୪ |
| ରାସ୍ତା | : | ୪୬ |
| ସହର | : | ୪୭ |
| ମଝିରାତି | : | ୪୯ |
| ସ୍ୱପ୍ନ | : | ୫୧ |
| ପୂର୍ବ ପୁରୁଷ | : | ୫୨ |
| ଦେବୀ | : | ୫୪ |
| ଠିକଣା | : | ୫୬ |
| ଅନ୍ୟ ଦିନ | : | ୫୭ |
| ଝରକା | : | ୫୯ |
| ଶେଷ ସୀମାନ୍ତ | : | ୬୦ |


## ଅନ୍ୟ ସବୁ ମୃତ୍ୟୁ (୧୯୭୬)


| | | |
|---|---|---|
| ସଂଧ୍ୟା ଠିକ ଛ'ଟା | : | ୬୫ |
| ଏପରି ସମୟ ସବୁ | : | ୬୭ |
| ନିଜକୁ ଖୋଜି ଖୋଜି | : | ୭୦ |
| ମନେ ରଖିବାର କଷ୍ଟ | : | ୭୩ |
| ତମ ଅପେକ୍ଷାରେ | : | ୭୫ |
| ଶେଷ ପର୍ଯ୍ୟନ୍ତ | : | ୭୮ |
| ତମେ ଚାଲିଯିବା ପରେ | : | ୮୧ |
| ସ୍ମୃତିର କାୟାକଳ୍ପ | : | ୮୫ |
| ସ୍ୱପ୍ନରେ ଅନେକ ଥର | : | ୮୭ |
| ଅନେକ ପ୍ରକାର ଦିନ | : | ୮୮ |
| ଅନ୍ୟ ସବୁ ମୃତ୍ୟୁ | : | ୯୪ |
| କୌଣସି ସକାଳ ପାଇଁ | : | ୯୭ |
| ବାଲକନିର ସକାଳ | : | ୯୯ |
| ଅନ୍ଧାର ରାତି ସମୟ | : | ୧୦୨ |
| କ୍ରମାଗତ ଭାବେ | : | ୧୦୪ |
| ପ୍ରେମ ଏକ ଋତୁ | : | ୧୦୬ |
| ଆମର ବୟସ୍କ ପ୍ରେମ | : | ୧୦୮ |
| ସମୟର ଉଦ୍‌ବୃତ୍ତ କ୍ଷଣ | : | ୧୧୧ |
| ହାୟ ମୋ ଦୁର୍ଭାଗ୍ୟ | : | ୧୧୩ |
| ପ୍ରଥମେ କେବଳ ଶୂନ୍ୟ | : | ୧୧୬ |
| ସାକ୍ଷାତ ଗୋଟିଏ ଦିନ | : | ୧୨୦ |
| ତମକୁ ଜାଣିବା | : | ୧୨୩ |
| ସ୍ୱପ୍ନ କିଛି ବାକି | : | ୧୨୫ |
| କେବଳ ଆଖିରେ ଥରେ | : | ୧୨୮ |
| ଦ୍ୱିତୀୟ ସକାଳ | : | ୧୩୧ |

ଯେ ଯାହାର ନିର୍ଜନତା (୧୯୭୯)


କିଏ ଜାଣିଛି କେତେ ସମୟ : ୧୩୫
ଯଦି କିଛି ପ୍ରଶ୍ନ କରିବାକୁ ହୁଏ : ୧୩୭
ଭାଙ୍ଗି ପଡୁଥିବା ଦୁର୍ଗର : ୧୩୮
ତମ ସହିତ ଛ'ଟି ଘଣ୍ଟା : ୧୪୦
ଏପରି ସକାଳ କାହିଁ : ୧୪୧
ହେ ମୋର କୃତାର୍ଥ ଆଖିର : ୧୪୩
ଏକ ସଙ୍ଗେ ସମସ୍ତେ ବାହାରିବେ: ୧୪୪
ଆଖିରେ ଯାହା ଥାଏ : ୧୪୬
କେବଳ ତମେ ଖୋଲି ପାରିବ : ୧୪୭
ଅତିଥିମାନେ ଚାଲିଯିବା ପରେ : ୧୪୮
ମୁଁ ତମକୁ ନାଁ ଦେଇଯିବି : ୧୫୦
ବୃତ୍ତର ଶେଷ କେତେବେଳେ : ୧୫୧
ଆମେ ମନ୍ତ୍ରଣା କରିବା ବେଳେ : ୧୫୨
ଆଲୁଅର ପରିତ୍ୟକ୍ତ ଦ୍ୱୀପରେ : ୧୫୪
ଆମର ଦୂରତ୍ୱର ସୌହାର୍ଦ୍ଦ୍ୟ : ୧୫୫
ଖରାଦିନ ଆସିବ : ୧୫୭
ତମ ଦେହର ଅସରନ୍ତି ଦୌରାତ୍ମ୍ୟ : ୧୫୮
ଠିକ୍ ଛ'ଟାରେ ଆଲାର୍ମ ଘଡିରେ: ୧୬୦
ଫୁଲ ଯଦିଓ ପ୍ରତୀକ ନୁହେଁ : ୧୬୨
ନିର୍ଦ୍ଧାରିତ ଅବସ୍ଥା କଥା : ୧୬୩
ତମର ଇନ୍ଦ୍ରଜାଲରେ : ୧୬୪
କେଉଁ ନିର୍ଣ୍ଣୟର ଭୟ : ୧୬୫
ଯାଦୁକରର ଖେଳ ଶେଷରେ : ୧୬୭
ନିଜ ନିଜର ବିଶେଷ ପରିମାପରେ: ୧୬୯
ଚିଠି ଲେଖିବାର ପର୍ବ : ୧୭୧
ରାସ୍ତା ପାଖ ଷ୍ଟେସନର : ୧୭୨
ତମେ କହିଥିଲ ନିଶ୍ଚିତ : ୧୭୩
ସମୟର ଅନ୍ୟ ବିସ୍ତାରରୁ : ୧୭୫
ମୋ ନାଁକୁ ସାକ୍ଷୀ ରଖି : ୧୭୬
ଅସମୟ ଶଂଖଧ୍ୱନିରେ : ୧୭୭
କୌଣସି ନୂଆ ସମ୍ଭାବନା : ୧୭୯
ତମର ଶାଢ଼ୀ ରଖିବା ଜାଗା : ୧୮୦
ମନ୍ଦିରର ସ୍ଥାପତ୍ୟରେ ଦେଖ : ୧୮୧
ତମକୁ ନ ଦେଖିବା ପର୍ଯ୍ୟନ୍ତ : ୧୮୩
ପଞ୍ଜିକାର ଶୁଭ ମୁହୂର୍ତ୍ତ ଗଣିଗଲା: ୧୮୪
ଆମର ନିଜ ନିଜ ଏକାକୀତ୍ୱ : ୧୮୬
ଏଥରକ କାର୍ଯ୍ୟକ୍ରମ ଶେଷ : ୧୮୭
ତମର ଆସିବା ଓ ଚାଲିଯିବା : ୧୮୯
ଆକାଶରେ ଗାଢ଼ ନୀଳରଙ୍ଗ : ୧୯୦
ପୃଥକ ଆନନ୍ଦର ଅନୁଭବ : ୧୯୧
ତମେ ମୋର ଅଳ୍ପ ସମୟର : ୧୯୩
ସଂଘଟିତ ହେବାର ଦୁଃସାହସ : ୧୯୪
ତମକୁ ମନେ ପକାଇବା ପାଇଁ : ୧୯୬
ତମ ସହିତ ବହୁବାର : ୧୯୭
ଆଉ ସବୁ କଥା ଅପ୍ରାସଙ୍ଗିକ : ୧୯୯
ସମୁଦ୍ର ଅନ୍ୟ ଏକ ସହର : ୨୦୦
ଭାବି ରଖିଥିବା କଥା ସବୁ : ୨୦୧
ମତେ ଯଦି ଆଉ ଥରେ : ୨୦୩
ଚିଡ଼ିଆଖାନାରୁ ସୁନାସିଂହ : ୨୦୪
ଛାୟାପଥ ଉପରେ ସେ : ୨୦୫


ଅନ୍ୟ ଦେଶ ଭିନ୍ନ ସମୟ (୧୯୭୭-୭୯)


ଆରମ୍ଭ : ୨୦୯
ଫେରିଯିବା ବେଳେ : ୨୦୯
ପ୍ରତିବିମ୍ବ : ୨୧୦
ପ୍ରତୀକ୍ଷା : ୨୧୦
ବର୍ତ୍ତମାନ : ୨୧୧
ସମୟ : ୨୧୧
ସୀମାନ୍ତ : ୨୧୨
ଚୁକ୍ତି : ୨୧୩
ସୂର୍ଯ୍ୟାଲୋକ : ୨୧୪
ଭଗ୍ନାଂଶ : ୨୧୪
ଅନ୍ୟ ଦେଶ : ୨୧୫

| | | | | | |
|---|---|---|---|---|---|
| ସକାଳ | : | ୨୧୬ | ଦ୍ୱିଧା | : | ୨୪୦ |
| ନିଜେ ନିଜେ | : | ୨୧୭ | ତମକୁ ଜାଣିବା ପରେ | : | ୨୪୧ |
| ସ୍ୱତ୍ୱ | : | ୨୧୭ | ଭାଗ୍ୟ | : | ୨୪୨ |
| ଭବିତବ୍ୟ | : | ୨୧୮ | ଦେହ | : | ୨୪୩ |
| ସ୍ୱୀକାର | : | ୨୧୯ | ବର୍ଣ୍ଣମାଳା | : | ୨୪୩ |
| ସୂର୍ଯ୍ୟାସ୍ତ | : | ୨୨୦ | ପରିଭାଷା | : | ୨୪୪ |
| ଆଖି | : | ୨୨୦ | ସଂଘର୍ଷ | : | ୨୪୫ |
| ଚରମ ସତ୍ୟ | : | ୨୨୧ | ସ୍ମୃତି | : | ୨୪୬ |
| ସଂଜ୍ଞା | : | ୨୨୨ | କାଗଜର ଦେବୀ | : | ୨୪୭ |
| ଭୟ | : | ୨୨୨ | ଚାଲିଯାଅ | : | ୨୪୮ |
| କ୍ରମ | : | ୨୨୩ | ଜ୍ଞାନଯୋଗ | : | ୨୪୯ |
| ଶବ୍ଦ | : | ୨୨୪ | ସାମ୍ରାଜ୍ଞୀ | : | ୨୫୦ |
| ନିର୍ବାସନ | : | ୨୨୪ | ସନ୍ଧ୍ୟାବେଳେ | : | ୨୫୧ |
| ନିଜ ଭିତରେ | : | ୨୨୫ | ବିଦାୟ ମାଗିବା ବେଳେ | : | ୨୫୨ |
| ତମେ ଯଦି | : | ୨୨୬ | ଅନୁଷଙ୍ଗ | : | ୨୫୨ |
| ଐଶ୍ୱରିକ | : | ୨୨୭ | ସ୍ତୁତି | : | ୨୫୩ |
| ପରିଚୟ | : | ୨୨୭ | ଉପଲବ୍ଧି | : | ୨୫୫ |
| ସାକ୍ଷାତକାର | : | ୨୨୮ | କବିମାନେ | : | ୨୫୫ |
| ଅଭାବ | : | ୨୨୯ | ସଂପର୍କ | : | ୨୫୬ |
| ବାର୍ତ୍ତାଳାପ | : | ୨୩୦ | ଅବତରଣ | : | ୨୫୭ |
| ଅଦୃଷ୍ଟ | : | ୨୩୧ | ବର୍ଷା | : | ୨୫୮ |
| ପ୍ରେମପତ୍ର | : | ୨୩୧ | ଅପେକ୍ଷା | : | ୨୫୯ |
| ରାଜିନାମା | : | ୨୩୨ | ସାକ୍ଷୀ | : | ୨୬୦ |
| ମୁଖା | : | ୨୩୩ | ଋତୁ | : | ୨୬୧ |
| ଭୁଲ ରାସ୍ତା | : | ୨୩୪ | ସହର | : | ୨୬୨ |
| ସମୁଦ୍ର କୂଳରେ ସଂଜ | : | ୨୩୪ | ବିକଳ୍ପ | : | ୨୬୩ |
| ଦୂରତ୍ୱ | : | ୨୩୫ | ଅସ୍ୱୀକାର | : | ୨୬୪ |
| ପଛକୁ ଚାହିଁବା | : | ୨୩୬ | ଅନ୍ତତଃ | : | ୨୬୪ |
| ଅନ୍ଧାର | : | ୨୩୬ | ନିଜେ ନିଜକୁ | : | ୨୬୫ |
| ନିସ୍ତବ୍ଧତା | : | ୨୩୭ | ଅଭ୍ୟର୍ଥନା | : | ୨୬୬ |
| ଗୋଟିଏ ଦିନ | : | ୨୩୮ | ତମର ଫେରିବା | : | ୨୬୭ |
| ଜ୍ଞାତି | : | ୨୩୯ | ରାସ୍ତା | : | ୨୬୮ |
| ଯିବାବେଳେ | : | ୨୩୯ | ଅପରିଚୟ | : | ୨୬୯ |

ବିସ୍ମରଣ : ୨୭୦
ଅନାବରଣ : ୨୭୧
ଶୀତ ରାତି : ୨୭୨
ସ୍ୱୟଂସିଦ୍ଧା : ୨୭୩
ଜହ୍ନ ରାତି : ୨୭୪
ଭୁଲି ଯିବା : ୨୭୪
ସମୁଦ୍ର : ୨୭୫
ଯୁଦ୍ଧ ବିରତି : ୨୭୬
ପାନ୍ଥଶାଳା : ୨୭୭
ସୂର୍ଯ୍ୟୋଦୟ : ୨୭୭
ଆପେକ୍ଷିକ : ୨୭୮
ମୁହୂର୍ତ୍ତ : ୨୭୯
ଦେବୀ : ୨୮୦
ବର୍ଷାଦିନର ସନ୍ଧ୍ୟା : ୨୮୦
ମାଧ୍ୟମ : ୨୮୧
ଆବେଶମାନ : ୨୮୨
ମନ : ୨୮୩
ନିର୍ଜନତା : ୨୮୩
ପିଲାଦିନର ରାସ୍ତା : ୨୮୪
ସବୁ ବୁଝି ହୁଏ :୨୮୫
ଏକାକୀ ଝିଅ : ୨୮୬
ରୂପାନ୍ତର : ୨୮୭
ଛାୟାପଥ : ୨୮୭
ଶେଷ : ୨୮୮

ଯାତ୍ରାର ପ୍ରଥମ ପାଦ(୧୯୮୮)

ଯାତ୍ରାର ପ୍ରଥମ ପାଦ : ୨୯୧
ତ୍ରିଯାମା : ୩୦୨
ଦୃଷ୍ଟି ବିନ୍ଦୁ : ୩୦୬
ଭିନ୍ନ ଭିନ୍ନ ସତ୍ୟ : ୩୧୦
ଗୃହ ପ୍ରବେଶ : ୩୧୩
ଦୁଃଖ କ'ଣ : ୩୧୬
ଦିନଚର୍ଯ୍ୟା : ୩୧୮
ଜନାନ୍ତିକ : ୩୨୨
ଶବ୍ଦଭେଦ : ୩୨୫
ଯକ୍ଷ ପ୍ରଶ୍ନ : ୩୨୬
ସପ୍ତର୍ଷି : ୩୨୮
ମଧ୍ୟ ପର୍ବ : ୩୨୯
ସାମୁଦ୍ରିକ : ୩୩୧
ବାର ବେଳା : ୩୩୩
ଉତ୍ତର ଜାତକ : ୩୩୫
ଚରୈବେତି : ୩୩୭
ନାମ ରୂପ : ୩୪୦
ଯୋଗ ବିଯୋଗ : ୩୪୨
ଦୃଶ୍ୟବୋଧ : ୩୪୪
ଦୂରତ୍ୱ : ୩୪୬
ଲକ୍ଷ୍ୟସ୍ଥଳ : ୩୪୮
ଉତ୍ତରାଧିକାର : ୩୪୯
ସ୍ୱର୍ଗଦ୍ୱାର : ୩୫୨
ଭବିଷ୍ୟତ : ୩୫୫
ସ୍ୱୀକାରୋକ୍ତି : ୩୫୭
ଆଗନ୍ତୁକ : ୩୫୮
ଚିତ୍ରପଟ : ୩୬୦
ସମୁଦ୍ର ଯାତ୍ରା : ୩୬୨
ଭାସମାନ ଦିନ : ୩୬୪
ସମୟ ଲିପି :୩୬୬
ସ୍ଥିତପ୍ରଜ୍ଞ : ୩୬୭

ଆହ୍ନିକ (୧୯୮୩-୮୬)

ସମ୍ରାଟ : ୩୭୩
ମହାଭାରତ : ୩୭୫
କ୍ରାନ୍ତି ଆସୁଛି : ୩୭୭
ଦେବୀ ଆଗମନ : ୩୮୦
ଭୁବନେଶ୍ୱର : ୩୮୧

ଖାଲି ଘର : ୩୮୪
ପାହାଚ : ୩୮୬
ପୁରୀ : ୩୮୮
କର୍ଫ୍ୟୁ : ୩୯୦
ନବଗୁଂଜର : ୩୯୧
କଟକ : ୩୯୩
ନର୍ତ୍ତକୀ : ୩୯୬
ମୃତ୍ୟୁବୋଧ : ୩୯୭
କାଳୀ : ୩୯୯
ଇତିହାସ : ୪୦୧
ଗାନ୍ଧୀ : ୪୦୩
ଗୀତଗୋବିନ୍ଦ : ୪୦୫
ଭୟ : ୪୦୭
ଆହ୍ନିକ : ୪୦୮
ଭଗ୍ନାବଶେଷ : ୪୧୦
ପରବର୍ତ୍ତୀ କବିତା : ୪୧୨
ଧର୍ମଯୁଦ୍ଧ : ୪୧୪
ନିଦ ନାହିଁ : ୪୧୬
ମହାନଦୀ : ୪୧୮
ହିରୋଶିମା : ୪୨୦
କଳାହାଣ୍ଡି : ୪୨୧
ଗୋପବନ୍ଧୁ : ୪୨୩
ଦୁଇ ପକ୍ଷୀ : ୪୨୫
ହାତ ପାଖରେ : ୪୨୭
ବାଲିଆପାଳ : ୪୨୮

## ସ୍ଥିର ଚିତ୍ର (୧୯୮୭-୮୯)

ସ୍ଥିର ଚିତ୍ର : ୪୩୩
ବସ୍ତି : ୪୩୪
ମନ୍ଦିର : ୪୩୬
କବିସମ୍ରାଟ : ୪୩୮
ଏପ୍ରିଲ : ୪୪୦
ପ୍ରତ୍ନତତ୍ତ୍ୱ : ୪୪୧
ମେଘ : ୪୪୨
ବେଗ ହିଁ ଆବେଗ : ୪୪୪
ପିକନିକ : ୪୪୫
ଲୋକଟି : ୪୪୮
କୋଣାର୍କ : ୪୪୯
ମଧ୍ୟାହ୍ନ : ୪୫୧
ଐତିହ୍ୟର ଦେଶ : ୪୫୨
ଘାସ ଫୁଲ : ୪୫୩
ଗାଁ ମଶାଣି : ୪୫୫
ସାଇରେନ : ୪୫୬
ପରକୀୟା : ୪୫୭
ଖରାଦିନ : ୪୫୯
ଚା କପ୍ : ୪୬୦
ହସପିଟାଲ : ୪୬୨
କଲୁରୀବେଣ୍ଟ : ୪୬୩
ରବିବାର : ୪୬୪
ସମୁଦ୍ର କୂଳ : ୪୬୬
ଜୁନ ଅନୁଚିନ୍ତା : ୪୬୮
ଷ୍ଟେସନ : ୪୭୦
ଝଡ଼ : ୪୭୧
କଳିଙ୍ଗ : ୪୭୨
ପିଲାଦିନ : ୪୭୩
କାଳିରାତି : ୪୭୫
ବଡ଼ଦାଣ୍ଡରେ ଭିଖାରୀ : ୪୭୭
ବର୍ଷା ରାତି : ୪୭୮
ଶେଷ ଅଙ୍କ : ୪୭୯
ଦୂର ପର୍ବତ : ୪୮୦
ଦଙ୍ଗା : ୪୮୨
ପ୍ରତ୍ୟାଗମନ : ୪୮୩
ବର୍ଷା ପରେ : ୪୮୫
କଫି ହାଉସ୍ : ୪୮୬

କବିତାର ଜନ୍ମ : ୪୮୭
ପ୍ରସ୍ତୁତି : ୪୮୮


ସଚରାଚର (୧୯୯୦-୯୧)

ସକାଳ : ୪୯୩
ଭଙ୍ଗା ମନ୍ଦିର : ୪୯୩
ଶରଣାର୍ଥୀ : ୪୯୫
କବି : ୪୯୭
ବସ୍ ଷ୍ଟାଣ୍ଡ : ୪୯୮
ସହଯାତ୍ରୀ : ୫୦୦
ଖରାବେଳେ ଏକା : ୫୦୧
ସଚରାଚର : ୫୦୨
ବୁଢ଼ାଲୋକ : ୫୦୪
ଆନୁକୂଲ୍ୟ : ୫୦୫
ଆଜି ଦିନ : ୫୦୭
ଝିଅଟିର ଦୁଃଖ : ୫୦୮
ଶୀତଦିନ : ୫୦୯
ଶିଷ୍ଟାଚାର : ୫୧୦
ପୁରୁଣା ବଜାର : ୫୧୧
ବର୍ଣ୍ଣବୋଧ : ୫୧୩
ଉଡ଼ାଜାହାଜ ଉପରୁ : ୫୧୪
ଆଉ ଥରେ : ୫୧୫
ଯୁଦ୍ଧ ଖବର : ୫୧୬
ସ୍ୱାଗତଂ : ୫୧୮
ଅଧାରାତିରେ : ୫୧୮
ଆଲବମ : ୫୨୦
ଏ କଥା ବିହିତ : ୫୨୧
ଆରଣ୍ୟକ : ୫୨୨
ସ୍ୱତଃସିଦ୍ଧ : ୫୨୩
ଐତିହାସିକ ସତ୍ୟ : ୫୨୫
କାଉଁରୀ କାଠି : ୫୨୬
ସ୍ତ୍ରୀ ଲୋକ : ୫୨୭
ଧ୍ୱଂସବିଧ୍ୱଂସ : ୫୨୮
ଝରକା ଦେଇ : ୫୩୦
ଲୋଧି ଗାର୍ଡେନ : ୫୩୧
କବିତା ପାଠ : ୫୩୨
ମୁର୍ଦାଘରେ ଶବ : ୫୩୪
ସାମୁଦ୍ରିକ : ୫୩୫
ଛୁଟିଦିନ : ୫୩୬
ଇନ୍ଦ୍ରଜାଲ : ୫୩୭
ଟେବୁଲ ଉପରେ : ୫୩୮
ଅନାଭରଣ : ୫୩୯
ଗୋଧୂଳି : ୫୪୧
ଚଉଛକି : ୫୪୧
ସୁଖ : ୫୪୩
ସତୀ : ୫୪୪
ନାହିଁ ନ ଥିବା : ୫୪୬


ସ୍ମୃତିର ସହର (୧୯୯୨-୯୪)

ପଥେର ପାଁଚାଲୀ : ୫୫୧
ଡାକଘର : ୫୫୨
ଫେରିଯିବାର ବେଳ : ୫୫୪
ଦୀପାବଳୀ : ୫୫୫
ଛାଡ଼ି ଆସିଥିବା ଦିନ : ୫୫୬
ବିଦାୟ ବେଳା : ୫୫୭
ପାର୍କର ସକାଳ : ୫୫୮
ଇଚ୍ଛା : ୫୬୦
ସାର୍ବଜନୀନ : ୫୬୧
ଲୋକଶ୍ରୁତି : ୫୬୩
ସ୍ମୃତିର ସହର : ୫୬୪
ନୈସର୍ଗିକ : ୫୬୬
ବେଲୁନବାଲା : ୫୬୮
ଶାସ୍ତି ବିଧାନ : ୫୬୯
ରାସ୍ତା ସରିଯାଏ : ୫୭୧
ଯାଅ ନାହିଁ : ୫୭୨

ସହରରେ କର୍ଫ୍ୟୁ : ୫୭୩
ତମେ ବର୍ତ୍ତମାନ : ୫୭୫
ଖଣ୍ଡଗିରି : ୫୭୭
ଠିକଣା ବହି : ୫୭୮
ଖେଳନା : ୫୮୦
ଫଟୋଗ୍ରାଫ : ୫୮୧
ଚିଠି ଆସେ ନାହିଁ : ୫୮୩
ମାନିନୀ : ୫୮୪
କବିତାର ଦେଶ : ୫୮୫
ଫେରିଯିବା ବେଳେ : ୫୮୬
କାଗଜର ନାଆ : ୫୮୮
ମୁହଁ ଅନ୍ଧାର : ୫୯୦
ଅସତ୍ୟ ସହର : ୫୯୨
ଗେଷ୍ଟ ହାଉସ : ୫୯୪
ସମ୍ଭାବନା : ୫୯୬

## ପରିକ୍ରମା (୧୯୯୫-୯୬)

ପାରି : ୬୦୧
ଘରକରଣା : ୬୦୨
କବିତାର ଅର୍ଥ : ୬୦୪
ଆବାହନ : ୬୦୭
ଡାଫୋଡ଼ିଲ : ୬୦୮
ଘରଚଟିଆ : ୬୧୦
ପର୍ଯ୍ୟଟକ : ୬୧୨
ପରାପର : ୬୧୪
ସ୍ମୃତିଜୀବୀ : ୬୧୬
ପତ୍ରାଳାପ : ୬୧୮
ପୁରୁଣା କବିତା : ୬୧୯
ଅତୀନ୍ଦ୍ରିୟ : ୬୨୨
ଶୀତରାତି : ୬୨୩
ଏଭଳି ଯଦି : ୬୨୫
ଘର ବାହାର : ୬୨୬
ସାପେକ୍ଷ : ୬୨୮
କେତେ ଦିନ ପରେ : ୬୩୦
ଭଙ୍ଗା ଖେଳନା : ୬୩୨
ପିତୃପକ୍ଷ : ୬୩୪
ପାଚେରୀ : ୬୩୬
ମହାନଗର : ୬୩୭
ଫେରା : ୬୩୯
ଦେହରକ୍ଷୀ : ୬୪୧
ଆମେ ଦୁହେଁ : ୬୪୨
ସାଧ୍ୟାତୀତ : ୬୪୪
ଏକାନ୍ତ : ୬୪୬
ଦ୍ୱୀପନାହିଁ : ୬୪୮
ମୁକ୍ତ ଛନ୍ଦ : ୬୪୯
କଳା ଦର୍ଶନ : ୬୫୧
କିଛି ଖରାବେଳେ : ୬୫୨

## ଅସମୟ (୧୯୯୭-୨୦୦୩)

ଭୋକ : ୬୫୭
ଡେଣା : ୬୫୯
ଅଲେଖା କବିତା : ୬୬୦
ଛାଡ଼ି ଆସିଥିବା ଦିନ : ୬୬୨
ଠିକଣା : ୬୬୪
ଅରଣ୍ୟ : ୬୬୫
ପଛକୁ ଫେରିବା : ୬୬୬
କବିତାର ଅପେକ୍ଷା : ୬୬୮
ଖୋଜା : ୬୬୯
ଅକାଳ : ୬୭୧
କିଛି ନାହିଁ : ୬୭୨
ଯିବା ବେଳେ : ୬୭୩
ଅବିସ୍ମୃତି : ୬୭୫
ମନେ ରଖ : ୬୭୬
ସଂଜ ପହର : ୬୭୮

ଲତା : ୬୭୯
ଅସମୟ : ୬୮୧
ଆକାଶ : ୬୮୨
ଛୋଟ ମୋର ଗାଁ : ୬୮୪
ଅନ୍ଧାର : ୬୮୯
ମାନି ନେବା ପରେ : ୬୯୧
ଏକା ଏକା : ୬୯୩
ସ୍ମୃତି ସତ୍ତା : ୬୯୫
ପୋଖରାନ : ୬୯୬
ଚିତ୍ରଲେଖା : ୬୯୮
କାଶୀପୁର : ୭୦୦
ରାସ୍ତା : ୭୦୧
ଯେ ଯାହା : ୭୦୪
ବିପ୍ରଲବ୍ଧ : ୭୦୫
ଗୁଜରାତ ପରେ : ୭୦୭

ବିବିଧ କବିତା (୨୦୦୪-୨୦୧୦)

ଲେଖି ନ ପାରିବା : ୭୧୩
ଫକୀର ମୋହନ : ୭୧୫
ଓଡ଼ିଆ : ୭୧୮
ଦେଶ : ୭୨୧
ଦେଶ ଦ୍ରୋହ : ୭୨୪

ଆଳିମାଳିକା (୧୯୯୩)

ନାଟର ଗୋବର୍ଦ୍ଧନ : ୭୨୭
ବିଲୁଆ ନନା : ୭୨୭
ଭାଗୀରଥି ଭାଇନା : ୭୨୭
ସଦାନନ୍ଦ ଶତପଥୀ : ୭୨୮
ଦୁଇ ଦାସ : ୭୨୮
ଡର : ୭୨୮
ଖଣ୍ଡା ନାକ : ୭୨୯
ଚିଠି : ୭୨୯
ବୁଲୁ ପଟନାୟକ : ୭୨୯
ଓତା ବାବୁ : ୭୩୦
ତିନି ରାୟ : ୭୩୦
ଜନ୍ତୁ ପରନ୍ତୁ : ୭୩୦
ଉତ୍ତମ ମଧ୍ୟମ : ୭୩୧
କାଉ କାଉ : ୭୩୧
ତିନି ମଞ୍ଜିକା : ୭୩୨
ପ୍ରଫେସର କର : ୭୩୨
ନାମ ବନାମ : ୭୩୩
ଡାକବଙ୍ଗଳାରେ ରାତି : ୭୩୩
ପରୀକ୍ଷା : ୭୩୪
ପଠାଣି ସାମନ୍ତ : ୭୩୪
ପୋଷା ଭାଷା : ୭୩୪
ପୋଡ଼ା କପାଳ : ୭୩୫
ରାଷ୍ଟ୍ର ଭାଷା : ୭୩୫
ଛ ମାଣ ଆଠ ଗୁଣ୍ଠ : ୭୩୫
ଚାତକ ଚକୋର : ୭୩୬

ଆଳୁକୁଚି ମାଳୁକୁଚି (୧୯୯୩)

ଦାଢ଼ିବାଲା ବୁଢ଼ା : ୭୩୯
ପାଗଳ କବି : ୭୩୯
କଥା ଉଠେ : ୭୩୯
ସରଳାର୍ଥ : ୭୪୦
ନବରଙ୍ଗ ମହାନ୍ତି : ୭୪୧
ଜବରବକ : ୭୪୧
ସତ୍ୟାସତ୍ୟ : ୭୪୨
ନାନାବାୟା : ୭୪୩
ଯେଡିର ପ୍ରଳାପ : ୭୪୩
ନେପାଳର ବୁଢ଼ା : ୭୪୩
ଗୁଲମାର୍ଗର ଟୋକା :୭୪୪

ଜାପାନୀ ହାଇକୁ :୭୪୪
ଦଳ ବଦଳ : ୭୪୫
ମଧୁସୂଦନ ରାଓ : ୭୪୫
ଢେଙ୍କାନାଳ : ୭୪୫
ବାଲେଶ୍ୱରର ଝିଅ : ୭୪୬
ନଈ ପାର : ୭୪୬
କଟକର ଯୁବକ : ୭୪୭
ରାମ : ୭୪୭
ସ୍ୱାଦ୍ୟ : ୭୪୮
ଭଂଜ କବି : ୭୪୮
ରାତି ଅଧରେ : ୭୪୯
ବୃତ୍ତି ପ୍ରବୃତ୍ତି : ୭୪୯
ସ-ମାନ : ୭୫୦
ପୁରୀର ଝିଅ : ୭୫୧
ପେଚା ଓ ମାଙ୍କଡ଼ୀ : ୭୫୧
ନାନା ଜାତି : ୭୫୧
ଦାସେ : ୭୫୨
ଇଟିକିଲି ମିଟିକିଲି : ୭୫୩
କଲିକତାର ବୁଢ଼ା : ୭୫୩
ପଦକାର : ୭୫୪
ପ୍ରେମର ପ ବର୍ଗ : ୭୫୪
ଇଂରେଜୀ ଟେଷ୍ଟ : ୭୫୫
ଅନୁବାଦ : ୭୫୫
ରମାକାନ୍ତ ରଥ : ୭୫୬
ସମୀକ୍ଷକ : ୭୫୬
ଏ ବି ସିଡ଼ି : ୭୫୬
ଲୋମହର୍ଷକ : ୭୫୭
ଲିମେରିକ : ୭୫୮
ହାଇକୁ : ୭୫୮
ଲିମେରାଇକୁ : ୭୫୮
ବିଲାତ ଫେରନ୍ତା : ୭୫୯
ଦନ୍ତ୍ୟ : ୭୫୯
ନବ କାଳିକା ଲାଳିକା : ୭୬୦
ଉଡ଼ା ଖବର : ୭୬୦

ଅନାବନା(୨୦୦୮)

କିଏ କେମିତି ଗଲା : ୭୬୩
ବିଲେଇ ନାନୀ : ୭୬୩
ମାଛ ଧରାଳୀ : ୭୬୪
ଛୋଟ : ୭୬୪
ଘର : ୭୬୫
ଆଠଗଡ଼ର ପିଲା : ୭୬୬
ପୁଷି ବିଲେଇ : ୭୬୭
ଆଖି ମେଲା ସପନ : ୭୬୮
ଜୀବ ଅଜୀବ : ୭୬୯
ଗଧ କାଉ : ୭୬୯
ଓଟ : ୭୭୦
ଘୋଡ଼ା : ୭୭୦
ଦେଖରେ ଦେଖ : ୭୭୧
ଅଜବ ଜୀବ : ୭୭୧
ଠେକୁଆ କହିଁଛ : ୭୭୨
ଲୋକଟି : ୭୭୩
ହାତ ଦେଖା ହାତୀ : ୭୭୩
ରମା ଓ ରାମ : ୭୭୪
ଡିନର : ୭୭୫
ଭେକ : ୭୭୬
ଯୋଡ଼ାକୁ ଘୋଡା : ୭୭୬

ଆନମାନ (୨୦୧୬)

ଅ ର ଚୋର : ୭୭୯
ପଣ୍ଡିତଙ୍କ ମୁଣ୍ଡ : ୭୭୯
ପାଣିପାଗ ବାଲା : ୭୮୦

ମେଳ ଅମେଳ : ୭୮୦
ସାପ ନିଶାପ : ୭୮୧
ପଣ୍ଡିତଙ୍କ ଫଟ : ୭୮୧
ସବ୍‌ଜାନ୍‌ତା : ୭୮୨
ଲେଖା ପଢ଼ା : ୭୮୨
ଭୁଲା ଚଲା : ୭୮୩
ପାରିବାର ପରିବାର : ୭୮୪
ଅବୋଲକରା : ୭୮୪
ନନ୍ଦକିଶୋର ବଳ : ୭୮୫
ସହରକୁ ରାସ୍ତା : ୭୮୫
ଓଲଟପୁରର ଲୋକ : ୭୮୬
ନବଗୁଂଜର : ୭୮୬
ରଂଗ ବେରଂଗ : ୭୮୭
ଶଠେ ଶାଠ୍ୟମ୍ : ୭୮୭
ଅର୍ଦ୍ଧ ବିରାମ : ୭୮୮
ବିଲାତୀ ଜନ୍ତୁ : ୭୮୮
ଲଙ୍କାରେ ହରିନାମ : ୭୮୯
ବାଜେ କଥା : ୭୮୯
କର୍ମ ଫଳ : ୭୯୦
ବୋଲକରା : ୭୯୦
ବରଯାତ୍ରୀ : ୭୯୧
ରାମ ଔର ଶ୍ୟାମ : ୭୯୧
ଲାଂଜ : ୭୯୨
ଶୀତ ଯେ ଶୀତ : ୭୯୨
ଦେଖା : ୭୯୩
ଧନ୍ଦା : ୭୯୩
କାଇଲା ଝିଅ : ୭୯୪
ଖରା ଯେ ଖରା : ୭୯୪
ଲୁଚା ଛପା : ୭୯୪
ଜନଗଣ : ୭୯୫
ରାଜା : ୭୯୫
ମାତ୍ରାଧିକ : ୭୯୬

ଅନୁବାଦ କବିତା

ସ୍ୱପ୍ନ ବିଚାର (୧୯୯୨)

ସ୍ୱୀକାରୋକ୍ତି : ୭୯୯
କୁତୂହଳୀ ଝିଅ : ୭୯୯
ନିଜେ ନିଜର : ୮୦୦
ଆନନ୍ଦ : ୮୦୧
ଧଳା ଧୂଆଁ : ୮୦୧
ଭୋର ବେଳା : ୮୦୨
ଚାରି ଧାଡ଼ି : ୮୦୨
ସ୍ୱପ୍ନ ବିଚାର : ୮୦୩
ଡାକଘରକୁ ଯିବାବେଳେ : ୮୦୩
ତମେ ମୁଁ ଓ ପୃଥିବୀ : ୮୦୪
ଆଖି : ୮୦୫
ବରଫ ବାଘ : ୮୦୭
ଅଧିକ ଜଣା ନାହିଁ : ୮୦୭
ଆଲୋକ ବୃତ୍ତର ବାହାରେ : ୮୦୮
ପ୍ରଜାପତି : ୮୦୯
ଘରଚଟିଆ : ୮୧୦
ବରଫ କଣା : ୮୧୦
ଜୋତା : ୮୧୧
ପାର୍କରେ ଗୋଟିଏ ଋତୁ : ୮୧୧
ସାଧାରଣ : ୮୧୨
ଜହ୍ନ : ୮୧୩
ପାଦୁକା : ୮୧୩
ହାମଲେଟ୍‌ର ଉଚିତ ଥିଲା : ୮୧୪
ଗୁମ୍ଫା : ୮୧୫
ବିରାଡ଼ି : ୮୧୫
ମୋ ପାଖରେ ବସ : ୮୧୬
ରବିବାର : ୮୧୭
ତ୍ରାଣକର୍ତ୍ତା : ୮୧୮
ସାଧାରଣ ଫୁଲ : ୮୧୯
ଘଟଣା ସ୍ଥଳରେ : ୮୧୯

# କବଚ

କେବେ କେବେ ଇଚ୍ଛା ହୁଏ
ଏ ମୋର ଜୀବନ ଯେଉଁ ପରିଧିର କେନ୍ଦ୍ର
ସେ ପରିଧି ବାହାରକୁ ଯାଇ ମୁଁ ଦେଖିବି
କିଭଳି ସେ ଦେଶ
ଆଉ ମୁଁ ସଂକଳ୍ପ ନେଇ
ସେ ବୃତ୍ତର ବାହାରକୁ ଯାଏ
ଗାଡ଼ିର କବାଟ ଖୋଲି
ସନ୍ତର୍ପଣେ ତଳକୁ ଓହ୍ଲାଏ

ସେ ଏକ ଅଦ୍ଭୁତ ଦେଶ
ଶୂନ୍ୟ ମହାଶୂନ୍ୟ
ଯେପରି ମୋ ଜୀବନର ବିଫଳ ମଧ୍ୟାହ୍ନ
ଆକାଶରେ ବୁଲୁଥିଲେ ଛାଇ ସବୁ
ସୂର୍ଯ୍ୟ ଭଳି ଚନ୍ଦ୍ର ଭଳି ନିର୍ଦ୍ଦିଷ୍ଟ ନିଶ୍ଚିତ
ସମୟ ସଂକୀର୍ଣ୍ଣ ହୋଇ
ହୋଇଗଲା ଗୋଟିଏ ମୁହୂର୍ତ୍ତ

ମୁଁ ଦେଖିଲି ନୂଆ କରି ବ୍ୟବଧାନ
ସୂର୍ଯ୍ୟର ଉଦୟ ଏବଂ ସୂର୍ଯ୍ୟାସ୍ତ ଭିତରେ
ଯେଉଁପରି ବ୍ୟବଧାନ ଅଛି
ଭଲ ପାଇବା ଓ ଭୁଲିଯିବା
ଦେଖିବା ଓ ଥିବାର ମଧ୍ୟରେ
ମୁଁ ଦେଖିଲି ଅନେକ ଆଲୋକ
ସେମାନେ ସମସ୍ତେ ମତେ ଘେରିଗଲେ
ଶରବିଦ୍ଧ କଲେ ମତେ
ଲୋହିତ ଓ କମଳା ରଂଗରେ
କଳା କଳା ଛାଇ ସବୁ

ଯେତେ ଥିଲେ ଅନ୍ତରୀକ୍ଷ ଘେରି
ସେମାନେ ନିହତ ହେଲେ
ପୁଣି ସେଇ ଶୂନ୍ୟତାରେ ଅନ୍ତର୍ହିତ ହେଲେ

ପ୍ରଥମ ଥରକ ପାଇଁ ମୁଁ ନିଜକୁ ପ୍ରଶ୍ନ କଲି
ମୁଁ କିଏ ରାସ୍ତା ମୋର କୁଆଡେ ଯାଇଛି
ଏ ପାହାଚ ତଳକୁ ନା ଉପରକୁ
ସାକ୍ଷୀ କିଏ ମୁକୁଟ କେଉଁଠି
ବୁଝିବାକୁ ଚେଷ୍ଟା କଲି
ଆକାଶରେ ତାରାଙ୍କର ଚୁପ ଚୁପ କଥା
ପବନର ହାତରେ ଯେ ରେଖା ସବୁ
ତାଙ୍କର ତାତ୍ପର୍ଯ୍ୟ
କି ବାର୍ତ୍ତା ରହିଚି ପୁଣି
ସମୁଦ୍ରର ବାଲିରେ ଯେ ଚିତ୍ରଲିପି ତହିଁରେ
ଓ ମୋ ଦେହର ପଂଜୁରୀରେ
ପକ୍ଷୀଟି ଯେ ଚିତ୍କାର କରୁଛି ତାର ଅର୍ଥ କଣ

ଅନେକ ଅନେକ ବନ୍ଧ୍ୟା ଅନ୍ତରୀକ୍ଷ ଆସି
ମୋ ଭିତରେ ଆଶ୍ରୟ ଖୋଜିଲେ
ମୋର ମନ ଭରିଗଲା ମହାଶୂନ୍ୟତାରେ
ମୋ ନିଜର ଛାଇ ସବୁ ଦୀର୍ଘତର ହେଲେ
ସେମାନେ ନ ଥିଲେ ପ୍ରେତ
ତଥାପି ମୁଁ ସେମାନଙ୍କୁ ଭୟ କଲି
ପଛକୁ ଫେରିଲି
ଅତି ସନ୍ତର୍ପଣେ ମୋର
ଗାଡ଼ି କବାଟକୁ ବନ୍ଦ କଲି
କାଚ ଆଉ ଇସ୍ପାତର ପାଚେରୀରେ
ଦୂର କଲି ସେମାନଙ୍କୁ
ଆକାଶ ପବନ ଆଉ ସମୁଦ୍ରର ବାଲି
ଅନେକ ପ୍ରଶ୍ନଙ୍କୁ

ପୁଣି ମୋର କବଚ ଖୋଜିଲି
ଖବରକାଗଜ ସିଗାରେଟ ଟିଣ
ଆଉ ରେଜା ପଇସାରେ

# ଗୋଟିଏ ଫୁଲର ନାଁ

ମୋ ଦେହର ପାଚେରୀରେ ଫୁଲ ସବୁ ମରିଗଲେ
ଅସଂଖ୍ୟ କାଗଜ ଫୁଲ
ମୁଠା ମୁଠା ପତ୍ର ହୋଇ ଉଡ଼ିଗଲେ
ଦିଗନ୍ତରେ ଧାଡ଼ି ଧାଡ଼ି ନାମହୀନ ପକ୍ଷୀ
ଲୁଚିଗଲେ ପବନର ପଣତରେ ପାରିଲିନି ରଖି

ବହୁ ବନ୍ଧୁ ବାନ୍ଧବୀ ଓ ଶୁଭାକାଂକ୍ଷୀ ଆସିଥିଲେ
ସେମାନେ ପ୍ରହରୀ ଥିଲେ
ବଂଧୁତାର ନୁହେଁ
ଛଳନାର ହସ ହସୁଥିଲେ
ସେମାନେ ସମସ୍ତେ ମତେ ମନ୍ତ୍ର ପଢ଼ାଇଲେ
ନୀତିବାକ୍ୟମାନ ମୋର କବଚରେ ବାନ୍ଧିଦେଲେ
ମତେ ଏକ ତପସ୍ୟାର ଆସନରେ ରଖି ଚାଲିଗଲେ

ସେମାନେ ବିଦାୟ ନେଲେ
ଆକାଶର ବିଛଣାରେ ରୁଗ୍‌ଣ ଖରା ଶୋଇଗଲା
କବଚ ମୁଁ ଖୋଲି ରଖିଦେଲି
ମୋ ଦେହର ଫାଶି କାଠ ଉପରୁ ମୁଁ
ତଳକୁ ଆଣିଲି ମୋର ଅର୍ଦ୍ଧମୃତ ଯୌବନକୁ
ସେମାନଙ୍କୁ ଖୋଜିନେଲି ସଂଧ୍ୟାର ଶୀତରେ
ସେମାନେ ସମସ୍ତେ ମୋର ବତୀଘର

ଅଥବା ସମୁଦ୍ର ଚାରିପାଖେ ଢେ଼ଉ
ପରେ ଢେ଼ଉ ପରେ ଢେଉ
ତା ପରେ ବିଲୟ
ସେମାନେ ପୁନଶ୍ଚ ରାତ୍ରି
ଅବସନ୍ନ ଦେହର ଆଶ୍ରୟ

ବିଷଣ୍ଣ ସଂଧ୍ୟାରେ ଆଜି ମୁଁ ଭାବୁଚି
ହୁଏତ ମୁଁ ମରିଯିବି ପ୍ରତିଶ୍ରୁତି ସବୁ ମୋର
ପୂରା ହେବା ଅନେକ ଆଗରୁ
ମୁଁ ଭାବୁଚି ଗୋଟିଏ ଫୁଲର ନାଁ
ଜଣେ କେହି ଶୁଭାକାଂକ୍ଷୀ
କେହି ବି ନାହାନ୍ତି
କବଚ ବି ହଜିଗଲା
ମୁଁ ଖୋଜୁଚି ଅକସ୍ମାତ ଦେଖିଥିବା ମୁହଁ
ମୋର ଯେତେ ଅନୁଭୂତି ସବୁ ମୋ ନିଜର
ମୋର ପ୍ରିୟ ବେଶ୍ୟାମାନେ
ମୋର ଏକ ନିଜର ସାମ୍ରାଜ୍ୟ
ରାସ୍ତା ଦେହ ବିଛଣାର
ମୁଁ ଭାବୁଚି ସେମାନଙ୍କ ଦେହର ଉତ୍ତାପ ନେଇ
ଆଉ ଏକ ଜୀବନ ବଞ୍ଚିବି

ଫୁଲ ବି ଫୁଟିବ

# ଦର୍ପଣ

କେବେ କେବେ ସୂର୍ଯ୍ୟ ଆସି ଛୁଏଁ ମତେ
ଅଧା ଖୋଲା ଝରକାକୁ ଡେଇଁ
ମୋର ଅର୍ଦ୍ଧ ଚେତନାର ଶେଷ ପ୍ରହରରେ
ସ୍ୱପ୍ନ ସବୁ ବିବ୍ରତ ହୁଅନ୍ତି
ଆଖି ଖୋଲି ଦେଖେ
ମତେ ଜଣା ନାହିଁ କାହାର ପଲଙ୍କ
ଶୋଇଚି ମୁଁ କେଉଁଠି କିପରି
ମୋ ପାଖରେ ସେ ନାରୀ ଅପରିଚିତା
ସେ କୋଠରୀ ଅଜ୍ଞାତ କୋଠରୀ

ଖୋଲି ଦିଏ ମୋ ଗଳାରୁ
ଦୁଇ ନଗ୍ନ ବାହୁର ଶିକୁଳୀ
ତା ଦେହର ପୁଂଜୀଭୂତ ଉତ୍ତାପର
ଘେରରୁ ମୁଁ ଚାଲିଆସେ
ମୁଁ ତାକୁ ଚିହ୍ନିବା ପାଇଁ ଚେଷ୍ଟା କରେ
ସେ କି ମୋର ଜୀବନସଙ୍ଗିନୀ
ଅଥବା ସେ ଅକସ୍ମାତ ବନ୍ଧୁ ମୋର
ସେ ଦିନ ସଂଧ୍ୟାର
ମୁଁ ତାର ଦେହର ବାର୍ତ୍ତା ପଢ଼ିବାକୁ ଖୋଜେ
ସେ କି ଖାଲି ମାଂସ ଆଉ କାମନାର
ଅବା ମୋର ରୋଗଗ୍ରସ୍ତ ମନର ବିକାର

ଦୁଆର ଖୋଲି ମୁଁ ଆସେ ବାହାରକୁ
ମୋ ଆଗରେ ଦେଖେ
ଅନେକ ଅପରିଚିତ ରାସ୍ତାର ଗୋଲକଧନ୍ଦା
ସକାଳର ସୂର୍ଯ୍ୟସ୍ନାତ ଅଚିହ୍ନା ସହର
ପରିଚୟହୀନତାର ରାସ୍ତା ସାରା
ଅର୍ଥହୀନ କୋଳାହଳ

ବଜାରରେ ଭିଡ
ଅନେକ ଲୋକଙ୍କ ମେଳ
ଖୋଲିଯାଏ ଅନେକ ଝରକା
ସେମାନଙ୍କ କଥା କିନ୍ତୁ ଅତୀବ ଦୁର୍ବୋଧ
ସେମାନେ ଅପରିଚିତ
ସେମାନଙ୍କ ମୁହଁ ସବୁ ମୁଖା

ଏଇଭଳି ମୁଖା ମୁହଁ ନାଟକର
ମନେହୁଏ ମୁଁ ଏକା ଦର୍ଶକ
ସେ ସବୁ କି ଅଭିନୟ
ନାଟକର ଶେଷ ଅଙ୍କ ପରେ ସେ କି
ଏକଜୁଟ ହେବା ସବୁ କଳାକାରଙ୍କର
ବିଦାୟ ସୂଚକ

ମୁଁ ଆସେ ମୋ କୋଠରୀର ଆଶ୍ରୟକୁ
ଦର୍ପଣରେ ନିଜକୁ ଅନାଏ
ସେ ମୁହଁ ବି ମୁଖା
ସ୍ୱସ୍ତିର ନିଶ୍ୱାସ ନେଇ
ଝରକା ବାହାରେ ଦେଖେ
ଅନେକ ଲୋକଙ୍କ ଭିଡ
କୋଳାହଳ ଅନେକ ଦର୍ଶକ
ପଲଙ୍କ ଓ ଶିକୁଳିର ନିରାପଦ ଆଶ୍ରୟରୁ
ଆବିଷ୍କାର କରେ ଏଥରକ
ସେମାନଙ୍କ କଥା ସବୁ ମୋ କଥାର ପ୍ରତିଧ୍ୱନି
ଆମେମାନେ ସବୁ ଏକା ଲୋକ

# ମୁଖା

ମୁଁ ଅନେକ ମୁଖା ରଖିଥାଏ
ଦିନ ରାତି ସଂଜବେଳ ପାଇଁ
କ୍ଷଣିକ ଆନନ୍ଦ ପାଇଁ
ବିୟୋଗାନ୍ତ ନାଟକର ଶେଷ ଅଙ୍କ ପାଇଁ
ଅତିଥି ଓ ସହଯାତ୍ରୀ ଏକଦା ପ୍ରେୟସୀ
ଏବଂ ତାର ସ୍ୱାମୀ ପାଇଁ
ସମ୍ରାଟ ସୈନିକ ବେଶ୍ୟା ଯାଦୁକର
ମଲାଲୋକ ଶୋଭାଯାତ୍ରା ପାଇଁ
ନିର୍ବାସିତ ଆକାଶ ଓ ଅବାକ୍ ସକାଳ
ପ୍ରେମ ପାଇଁ ପ୍ରତିରକ୍ଷା ପ୍ରତାରଣା ପାଇଁ
ବହୁବିଧ ମୁଖା ରଖି ଆଖି ପଲକରେ
ଭଳି ଭଳି ଛଦ୍ମବେଶ ନେଇଥାଏ
ଜୀବନର ପ୍ରତି ପର୍ଯ୍ୟାୟରେ

ମୁଁ ଏମିତି ମୁଖା ଖୋଜୁଥିଲି
ତା ଆଖିର ଈଷତ୍ ନୀଳରେ
ଯେତେକ କୁଆଁରୀ ଝିଅ
ସବୁ ମୋର ବଶୀଭୂତ ହେବେ
ମୋ ଓଠର ସାମାନ୍ୟ ଦୃଢ଼ତା ଦେଖି
ଶତ୍ରୁମାନେ ହାର ମାନିନେବେ
ଏକମାତ୍ର କଟାକ୍ଷରେ
ଆକାଶର ପକ୍ଷୀ ସବୁ ଆସିବେ ମୋ ପଂଜୁରୀକୁ
ମୁଁ କହିବି ରାତି ଏବଂ ସୂର୍ଯ୍ୟ ଅସ୍ତ ଯିବ

ସେ ମୁଖା ମିଳିଲା ନାହିଁ
ମୋର ମୁଖା ସବୁ
ଛୋଟ ଛୋଟ ବିସ୍ମୟ କେବଳ
ନିତାନ୍ତ ମାମୁଲି ହସ

ଉଦାସୀନ ଆନନ୍ଦ ଓ କ୍ଳୀବ ଅଭିମାନ
ଅତି କ୍ଷୀଣ ଆର୍ତ୍ତନାଦ ନପୁଂସକ ରୋଷ
ମୋର ମୁଖା ସାମାନ୍ୟ ପ୍ରେମ
ଓ ଅତି ସାଧାରଣ ବିରହ ସକଳ

ସେ ମୁଖା ମୁହଁରେ ପିନ୍ଧି
ଅତିଥି ସତ୍କାର କରେ ମନ୍ତ୍ର ପଢ଼େ
ପତ୍ନୀକୁ ଓ ପ୍ରେମିକାକୁ ପ୍ରେମ କରେ
ଆକାଶକୁ କେବେ କେବେ କଥା କହେ
ତାରାଙ୍କୁ ଅନାଏ
ମଣିଷଙ୍କ ଗହଳିରେ ହଜିଯାଏ ଅତି ସହଜରେ

ମୋ ବୟସ ବଢ଼ିଯାଏ
ଗୋଟିଏ ମୁଖାରୁ ପୁଣି ଅନ୍ୟ ମୁଖା ଯାଏ
ଗୋଟିଏ ଛଳନାଠାରୁ ଅନ୍ୟ ଛଳନାକୁ
ଛଦ୍ମବେଶ ଉହାଡରୁ
କେହି କେହି ଚେଷ୍ଟା କରିଥାନ୍ତି
ମତେ ଚିହ୍ନିବାକୁ
ଆଉ କେହି ଚିହ୍ନି ପୁଣି ଅଚିହ୍ନା ହୁଅନ୍ତି
କେବେ କେବେ ଯଦି ମୋର ମନେହୁଏ
ପରିଚୟ ପତ୍ର ହଜିଗଲା
ମୁଁ ନିଜକୁ ଦେଖିବାକୁ ଚେଷ୍ଟା କରେ
କାଚକୁ ଅନାଏ
ଧାଡ଼ି ଧାଡ଼ି ମୁଖା ଏବଂ
ଇତସ୍ତତଃ ଭଙ୍ଗା କାଚ ଖାଲି

ଦର୍ପଣକୁ ପ୍ରଶ୍ନ କରି ଲାଭ ନାହିଁ

# ପ୍ରଥମ ପ୍ରେମ

ଅନେକ ପୁରୁଣା ମୁହଁ
ବିସ୍ମୃତିର କୁହୁଡ଼ିରେ ପହଁରି ପହଁରି
ମୋ ପାଖେ ଏକାଠି ହେଲେ
ପୁଣି କେଉଁ ଯାଦୁକର କ୍ରୂର ଇଙ୍ଗିତରେ
ସେମାନେ ସମସ୍ତେ ଗଲେ ପଥର ପାଲଟି
ମତେ ଆସି ବନ୍ଦୀ କଲେ ବାହୁର ଘେରରେ

ମୁଁ ଭାବୁଚି ସରିଗଲା
କିପରି ମୋ ପ୍ରଥମ ଯୌବନ
କିଞ୍ଚିତ ସମୟ ଗଲା
ଅସଂଲଗ୍ନ କଥା କହିବାରେ
ଖାପଛଡା କଥା ବୁଝିବାରେ
ମାନ ଭାଙ୍ଗିବାରେ
ହାତ ଧରି ସ୍ୱପ୍ନ ଦେଖିବାରେ
କିଛି ହସ କିଛି କାନ୍ଦ
କେତୋଟି ମୁହୂର୍ତ୍ତ ପୁଣି ଚୁପଚାପ
ଭୁଲ ବୁଝା : ମତେ କର ଆଦର ନଚେତ
କେତେ ଚୋରା ଚାହାଣୀର ଆମନ୍ତ୍ରଣ
କିଛି ପୁଣି ହାତରେ ନିଷେଧ
କିଞ୍ଚିତ ସମୟ ଗଲା
ଯୌବନକୁ ବୁଝିବାର ନିଷ୍ଫଳ ଚେଷ୍ଟାରେ

ହିସାବ କରୁଛି ଆଜି
ମୋ ଜୀବନ କେଉଁଭଳି ନିରର୍ଥକ ଗଲା
ଅସଂପୂର୍ଣ୍ଣ ଦିନ ଏବଂ ଅଶାନ୍ତ ରାତିରେ
ସତ୍ତା ମୋର ହରାଇଲି କି ଭଳି ମୁଁ
ଦୁଇଗୋଟି ଦର୍ପଣର ପରିଧି ଭିତରେ
ମୁଁ କିପରି ମନ୍ତ୍ରମୁଗ୍ଧ ହେଲି

ମୋର ନିଜ ଛାଇ ଦେଖି
ସୀମାହୀନ ବିସ୍ମୟରେ
କିପରି ମୁଁ ଶୋଇଗଲି ଶୀତ ନିଦ୍ରା
ସମୟର ଶୀତତାପ ନିୟନ୍ତ୍ରିତ
କୋଠରୀ ଭିତରେ

ଆଜି ମୁଁ ପଢୁଛି ମନ୍ତ୍ର
ମନ୍ଦିରର ପ୍ରାଙ୍ଗଣରେ ବସି
ପଥରକୁ ଜୀବନ ଦେବାର
ଅନେକ ପଥର ମୁହଁ ଚାରିପାଖ ନିର୍ବାକ ନିସ୍ପନ୍ଦ
ସେମାନେ ସମସ୍ତେ ଯଦି ଜୀବନ୍ୟାସ ନେଇ
ଥରେ ମୋର ସ୍ୱପ୍ନରେ ଆସନ୍ତେ

## ଶବ

ପଡ଼ିଚି କାହାର ଶବ ମଝି ସଡକରେ
ସେ ପାଖରେ ଲୋକଙ୍କର ଭିଡ଼
ପାଖ କାଟି ଚାଲିଗଲେ କେତେ କିଏ
କେତେ କିଏ ପାରିଲେନି ଦେଖି
କାହା ପାଦ ରହିଗଲା କିଏ ଚୁପ ହେଲା
ଦେଖି ପୁଣି କିଏ ଜଣେ ବୁଜିଦେଲା ଆଖି

ସେ ରାସ୍ତାରେ ମନ୍ତ୍ର ପଢ଼ି ଚାଲିଗଲା ଜଣେ
ଫୁଲ ତୋଳେ ଏ ଶିଶୁ କାହାର
ସେଠାରେ ହସିଲା କିଏ
କିଏ ହାତ ବଢ଼ାଇଲା

ସମୟକୁ ବନ୍ଦ କରିବାକୁ
ନିର୍ଜନ ରାସ୍ତାରେ ପୁଣି
ହଜିଗଲା କାହାର ଚିତ୍କାର

ଆଲୁଅର ଉଜାଣିରେ
ସେ ରାସ୍ତାରେ ହଜିଗଲା ଜଣେ
ମନର ଅନେକ ସ୍ୱପ୍ନ
ଜାଳି ଦେଇ ଦୀର୍ଘ ନିଶ୍ୱାସରେ
କେ କହିଲା ଆହା
କିଏ ତାର ଜୀବନକୁ ମାପ କଲା
ଜଳୁଥିବା ମହମବତୀରେ
କିଏ ପୁଣି ରାସ୍ତା ତାର ଖୋଜିନେଲା
ଅଧା ଆଲୁଅରେ

ଲୋକ ସବୁ ଚାଲିଗଲେ
ସଡକ ନିଝୁମ ହେଲା ହସ ଲିଭିଗଲା
ଅନନ୍ତ ଶୂନ୍ୟରେ
ପଡ଼ିଚି ତଥାପି ଶବ ମଝି ସଡକରେ

ମୁଁ ଶୋଇଚି ନିର୍ଜନ ଦ୍ୱୀପରେ

## ପ୍ରତୀକ୍ଷା

ସେମାନେ ଆସନ୍ତି ନାହିଁ ଆଜି ଆଉ
ମୋ ଘରର ଝରକାକୁ ଡେଇଁ
ଲୁଚି ଲୁଚି ଅଧା ଆଲୁଅରେ

ମୁଠା ମୁଠା ଆକାଶ
ମୋ କୋଠରୀରେ ବିଛି ଦେଇ
ସେମାନଙ୍କ ଈଷତ୍ ହସରେ
ଅନେକ ପୁରୁଣା ଏବଂ ଭୁଲିଯିବା ସଙ୍ଗୀତର
ଢେଉ ତୋଳି ଅଳସ ପାଦରେ
ସେମାନେ ଆସନ୍ତି ନାହିଁ ଆଜି ଆଉ
ମୋ ଘରକୁ ସକାଳର ପକ୍ଷୀ ଭଳି
ଗୋପନୀୟ ଚିଠି ନେଇ
କମ୍ପିତ ହାତରେ

ଅନ୍ଧାରକୁ ବୁଝି ହୁଏ
ଅନୁଭୂତିହୀନ ଶୂନ୍ୟତାରେ
ଅନେକ ଯନ୍ତ୍ରଣା ମିଶି
ପ୍ରେମିକାର ମୁହଁ ହୋଇଯାନ୍ତି
ସେମାନଙ୍କୁ ସହି ହୁଏ
ଅନେକ ଜୀବନମାନ ବଞ୍ଚି ହୁଏ
ପ୍ରତ୍ୟେକଟି ପ୍ରେମ ପାଇଁ
ସେ ସବୁକୁ ମାପି ହୁଏ
କିନ୍ତୁ କେଉଁପରି
ସମୟକୁ ବନ୍ଦ କରି ରଖି ହେବ
ଖାଲି କୋଠରୀରେ

ଛାଇମାନେ ଚାଲିଗଲେ
ସକାଳର ତାରାମାନେ ଶୋଇଯିବା ପରେ
ନୀଳ ଆଖି ନରମ ହାତ
ଓ ଇତସ୍ତତଃ କବରୀର ନରମ ଚଟାଣ
ଉପରେ ଅଳସ ଭାଙ୍ଗି
ଝିଅମାନେ ସ୍ୱପ୍ନ ବି ଦେଖିଲେ
ସେମାନେ ହୁଏତ ଏଇ ସଜାଗ ସତର୍କ
ପ୍ରହରୀଙ୍କ ଭିଡ ଭାଙ୍ଗି ଦୁର୍ଗ ଭିତରକୁ
ଯିବା ପାଇଁ ଭୟ କରୁଥିଲେ

ଆଉ ସେଥିପାଇଁ ସ୍ୱପ୍ନ ଦେଖୁଥିଲେ
କିନ୍ତୁ କି ଲାଭ ସେ ସ୍ୱପ୍ନ ଦେଖିବାରେ
କି ଲାଭ ଚିତ୍କାର କରି
ଝଡ ଭଳି ଏକାଏକା
କେହି ଯଦି ଯାଏ ନାହିଁ
ସେ ଶୂନ୍ୟ ରାସ୍ତାରେ

ମୁଁ ଭାବୁଚି ଏ ଜୀବନ
ଅନ୍ୟ ଭଳି ହୋଇଥାନ୍ତା ମୋର
ବିମର୍ଷ ଅତୀତ ଏବଂ
ସବୁ ବନ୍ଧ୍ୟା ଭବିଷ୍ୟତ
ରୂପାନ୍ତର ନେଇ ଏକ ରଙ୍ଗ ହୋଇଯାନ୍ତେ
ସେ ରଙ୍ଗ ଆଖିରେ ଦେଇ
ମୁଁ ଦେଖନ୍ତି ବହୁବିଧ ସ୍ୱପ୍ନ
ମୋର ନିରର୍ଥକ ମୁହୂର୍ତ୍ତ ସବୁରେ
ରହିଥାନ୍ତି ଅପେକ୍ଷାରେ
ଝିଅମାନେ ହସିବେ ଓ
ସତର୍କ ପ୍ରହରୀମାନେ ଶୋଇଗଲେ
ସେମାନେ ଆସିବେ

# ପ୍ରିୟତମା ତମକୁ

ପ୍ରିୟତମା ତମକୁ ମୁଁ ଦେଇଯିବି
ଆଜି ମୋର ସମସ୍ତ ଜୀବନ
ପ୍ରେମ ଆଉ ହତାଶାର ଆୟବ୍ୟୟ ଖାତାମାନ
ବ୍ୟର୍ଥତାର ଯେତେ ଚିଠି ଲେଖା ହେଲା

ଯେତେ କଥା ପ୍ରତିଧ୍ୱନି ହୋଇ ସବୁ
ମିଶିଗଲେ ଆକାଶରେ
ମୋ ହାତ ମୁଠାରେ ଯେତେ
ଅତୀତର ଦିନ ଧରା ଦେଲେ

ମୋ ଆଖିକୁ ଦେଖ
ଝିଲମିଲ ଶୂନ୍ୟତାରେ
ସ୍ମୃତିର ଭଉଁରୀ ସବୁ ବୁଲି ବୁଲି ଥକିଗଲେ
ମୋ ଆଖିର ଦର୍ପଣରେ
ତମେ ପୁଣି ନିଜକୁ ଦେଖିବ
ମୋ ହାତକୁ ଛୁଅଁ
ନିଆଁ ସବୁ ଜଳି ଜଳି
ଖାଲି ତମ ଦେହର ଉତ୍ତାପ
ରହିଯିବ ବାକି
ମତେ ଧରି ରଖ ଦି' ହାତରେ
ସ୍ୱପ୍ନ ସବୁ ସରିଗଲେ
ପୁଣି ହେବ ନିଃସଙ୍ଗ ଏକାକୀ

ଦେଖ ଆଜି ତମ ପାଇଁ
କିପରି ଏ ସକାଳ ଜଳିଲା
ଆକାଶରେ ପାଦଚିହ୍ନ ଲିଭିଗଲା
ଅବସନ୍ନ ରାତି ଶୋଇଗଲା
ଅନନ୍ତ ଶୂନ୍ୟକୁ ଦେଖ ଚାଲିଗଲେ
ଯେତେ ସବୁ ଛାଇ
ପଥରର ଅହଲ୍ୟା ବି
ବନ୍ଦ ହେଲା ନିଜ ଜଡତାରେ
ରାଜପୁତ୍ର ଚାଲିଗଲା ଅତିପ୍ରିୟ ବନବାସ ପାଇଁ

ସମୟର ଚୋରା ବାଲି ଉପରେ
ମୋ ସ୍ମୃତି କେଉଁପରି
ସତର୍କ ପାଦରେ ଦେଖ ଖୋଜିବୁଲେ ଆଜି

ହଜି ଯାଇଥିବା କେତେ ଛୋଟ ଛୋଟ
ମୁହୂର୍ତ୍ତର ଭଙ୍ଗା ଖେଳନା ଓ
ଅନ୍ତରଙ୍ଗ ରାତିର ଶାମୁକା
ତମକୁ ମୁଁ ସବୁ ଦେଇଯିବି
ଯଦି ଖାଲି ଖୋଜିପାଏ
ଗୋଟିଏ ସଫଳ ପ୍ରେମ : ସମସ୍ତ ଜୀବନ

## ପ୍ରହରୀ

ତାକୁ ମୁଁ ପହରା ଦିଏ
ତା ଦେହର ଚାରିପାଖେ ଗାର କାଟି
କଳାଗାର ଧଳାଗାର ଦିନରାତି ଆଠଟି ପ୍ରହର
ସବୁ ଋତୁ ସବୁ ଅନୁଭବ
ଏକତ୍ରିତ କରି ସବୁ ଅଶାନ୍ତ ମୌସୁମୀ
ଏବଂ ଶେଷ ବସନ୍ତର ସମସ୍ତ ମୁହୂର୍ତ୍ତ
ରହିଥାଏ ଏକାଗ୍ର ମନରେ
ଆଖିରେ ପଲକ ନାହିଁ ମୋ ହାତରେ ଛୁରୀ
ମୁଁ ବସେ ଉଦ୍‌ଗ୍ରୀବ ହୋଇ
ଆଶଙ୍କାର ନିଝୁମ ପ୍ରହରେ

ଅକସ୍ମାତ ଝଡ ଉଠେ ମେଘର ରଥରେ
କଳାଘୋଡା ଧଳାଘୋଡା ଉଚ୍ଚାଟ ହୁଅନ୍ତି
ଭାଙ୍ଗିଯାଏ ଆକାଶର ଇନ୍ଦ୍ରଜାଲ
ଝଡର ଡେଣାରେ
ଜଂଗଲର ଚଟାଣରେ ବିଞ୍ଚିଯାଏ ମୁଠା ମୁଠା
ଅବଶେଷ ଶେଷ ଆଲୁଅର
ସବୁ ପୁଣି ଲିଭି ଲିଭି ଯାଏ
କଳାମୁଖା କିଏ ଯାଇ ବାନ୍ଧିଦିଏ

ଆକାଶ ମୁହଁରେ
ମୁଁ ଦେଖେ ଦୁଇଟି ଆଖି
କାହାର ଏ ଆଖି
କାହାର ଏ ପଦଧ୍ୱନି
କିଏ ମେଘ କେଉଁଠି ଆକାଶ
ଚଞ୍ଚଳ ହୁଏ ମୁଁ ପୁଣି
ପ୍ରତିଧ୍ୱନି ଶୁଣି ସେ ଝଡର
ଆଖିର ମୁନରେ ମୋର
ଚିରିବାକୁ ଚେଷ୍ଟା କରେ ସବୁ ଅନ୍ଧକାର

ଅନ୍ଧାରର କାନ୍ଦ ଶୁଭେ ରହି ରହି
ଦୂରରୁ ଚିତ୍କାର ଶୁଭେ ଆଦିମ ଜୀବର
ଶୁଭେ ପୁଣି ଲିଭିଯାଏ
ଝାଉଁବଣ ଦୀର୍ଘଶ୍ୱାସ ନିଏ
ଦଳ ଦଳ ଛାଇଙ୍କର ଶୋଭାଯାତ୍ରା ସରି ଆସେ
ଛପି ଛପି ପାଦଶବ୍ଦ
ଚୁପ ଚୁପ କଥାର ଉହାଡେ

ମୁଁ ପୁଣି ସତର୍କ ହୁଏ
ମଲା ଦେହ ଚାରିପାଖେ ଗାର କାଟି ଦିଏ

# ଘର ବାହୁଡା

ଘର ଛାଡ଼ି ବାହାରିବା ବେଳେ
ପ୍ରଥମରେ ଭାବିଥିଲି ଆକାଶରୁ ନେବି କିଛି
ରଙ୍ଗ ଓ ଆଲୁଅ

ସୂର୍ଯ୍ୟରୁ ଉତ୍ତାପ କିଛି ମେଘରୁ ଚିତ୍କାର
ଅରଣ୍ୟରୁ ରୋମାଞ୍ଚ
ଓ ଶୂନ୍ୟତାରୁ ଅଭିଜ୍ଞତା କିଛି

ନ ପାଇ ଭାବିଲି ତେଣୁ
ଆକାଶରୁ ଆଶା କିଛି ନେବି
ସୂର୍ଯ୍ୟରୁ ଶପଥ ଏବଂ
ମେଘ ଠାରୁ ସ୍ୱପ୍ନର ସାମଗ୍ରୀ
ଶୂନ୍ୟତାରୁ ମାଗିନେବି ସାମାନ୍ୟ ବିସ୍ମୟ
ପବନ ମୋ ପାଇଁ ଦେବ
ରାସ୍ତା ପାଇଁ ସମସ୍ତ ପାଥେୟ

ହଜିଗଲା ରାସ୍ତା ମୋର
ନିରୁପାୟ ପ୍ରତ୍ୟାବର୍ତ୍ତନରେ
ଏବେ ମୁଁ ଭାବୁଛି ବସି
ଅନ୍ୟାୟ ଓ ଅବିଚାର ଅଦୃଷ୍ଟର କଥା
ଆଜି ମୋର ପାପୁଲିର ଗାରକୁ ଅନାଇ
ଗୋଟିଏ ନିରାଶା ଏବଂ
ଅନ୍ୟଟିର ମାପୁଛି ଦୂରତା

ବଞ୍ଚିବାର ସୀମାବଦ୍ଧ ଯୋଜନାରେ
ସୂର୍ଯ୍ୟ ଏବଂ ଆକାଶର ସ୍ଥାନ ନାହିଁ
ପ୍ରତୀକ ଓ ଅର୍ଥ ତାର ପଥ ଓ ପାଥେୟ
ହୋଇଗଲେ ଏକାକାର ଜୀବନର ସହଜ ସୂତ୍ରରେ
ସମୟ ଓ ବୟସ ସହିତ
ପ୍ରାତ୍ୟହିକ ଲେଖାପଢ଼ା ହେଲା ଅସୁମାରି
ଲଢ଼ିବା ଓ ହାରିବାର ମୁହୂର୍ତ୍ତ ବି ଗଲାଣି ପାଶୋରି

ଆଜି ଯଦି କେବେ କେବେ ମୁହଁସଂଜ ବେଳେ
ସେ ପୁରୁଣା ଇଚ୍ଛା ମୋର
ଉଙ୍କି ମାରେ ଅକସ୍ମାତ

ଆମେ ଦୁହେଁ ଘରକୁ ବାହୁଡ଼ି ଆସୁ
କଳା ଏବଂ ଗୋପନୀୟ ସତ୍ୟ ଭଳି
ପ୍ରିୟ ମୋର କୁକୁର ଓ ମୁଁ
ସ୍ୱସ୍ତିର ନିଶ୍ୱାସ ନେଇ କବାଟ ମୁଁ ଖୋଲେ
ହାଇ ମାରି ଅନାସକ୍ତ ସମ୍ମତିରେ
କୁକୁର ତା ମୁହଁକୁ ହଲାଏ

## ଚଉମୁହାଣି

ମତେ ସେ କହିଲା ହଁ
ଏଇଟା ହିଁ ଠିକ ରାସ୍ତା
ନିର୍ବିଘ୍ନରେ ଯିବା ପାଇଁ ପାଖ ସହରକୁ
ଏ ରାସ୍ତାରେ କିଛି ବାଟ ଯିବା ପରେ
ତମେ ଏକ ମନ୍ଦିର ଦେଖିବ
ଚୂଡ଼ା ତାର ଭାଙ୍ଗିଲାଣି ତଥାପି ସେଠାରେ
କେବେ କେବେ ଲୋକଙ୍କର ଭିଡ ହୁଏ
କାର୍ତ୍ତିକ ଓ ମାର୍ଗଶିର ମାସେ
ପୁରୋହିତମାନେ ଆସି ପୂଜାପାଠ କରିଥାନ୍ତି
ଦଶମାସ ବ୍ୟବଧାନ ପରେ
ତମେ ଯେଣୁ ତୀର୍ଥଯାତ୍ରୀ ନୁହଁ
ଏବଂ ଇଏ ମାଘ ମାସ
ସେଠାରେ ନ ରହି ତମେ ଅଶ୍ୱତ୍‌ଥ ପାଖକୁ ଯାଅ
ସେ ଗଛରେ ଚନ୍ଦନ ଓ ସିନ୍ଦୂରର ଦାଗ ଦେଖି
ମନ୍ଦିରର ଭ୍ରମ ହୋଇପାରେ
ସିଏ କିନ୍ତୁ ନିହାତି ମାମୁଲି ଗଛ
ତା ଡାଳରେ ଶଂଖଚକ୍ର ଚିହ୍ନ ନାହିଁ
ସେ ଗଛର ଆଖପାଖେ ହୁଙ୍କା ନାହିଁ

କିଛି କ୍ଷଣ ପାଇଁ ଯାହା ପକ୍ଷୀମାନେ
ଆସିଥାନ୍ତି ସେ ଗଛକୁ ସଂଜବେଳେ
ତମେ ତାର ଦକ୍ଷିଣ ରାସ୍ତାରେ ଯିବ
ସନ୍ଧ୍ୟା ହେବା ଆଗରୁ ନିଶ୍ଚୟ
ସେ ରାସ୍ତାରେ ମଶାଣି ପଡ଼ିବ
ଯଦିଓ ସେ ଅତି ସାଧାରଣ
ମଣିଷଙ୍କ ପୋଡା ହେବା ଜାଗା
ସେଠାରେ ନାହାନ୍ତି କେହି ଭୂତ ପ୍ରେତ ଆଦି
ସେଠାରେ ଡାହାଣୀ ବୁଢ଼ୀ ନିଆଁ ଜାଳେ ନାହିଁ
ତମେ କିନ୍ତୁ ନୂଆ ଲୋକ ସେ ସବୁ ନ ଦେଖି
ଚାଲିଯିବ ଆହୁରି ଆଗକୁ ସିଧା ସେଇ ସଡକରେ
କିଛି ବାଟ ବାଁ ପାଖେ ଯିବା ପରେ
ତମେ ପୁଣି ପହଞ୍ଚିବ ଚଉମୁହାଣିରେ
ଏଥର ଆଶ୍ୱସ୍ତ ହୁଅ
ଲେଖା ଅଛି ଚାରିଟି ରାସ୍ତାର ନାଁ
ଆଉ ସେଇ ଛକରୁ ଯାଇଛି ରାସ୍ତା
ସିଧା ତମ ନିଜ ସହରକୁ

ସେ ରାସ୍ତାରେ କିଛିବାଟ ଆସିଯିବା ପରେ
ମନେ ହେଲା ଜାଣିଶୁଣି ହୁଏତ ନିଶ୍ଚିତ
ମତେ ସିଏ ପଥଭ୍ରଷ୍ଟ କଲା
ଅଥବା ନ ଜାଣି ମତେ
ଭୁଲ ରାସ୍ତା ଦେଖାଇଲା
ପୁଣି ମନେହେଲା
ଆଜି ଯଦି ଭୁଲ କରି ଚଉମୁହାଣିରେ
ଲକ୍ଷ୍ୟଭ୍ରଷ୍ଟ ଅନ୍ୟ ଏକ ସହରରେ
ପହଞ୍ଚେ ତଥାପି
ସମ୍ଭବତଃ କିଛି କ୍ଷତି ନାହିଁ
ହୁଏତ ମୁଁ ଜାଣେ ନାହିଁ
ନିଜେ ମୋର ଲକ୍ଷ୍ୟ କିଏ
ଅଥବା ମୁଁ ସହରକୁ ନୁହେଁ

ସେଇ ଛକକୁ ହିଁ ରାସ୍ତା ଖୋଜୁଥିଲି

# କୋଠରୀ

ମୋ ଶୋଇବା ଘର ଏକ ଜଉଘର ଭଳି
ଅନେକ ଇଚ୍ଛାର ନିଆଁ ଦପ୍ ଦପ୍
ଜଳୁଛି ଲିଭୁଛି ଜଳୁଛି ଲିଭୁଛି
ଏ ଘରର କାନ୍ଥ ନାହିଁ
ବହିର ନାୟିକାମାନେ ନାରୀ ହୋଇ
ଏ ଘରକୁ ଆସନ୍ତି ଯାଆନ୍ତି
ଅସରନ୍ତି ଶୋଭାଯାତ୍ରା କରି
ଅଶ୍ଳୀଳ ବହିର ଯେତେ ଅବାସ୍ତବ ରୂପକଥା
ଏଇ ଘରେ ଜୀବନ ନିଅନ୍ତି
ଅନେକ ଦେହର ଛବି ଏକତ୍ରିତ ହୋଇ
ଅସମ୍ଭବ ବନ୍ଧନରେ ଛନ୍ଦି ହୋଇ ଛାତରୁ ଝୁଲନ୍ତି
ମୋ ପାଖରେ ବସି କେତେ
କଳା ଓ ରହସ୍ୟମୟୀ ଝିଅମାନେ
ଗୁଣୁ ଗୁଣୁ କରିଥାନ୍ତି ସେମାନଙ୍କ ଅଭିଳାଷମାନ
ଶୁଣିଥିବା ଆନନ୍ଦର ଅନେକ ଆଶାରେ
ରାତି ଆସେ ନିଃଶଙ୍କ ଓ ଅନାୟାସ
ଆକାଶର ପଲଙ୍କରେ ଜହ୍ନ ଶୋଇଗଲେ
କୋଠରୀରେ ଭରିଯାଏ
ସେ ନିଆଁର ଘନିଷ୍ଠ ଉତ୍ତାପ
ନିଜ ବିଛଣାରେ ମୁଁ ନିଜକୁ
ସମ୍ରାଟର ସମ୍ମାନ ଜଣାଏ
ପୁଣି ଶୋଇଯାଏ

କେବେ କେବେ ଦେହର ରାତିରେ
ସ୍ୱପ୍ନର ବିଜୁଳି ଆସି
ଆଘାତ କରନ୍ତି ମୋର ଆତ୍ମବିଶ୍ୱାସକୁ
ମୋ ଦେହର ସାମର୍ଥ୍ୟକୁ
ମୁଁ ନିଜେ ସନ୍ଦେହ କରେ
କିଛି କିଛି ବୁଭୁକ୍ଷାରେ
ମରିଯାଏ ଟିକି ଟିକି ହୋଇ
ମତେ ଚାହିଁ ହସେ
ମୋର ବିଛଣାର ନିଷ୍ପାପ ଶୁଭ୍ରତା
ଅତୀତର ଅସଫଳ ସକଳ ମୁହୂର୍ତ୍ତ
ମତେ କରନ୍ତି ବିବ୍ରତ
ମୋ ନିଜର ଘର ମତେ କରେ ଭୟଭୀତ

ଶ୍ୱାସରୁଦ୍ଧ ହୋଇ ଯେବେ
ମୁକ୍ତି ଚାହେଁ ସେ ଘର ଭିତରୁ
ମୁହଁ ଦେହ ଇଚ୍ଛା ସବୁ
କାନ୍ଥ ହୋଇ ମତେ ଘେରିଯାନ୍ତି

# ବିଜେତା

ଯେଉଁମାନେ ଆସିଥିଲେ ମୋ ଘରକୁ
କେହି କେହି ଏଭଳି ମଧ୍ୟାହ୍ନ ଦେଖି
ଚମକି ପଡ଼ିଲେ
ହଠାତ ପବନ ଲାଗି ଗୁଡ଼ିର ସୂତା ଓ
ସେମାନଙ୍କ ଭାବନାର ଖିଅ ଛିଣ୍ଡିଗଲା
ଛାଇ ଭଳି ଛୋଟ ହୋଇ

ଦି'ପହର ହୋଇଗଲା
କେବଳ ମୁଠାଏ ଧୂସର ଶୂନ୍ୟତା
ସ୍ମୃତି ସବୁ ପକ୍ଷୀ ହୋଇ ଉଡ଼ିଗଲେ
ପ୍ରତିଧ୍ୱନିହୀନ ଅନ୍ତରୀକ୍ଷ ସନ୍ଧାନରେ
ଝାଉଁଗଛ ଚୁପ୍ ହେଲେ
ମଲା ଲୋକ ସେମାନଙ୍କ କାନ୍ଦ ବନ୍ଦ କଲେ
ପୁନର୍ଜନ୍ମ ନେବାର ଆଶାରେ
ଆକାଶର ଅପନ୍ତରା ଅସମ୍ଭବ ଫିକା ଦେଖାଗଲା

ଏସବୁ ଅଶୁଭ ଦେଖି
ଅନେକେ ଆଶ୍ଚର୍ଯ୍ୟ ହେଲେ ପୁଣି ଭୟଭୀତ
ଏବଂ ଏଇ ଅହେତୁକ ମୁହୂର୍ତ୍ତରେ ମତେ
ଏକା ଏକା ଛାଡ଼ିଦେଇ
ଚାଲିଗଲେ ସେମାନେ ସମସ୍ତେ

ଏଇଭଳି ଅସ୍ତବ୍ୟସ୍ତ ଖରାବେଳେ
ମୁଁ ବସେ ଖେଳିବା ପାଇଁ
ନିଜ ସହ ଛକ ଶୂନ ଖେଳ
ନିଜେ ନିଜ ପ୍ରତିଦ୍ୱନ୍ଦ୍ୱୀ ହୋଇ
ମୁଁ ସ୍ୱୟଂସଂପୂର୍ଣ୍ଣ ହୋଇ
ଯେଉଁପରି ଥରେ ଥରେ ମୋ ନିଜ ଦେହକୁ
ବ୍ୟତିବ୍ୟସ୍ତ କରିଥାଏ ଆତ୍ମରତି ପାଇଁ
ସମୟକୁ ଗାର କାଟି ଭାଗ କରି ଅନେକ ପ୍ରକାରେ
କେଉଁଠାରେ ଛକ ଦିଏ ପୌରୁଷର ପୁନରାବୃତ୍ତିରେ
ଏବଂ ପୁଣି କେଉଁଠାରେ ଶୂନ ଦେଇଯାଏ
ଅତୀତର ଅଗଣିତ ନିର୍ବୀର୍ଯ୍ୟ ପ୍ରେମର
କାତର ଓ ଭୀରୁ ସ୍ମରଣରେ

ଖରାବେଳ ବେଶି ବେଶି ନିଛାଟିଆ ହୋଇଗଲେ
ମୋ ହାତରେ କାଟିଥିବା ଅସଂଖ୍ୟ ଚିହ୍ନଟମାନେ
କ୍ରମେ କ୍ରମେ ଏକାଠି ହୁଅନ୍ତି

ସେମାନେ ସମସ୍ତେ ପୁଣି ମିଶିଯାନ୍ତି ଅନ୍ତରଙ୍ଗ ହୋଇ
ଖେଳ ଯଦି ଏଇପରି ସରିଯାଏ
ଅସ୍ପଷ୍ଟ ଭାବରେ ବିନା ନିଷ୍ପତ୍ତିରେ
ଜଣେ କିଏ ହାରିବା ଆଗରୁ
ମୁଁ ସବୁ ଲିଭାଇ ଦିଏ
ସବୁ ଚିହ୍ନ ସବୁ ସଂକେତକୁ
ଆଉ ଥରେ ଗାର କାଟି ଦାଗ ଦିଏ
ମୁଁ ନୂଆ ହରଫ ଲେଖେ ଅତି ସ୍ପଷ୍ଟ ଭାବେ
ନିଃସଂଶୟ ନିଃଶଙ୍କ ହାତରେ
ଆଉ ତାର ଯୋଗଫଳ ଦେଖେ

ହିସାବରେ ମତେ ଯଦି
ଶୂନ ସବୁ ବେଶୀ ଜଣାଯାନ୍ତି
ବିଶେଷତଃ ଶେଷ ସମୟକୁ
ନିଃସନ୍ଦେହ ହାରିବାର ଭୟ
ଏବଂ କିଛି ଆତ୍ମରକ୍ଷାର ଚେଷ୍ଟାରେ
ମୁଁ ନିଜକୁ ପ୍ରତାରଣା କରେ
କିଛି ଛକ କିଛି ଶୂନ ଅଦଳବଦଳ କରି
କିଛି ଚିହ୍ନ ଲିଭାଇ ଓ ଆଉ କିଛି ଚିହ୍ନ ଲେଖି
ଗଣିବାରେ ଜାଣି ଜାଣି ଭୁଲ କରି
ମୁଁ ନିଜକୁ ପରାଜିତ କରେ
ସଂପୂର୍ଣ୍ଣ ଓ ଚୂଡାନ୍ତ ଭାବରେ

ଆଉ ଶୂନଶାନ ମଧ୍ୟାହ୍ନକୁ କହେ
ସମସ୍ତଙ୍କୁ କହିଦିଅ
ଚନ୍ଦ୍ର ସୂର୍ଯ୍ୟ ତାରା ମେଘ ଆକାଶଙ୍କୁ
ଆଜିର ଖେଳରେ
ମୁଁ ଜିତିଛି ନିଶ୍ଚିତ ଭାବରେ

# ଗୋପନୀୟ ସତ୍ୟ

ମୋର ଯେତେ ଗୋପନୀୟ ସତ୍ୟ ସବୁ
ଚାଲିଗଲେ ମୋ ପାଖରୁ
ସକାଳର କୁହୁଡ଼ିରେ ମିଶିଯିବା ପାଇଁ
ମୋର ପ୍ରିୟ ବତୀଘର ଶେଷ ପାହାଚରୁ
ଶୂନ୍ୟତାର ସିଡ଼ିରେ ଓହ୍ଲାଇ
ସେମାନେ ସମସ୍ତେ ଯାଇ
ସମୁଦ୍ରରେ ଝାସ ଦେଲେ ମତେ ଛାଡ଼ି ଦେଇ

ସେମାନେ ଅନେକ ନାଁ
ସେମାନେ ଅନେକ ମୁହଁ ଅନେକ ସମୟ
ଛୋଟ ଛୋଟ କେତେ କଥା
କେତେ ସ୍ପର୍ଶ ହାତ ଓ ଓଠର
କେତେ ପୁଣି ହସ
କେତେକ ହଠାତ ଦେଖା
କେତେ ରାତି କେତୋଟି ସକାଳ
ପୁଣି ଦୀର୍ଘଶ୍ୱାସ

ସେମାନେ ସମସ୍ତେ ମୋର
ଅନିଶ୍ଚିତ ମନ ଥିଲେ
ଅସ୍ତବ୍ୟସ୍ତ ଜୀବନର ମୁହୂର୍ତ୍ତ ସକଳ
ଅଜଣା ଛକରେ ବସି
କାପାଳିକ ପ୍ରଶ୍ନ କରୁଥିଲା
କାହିଁ ପଥ କାହିଁ ଲକ୍ଷ୍ୟ ସ୍ଥଳ
ତା ଲାଗି ଉତ୍ତର ଥିଲା
ମୋ ପାଖରେ ହତବାକ ବିସ୍ମୟ କେବଳ

ଆଜି ଆଉ ମୋ ମନରେ ସନ୍ଦିହାନ ନାହିଁ
ଅଙ୍କ ସବୁ କଷା ହୋଇଗଲା

ସମାଧାନ ମିଳିଗଲା ସମସ୍ତ ପ୍ରଶ୍ନର
ଜ୍ୟାମିତିକ ଗାର କଟା ରାସ୍ତା ସବୁ
ନିଶ୍ଚିତ ଓ ନିଃସଂଶୟ
ସେ ରାସ୍ତାରେ ଛକ ନାହିଁ
କାପାଳିକ ଅନ୍ତର୍ଦ୍ଧାନ ହୋଇଗଲା
ମୁହାଁମୁହିଁ କେହି ନାହିଁ ମୋର
ଏବେ ମୋର ଏକମାତ୍ର ଲକ୍ଷ୍ୟସ୍ଥଳ
ନିର୍ଦ୍ଦିଷ୍ଟ ବୃତ୍ତର ବିନ୍ଦୁ ଶରସନ୍ଧାନୀର

ଅନେକେ ଆସନ୍ତି ଆଜି ମୋ ପାଖକୁ
ମୋ ଓଠରେ ଓଠ ମିଶେ
ମୋ ଦେହରେ ଦେହ
ଅନେକ କଥା ଓ ହସ ସକାଳ ସନ୍ଧ୍ୟାରେ
ଅନେକ ପୁନରାବୃତ୍ତି ଅନ୍ୟ ଅତୀତର
ଆଜି ଯଦି ମୋ କାନରେ ଓଠ ଦେଇ
ଚୁପ ଚୁପ କଥା କିଏ କହେ
ସେ ଖାଲି କେତୋଟି ଶବ୍ଦ
ଗୋପନୀୟ କିଛି ନାହିଁ
ମୋ ମନରେ ପ୍ରତିଧ୍ୱନି ନାହିଁ ସେ କଥାର
ସେ ଓଠ କେବଳ ଓଠ
ସେ କେବଳ ଦେହ
ଗୋପନୀୟ ସତ୍ୟ ନୁହେଁ
ସେ ନୁହେଁ ମୋ ଏକାନ୍ତ ଆତ୍ମୀୟ

ସେ ମୁହଁ କେବଳ ମୁହଁ : ମୁଖା
ସେମାନଙ୍କ ନାଁ ଖାଲି ନାଁ : ଛଦ୍ମନାମ
ସେମାନଙ୍କ କଥା ଖାଲି କଥା : ଅଭିନୟ
ସେମାନେ କେବଳ
ଓଠ ଦେହ ବରଫ ପଥର

ମୁଁ ଦେଖୁଛି ମୋର ଯେତେ

ଗୋପନୀୟ ସତ୍ୟ ସବୁ ବୟସ୍କ ହୁଅନ୍ତି
ଏବଂ ମତେ ଛାଡ଼ି ଦେଇ
ଆଶ୍ରୟ ନିଅନ୍ତି ଏକ ଅନ୍ୟ ସମୁଦ୍ରର
ସେମାନେ ହୁଏତ ଖୋଜି ବୁଲୁଛନ୍ତି
କେଉଁ ଏକ ନୂଆ ବତୀଘର

# କିଛି ମୁହଁ

କିଛି ମୁହଁ ସକାଳର ତାରା ଭଳି
ଅନେକ ଉପରେ ଥାଇ
ମୋ ଆଡକୁ ମିଟି ମିଟି ତଳକୁ ଅନାନ୍ତି
କିଛି ଅନୁକମ୍ପା ଆଉ କିଞ୍ଚିତ କରୁଣା
ଆକାଶରୁ ଝରି ପଡେ
ଶୀତ ଓ କାକର ଭଳି ଅତି ଅଯାଚିତ

ଆଉ କିଛି ମୁହଁ
ରଙ୍ଗୀନ ବେଲୁନ ଭଳି ଫୁଲି ଫୁଲି
ପରିତ୍ୟକ୍ତ ପଲଙ୍କ ଉପରେ
ହନ୍ତସନ୍ତ ନିଛାଟିଆ ଖରାବେଳେ
ମତେ ଡାକି ଖତେଇ ହୁଅନ୍ତି
ଅସ୍ଫାଳନ ଦେଇ ମୋର
ହଜିଗଲା ପୌରୁଷ ସବୁକୁ

କିଛି ମୁହଁ ବହୁବିଧ ମୁଖା ପିନ୍ଧି
ମଶାଣିର ତିମୁହାଣି ଛକ ପାଖେ
ନିଶୁତି ରାତିରେ
ପବନରେ ହାଉ ହାଉ କାନ୍ଦୁଥିବା

ଝାଉଁଗଛ ଉଡ଼ାଳରେ ରହି
ମତେ ଅନେକ ଡରାନ୍ତି

ଆଉ କିଛି ସାଦା ଓ କରୁଣ ମୁହଁ
ସେମାନଙ୍କ ନିର୍ବୋଧ ଆଖିରେ
ମୋ ଆଖିକୁ ଚାହିଁ କିଛି ଆଶ୍ରୟ ଆଶାରେ
ମତେ ଆସି ପଚାରନ୍ତି କେଉଁ ବାଟେ
ଯାଇ ହେବ ନିରାପଦ ଉତ୍ତର ଦିଗକୁ

ଆହୁରି ଅନେକ ମୁହଁ
ମୋର ଛୋଟ ଇନ୍ଦ୍ରଜାଲ ଘର ଚାରିପାଖ
ଦର୍ପଣର କାନ୍ଥରୁ ଅନାନ୍ତି ମତେ
ଅସୁମାରି ଆଖି ଦେଇ
ଅନେକ ପ୍ରକାର ମୁହଁ
କିଏ ଅତି ଅନ୍ତରଙ୍ଗ
କିଏ ମୋର ଅତୀବ ଅଜ୍ଞାତ
ଚିହ୍ନା ପୁଣି ଅଚିହ୍ନା ବି ହୁଏ
ସେଇ ମୁହଁର ଭିଡରେ

କିଛି ମୁହଁ ଜାଣି ଜାଣି ଚିହ୍ନିବାକୁ ମନା କରିଦିଏ
କିଛି ମୁଁ ଆଶ୍ୱସ୍ତ ହୁଏ
ଭଲପାଏ ଭୟ ପାଏ ମୁଁ ଟିକିଏ ହସେ
ଅଲକ୍ଷିତେ ମୋ ଆଖିର ଲୁହ
ଏବଂ ଅବସନ୍ନ ସ୍ନାୟୁର ଚାପରେ
ମୁହଁ ସବୁ ଝାପ୍‌ସା ହୋଇ ଉଭେଇ ଯାଆନ୍ତି
ରହେ ନାହିଁ ଅନୁଭବ
ଲିଭି ଲିଭି ଯାଏ ମୁହଁ
ରହିଯାଏ ଯନ୍ତ୍ରଣା କେବଳ
କିଛି ବର୍ଷା କିଛି ରାସ୍ତା କିଛି ନିର୍ଜନତା

# ରାସ୍ତା

ଅନେକ ବିବ୍ରତ ଦିନ ଓ ଅଧା ଅନୁଭବକୁ
ମୋର ଚେତନାର ସିନ୍ଦୁକରେ ଚାବି ବନ୍ଦ କରି
ଅନେକ ମୁହଁ ଓ ଦେହ ଚିହ୍ନା ଓ ଅଚିହ୍ନା
ଲୋକମାନଙ୍କର କଥାକୁ ନ ମାନି
କାନ୍ଥର ଲେଖାକୁ ପଢ଼ିବାକୁ ମନା କରିଦେଇ
ଆଖିମାନଙ୍କର ନିମନ୍ତ୍ରଣ ନ ରଖି
ପଂଜୁରୀରେ ବନ୍ଦ ପକ୍ଷୀଟିର ଚିତ୍କାର ନ ଶୁଣି
ମୁଁ ଏକ ସିଧା ଓ ସହଜ ରାସ୍ତା ଖୋଜିନେଲି
ଆଉ ଚକମାନଙ୍କ ସହିତ ଅଶି ମାଇଲର
ଗୀତ ଗାଇ ଗାଇ ମୁଁ ଭାବିଲି :

ମୁଁ ଦେଖିବି ହ୍ରଦରେ ଫୁଲ
ଓ ଫୁଲର ପ୍ରତିବିମ୍ବ ସବୁ ଏକ ହେବେ
ମନ୍ଦିରର ଜାଉଁଳି କାବଟ ଖୋଲିଯିବ
ପୁରୋହିତ ଯାଦୁକର ହେବ
ସଡକରେ ମରି ପଡ଼ିଥିବା ସୂର୍ଯ୍ୟକୁ
ସେ ଜୀବନ୍ୟାସ ଦେବ
ନିର୍ବାକ ପ୍ରହରୀ ଗୀତ ଗାଇବେ
ଓ ଅପରାହ୍ନର ରଙ୍ଗରେ
ପତ୍ର ସବୁ ପକ୍ଷୀ ହେବେ
ରାତିରେ ସେମାନେ ପୁଣି ଅନ୍ତର୍ଦ୍ଧାନ ହେବେ
ପ୍ରତିଧ୍ୱନିମାନେ ମୋ ପାଖକୁ ଫେରି ଆସିବେ
ଓ ମୋ ଦେହର ସ୍ନାୟୁ ସବୁ ରାସ୍ତା ହୋଇଯିବେ

ସେ ରାସ୍ତାରେ
ଗୋଟିଏ ଖପୁରୀ ଓ ଦୁଇଟି ହାଡର ପ୍ରତିରୋଧ
ଘଣ୍ଟାର ମୁହଁରେ ଥାଇ
ରାକ୍ଷସ ପାଲଟି ଯାଏ ସମୟ

ମୁଁ ନିଜକୁ କହେ : ଆଗରେ ମୃତ୍ୟୁ
କିଛି ଏ କଥାକୁ ବିଶ୍ୱାସ କରେ
କିଛି ପୁଣି ଅସ୍ୱୀକାର କରେ
ନୀରବତା ଏ ପାଖରେ ମୁଁ ଟିକିଏ ହସେ
ମଲା ଲୋକମାନେ ମୋ ହସରେ
ତାଳ ଦେଇ ସଙ୍ଗୀତ ଗାଆନ୍ତି

## ସହର

ମୋ ସୀମାନା ବାହାରେ
ଓ ମୋ କଥାର ପ୍ରତିଧ୍ୱନି ଆର ପାଖେ
ଯେଉଁ ଏକ ସହର ରହିଛି
ସେ ସହର ଦିନେ ମୋର ଏକାନ୍ତ ନିଜର ଥିଲା
ଛୋଟ ଛୋଟ କୋଠରୀରେ ଆମେ ବନ୍ଦ ଥିଲୁ
ପରିପୂର୍ଣ୍ଣ ଥିଲୁ ଆମେ
ନିଜ ନିଜ ଛୋଟ ପରିଧିରେ

ଇସ୍ପାତର ଗଛମାନଙ୍କରେ
ନିଅନର ଫୁଲ ଫୁଟୁଥିଲେ
ଆମର ମନର ସବୁ ମିନି ବସ୍‌ମାନେ
ଲୁଚୁକାଳି ଖେଳୁଥିଲେ କଂକ୍ରିଟର ଗୋଲକଧନ୍ଦାରେ
ରାସ୍ତା ସବୁ ସମୁଦ୍ରର ରଂଗୀନ ଚଟାଣ ଥିଲେ
ବତୀଖୁଣ୍ଟମାନ ତାର ଲହରୀର ଅସଂଖ୍ୟ ଭଉଁରୀ
ଆମର ଯେତେକ ସ୍ୱପ୍ନ
ସେମାନଙ୍କୁ ଦେଇଥିଲା ଅଭୟ ଆଶ୍ରୟ
ଆମର ଏ ଅତିପ୍ରିୟ ନିଷିଦ୍ଧ ନଗରୀ

କାନ୍ଥମାନଙ୍କରେ ଆମେ ଲେଖି ରଖି

ଯୌବନର ଅନେକ ମୁହୂର୍ତ୍ତ
ସକାଳର ସୂର୍ଯ୍ୟ
ଏବଂ ସାରାରାତି ତାରାଙ୍କର ଆଲୁଅକୁ
ବାନ୍ଧି ରଖି ଝରକା କାଚରେ
ଅନେକ ନିଷେଧ ଚିହ୍ନମାନଙ୍କର ସଂକେତ ନ ମାନି
ଆମେ ବି ଦେଖିଲୁ
ଆମ ଜୀବନର ବହୁବର୍ଣ୍ଣ ଚଳଚିତ୍ର
ସକାଳ ସଂଧ୍ୟାରେ
ଆଦିମ ରହସ୍ୟ ଭରା ଆମ ନିଜ ବନ୍ଦ କୋଠରୀରେ

ଆମେ ବଡ଼ ହେଲୁ
ପୁଣି ନିଜ ନିଜ ରାସ୍ତା ଖୋଜିନେଲୁ
ହଜିଗଲେ କେତେ କିଏ କେଉଁଠାରେ
କିଏ ଯଦି ମାନିନେଲା ଆଖିଠାର ସବୁଜ ବତୀର
ଲାଲ ଆଲୁଅରେ ପୁଣି କାହାର ବି ଗତିରୋଧ ହେଲା
କିଏ ଯାଇ ମିଶିଗଲା
କାଚ ଆଉ ଇସ୍ପାତର ଅନନ୍ତ ସ୍ରୋତରେ
ଇତସ୍ତତଃ ହେଲା ପୁଣି କିଏ ଯାଇ
ଅନାତ୍ମୀୟ ବିଦେଶର କେଉଁ ଭଡା ଘରେ

ସେ ସହର ଆଜି ଆଉ ଚିହ୍ନି ହୁଏ ନାହିଁ
ନେଲାଣି ସେ ନୂଆ କଳେବର
ରାସ୍ତାଙ୍କର ନୂଆ ନାଁ
ଘର ସବୁ ହେଲେଣି ନିଲାମ
ଠିକଣାରେ ଅଦଳବଦଳ
ପୁରୁଣା କାହାକୁ ଆଉ ଚିହ୍ନି ହୁଏ ନାହିଁ
ରବିବାର ସହରର ଛକ ଆଜି ଚୁପଚାପ
ଶେଷ ବସ୍ ଚାଲିଗଲା ସବୁ ଶୂନଶାନ

# ମଝିରାତି

ହଠାତ ମୁଁ ଉଠିବସେ କାହାର ଚିତ୍କାର ଶୁଣି
ସେ କି ଶିଶୁ ଜନ୍ମ ନେଲା
ଅଥବା ସେ ଥିଲା ମଝି ରାତିର କାନ୍ଦଣା
ସେ କି ମୋ ଅତୀତ ଥିଲା
ଆସିଥିଲା ଶାସ୍ତି ଦେବା ପାଇଁ
କି ଭଳି ମୋ ଅପରାଧ ମତେ ନାହିଁ ଜଣା

ଅନେକ ଦୂରରୁ ମତେ କିଏ ଡାକେ
ସମୟର ଅସରନ୍ତି ପାହାଚରେ ମୁଁ ଯାଏ ଓହ୍ଲାଇ
ବିସ୍ମୃତିର ଚୋରାବାଲି ଉପରେ ମୁଁ ଆଙ୍କିଯାଏ
ମୋ ପାଦର ମାନଚିତ୍ର ଅନେକ କ୍ଷତର
କବରଖାନାର ଭଙ୍ଗା ଦୁଆର ମୁଁ ଖୋଲେ
ମୁଁ ପହଞ୍ଚେ ଗୋପନୀୟ ରାସ୍ତାରେ ନିଜର

ସେ ରାସ୍ତାରେ କେହି ନାହିଁ
ସେ ଏକ ଅପରିଚିତ ମରୁଭୂମି
ଆକସ୍ମିକ ଦେଖାର ଅପେକ୍ଷା
ସେ ବାଲିରେ ପାଦଚିହ୍ନ ନାହିଁ
ସବୁ ଲିଭିଗଲା ଝଡର ହାଓ୍ୱାରେ
ନିଜର ଘେରରେ ପୁଣି
ହଜିଲା ସେ ଝଡ ଏକା ଏକା

ମାଇଲ ମାଇଲ ଧରି ମଲା ଦେହ
ପଥରର ଚଟାଣ ଭିତରେ
ସେମାନଙ୍କୁ ଖୋଜୁଛି ମୁଁ
ସେମାନେ ମୋ ବ୍ୟର୍ଥ ମନୋରଥ
ଅସଂପୂର୍ଣ୍ଣ ପ୍ରେମ
ଏବଂ ନିରର୍ଥକ ଅନେକ ପ୍ରୟାସ
ସେମାନେ ମୋ ଜୀବନର

ହତୋତ୍ସାହ ପ୍ରତିଟି ମୁହୂର୍ତ୍ତ
ସେମାନେ ସମସ୍ତେ ନାରୀ
ଦେଖିଥିଲି ସ୍ୱପ୍ନରେ ଯାହାଙ୍କୁ
କାମନାର ଗଦା ଗଦା ପାଉଁଶ
ଓ ଭଙ୍ଗାରୁଜା ଘର
ଲିଭିଲା ମହମବତୀ ଖୋଲା ପଂଜୁରୀ
ଓ ଅସଫଳ ଚେଷ୍ଟାମାନ ଶିଥିଳ ଦେହର

ଅଙ୍କାବଙ୍କା ରାସ୍ତାମାନ ପାରି ହୋଇ
ଡେଇଁ ଡେଇଁ ପଥରର ଅନେକ ଚଟାଣ
ମୁଁ ପହଞ୍ଚେ ମୋର ଏକ ନିଜସ୍ୱ ଛକରେ
ସ୍ମୃତିସ୍ତମ୍ଭ ଉପରେ ମୁଁ ସ୍ଥାଣୁ ହୋଇ
ରହିଯାଏ ସେ ମୂର୍ତ୍ତିର ପଥର ଦେହରେ
ମୁଁ ଦେଖେ ପଲକହୀନ ଆଖି ଦେଇ ତାର
ପହଞ୍ଚିଛି ଅନ୍ୟ ଦେଶ ଅନ୍ୟ ସହରରେ

କେବେ କେବେ ସେ ଦେଶର ସୀମାନ୍ତରେ
ରଙ୍ଗ ଲାଗେ
ଅତର୍କିତେ ବିଜୁଳି ଓ ବଜ୍ର ଆସି
ଭାଙ୍ଗିଦିଏ ଆକାଶକୁ ଖଣ୍ଡ ଖଣ୍ଡ କରି
କବରଖାନା ବି ତାର ନିଦ ଭାଙ୍ଗେ
କଡ ଲେଉଟାଏ
ସେମାନେ ଜାଗ୍ରତ କିନ୍ତୁ
ଅଥର୍ବ ମୁଁ ରହିଯାଏ ସେ ସ୍ମୃତିସ୍ତମ୍ଭରେ
କହିବାକୁ ଯାହା ଥିଲା
ବନ୍ଦ ହୋଇ ରହିଯାଏ ପଥର ଓଠରେ

କେବେ କେବେ ଉଠି ବସେ
ହଠାତ ମୁଁ କାହାର ଚିତ୍କାର ଶୁଣି
ସେ କି ଥିଲା ଆର୍ତ୍ତନାଦ
କେଉଁ ଏକ ପଥର ମୂର୍ତ୍ତିର

# ସ୍ୱପ୍ନ

ରାତିରେ ମୁଁ ସ୍ୱପ୍ନ ଦେଖିଲି
ଗୋଟିଏ କପୋତ ଆସି
ମୋ ହାତରେ ରଙ୍ଗୀନ ଫୁଲଟିଏ ଦେଇଗଲା।

ମୋ ବିଛଣା ଚାରିପାଖେ ଶୋଇଥିଲେ
ଜାକିଜୁକି ମୋ ମନର ଅସରନ୍ତି ଇଚ୍ଛା ସବୁ
ଧାଡ଼ି ଧାଡ଼ି ଝିଅ ଭଳି
ସେମାନେ ଉଠିଲେ ପୁଣି ଶୋଇଗଲେ
ରାତି ହେଲା ଆହୁରି ଜମାଟ
ଝଙ୍କାଳିଆ ପତ୍ର ଗହଳରେ ପେଚାର ଆଖିରେ

ସେ ଗଛର ଅନ୍ୟ ଏକ ଡାଳରୁ ଯେ ପକ୍ଷୀ
ଦେଖ ମୋ ଆଡକୁ ଅନାଇଛି
ମୁଁ ଭାବୁଛି ସେ ପକ୍ଷୀଟି ଆଚମ୍ବିତେ ବଡ ହେବ
ସେ ପୁଣି ଗରୁଡ ହୋଇ
ଖୁମ୍ପିନେବ ମୋ ଆଖିର ଦୁଇଟି ଡୋଳାକୁ

ଚନ୍ଦ୍ରକୁ ଖୋଜିଲି ତେଣୁ
ପାହାଡ ପଛରେ ଅନେକ ପାହାଡ
ମୋଡ଼ି ହୋଇ ଭାଙ୍ଗି ହୋଇ
ଗଛର ଗହଳ ପତ୍ର ଭଙ୍ଗା ପଥର
ଓ ମନ୍ଦିରର ଚୂଡା ଡେଇଁ
ଅନେକ ଗ୍ରୀଷ୍ମର ସ୍ଥିର ରାତି
ଶତାବ୍ଦୀର ନୀରବତା ପାର ହୋଇ
ରଙ୍ଗହୀନ ଆକାଶରେ ଚନ୍ଦ୍ର ସତେ ଛୁରୀ
ସକାଳର ତାରାମାନେ ଯେଉଁଠାରେ
ଆତ୍ମହତ୍ୟା କରୁଛନ୍ତି ଜଣ ଜଣ କରି

ମୁଁ ପୁଣି ଦେଖିଲି ଏକ ଫୁଲବଣ

ସାପ ଭଳି ଲତା
ଫୁଲର ପାଖୁଡ଼ା ସବୁ ଜିଭ ଭଳି
ମାଡ଼ି ମାଡ଼ି ପଡେ ନିର୍ଜନତା
ରାତିର ଟିକିଏ ଯାହା ଆଲୁଅ
ସେମାନେ ଯାଇ ପଶିଗଲେ ଅନେକ ଗାତରେ
କଳା କଳା ଫୁଲ ଏବଂ ପ୍ରଜାପତିମାନେ
ସବୁକିଛି ମୃତ ଏବଂ ଶୂନଶାନ

ହାତ ସବୁ ଫୁଲ ହୋଇ ଫୁଟୁଛନ୍ତି
ଚାରିଆଡେ ପକ୍ଷୀଙ୍କ ଭିଡରେ
ସାରା ରାତି ଖୋଜୁଛି ମୁଁ
ମୋ ନିଜକୁ ଅନ୍ୟର ସ୍ୱପ୍ନରେ

# ପୂର୍ବ ପୁରୁଷ

ମୋ ନାଁ ସେ ଲେଖିଦେଲା
ହାତରେ ସେ ସଜାଡ଼ିଲା
ସେ ନାଁର ପ୍ରତିଟି ଅକ୍ଷର
ସେ ତାକୁ ବି ଜୀବନ୍ୟାସ ଦେଲା
ମୋର ଜନ୍ମପତ୍ରିକାରେ ସଜାଡ଼ିଲା
ରାଶି ଓ ନକ୍ଷତ୍ର ବୟସ ସମୟ
ସେ ଦେଲା ହାତରେ ମୋର
ଭବିଷ୍ୟତ ପଥ ଓ ପାଥେୟ

ତା ଆଦେଶ ମାନି ଆଜି ମନ୍ଦିରକୁ ଯାଏ
ପାଦ ଛୁଏଁ ମଥା ମୁଁ ନୁଆଁଏ

ମନ୍ତ୍ର ପଢ଼େ ପ୍ରହେଳିକା ସହସ୍ର ନାମର
ମୁଁ ତିଳ ତର୍ପଣ କରେ ଆଞ୍ଜୁଳାରେ ପାଣି ଦିଏ
ମାନି ନିଏ ସବୁ ବିଧି ସବୁ ଉପଚାର

ପଛକୁ ମୁଁ ଫେରିଯାଏ ଥରେ ଥରେ
ମୁଁ ତାର ହାତକୁ ଧରି ଚାଲିବାକୁ ଚେଷ୍ଟା କରେ
ଚାରିଆଡେ ଅନ୍ଧକାର
ମୁଁ ଖୋଜେ ଗୋଟିଏ ତାରା
ସେ ତାରା ବି ସିଏ
ସେ ପୁଣି ନକ୍ଷତ୍ର ହୋଇ ମତେ ଜାଳିଦିଏ
ମତେ ଦୃଷ୍ଟିହୀନ କରେ
ଅଗ୍ନିପ୍ରଭ ଆଲୋକରେ ତାର
ତାକୁ ଧରି ରଖିବାକୁ ହାତ ମୁଁ ବଢ଼ାଏ
ମୋ ହାତ ଶୂନ୍ୟକୁ ଛୁଏଁ
ପ୍ରତିଧ୍ୱନି ହୋଇଯାଏ ମୋ କ୍ଷୀଣ ଚିତ୍କାର

ଧୀରେ ଧୀରେ ଫୁଲି ଫୁଲି ସମୁଦ୍ର ଉତ୍ତାଳ ହେଲେ
ମୁଁ ନିଏ ଶପଥ ତାକୁ ହତ୍ୟା କରିବାର
ହାତରେ ମୁଁ ମୁଖାଗ୍ନିର ନିଆଁ ହୁଳା ନେଇ
ଖୋଜିବୁଲେ ତାକୁ ଯାଇ ପଥେ ଓ ପ୍ରାନ୍ତରେ
ଆକାଶରେ ଯୌବନର ବ୍ୟର୍ଥ ସୀମାନ୍ତରେ
ନପୁଂସକ କ୍ରୋଧର କୋଟରେ

ହଠାତ ସେ ଦେଖାଦିଏ ଆକାଶରୁ ବଡ
ଦାନବ ସେ ସୂର୍ଯ୍ୟ ତାର ଆଖି
ସେ ମତେ ଆବୃତ କରେ
ଗ୍ରାସ କରେ ସର୍ବାଙ୍ଗକୁ ମୋର
ହାତ ମୋର ଥମିଯାଏ ସମୁଦ୍ରର ପାଣି ଯାଏ ଶୁଖି

ସେ ପୁଣି କୋଠରୀ ହୋଇ ବନ୍ଦ କରେ ମତେ

ମୁଁ ତାର ପାଦକୁ ଛୁଏଁ ମନ୍ତ୍ର ପଢ଼େ ତିଳ ଦିଏ
ପୁଣି ସେଇ ନିଆଁ ହୁଳା ଦେଇ
ନିଜକୁ ମୁଁ ଜାଳିଦିଏ
ତାର ସେଇ ବନ୍ଦ କୋଠରୀରେ

# ଦେବୀ

ତମେ ଆବିର୍ଭାବ ହୁଅ ନିଶାର୍ଦ୍ଧର ଶୂନ୍ୟ ମୁହୂର୍ତ୍ତରେ
ଅଧିଷ୍ଠାତ୍ରୀ ଦେବୀ ତମେ
ମୋର ଯେତେ ଗୋପନୀୟ କାମନା
ଓ ମୋ ଦେହର ରକ୍ତମାଂସ ସ୍ନାୟୁମାନଙ୍କର
ତମ ସିଂହାସନ ମୋର ନିରୁପାୟ ଇଚ୍ଛା
ଆଉ ତମର ମନ୍ଦିର
ସ୍ମୃତିସ୍ତମ୍ଭ ମୋର ଯେତେ ପ୍ରତିହତ ଆଶାମାନଙ୍କର

ତମର ସ୍ଥାପନା ହୁଏ
ଦୁଃସ୍ୱପ୍ନର କେଉଁ ଏକ ଭୟାର୍ତ୍ତ କ୍ଷଣରେ
ତମ ପୂଜା ହୋଇଥାଏ ସହରର ନିଷିଦ୍ଧ ଗଳିରେ
ତମର ସମସ୍ତ ସ୍ତବ ପ୍ରତିଧ୍ୱନି ହୋଇ ଶୁଭେ
କ୍ରୀତଦାସ ବଜାରର ନିଲାମ ଡାକରେ

ଆଜି ତମ ପ୍ରତୀକ୍ଷାର ଶେଷ ରାତ୍ରି
ନାଟକର ଶେଷ ଅଙ୍କେ ନାୟକ ନିହତ ହେଲା
ତମର ଯେତେକ ଥିଲେ ଚିହ୍ନିତ ପ୍ରେମିକ
ସବୁ ପଳାତକ ହେଲେ

ମନ୍ଦିରରେ ପୂଜକ ନାହାନ୍ତି
ସମୁଦ୍ରରେ ଢେଉ ନାହିଁ
ଆକାଶରେ ହସ ଏବଂ ଜହ୍ନ ରାତି
କିଛି ଆଉ ଅବଶିଷ୍ଟ ନାହିଁ
ମନ୍ଦିରର ବେଢ଼ା ଖାଲି ସବୁ ଆଜି ଶୂନଶାନ
ଏ ରାତିରେ କେହି ଆଉ ନାହିଁ
ତମ ଅପେକ୍ଷାରେ ତମ ପ୍ରତ୍ୟକ୍ଷର
ସିଂହଦ୍ୱାର ପହରା ଦେଉଛି
ଏଠାରେ ଏକାକୀ ଦେଖ
ମୁଁ ତମର ଶେଷ ସାମୁରାଇ

ମଲା ଲୋକମାନଙ୍କ ସହିତ ତମ ମନ୍ତ୍ରଣାର ଶେଷ ହେଉ
ତମେ ଆସ ଛମ ଛମ
ରୁପାର ଘୁଙ୍ଗୁର ପିନ୍ଧି ଆଜି ମୋ ସ୍ୱପ୍ନରେ
ଆଜି ସବୁ ଲିଭିଯାଉ ଏ ମନ୍ଦିର ଧୂଳିସାତ ହେଉ
ରାତି ସବୁ ଜଳିଯାଉ ଦେହର ଦାହରେ
ସମସ୍ତ ଆବୃତ କରୁ ରୂପ ବର୍ଣ୍ଣ ସ୍ୱରର ଅନ୍ଧାର
ତମ ହାତ ଅକ୍ଟୋପସ ହୋଇ ମତେ ନିଷ୍ପେଷିତ କରୁ
ତମ ପାଦ ଯୂପକାଠ ହୋଇ ମତେ ବନ୍ଦ କରୁ
ଚିରିଯାଉ ମୋ ହାତର ଦଶଟି ପାଖୁଡ଼ା
ତମ ସ୍ତନର କ୍ୟାକ୍ଟସ୍ ଲାଗି
ତମ ଦେହ ଚୋରାବାଲି ହୋଇଯାଉ ମତେ ଗ୍ରାସ କରୁ

# ଠିକଣା

ସେ କିପରି ଦିନ ଥିଲା
ସମ୍ଭାବନାହୀନ ଆକାଶରେ
ମେଘର ବିବର୍ଣ୍ଣ ଶବ
ନଦୀମାନେ ପ୍ରତିଶ୍ରୁତିହୀନ
ସମୁଦ୍ରରେ ଭାସମାନ ଦୁଃସ୍ୱପ୍ନର ଭଙ୍ଗା ଭଙ୍ଗା ଛାଇ
ବ୍ୟକ୍ତିଗତ ରାତି ସବୁ ନିର୍ଜନ ଓ ନିଦ୍ରାହୀନ
ଅଧିଷ୍ଠାତ୍ରୀ ଦେବୀଙ୍କର କୁଣ୍ଠିତ କାମନାମାନ
ହଜିଗଲେ ଭୟାର୍ତ୍ତ ସ୍ୱପ୍ନରେ
ଛୋଟ ଛୋଟ ଅସହାୟ ମୁହଁ ଆସି
ଭାସି ଭାସି ସକାଳର ସଜ ଆକାଶରେ
କ୍ରମଶଃ ନିଶ୍ଚିହ୍ନ ହେଲେ
ବଞ୍ଚିବାର ବ୍ୟର୍ଥ ପ୍ରୟାସରେ
ନିଃସଙ୍ଗ ପକ୍ଷୀଟି ଏକା
ଉଡି ବୁଲେ ଖାଲି ଦୋତାଲାରେ

ଏଠାରେ ବସନ୍ତ ନାହିଁ ଏ ଏକ ନିର୍ଜନ ଦ୍ୱୀପ
ନିର୍ବାସିତ ଲୋକଙ୍କର ଏ ସବୁ ଇଲାକା
ଏଠାରେ ଏ ଘର ଖାଲି ଆୟତନ ଚାରିଟି କାନ୍ଥର
ବିଛଣାରେ ମଲା ଦେହ
ଅବସନ୍ନ ଇନ୍ଦ୍ରିୟରେ ବିକୃତ ଆକାଂକ୍ଷା
ଅସଂଗତ କୃତ୍ରିମ ରତିର
କିମ୍ବା ସ୍ୱପ୍ନ ଭଳି
ସବୁ କିଛି ଅସ୍ପଷ୍ଟ ଓ ଅନିଶ୍ଚିତ
ଇତସ୍ତତଃ ଜୀବନର ସନ୍ଦିଗ୍ଧ ସନ୍ଧ୍ୟାରେ

ପ୍ରେମପତ୍ର କାହା ପାଇଁ
ଚିଠିରେ ଏ ଠିକଣା କାହାର
ଏ ସବୁ ନିଶ୍ଚିତ ଭାବେ ବୁଦ୍ଧିଜୀବୀମାନଙ୍କର ଖେଳ

ମଲା ଲୋକମାନଙ୍କର ଆତ୍ମପ୍ରବଞ୍ଚନା
ଆତ୍ମା ସବୁ ପ୍ରତ୍ୟାହୃତ
ନିରୁଦ୍ଦିଷ୍ଟ ଦିନ ଏବଂ ନିର୍ବାସିତ ମୁହୂର୍ତ୍ତ ସବୁରେ
ଦୁଇଟି ବଢ଼ିଲା ହାତ ରହିଯାଏ ଅଧା ପାହାନ୍ତାରେ
ପ୍ରେତାତ୍ମାଙ୍କ ସମବେତ କଣ୍ଠସ୍ୱର
ଭରିଦିଏ ଶୂନ୍ୟତାର ଖାଲି ଜାଗା ସବୁ
ଏଠାରେ ଡାକିବ କିଏ
କିଏ ତାର ଉତ୍ତର ବା ଦେବ

# ଅନ୍ୟ ଦିନ

ଦିନ ସବୁ ଉଡ଼ିଗଲେ
ଧାଡ଼ି ଧାଡ଼ି ପକ୍ଷୀଙ୍କ ଡେଣାରେ
ମରିଗଲେ ରାତି ସବୁ
ପାହାଡରେ ମଥା ପିଟି ପିଟି
ଆଲୁଅ ମିଶିଲା ଯାଇ
ଚିକିମିକି ତାରାଙ୍କ ମେଳରେ
ପଛକୁ ଅନାଇ ଆଜି ଏତେବେଳେ
ସମୟର ଚଉମୁହାଣିରେ
ମାପୁଛି ମୁଁ ଅତୀତକୁ
ମୋର ଏଇ ଖାଲି ଗିଲାସରେ

ବାନ୍ଧି ମୁଁ ରଖିଲି ମୋର ଯୌବନକୁ
ମୋ ଦେହର କାଚଘର ଚାରିଟି କାନ୍ଥରେ
ପଥର ପାଚେରୀମାନ
ଘେରାଇଲି ମୋ ମନର ଚାରିପାଖେ
ମୋ ଚଞ୍ଚଳ ଜୀବନକୁ ବନ୍ଦ କରି

ପଂଜୁରୀରେ ତାକୁ
ସଯତ୍ନେ ରଖିଲି ନେଇ ସମୁଦ୍ର ଭିତରେ

ସମୁଦ୍ରରେ ଝଡ ହୋଇ ଥମିଗଲା
ବାଲିର ସ୍ତୁପରେ ପୁଣି ଜମା ହେଲା ବାଲି
ଆକାଶର ରଙ୍ଗ ସବୁ ମିଶିଯାଇ ଇନ୍ଦ୍ରଧନୁ ହେଲେ
ଅନେକ ମୁହୂର୍ତ୍ତମାନ ମରି ପୁଣି ଜନ୍ମାନ୍ତର ନେଲେ
ସମୟର ଏଇପରି ଚକା ଭଉଁରୀରେ
ନିଜକୁ ମୁଁ ହଜାଇଲି ମଣିଷଙ୍କ ଭରା ବଜାରରେ

ମୋ କାନରେ ଚୁପଚୁପ
କଥା କିଏ କହିଲା ହଠାତ
ମତେ କେ ଛୁଇଁଲା ଆସି
ମୋ ହାତରେ ହାତ ଦେଲା କିଏ
ମୋର ସବୁ ମନ୍ତ୍ର ପଢ଼ା ବନ୍ଦ ହେଲା
ମୁଁ ଦେଖିଲି ମୋ ନିଜକୁ
ଆଉ ଥରେ ନୂଆ ବିସ୍ମୟରେ
ଭଙ୍ଗା କାଚ ଖୋଲା ଘର ଶୁଖିଲା ବାଲିରେ

ଆଜି ମୁଁ ରକ୍ତାକ୍ତ ହୋଇ
ପଡ଼ିଛି ଏ ସମୁଦ୍ର ସୀମାରେ
ସେ ଦିନ ବି ନାହିଁ ଆଉ
ମୋ ହାତରେ ମୁଠା ମୁଠା ଅବାକ ଶୂନ୍ୟତା
ଆକାଶରେ ଛାଇ ନାହିଁ
ସବୁ କିଛି ନିସ୍ତବ୍ଧ ଓ ଶୂନଶାନ
ରକ୍ତ ଖାଲି ଜମିଯାଏ କାଚ ବାଲି ପଥର ଉପରେ

# ଝରକା

ଆହୁରି ଗୋଟିଏ ଦିନ ଚାଲିଗଲା
ଏକାକୀ ରାସ୍ତାରେ
ଦି ପାଖର ଝରକାରେ
ମୁଁ ଖୋଜୁଚି ଚିହ୍ନା ମୁହଁ
ସେମାନେ କାହାନ୍ତି ସବୁ
ଯେଉଁମାନେ ଶୂନଶାନ ସିଢ଼ି ଘରେ
ସମୁଦ୍ରକୂଳରେ ଏବଂ ନିର୍ଜନ ଗଳିରେ
ସେମାନଙ୍କ ନୂଆ ନୂଆ ବୟସର ରହସ୍ୟ ସବୁକୁ
ବୁଝିବାକୁ ଆସୁଥିଲେ ମୋ ପାଖକୁ ଛପି ଛପି
ସକାଳ ସନ୍ଧ୍ୟାରେ
ଅନେକ ସନ୍ଧାନୀ ଆଖି ପାଖ ଘରେ ହସକୁ ନ ମାନି
ସ୍ୱପ୍ନର ଅଞ୍ଜନ ନେଇ ସେମାନଙ୍କ ଅବାକ ଆଖିରେ
ପଞ୍ଜୁରୀରେ ବନ୍ଦ କରି
ପକ୍ଷୀ ଭଳି ସେମାନଙ୍କ କୁମାରୀ ମନକୁ
ଯେଉଁମାନେ କେବେ ଦିନେ
ନିଜକୁ ବି ମୋ ପାଖରେ ସମର୍ପଣ କଲେ

ଗୋଟିଏ ଅଧ୍ୟାୟ ଗଲା
ହଜିଗଲେ ସେମାନେ ସମସ୍ତେ
ଇନ୍ଦ୍ରଜାଲ ସରିଗଲା
ପରୀମାନେ ଅନ୍ତର୍ଦ୍ଧାନ ହେଲେ
ଯେତେକ କୁଆଁରୀ ଝିଅ ପାଦରେ ଅଳତା ଦେଇ
ଚାଲିଗଲେ ବିବାହ ବେଦୀକୁ
ସେମାନେ ସମସ୍ତେ ଯାଇ ହଜିଗଲେ ଘର ସଂସାରରେ
କୁହୁକ ବି ବ୍ୟର୍ଥ ହେଲା
ଅତୀତ ଓ ଭବିଷ୍ୟତ ସବୁ ଲିଭିଗଲା
ଭୟପାଇ ପକ୍ଷୀମାନେ ଚାଲିଗଲେ ଅନ୍ୟ ଆକାଶକୁ
ପ୍ରେମର ତିନୋଟିଯାକ ଶପଥ ବି ହେଲା ନାହିଁ ପୂରା

ମୋ ରାସ୍ତା ଯାଉଚି ସରି
ଝରକାର ମୁହଁମାନେ ଗୁଡ଼ି ହୋଇ ଭାସୁଛନ୍ତି
କୋଠରୀର ଛୋଟ ଆକାଶରେ
ଆଖିମାନେ ତାରା ହୋଇ ଜଳୁଛନ୍ତି
ହସ ସବୁ ଭାଙ୍ଗି ଭାଙ୍ଗି ଚଟାଣରେ ଜମି ଯାଉଛନ୍ତି
ମଲା ଲୋକ ଶୋଇଛନ୍ତି ସେ ଘରର ଏକା ବିଛଣାରେ
ଅନେକ ଅଚିହ୍ନା ଏବଂ ଅନ୍ଧ ଲୋକ ଝରକାକୁ ଚାହିଁ
ମୋ ପାଖରେ ଠିଆ ହୋଇ ଏକା ଭଳି ସ୍ୱପ୍ନ ଦେଖୁଛନ୍ତି

ଏ ରାସ୍ତା ସରିବ ଏବଂ ସମୟ ବି ସୀମାବଦ୍ଧ ହେବ
ମୋର ପ୍ରିୟ ଡାଏରୀର ଫୁଲ ସବୁ
ମରିଯିବେ ଅତି ଉପେକ୍ଷାରେ
ଦେହର ଦୋକାନମାନ ବନ୍ଦ ହେବେ
ପ୍ରେମ ବି ମିଳିବ ନାହିଁ ମତେ ଆଉ ସହଜ କିସ୍ତିରେ
ଏ ଅନ୍ଧାର ଚଟାଣରେ କେହି ହେଲେ ଥିବେ ନାହିଁ ଆଉ
ଦି ପାଖ ଝରକା ସବୁ ଗୋଟି ଗୋଟି ବନ୍ଦ ହୋଇଯିବ
ଆହୁରି ଗୋଟିଏ ଦିନ ଏହିପରି ଚାଲିଯିବ ଯାଉ

# ଶେଷ ସୀମାନ୍ତ

ରାତ୍ରିର ବୟସ ନାହିଁ ସମୟର ନାଁ ନାହିଁ
ଆକାଶକୁ ଛୁଇଁ ହୁଏ ଆସ୍ଥାର ସହିତ
ଅନେକ ତାରାଙ୍କୁ ଯାଇ ଚୁପ ଚୁପ କଥା କହି ହୁଏ
ଗୋପନୀୟ ତଥ୍ୟମାନ
ବିନିମୟ କରି ହୁଏ ଅନ୍ଧାର ସହିତ
ସମୁଦ୍ରର ଝଲମଲ ଚଟାଣରେ ଶୋଇଯାଇ ହୁଏ

ସକାଳର ଖରା ଯାଇ
ପରିଚିତ ରୋଗିଣୀର ବିଛଣାରେ ଇତସ୍ତତଃ ହେଲା
ରତିମଗ୍ନ ପୁରୁଷ ଓ ନାରୀମାନେ
କଫିନ ଭିତରେ ଥାଇ ବ୍ୟତିବ୍ୟସ୍ତ ହେଲେ
ଅପହଞ୍ଚ ପ୍ରେମର ଭୟରେ
ଝରକାର କାଚ ଡେଇଁ
ଛାଇ ସବୁ ଭରିଗଲେ ଶୂନ୍ୟ କୋଠରୀରେ
ଏଇ ସମୟରେ :

ସହର ଲୁଣ୍ଠିତ ହେଲା
ପଦାତିକ ସୈନ୍ୟମାନେ ଘେରିଗଲେ ଚାରି ସୀମାନାରୁ
ସାତଟି ଘୋଡାର ରଥ
ଗଡ଼ିଗଲା ସହରର ଗଳିରୁ ଗଳିକୁ
ନଗରୀର ସମସ୍ତ ପ୍ରହରୀ
ବିଶ୍ୱାସଘାତକ ହୋଇ ଅସ୍ତ୍ର ରଖିଦେଲେ
ଚନ୍ଦ୍ରାହତ ଯୁବକ କେତୋଟି
ଏ କଥାର ପ୍ରତିବାଦ କରି ଖାଲି ପ୍ରସ୍ତାବ ଲେଖିଲେ

ସଜାଗ ରହିଚି ଦେଖ
ଏତେବେଳେ ନିର୍ଜନତା କିଭଳି ଭାବରେ
ମଧ୍ୟାହ୍ନର ରୂପ ନେଇ ସମୟର ଦୁଇ ସୀମାନ୍ତରେ

କାହିଁ ମୋର ତୀର ଦିଅ ଢାଲ ଦିଅ ତରବାରୀ ଦିଅ
ହେ ସୈନ୍ୟ ସାମନ୍ତ ସବୁ
ଆସ ମୋ ସହିତ ଆସ ଶେଷ ସୀମାନ୍ତକୁ
ମୋ ମଥାରେ ଟାଣି ଦିଅ
ଚନ୍ଦନ ଓ ସିନ୍ଦୂରର ଗାର
ମନ୍ତ୍ର ପଢ଼ କାହିଁ ଅଛି ଗ୍ରହବିପ୍ର
ମତେ କୁହ ମଙ୍ଗଳ ମୁହୂର୍ତ୍ତ

କାହିଁ ଗଲେ ମୋର ସବୁ ସହଚର

ଏ ରାସ୍ତାରେ କେହି ନାହିଁ
ପଳାତକ ମୋ ସେନାବାହିନୀ
ମନ୍ଦିର ପଡ଼ିଛି ଖାଲି
କିଏ ନେଲା ସୁନାର ବିଗ୍ରହ
ରତ୍ନ ସିଂହାସନ କାହିଁ
କାହିଁଗଲା ପୁରୋହିତ
ମୋ ହାତ କାକର ହେଲା କାହିଁକି କାହିଁକି
କିଏ ଅଛ ମୋ ହାତରେ ଭରା ଦିଅ
ଆଣ ଗଙ୍ଗା ଜଳ
ସହରଟା ମଶାଣି ହେଲାଣି
ସିନ୍ଦୁକରେ ଅନେକ କଙ୍କାଳ
ପ୍ରାର୍ଥନା କରିବା ଆସ ଆଜି ଆମେ
ମୁକ୍ତି ପାଇଁ ସେମାନଙ୍କ ଅତୃପ୍ତ ଆତ୍ମାର

ଅନ୍ଧାରର ଆଖି ନାହିଁ
ସମୟର ଛାଇ ନାହିଁ
ଅନେକ ପାଦର ଚିହ୍ନ ସମୁଦ୍ର ବାଲିରେ
ହଠାତ୍ ସକାଳ ହୁଏ
ପୁଣି ଏକ ରାତ୍ରିର ପ୍ରତୀକ୍ଷା

# ସନ୍ଧ୍ୟା ଠିକ ଛ'ଟା

ତମେ କଥା ଦେଇଥିଲ
ଠିକ ଛ'ଟାରେ ଦେଖା
ସନ୍ଧ୍ୟା ଠିକ ଛ'ଟା ଓ ଆମେ ଏକା
ଦୁଇଜଣ ଏଇ ଭଳି ସହର ସୀମାରେ
ସେ ଦିନର ସନ୍ଧ୍ୟା ଥିବ କେବଳ ଆମରି ପାଇଁ
ସହର ସେ ଦିନ ଥିବ ପୂରାପୂରି ବନ୍ଦ
ଏବଂ ସମୟ ଅଟକି ଥିବ
ଆମ ପାଇଁ ଠିକ ଛ'ଟାରେ

ତମେ କେବେ ଯାଇଥିଲ ସ୍ୱର୍ଗଦ୍ୱାର କାହା ସଙ୍ଗେ
ସମୁଦ୍ରରେ ସୂର୍ଯ୍ୟ ଅସ୍ତ ଗଲା
ମତ୍ସ୍ୟକନ୍ୟାମାନେ ଅତି ଭୟଭୀତ ହେଲେ
ଏବଂ ଦୂରର ଜାହଜ ଯାଇ
ବନ୍ଦ ହେଲା ମଝି ସମୁଦ୍ରରେ
ସମୁଦ୍ରର ପାଣି ସବୁ ନିଆଁ ଭଳି ଜଳିଲା
ଓ ରକ୍ତ ଭଳି ଲାଲ ହେଲା
କିଏ ନେଲା ଚୋରି କରି ସମୟକୁ ମୋର
ଏ ସବୁ ଅନର୍ଥ ହେଲା କାହାପାଇଁ
ରୋଗୀର ଶେଯରେ ଶୋଇ
ସକାଳରୁ ସନ୍ଧ୍ୟା
ଏବଂ ସନ୍ଧ୍ୟାରୁ ସକାଳଯାଏ
ମୋ ନିଦରେ ସ୍ୱପ୍ନ ନାହିଁ ସ୍ମୃତି ନାହିଁ
ଇଛା ନାହିଁ ପ୍ରତିଶ୍ରୁତି ନାହିଁ

ଏବେ ବି ତ ସନ୍ଧ୍ୟା ଥିବ
ତମେ ଥିବ ତମର ଛାତିରେ
କେତେ ମୌନ ସକାଳର ଖରା ଥିବ
ମଧ୍ୟାହ୍ନର ପୀଡା ଥିବ ତମ ଦି ହାତରେ

ସାରା ଦେହ ରହିଥିବ
ଅମାବାସ୍ୟା ରାତିର ରହସ୍ୟ
ଆଖିରେ ତମର ଥିବ
ଉତ୍ତେଜନା ଟ୍ରାଫିକ୍ ବତୀର
ତମେ କି ଖୋଜିବ ମତେ ଉଚ୍ଚାଟରେ
ଏପରି ସନ୍ଧ୍ୟାରେ
ଅସ୍ତବ୍ୟସ୍ତ ପଲଙ୍କରେ ପଣତରେ କବରୀରେ
ହାତ ଦେଇ ତମର ଛାତିରେ

ଆଉ ଥରେ ସନ୍ଧ୍ୟା ଲାଗି ଯଜ୍ଞ ହେବ
ଯୁଦ୍ଧ ହେବ ରକ୍ତପାତ ହେବ
ପ୍ରେମିକ ହାତରେ ଛୁରୀ
ଆର୍ତ୍ତନାଦ ନାୟିକା କଣ୍ଠରେ
ମୃତ୍ୟୁ ହେବ ପୁଣି ଏଇ ସନ୍ଧ୍ୟା ପାଇଁ
ପୁନର୍ଜନ୍ମ ହେବ
କେତେ ମାନଭଞ୍ଜନ
ଓ ପ୍ରତିଶ୍ରୁତି ସହ ମରଣର
ପ୍ରେମର ଜୟନ୍ତୀ ଏବଂ ବାର୍ଷିକୀରେ
କିଛି ଇଚ୍ଛା ପୂରା ହେବ
କିଛି ପୁଣି ଅସଂପୂର୍ଣ୍ଣ ଥିବ

ତମେ କଥା ଦେଇଥିଲ ଆମେ ଦୁଇଜଣ
ଦେଖା ହେବ ଠିକ ଛ'ଟାରେ
ଏ ଯେମିତି ଶେଷ ଦିନ ଜୀବନର
ଧ୍ୱଂସ ଓ ବିଲୟ ହେବ ପୃଥିବୀର
ଆଜିର ସନ୍ଧ୍ୟାରେ
କାଲି ଆଉ ମୁକ୍ତି ନାହିଁ ସୁନିଶ୍ଚିତ ଜଳିଯିବେ
ଶୀତ ଓ ବସନ୍ତ ସବୁ କାଲିର ଖରାରେ

ତମେ କଥା ଦେଇଥିଲ
ଠିକ ଛ'ଟାରେ ଦେଖା

ସନ୍ଧ୍ୟା ଠିକ ଛ'ଟା
ଓ ଆମେ ଦୁହେଁ ନିର୍ଜନ ସନ୍ଧ୍ୟାରେ
ଆମ ପାଇଁ ଦେଖ କିନ୍ତୁ ସହରରେ ହରତାଳ
ସାଇରେନ ବିକ୍ଷୋଭ ଓ ଶୋଭାଯାତ୍ରା
ଆକାଶ କିପରି ଦେଖ ଲାଲ ହେଲା
ନିଷେଧ ଆଦେଶ ସବୁ
ଜାରି ହେଲା ଆମ ବିରୁଦ୍ଧରେ

ସହର ସୀମାରେ ଆଜି ଅସମ୍ଭବ ଲୋକାରଣ୍ୟ
ମଧ୍ୟାହ୍ନର ଘଡ଼ି ସବୁ ପୂରାପୂରି ବନ୍ଦ
କେବଳ ତମେ ଓ ମୁଁ
ସନ୍ଧ୍ୟା ଠିକ ଛ'ଟା
ଓ ସହରର ଆଶ୍ଚର୍ଯ୍ୟ ଜନତା

# ଏପରି ସମୟ ସବୁ

ଖରାର ପିକ୍‌ନିକ୍ ସାରି ଅପରାହ୍ନ
ଅରଣ୍ୟକୁ ଚାଲିଯିବା ପରେ
ପକ୍ଷୀମାନେ ପୋଛିନେଲେ ଆଲୁଅକୁ
ସେମାନଙ୍କ ଉଦ୍ଧତ ଡେଣାରେ
ସ୍ମୃତିର କବନ୍ଧମାନେ ଅତିକ୍ରମ କରିଗଲେ
ସମୟକୁ ଶୋଭାଯାତ୍ରା କରି
ସୂର୍ଯ୍ୟ ହେଲା ସୀମାବଦ୍ଧ ମଳିନ ଜହ୍ନ
ଓ ମାତ୍ର କେତେଗୋଟି ବିବର୍ଣ୍ଣ ତାରାରେ

ଏପରି ସମୟ ନେଇ ଏଠାରେ ସମସ୍ତ ହୁଏ
ସମ୍ଭାବ୍ୟ ଓ ସଂପୂର୍ଣ୍ଣ ଅସତ୍ୟ

ଏଠାରେ ଅସ୍ତିତ୍ୱ ଖାଲି ଅସଙ୍ଗତ ଛାଇ
ଏବଂ ଅବାସ୍ତବ ପ୍ରତିଧ୍ୱନିଙ୍କର
ମତେ ଅବଲୁପ୍ତ କରେ
ଅକସ୍ମାତ ଦର୍ପଣର ଗୋଟିଏ ସୂର୍ଯ୍ୟାସ୍ତ

ଅନେକ ପ୍ରତିଜ୍ଞାମାନ
ଯେଉଁପରି ତମ ପାଇଁ ନୂତନ ବର୍ଷର :
ତମ ପାଇଁ ଆଣିଦେବି ସାରା ଆକାଶରୁ ତୋଳି
ଆରଣ୍ୟକ ତାରାର ଫସଲ
ଜହ୍ନକୁ ସୁଇଚ ଦେଇ ଜଳାଇବି
ତମେ ଯଦି ଆସ କେବେ ଏଭଳି ସନ୍ଧ୍ୟାରେ
ସମୁଦ୍ର ଲହରୀ ଆଣି ଛୁଆଁଇବି
ପାଦକୁ ତମର ମୋର ପ୍ରତି ପାହାଚରେ

ଏଠାରେ ଦେଖିବ ତମେ ପ୍ରଥମ ଚୁମ୍ବନ ଅଛି
ଫ୍ରେମ୍ ହୋଇ ମୋ ଶୋଇବା ଘରେ
କାନ୍ଥରେ ରହିଛି ଆମ ଦୁହିଙ୍କର ଚିତ୍ରପଟ
ପ୍ରେମ ଏବଂ ଯନ୍ତ୍ରଣାର ରଂଗରେ ଚିତ୍ରିତ
ହାତ ପାପୁଲିରେ ମୋର ସଂପୂର୍ଣ୍ଣ ଭାବରେ ଥିବା
ବିଡମ୍ବନା ଆମର ଭାଗ୍ୟର
ତମକୁ ମୁଁ ଦେଖାଇବି ଆମର ସମସ୍ତ ଶୋକ
ମୋ ମୁହଁରେ ଥିବ ଏକତ୍ରିତ
ଫୁଲ ଭଳି ସଜା ଥିବ ତମର ସମସ୍ତ ଚିଠି
ନିରର୍ଥକ ଟେବୁଲ ଉପରେ
ଆମ ଦୀର୍ଘଶ୍ୱାସ ସବୁ କାଗଜ ଟୁକୁଡା ହୋଇ
ଇତସ୍ତତଃ ସାରା କୋଠରୀରେ

ଆମେ ଯାହା ଖୋଜୁଥିଲେ
ଏକଦା ସନ୍ଧ୍ୟାରେ ବସି ଘାସ ପଡ଼ିଆରେ
ଦୁଇ ମୁଠା ଫୁଲ ଧରି ହାତରେ
ଓ ସପ୍ତର୍ଷିଙ୍କୁ ଏକାଗ୍ରରେ ଦେଖି

ଯେତେ ଉତ୍ତେଜନା ଥିଲା ପାଖରେ ବସିବା
ଏବଂ ରଖିବାରେ ହାତରେ ହାତକୁ
ଏକ ସଙ୍ଗେ ଆବିଷ୍କାର କରିବା ମେଘରୁ ଖୋଜି
ଅରୁନ୍ଧତୀ ଏବଂ ବଶିଷ୍ଠକୁ
ତମେ ଯଦି ଆଜି ମତେ ପଚାରିବ
କେଉଁଠାରେ ହଜିଲା ସେ ଦିନ
ସମୟ କାହିଁକି ହେଲା ଆତ୍ମଘାତୀ
ଧ୍ରୁବତାରା ମ୍ଳାନ ଓ ମଳିନ
ତମେ ଯଦି ପଚାରିବ ଏଇଭଳି ପ୍ରଶ୍ନ ସବୁ
ନିର୍ବାକ ଓ କମ୍ପିତ ହାତରେ
ଦୁଇଟି ପ୍ଲାଷ୍ଟିକ ଫୁଲ ତୋଳି ନେଇ
ସଜାଇବି ତମର ବାଳରେ

ତମକୁ ମୁଁ ନେଇଯିବି ଏପରି ସ୍ଥିତିକୁ
ତମେ ସମୟର ଦୁଇ ପାଖେ ଥାଇ
ସେଠାରେ ଦେଖିବ କେବେ ଅତୀତକୁ
କେବେ ପୁଣି ବର୍ତ୍ତମାନ ଆସନ୍ତା କାଲିକୁ
ଯଥାର୍ଥ ବୁଝିବ ତମେ ଚନ୍ଦ୍ର ସୂର୍ଯ୍ୟ
ଆଲୁଅ ଓ ଅନ୍ଧାରର ବ୍ୟବଧାନ ନାହିଁ
କିଛି ବି ପ୍ରଭେଦ ନାହିଁ
ଦିନ ରାତି ଥିବା ନ ଥିବାର
ଆନନ୍ଦ ଯନ୍ତ୍ରଣା ଆଶା ଉତ୍ତେଜନା
ଭୁଲିଯିବା ମନେ ରଖିବାର

ସେଠାରେ ସମାନ ସବୁ
ବଞ୍ଚିବାର ଇଚ୍ଛା ଏବଂ ମୃତ୍ୟୁର ଆଗ୍ରହ
ସେଠାରେ କିଛି ବି ନାହିଁ
ଜିଣିବାର ବ୍ୟଥା କିମ୍ବା ହାରିବାର ଭୟ
ସେଠାରେ ସମାନ ସବୁ
ପାଇବା ଓ ନ ପାଇବା ପ୍ରେମ ଓ ବିରହ

ଏପରି ସମୟ ସବୁ ଆଉ କିଛି ଲାଭ ନାହିଁ
ଖୋଜିବାରେ ଘାସ ପଡ଼ିଆରେ
ଆକାଶରେ କୋଠରୀରେ ପାହାଚରେ କାନ୍ଥରେ
ବା ନିରର୍ଥକ ଟେବୁଲ ଉପରେ
ସବୁ ତେଣୁ ଭୁଲିଯାଅ ଏଠାରୁ ନିସ୍ତାର ନାହିଁ
ସମୟର ରାଜତ୍ୱ ଏଠାରେ
ଆମ ନାଁ ଲେଖା ଥିବା ତାରା ଦେଖ
ଅବେଳାରେ ଅସ୍ତମିତ ହେଲା
ମୋ ପାଖରେ ଠିଆ ହୁଅ କିଛି କ୍ଷଣ
ସ୍ଥିର ରହ ମୋ ହାତକୁ ଧର
କେହି କେବେ ବଞ୍ଚେ ନାହିଁ
ଏଇଭଳି ମ୍ରିୟମାଣ ଜହ୍ନ ଆଲୁଅରେ

# ନିଜକୁ ଖୋଜି ଖୋଜି

ଏପରି ଆସିବ ଦିନ ନିଜକୁ ମୁଁ ଖୋଜି ଖୋଜି
କେଉଁ ଏକ ଅଦ୍ଭୁତ କ୍ଷଣରେ
ତମକୁ ଭେଟିବି ଅତି ଆକସ୍ମିକ
ମୋ ନିଜର ଅତି ନିକଟରେ
କେବଳ ପ୍ରତୀକ ଭଳି
ମୋ ଆଗରେ ଉଭା ଥିବ ମୂର୍ତ୍ତିମତୀ ତମେ
ରାତି ଥିବ ନାହିଁ ବେଶୀ
ଶ୍ମଶାନର ନିସ୍ତବ୍ଧତା ଭାଙ୍ଗିଯିବ ଅତି ସହଜରେ
ତମର ଅଭାବ ଏବଂ ସନ୍ନିଧିର
କାଳ୍ପନିକ ବ୍ୟବଧାନ ଥିବ ନାହିଁ ଆଉ
ମୋର ସବୁ ସାଧନା ଓ ସନ୍ଧାନର
ଶେଷ ହେବ ଏଇଭଳି ଆଶ୍ଚର୍ଯ୍ୟ ଭାବରେ

ସବୁ ଖିନଭିନ ଥିବ ଭଙ୍ଗାରୁଜା
ସ୍ତର ସ୍ତର ଧୂଳି ଆଉ ବୁଢ଼ିଆଣୀ ଜାଲ
ଆକାଶ ନିବଦ୍ଧ ଥିବ କାନ୍ଥରେ ଓ ଘର ଭର୍ତ୍ତି
ପୁରୁଣା କାଗଜ ଏବଂ ଚିଠିର ଜଂଜାଳ
ମୋ ପାଦ ଅବଶ ମୋର ହାତ ଅବସନ୍ନ ଥିବ
ଦେହ ଥିବ ପକ୍ଷାଘାତ ଗ୍ରସ୍ତ
ମୋ ଛାତିରେ ସୁମେରୁର ଶୀତ ଥିବ
ମୋ ମଥାରେ ମରୁର ଜଳନ
ଚାଦରରେ ତାଜା ରକ୍ତ
ମୋ ନିଶ୍ୱାସ କ୍ଷୀଣ ଥିବ
ଅବସନ୍ନ ଶେଷ ପ୍ରହରରେ
ତମେ କିନ୍ତୁ ସଶରୀର ମୋ ପାଖରେ
ତମେ ମୋର ସମଗ୍ର ସତ୍ତାରେ
ଶଂଖ ମଲମଲ ଦେହ
ରଖି ମୋର ନିରାସକ୍ତ ବିଛଣା ଉପରେ

ପ୍ରତି ନିଶ୍ୱାସରେ ଥିବ ଝଡ ଥିବ
ତମ ପ୍ରତି ସ୍ପର୍ଶରେ ବିଜୁଳୀ
ଓଠର ଆଗ୍ନେୟ ଗିରି
ପ୍ରତ୍ୟେକ ଚୁମ୍ବନ ତାର ବିସ୍ଫୋରଣ ଥିବ
ଦେହର ପ୍ରତ୍ୟେକ ମୋଡ
ଭୟଙ୍କର ସମୁଦ୍ରର ଢେଉ
ଦୁଇଟି ଆଖିରେ ଥିବ
କକ୍ଷଚ୍ୟୁତ ଉଲ୍‌କାର ବିଦ୍ରୋହ

ସବୁ ମୁଁ ଭୁଲିବି
ଏବଂ ସେ ଘରକୁ ଛାଡ଼ିଦେଇ
ଏକା ଭଳି ଦିନ ସବୁ ପଛରେ ପକାଇ
ପରବର୍ତ୍ତୀ ଠିକଣାର ସୂଚନା ନ ରଖି
ମୋର ପରିତ୍ୟକ୍ତ ଧୂସର କାନ୍ଥରେ
ନିଜକୁ ଖୋଜିବି ଯାଇ ଶ୍ମଶାନର ସୀମାନ୍ତରେ

ଊର୍ଦ୍ଧ୍ୱବାହୁ ମୁନିଙ୍କ ମେଳରେ
ଅଥବା ଆସକ୍ତିହୀନ
ବ୍ରହ୍ମଚାରୀମାନଙ୍କର ଅଯୌନ ସ୍ଥିତିରେ

ମୁଁ ଯିବି ତୀର୍ଥରୁ ତୀର୍ଥ
ଦଶାଶ୍ୱମେଧରୁ ପୁଣି ମଣିକର୍ଣ୍ଣିକାକୁ
ମୁଁ ରହିବି ଧ୍ୟାନମଗ୍ନ
ନାଭି ପଦ୍ମ କୁଣ୍ଡଳିନୀ ବ୍ରହ୍ମ ସଂପର୍କରେ
ବିସର୍ଜନ କରିବି ମୁଁ ତ୍ରିବେଣୀରେ
ବଞ୍ଚିବାର ଅବଶିଷ୍ଟ ଅବଲମ୍ବନକୁ

ମୋ ହାତରେ ପରିତ୍ୟକ୍ତ ପ୍ରେମପତ୍ର
ମଉଳା ଫୁଲର ମାଳ
ଫଟୋଗ୍ରାଫ ଥିବ ମୃତକର
ନିଜକୁ ମୁଁ ଖୋଜୁଥିବି ଏକା ଏକା
ଏଇପରି ରାସ୍ତାରେ ରାସ୍ତାରେ
ପ୍ରଥମ ସୂର୍ଯ୍ୟର ରକ୍ତ ପଡ଼ିଥିବ ସଡକରେ
ଶ୍ମଶାନରେ ଆକାଶର ଶବ
ଧାଡ଼ି ଧାଡ଼ି ଖୋଲାଘର କାନ୍ଦୁଥିବେ
ଦ୍ୱିଧାଗ୍ରସ୍ତ ରାସ୍ତା ଦୁଇପାଖେ
ଦିଗ୍‌ବଳୟ ଚୁପ୍ ଥିବ ପବନ ନିବନ୍ଧ ଥିବ
କଣ୍ଟାଗଛ ଶୁଖିଲା ଡାଳରେ

ଇତସ୍ତତଃ କରୁଥିବା ଅନ୍ତିମ କ୍ଷଣରେ ପୁଣି
ଏଇଭଳି ଏକାନ୍ତରେ ଭେଟିବି ତମକୁ
କିଛି ପ୍ରତାରଣା କରି କିଛି ଆଶ୍ୱାସନା ଦେଇ
ବିମୁଖ ମୋ ଦ୍ୱୈତ ନିଜସ୍ୱକୁ

# ମନେ ରଖିବାର କଷ୍ଟ

ଏଠାରେ ଆମର ଥିବା
ସଂପୂର୍ଣ୍ଣ ଆବୃତ ହୋଇ ଦର୍ଶକ ମେଳରେ
ନିର୍ଜନରେ ସାକ୍ଷାତର ଭୟ
ତେଣୁ ପ୍ରେକ୍ଷାଳୟ ମଧ୍ୟମ ପଂକ୍ତିରେ
ଯଦିଓ ଅନେକ କ୍ଷଣ
ସଂପର୍କ ଆମର ଥିବ ସାନ୍ନିଧ୍ୟ କେବଳ
ସନ୍ନିକଟ ରହିଥିବା ଦୁଇଟି ବିଭିନ୍ନ ଦ୍ୱୀପ
ବ୍ୟବଧାନ ମହା ସମୁଦ୍ରର

ଅତି ଅହେତୁକ ଆମେ
ଅନ୍ଧାରରେ ବସିଥିବା ନିର୍ବାକ ଭାବରେ
ମୁଁ ତମକୁ ଅନାଇବି ନିଜସ୍ୱ ଆଖିରେ
କିନ୍ତୁ ତମ ଆଖି ଅନ୍ୟତ୍ର ନିବଦ୍ଧ
ମୋ ହାତରେ ତମ ହାତ
ଆମେ ଦୁହେଁ ନିମଜ୍ଜିତ ବିଭିନ୍ନ ଚିନ୍ତାରେ

ମୃତ୍ୟୁର କି ଉପସର୍ଗ
ଶୋକର କି ବାସ୍ତବିକ ରୂପ
ଯନ୍ତ୍ରଣା କି ରଂଗ ନେଇ ଆସି ଥାଏ
ବିଚ୍ଛେଦର କିଭଳି ଉତ୍ତାପ
ମାଳ ମାଳ ପକ୍ଷୀଙ୍କର ଉଡି ବୁଲୁଥିବା
କିଛି ଉଦ୍ଦେଶ୍ୟ ନ ଥାଇ
ଲକ୍ଷ୍ୟହୀନ ଯାଉଥିବା ମେଘଙ୍କର
ଅଚାନକ ଅନେକ ବ୍ୟସ୍ତତା
ଦୁଇଟି ନିର୍ବାଣମୁଖୀ ଉଲ୍‌କାଙ୍କର
କଥା ହେବା ମଝି ଆକାଶରେ
ଶେଷ ବସନ୍ତର କିଛି
ଫୁଲଙ୍କୁ ଛୁଇଁବା ଲାଗି ହଠାତ ପ୍ରଚେଷ୍ଟା

ଏଠାରେ କାହିଁକି ଜଳେ
ହିଂସ୍ର ହୋଇ ସମୟ ଏପରି
ସକାଳ କାହିଁକି ଥାଏ ସହଜ ନ ହୋଇ
ସବୁ ସ୍ୱପ୍ନ ସରିଗଲେ
ଆକାଶରେ ରହିଥାଏ ଚିରସ୍ଥାୟୀ ଧୂସରତା
ମେଘରେ ସ୍ଥିରତା
ଗଛ ସାରା ପୁଂଜୀଭୂତ କୋହ ଏବଂ
ଅଶାନ୍ତ ଚିତ୍କାର ଥାଏ ବିକ୍ଷିପ୍ତ ପତ୍ରରେ
ଚିତାର ତୀକ୍ଷ୍ଣତା ଥାଏ ଖରାରେ
ଓ ଶ୍ମଶାନର ସ୍ପର୍ଶ ପବନରେ

ପ୍ରେକ୍ଷାଳୟ ଭର୍ତ୍ତି ଥିବ
ଆମେ ଅତି ଅପେକ୍ଷାରେ ମଞ୍ଚ ଥିବ ଖାଲି
ଅଭିଭୂତ କରୁଥିବ ଅନ୍ଧାରର ଆତ୍ମୀୟତା
ସମସ୍ତଙ୍କୁ ନିବିଡ଼ ଭାବରେ
ନିର୍ଜନତା କଟୁଥିବ ତାଳ ଦେଇ
ଟିକ୍ ଟିକ୍ ଘଡ଼ିର ଶବ୍ଦରେ
ଆମେ ଅତି ଉଦ୍‌ବେଗରେ
ମଞ୍ଚରେ ରହିଛି ସବୁ ପ୍ରଶ୍ନର ଉତ୍ତର
ଇଙ୍ଗିତରେ ହୋଇଯିବ
ଅଗଣିତ ରହସ୍ୟର ଶେଷ ସମାଧାନ
ନାୟିକାର କଟାକ୍ଷରେ
ମୁହୂର୍ତ୍ତରେ କଟିଯିବ ଇନ୍ଦ୍ରଜାଲ ସବୁ
ସାମାନ୍ୟ ସଂଳାପ ଦେଇ ବୁଝି ହେବ
ସଂଜ୍ଞା ଯାହା ବାସ୍ତବ ପ୍ରେମର

ମଞ୍ଚ ହେବ ଉଦ୍‌ଭାସିତ ଅଚାନକ
ଅପାର୍ଥିବ ଆଲୋକ ମାଳାରେ
କେବଳ ମୁହୂର୍ତ୍ତେ ପାଇଁ
ସବୁ ପୁଣି ଢାଙ୍କି ଯିବ କଳା ଚାଦରରେ
ଶ୍ୱାସରୁଦ୍ଧ କରିଦେବ ସମସ୍ତଙ୍କୁ

ସ୍ମରଣର ସ୍ୱଳ୍ପ ପରିସର
ଶେଷ ହେବ ସବୁ କିଛି
ବୁଝିବାର ଅନ୍ତିମ କ୍ଷଣରେ
ତା ପରେ କିଛି ବି ନାହିଁ
ଦେହାନ୍ତର ପୁନର୍ଜନ୍ମ ମୋକ୍ଷ ବା ନିର୍ବାଣ
ଖାଲି ମନେ ରଖିବାର କଷ୍ଟ
ତେଣୁ ଏଥରକ ସବୁ ଭୁଲିଯାଅ
ଅମର ପ୍ରେମର ଲୋଭ
କିମ୍ବା ଇଚ୍ଛା ସାମୟିକ ବଞ୍ଚି ରହିବାର

ପ୍ରେକ୍ଷାଳୟ ଶୂନ୍ୟ ମଞ୍ଚ ଅନ୍ଧକାର
ରାତି ଥିବ ଦ୍ୱିତୀୟ ପ୍ରହର
ତମେ ଏକା ରହିଥିବ ମୋ ପାଖରେ
ତମ ହାତ ମୋ ହାତରେ ଥିବ
କେବଳ ପ୍ରମାଣ ପତ୍ର
ଯାହା ଆମ କଦାଚିତ ସନ୍ଦିଗ୍ଧ ପ୍ରେମର

# ତମ ଅପେକ୍ଷାରେ

କିଏ ମତେ କହିଥିଲା ଅପେକ୍ଷା ହିଁ ମୃତ୍ୟୁ
କିନ୍ତୁ ତମ ଅପେକ୍ଷାରେ
ଅନେକ ସକାଳ ସନ୍ଧ୍ୟା
ମଧ୍ୟାହ୍ନରେ ସଂକୁଚିତ ହୋଇ
ମନରେ ଦିଅନ୍ତି ଆଣି
ସମଗ୍ର ଦିନର ଭ୍ରାନ୍ତି
ଅସ୍ତିତ୍ୱର ବର୍ଣ୍ଣହୀନ ଅସ୍ପଷ୍ଟ ଆକାର
ଜନ୍ମର ସମସ୍ତ ଭୟ
ଇଚ୍ଛା ସବୁ ଅପେକ୍ଷାରେ ନିଶ୍ଚିହ୍ନ ହେବାର

ସମୟର ଯାଦୁଘରେ
ପ୍ରଦର୍ଶନୀ ପଥର ମୂର୍ତ୍ତିର
ତମେ ତାକୁ କହିପାର ଗୋପନୀୟ କଥା
ତମ ନିଜସ୍ୱ ଭାଷାରେ
କେବେ ତାକୁ ତିରସ୍କାର କରିପାର
ଅଭିମାନ କ୍ରୋଧ ବା ଭୟରେ
ଚାହାଣୀରେ ଜାଳି ଦେଇପାର
ତା ଆଖିରେ ରଖିପାର ଆଖି ତମେ
ଯାଇପାର ଅତି ନିକଟକୁ
ଇସାରାରେ କରିଦେଇପାର ଅସ୍ୱୀକାର
ଗାଇଡ୍ କହୁଚି କିନ୍ତୁ ଛୁଇଁବାକୁ ମନା
ଖାଲି ଯାହା ତମେ ତାକୁ କଥା କହିପାର

କେବଳ କଥାର ବନ୍ୟା
ଅକ୍ଷରରେ ଛୁଇଁବାର ଅନେକ ପ୍ରଚେଷ୍ଟା
କେବଳ ଭାଷାର ଝଡ
ସଂପର୍କର ବିନିମୟ ସ୍ୱର ଏବଂ ବ୍ୟଞ୍ଜନ ବର୍ଣ୍ଣରେ
ଶବ୍ଦର ଶୋଚନାହୀନ ବିସ୍ଫୋରଣ
ଦୁର୍ବୋଧତା ପ୍ରେମ କବିତାର
ସ୍ୱୀକାରୋକ୍ତି ଲିପିବଦ୍ଧ ହେଉଥିବ
ସାଙ୍କେତିକ ଅକ୍ଷର ମାଳାରେ
ପ୍ରସ୍ଥାନର ସେ ପାଖରେ ଥିବ ଯେଉଁ
ଭାଷାହୀନ ନୀରବତା ସବୁ ବୈରାଗ୍ୟର

କିଏ ମତେ କହିଥିଲା ଅପେକ୍ଷା ହିଁ ମୃତ୍ୟୁ
କିନ୍ତୁ ତମର ଅପେକ୍ଷା
ବିସ୍ତାରିତ ବଞ୍ଚିବାର ସ୍ଥିତି
କିମ୍ବା କିଛି ତାହା ବୁଝିବାର ଭୁଲ
ରାସ୍ତା ଠିକ ସହଜ ଓ ସମାନ୍ତର
ଇତସ୍ତତଃ କିନ୍ତୁ ତାର ସମସ୍ତ ସଙ୍କେତ
ଭାବୁଚି ହୁଏତ ତମେ କହିଥିଲ ଆସିବାକୁ

ଅନ୍ୟ ଦିନ ଭିନ୍ନ ସମୟରେ
ଅଥବା ରହିଚ ତମେ
ମୋ ପାଇଁ ଉଦ୍‌ବେଗ ନେଇ ଅନ୍ୟ ସହରରେ

ମୁଁ ପଢ଼ିବି ଆଉ ଥରେ ତମ ଚିଠି
ଆଉ ଥରେ ତମ ସ୍ମରଣରେ
ମୁଁ ଖୋଜିବି ତମ ମୁହଁ
ସାରା ରାସ୍ତା ଅଗଣିତ ଲୋକଙ୍କ ଭିଡରେ
ଅଜଣା ଲୋକଙ୍କୁ ଯାଇ ପଚାରିବି
ତମ କଥା ତମର କୁଶଳ
କବାଟରେ କରାଘାତ ସବୁ ଥିବ
ପଡୋଶୀଙ୍କ ନିମିତ୍ତ ଯଦିଓ
ପ୍ରତି ପାଦଶବ୍ଦକୁ ମୁଁ ଶୁଣୁଥିବି
ଅକାରଣ ଉଚ୍ଚକିତ ହୋଇ
ସେମାନେ ସମସ୍ତେ ଥିବେ ବିଜାତୀୟ
ପ୍ରତ୍ୟୁତ୍ତର ଆଶାରେ ତଥାପି
ରହିଥିବି ଯଦିଓ ମୋ ସ୍ମରଣକୁ ଛୁଉଁଥିବା
ନାଁ ଥିବ ଅନ୍ୟମାନଙ୍କର

ତମେ ମତେ କହିଥିଲ ପ୍ରେମ ହିଁ ଜୀବନ
କିନ୍ତୁ କଦାଚିତ ତମ ଅପେକ୍ଷାରେ
ବଞ୍ଚିବା ବି ହୋଇପାରେ ତାତ୍ପର୍ଯ୍ୟ
ଓ ଉପଲକ୍ଷ୍ୟ ବଞ୍ଚି ରହିବାର
ଜୀବନ ବି ହୋଇପାରେ ନିଜର ଯାଥାର୍ଥ୍ୟ
ଏବଂ ନିଜ ସମର୍ଥନ
ପ୍ରମାଣ ଆନନ୍ଦ ଶୋକ
ଅବା ଅନୁଭବହୀନ ଜୀବନଯାତ୍ରାର
ବିରାମ ବିହୀନ କ୍ରମ ରହିବାର
ଅବିଚ୍ଛେଦ୍ୟ ସକାଳ ଓ ସନ୍ଧ୍ୟା
ମଧ୍ୟାହ୍ନ ଯାହାର ଥାଏ
ପ୍ରତୀକ ସ୍ୱରୂପ ଖାଲି ବେଳ ବଢ଼ିବାର

ମତେ ତମେ କହିଥିଲ ପ୍ରେମ ହିଁ ଜୀବନ
କିନ୍ତୁ ବଞ୍ଚିବାର କ୍ରମ
ଶୂନ୍ୟଗର୍ଭ ସମୟର ଯାଦୁଘରେ
ସଂପର୍କର ପ୍ରତିଧ୍ୱନି ଖାଲି
ଅସଂପୂର୍ଣ୍ଣ ଅନୁଭବ
ମୁଁ ତେଣୁ ରହିବି ଚାହିଁ ସାରାଦିନ
ଶୂନଶାନ ରାସ୍ତାକୁ ଏପରି
ମୁଁ ଖୋଜିବି ତମ ମୁହଁ
ମୁଁ ତେଣୁ ପଢ଼ିବି ତମ ଚିଠି ଆଉ ଥରେ
ମୁଁ ରହିବି ଉଚ୍ଚକିତ
ନେଇ କିଛି ବ୍ୟକ୍ତିଗତ ମୃତ୍ୟୁର ପ୍ରତ୍ୟାଶା

ମତେ କିଏ କହିଥିଲା ଅପେକ୍ଷା ହିଁ ମୃତ୍ୟୁ
ତେଣୁ ତମ ଅପେକ୍ଷାରେ

## ଶେଷ ପର୍ଯ୍ୟନ୍ତ

ମୋର ଏ ଅଦ୍ଭୁତ ସ୍ଥିତି
ଶୂନ୍ୟରେ ଦୋଳାୟମାନ
ସମୁଦ୍ରରେ ଭାସୁଛି ମୁଁ ଅନନ୍ତକାଳରୁ
ମୁଁ ହେଉଛି ଆତଯାତ ଚନ୍ଦ୍ରସୂର୍ଯ୍ୟ
ଗ୍ରହ ଏବଂ ନକ୍ଷତ୍ରଙ୍କ ପରିକ୍ରମଣରେ
କେବେ ମୁଁ ଯାଉଛି ଲଘି
ଲହରୀର ଆକ୍ରମଣ
ଧୂମକେତୁ ଏଡାଇ
ଓ ପ୍ରବାହର ପ୍ରତିକୂଳ ଯାଇ
କେତେବେଳେ ଭାସୁଛି ମୁଁ ସ୍ରୋତରେ

ଓ କେତେବେଳେ ଚିତ୍କାର କରୁଛି
ନିମଜ୍ଜିତ ହେବାର ଭୟରେ
କେବେ କେବେ ଉଡୁଛି ମୁଁ
ଅସହାୟ କାଳବୈଶାଖୀରେ
କେବେ ପୁଣି ଶୋଉଛି ମୁଁ ନିର୍ବିକାର
ଆକାଶ ବା ସମୁଦ୍ରର ଚଟାଣ ଉପରେ

ମୋ ଦୁଇ ହାତରେ
ତମ ମୁହଁ କେବେ ଛୋଟ ହୋଇ
ଅସହାୟ ଦେଖୁଛି ମୋ ଜଳନ୍ତା ଆଖିକୁ
କେବେ ପୁଣି ତମ ମୁହଁ ଚକ ଚକ ଆଲୁଅରେ
ବିସ୍ତୃତ ହେଉଛି ଏବଂ
ମୁଁ ଯାଉଛି ହଜି ତମ ଆଖି ପିତୁଳାରେ
ତମ ହାତ ଧରି କେବେ
ଆଗକୁ ଯାଉଛି ପୁଣି
ତମକୁ ଟାଣୁଛି କେବେ ବିଛଣାକୁ ମୋର
ତମକୁ ଖେଳନା କରି ଖେଳୁଛି ମୁଁ କିଛି ବେଳ
ତମ ହାତ ପାପୁଲିରେ
ଶୋଉଛି ମୁଁ ଯୁଗ ଯୁଗାନ୍ତର

ସାମାନ୍ୟ ହସୁଛ ତମେ
ତମ ହସ ବହୁଗୁଣ ହୋଇ
ପବନରେ ଅଟ୍ଟହାସ
ମୁଁ ଉଡୁଛି ପତ୍ର ଭଳି ହସର ଝଡରେ
କଟାକ୍ଷରେ ତମେ ମତେ ମୁହୂର୍ତ୍ତେ ଦେଖୁଛ
କିନ୍ତୁ ମୁଁ ଜଳୁଛି ବର୍ଷ ବର୍ଷ
ତମ ଦୁଇ ଆଖିର ଝାସରେ
ସବୁ ପୁଣି ଅନାୟାସ
ମୁହୂର୍ତ୍ତକେ ବିଲୁପ୍ତ ହେଉଛି
ପଲକ ପଡୁଛି ଯେବେ ତମର ଆଖିରେ
ନିଶ୍ଚଳ ରହୁଛି ଗତି ସମୟର

ମୁଁ ହେଉଛି ପଥଭ୍ରଷ୍ଟ ଦେହର ରାତିରେ

ମୋ ଚାରି ପାଖରେ ଭରା ଇନ୍ଦ୍ରଧନୁ ପ୍ରଜାପତି
ଅପାର୍ଥିବ ସଂଗୀତର ସ୍ୱର
ସମୁଦ୍ର ଆକାଶ ଝଡ ଅଗ୍ନି ବୃଷ୍ଟି କିଛି ନାହିଁ
ସମସ୍ତ ନୀରବ ଶାନ୍ତ ନିରୁଦ୍‌ବେଗ ସ୍ଥିର
ସ୍ତୋତ୍ର ପଢୁଛନ୍ତି ବସି
ବୀତସ୍ପୃହ ପୁରୋହିତମାନେ
ଅସ୍ପଷ୍ଟ ଅବୋଧ ଏବଂ ଏକକ ସ୍ୱରରେ
ମୁଁ ପଢୁଛି ମୋ ନିଜର ସଂକ୍ଷିପ୍ତ ଜୀବନୀ
ଲିପିବଦ୍ଧ ତିନି ଅଧ୍ୟାୟରେ

କଳା ଘୋଡା ଚାଲିଗଲା
ଅସ୍ତବ୍ୟସ୍ତ ମେଘଙ୍କ ଭିତରେ
ଟପ ଟପ ଟାପୁ ସବୁ ଶବ୍ଦକୁ ଲିଭାଇ
ଅଶ୍ୱାରୋହୀ ହସୁଛି
ଓ ସେ ହସରେ ତାଳ ଦେଇ
ଦୋହଲୁଛି ଅରଣ୍ୟ ଓ ଆକାଶରୁ କିଛି
ଛିଡା ହୋଇଛନ୍ତି ଲୋକ ମଥାକୁ ନୁଆଁଇ
ଭୟ ଏବଂ ଅବିଶ୍ୱାସ
ସମସ୍ତଙ୍କ ସ୍ଥବିର ଆଖିରେ
ମୁଁ ସଂପୂର୍ଣ୍ଣ ହତବୁଦ୍ଧି
ଖୋଜୁଛି ମୁଁ ଧ୍ରୁବତାରା କାହିଁ
ଏ ପାଖରୁ ସେ ପାଖକୁ
ବିଜୁଳୀର ଆଖିମିଟକାରେ

ଯାହା ଭାବୁଥିଲି ତମ ପଣତର ରଂଗ
ଥିଲା ଖଣ୍ଡ ଖଣ୍ଡ ମେଘର ଶୃଙ୍ଖଳା
ଯାହା ଭାବୁଥିଲି ତମ ମଥାର ସିନ୍ଦୂର
ତାହା ସାୟାହ୍ନର ଅସ୍ତସୂର୍ଯ୍ୟ ଥିଲା

ମୁଁ ଛୁଇଁଲି ମୋ ମୁହଁକୁ
ମୋ ଛାତିକୁ ମୋ ଆଖିକୁ

ପଢ଼ି ନେଲି ପୃଷ୍ଠା ସବୁ ନିର୍ଭୁଲ ଭାବରେ
ସବୁ ଶୂନ୍ୟସ୍ଥାନରେ ମୁଁ ଦେଲି ମୋ ସ୍ୱାକ୍ଷର
ତୀର୍ଯ୍ୟକ ଆଖିରେ ଥରେ ଦେଖି ନେଲି
ସମସ୍ତଙ୍କୁ ଶେଷରେ ତମକୁ
ତମ ନାଁ ନେଲି ପୁଣି ଶହେ ଆଠ ଥର

ରାତିର ସଂଶୟ ସବୁ ଦୃଶ୍ୟ ହୋଇ
ତରଳିଲେ ବୁଝିବାର ନରମ ଖରାରେ
ଏଥର ଅଶେଷ ଶାନ୍ତି
ଏଥରକ ଅପେକ୍ଷା କେବଳ

# ତମେ ଚାଲିଯିବା ପରେ

ଏଠାରୁ ଆମର ରାସ୍ତା ଶେଷ ହେଲା
ଆମ ଦୁହିଁଙ୍କର
ବିଦାୟ ନେବାର ବେଳ ଏଥରକ
ବାଟ ଭାଙ୍ଗି ଏ ଛକ ପାଖରୁ
ବୁଝି ନାହିଁ ଠିକ ଭାବେ ତମକୁ
ଓ ଜାଣି ନାହିଁ ତମର ଦେହକୁ
ତମକୁ ମୁଁ ବ୍ୟକ୍ତିଗତ
କିଛି କଥା କହିବା ଆଗରୁ
ଆମେ ଦୁହେଁ ଚାଲୁ ଚାଲୁ
ହଠାତ ମୁଁ ମୂକ ହୋଇଗଲି
ଅଥବା ଛଳନା କରି
ନ ଶୁଣିଲ ତମେ ମୋ କଥାକୁ

ଆଗକୁ ରହିଛି ରାସ୍ତା ଆହୁରି ଅନେକ
କିନ୍ତୁ ଛକରେ ଏପରି

ଭୃଣହତ୍ୟା ହେଲା ଆମ ସଂପର୍କର
ଜଘନ୍ୟ ଭାବରେ
ପ୍ଲାଟଫର୍ମ ଉପରେ ମୁଁ ରହିଗଲି
ତମ ଟ୍ରେନ ଚାଲିଗଲା ଅନ୍ୟ ସହରକୁ
ମିଳିତ ମୁହୂର୍ତ୍ତ ସବୁ
ନିର୍ବାସିତ ହୋଇଗଲେ ଦୀର୍ଘକାଳ ପାଇଁ
ତମ ପାଇଁ ଅଛି ରାସ୍ତା ଆଗକୁ ଅନେକ
କିନ୍ତୁ ମତେ ଏଇଠାରୁ
ଫେରିବାକୁ ହେବ
ଯଦି ରାସ୍ତା ମତେ ନିଃଶେଷ ନ କରେ

ତମେ ଚାଲିଯିବ
କିନ୍ତୁ ଛକ ଥିବ ଏଇପରି ନିରପେକ୍ଷ ହୋଇ
ପଥରର ଘୋଡ଼ା ଚଢ଼ି
ସାବଧାନ ରହିଥିବେ ସେନାପତିମାନେ
ସଜା ହୋଇ ରହିଥିବେ
ସିଲ୍‌ହୁଏଟ ପକ୍ଷୀମାନେ ବିଜୁଳୀ ତାରରେ
ଘରର ଝରକାମାନେ
ଟିସୁ କାଗଜର ଅଧା ଜହ୍ନକୁ ଅନାଇ
ସିଜାରିଆନ ସୂର୍ଯ୍ୟୋଦୟ ଅପେକ୍ଷାରେ
ସମୟ ଗଣିବେ
ଆସନ୍ନ ଅନ୍ଧାର କଥା ଭାବି ଭାବି
ବତୀଖୁଣ୍ଟ ଭୟାର୍ତ୍ତ ରହିବ
ରାତିର ପାପୁଲି ଦେବ
ମୁହୂର୍ତ୍ତକେ ସାରା ପ୍ଲାଟଫର୍ମକୁ ଲିଭାଇ

ସାରା କୋଠରୀରେ ଭରା ତମର ଦେହର ଭ୍ରମ
ଅବିସ୍ମୃତ ଶେଷ ମୁହୂର୍ତ୍ତରେ
ପାଖର ଚଉକି ଖାଲି ପ୍ରତିଧ୍ୱନି ଚୁପଚାପ
ଅନୁଗତ ତମ ସ୍ମରଣରେ
ଝରକାର କାଚ ସବୁ ଭଙ୍ଗା

ଏବଂ କବାଟର ପର୍ଦ୍ଦା ସବୁ ଖୋଲା
କାହା ଛାଇ ଘୂରି ବୁଲେ
କାହିଁକି ମୋ ଖାଲି କୋଠରୀରେ
ଶୀତର ପବନ ଆସି
ଧକ୍କା ଦେଇଯାଏ ମତେ ଚଉକାଠ ଡେଇଁ
ନିହତ ପକ୍ଷୀର ଶବ
ହିମ ଓ ବିବର୍ଣ୍ଣ ହୁଏ ବନ୍ଦ ପଂଜୁରୀରେ

ପ୍ରତିଟି କ୍ଷଣର କରି ଶବ ବ୍ୟବଚ୍ଛେଦ
ମୋର ପ୍ରତି ନିଶ୍ୱାସରେ
ମୁଁ ଭାବିବି ଜଳିଯାଉ ସବୁ କିଛି
ମୁଁ ଭାବିବି ହୋଇଯାଉ ନିଲାମ ଏ ଘର
ଯଦିଓ ଏ ଘର ଅଛି ଆଜି ମୋର
କାଲି କିନ୍ତୁ କାହାରି ନ ଥିବ
ମୁଁ ଥିବ ଜଡ଼ିତ ମୋର
ସାଙ୍କେତିକ ଅନେକ ମୃତ୍ୟୁରେ
ମୁଁ ଥିବି ନିଶ୍ଶେଷ ଅତି
ଯଦିଓ ମୋ ଟେଲିଫୋନ ବାଜି ଚାଲିଥିବ

ମୋର ପୁଣି ମନେ ହେବ
ଅଧାରାତି ପ୍ରେକ୍ଷାଳୟ ଖାଲି
ମଞ୍ଚରେ ବସିଛି ଏକା ବିଦୂଷକ
ମୁହଁ ପୋତି ଅନ୍ତିମ ଅଙ୍କରେ
ମୂର୍ତ୍ତିହୀନ ମନ୍ଦିରର ଛାତରେ
ପିଟୁଛି ଡେଣା ଏକାକୀ ପକ୍ଷୀଟି
ନିଜର ମସ୍ତକ କାଟି ସାଧକ ପଡ଼ିଛି ଯାଇ
ହିମ ଶୀତ ପଥର ଉପରେ
ଅସମ୍ଭବ ଯୋଗସୂତ୍ର ଶରୀରର ଶେଷ
ଏବଂ ଲୋଭନୀୟ କ୍ଷଣିକ ମାଂସରେ
ଆମେ ତେଣୁ ବସିଥିବୁ
ସାଧକ ଓ ବିଦୂଷକ ଏକ ପର୍ଯ୍ୟାୟରେ

ଅମୃତର ସନ୍ଧାନରେ ହାତରେ ହାତକୁ ଦେଇ
ସମୟର ଶେଷ ଦିଗନ୍ତରେ

ପଣତ ଉଡ଼ିବ ଏବଂ ଲୁଚିଯିବ
କ୍ଷୀଣତର ହୋଇଯିବ ଚୂଡ଼ୀର ଝଂକାର
ଦୂରତ୍ୱ ଓ ଅନ୍ଧାରରେ
ତମ ମୁହଁ ହୋଇଯିବ କ୍ରମଶଃ ଅଦୃଶ୍ୟ
ତମକୁ ମୁଁ ମନେ ପକାଇବି ଯଦି
ପାଞ୍ଚ ଶହ ମାଇଲ ଦୂରରୁ
ତମ ପାଦ ରହିଯିବ କିଛି କ୍ଷଣ
କିଛି ହେବ ବିଚଳିତ ତମର ଭାବିବା
ତମ ଆଖି ସ୍ଥିର ହେବ ଏକକ ପୃଷ୍ଠାରେ
ଏବଂ ବାରମ୍ବାର ଗୋଟିଏ ଧାଡ଼ିରେ

କୋଳାହଳ ହେବ କିଛି
ବିନା ଷ୍ଟେସନର ସବୁ ଗାଁ ମାନଙ୍କରେ
କିଛି ପକ୍ଷୀ ଉଡ଼ିଯିବେ
ନିରୁଦ୍ଦିଷ୍ଟ ହୋଇଯିବେ ହଠାତ ଝଡରେ
କିଛି ପକ୍ଷୀ ଝାସ ଦେବେ
ସ୍ମରଣର ଧୂସର ହ୍ରଦରେ
ଆଉ କିଛି ପକ୍ଷୀ ପୁଣି
ରହିଯିବେ ନିରାଶ୍ରୟ ତମର ଓଠ
ଓ ତମ ଅଙ୍ଗୁଳିର
ଇତସ୍ତତଃ ମୃଦୁ କଂପନରେ

ମୁଁ ତମକୁ ଏଇପରି
ଅନାୟାସ ମନେ ପକାଇବି
ଏବଂ ହଠାତ ମୋର
ମୃତ୍ୟୁ ଓ ଅମରତ୍ୱର ଭୟ ଚାଲିଯିବ

## ସ୍ମୃତିର କାୟାକଳ୍ପ

ସମୟ କାହାକୁ ଦେବ ପୁନର୍ଜନ୍ମ
ମତେ ନା ତମକୁ
ଯେଉଁମାନେ ବଞ୍ଚୁଥିବେ ମୃତ୍ୟୁରେ ନା
ଯେଉଁମାନେ ମରୁଥିବେ ବଞ୍ଚିବାରେ ସେମାନଙ୍କୁ
ସ୍ମୃତିସ୍ତମ୍ଭ କାହା ପାଇଁ
ଋତୁଙ୍କର ଚିହ୍ନ ଥିବା କ୍ଷୟପ୍ରାପ୍ତ ଆମର ଦେହର
ଅଥବା ରଙ୍ଗୀନ ଏବଂ ଅପସୃୟମାଣ ଯାହା
ଅବଶେଷ ବିଗତ କାଲିର
ସମ୍ବେଦନା ଉଦ୍ଦିଷ୍ଟ କାହାକୁ
ପ୍ରତିହତ ଯୌବନକୁ ପ୍ରତାରିତ ପୌରୁଷକୁ
ଅବା ଆମ ଅସ୍ୱୀକୃତ ଆତ୍ମସନ୍ତୋଷକୁ

ଏଠାରେ ତମର ନାହିଁ ନିଜସ୍ୱ ଅସ୍ତିତ୍ୱ କିଛି
ବିଳମ୍ବିତ କଳ୍ପନାର କ୍ଷଣିକ ସମୟ
ହାତର ପରିଧି ଯାହା ଧରି ରଖିଥାଏ ମାତ୍ର
ଅପ୍ରଶସ୍ତ ଦିଗନ୍ତର କ୍ଷୟିଷ୍ଣୁ ବଳୟ
ବ୍ୟକ୍ତିଗତ ସ୍ୱତ୍ୱମାନ
ସ୍ୱପ୍ନରେ ହିଁ ସ୍ୱୀକୃତ କେବଳ
ଜାଣିବାର ଦାବୀମାନ
ଇଚ୍ଛାକୃତ ଆତ୍ମ ପ୍ରତାରଣା
ଅକିଞ୍ଚିତକର ଅତି ଆମର ଏକତ୍ର ଥିବା
ପରିଚୟ ଅପେକ୍ଷାଘରର

ଯାହା କିଛି ଲକ୍ଷ୍ୟ ଥିବ
ପ୍ରତ୍ୟେକଟି ଇପ୍‌ସିତ କ୍ଷଣରେ
ଯାହା କିଛି କାମ୍ୟ ଥିବ
ଲୁପ୍ତସ୍ମୃତି ଅନ୍ଧକାର ଦେଇ
ଯାହା ସବୁ ଅଭିପ୍ରେତ
ତମେ ପଛେ ଥାଅ ବା ନ ଥାଅ
ସେମାନେ ସମସ୍ତେ ଥିବେ ସଜଗ ଓ ପ୍ରତୀକ୍ଷିତ

ବିଦ୍ୟମାନ ରହିଥିବେ
ସାମୟିକ କାୟାକଳ୍ପ ନେଇ

ମନ୍ଦିର ଚୂଡ଼ାରେ ଥିବ
ଶତଚ୍ଛିନ୍ନ ପତାକାର ଅବଶେଷ
ବିତୃଷ୍ଣା ଓ ଅପ୍ରେମର ରଙ୍ଗରେ ଜଡ଼ିତ
ତୃତୀୟ ନେତ୍ରରେ ଥିବ
ଅଭିଶାପ ଟ୍ରାଫିକ ବତୀର
ସମୁଦ୍ରର ହଂସଧ୍ୱନି ଉତ୍‌ପ୍ଲାବିତ ହେଉଥିବ
ଅନ୍ତସତ୍ତ୍ୱା ସଂଧ୍ୟା ଗହ୍ୱରରୁ
ଅଭିଶପ୍ତମାନଙ୍କର ଶୋକ ଗୀତ ଶୁଭୁଥିବ
ଦୁର୍ଯୋଗର ମଣିକଣ୍ଠିକାରେ
ସମସ୍ତଙ୍କୁ ସ୍ତବ୍ଧ କରିଦେବ ପୁଣି
ଅଜଣା ପଂଜୁରୀବଦ୍ଧ
ଡେଣାଭଙ୍ଗା ପକ୍ଷୀର ଚିତ୍କାର

ଯାହା କିଛି ସ୍ମୃତିଭ୍ରଷ୍ଟ ହୋଇଥିବ
ମୋ ପାଖରେ ତମେ ଥିଲାବେଳେ
ଅକୁଣ୍ଠିତ ସାକ୍ଷାତର ଉତ୍ତୀର୍ଣ୍ଣ କ୍ଷଣରେ
ସେ ସବୁ ଆସିବେ ମତେ
ଅସରନ୍ତି ଯନ୍ତ୍ରଣାରେ ପରିପୂର୍ଣ୍ଣ କରି
ସମୟ ସ୍ମୃତି ଓ କିଛି ସମ୍ବେଦନା ହୋଇ
ତମେ ପାଖରେ ନଥିଲେ

# ସ୍ୱପ୍ନରେ ଅନେକ ଥର

ତମେ ଯଦି କେବେ କେବେ
ସ୍ୱପ୍ନରେ ଏପରି ଆସ ନୋଟିସ ନ ଦେଇ
ଚକ ଚକ ଖରାବେଳେ ରାତିର ଅନ୍ଧାରେ
ଅନାସକ୍ତ ବେଳାମାନଙ୍କରେ
ଅନିର୍ଦ୍ଦିଷ୍ଟ ସହରର ଛକରେ
ବା ନିରୁଦ୍ଦିଷ୍ଟ ଜାହାଜରେ ମଝି ସମୁଦ୍ରରେ
ତମେ ଆସ ଲହରୀରେ
ତାରାଙ୍କର ଚିକମିକ ପ୍ରତିବିମ୍ବ ହୋଇ
ପୋଷ୍ଟରରେ ପଢୁଥିବା
ହଳଦିଆ ସୂର୍ଯ୍ୟାସ୍ତର ପ୍ରତିଫଳନରେ
ପକ୍ଷୀ ଏବଂ ପ୍ରଜାପତି ହୋଇ କେବେ
ବସନ୍ତର ବିହ୍ୱଳ ହାଓ୍ୱାରେ

ସ୍ୱପ୍ନରେ ଅନେକ ଥର
ତମେ ଏବଂ ତମ କଥା ଅନେକ ଭାବରେ
କୁଙ୍କୁମର ବିନ୍ଦୁ ହୋଇ
ପଣତରେ ନୂଆ ନୂଆ ଡିଜାଇନ କାଟି
ବ୍ୟାଗରେ ଛୋଟ ଦର୍ପଣ ଚପଲର ଫିତା
ଏବଂ ଚୂଡ଼ୀରେ ଅଟକିଥିବା ସେଫଟିପିନ୍ ହୋଇ
ଝାଳ ଆଉ ପାଉଡର ଲାଗିଥିବା ରୁମାଲରେ
ଛୋଟ ଛୋଟ ଫୁଲ ଭଳି ଫୁଟି

ତମେ ମଧ୍ୟ ଦୂରତ୍ୱରେ ହଜିଯିବା ଆଗରୁ ସେ ଦିନ
ଅବିଶ୍ୱସ୍ତ ଭଦ୍ରତାରେ ତମକୁ ମୁଁ ଛୁଇଁଲି କିଞ୍ଚିତ
ତମେ ମଥା ହଲାଇ କହିଲ ନା
ଏବଂ ଫୁଲ ସବୁ ଝଡ଼ିଗଲେ ରୁମାଲରୁ
ପଣତରୁ ପଜାପତି ଉଡ଼ିଗଲେ
ତମର ନିର୍ଦ୍ଦେଶ ପାଇ ପକ୍ଷୀମାନେ ହସ ବନ୍ଦ କଲେ
ଜାହାଜ ଭାଙ୍ଗିଲା ଯାଇ ବତୀ ଘରେ
ଲିଭିଗଲା ମଧ୍ୟାହ୍ନର ସବୁ ଝିଲମିଲ
ଛକ ହେଲା ଜନଶୂନ୍ୟ ଜଳିଗଲେ ମାର୍ଚ୍ଚ ଓ ଏପ୍ରିଲ

ଏକାକୀ ମୁଁ ଠିଆ ହୋଇ
ଲହରୀରେ ଦେଖୁଛି ମୋ ଅସଂଖ୍ୟ ଛାଇକୁ
ବିକଳ୍ପ ଜୀବନ ଖୋଜି
ମୁଁ ଯାଉଛି ଧକ୍‌କା ଖାଇ ଅନେକ ଛକରେ
ପଚାରୁଛି ଦୋକାନରେ
କେବେହେଲେ ନ କିଣିବା ଜିନିଷର ଦାମ
ମୋ ହାତରେ କମ୍ପାସ ଓ ମାନଚିତ୍ର
ମୁଁ ବସିଛି ମୃତ ବନ୍ଦରରେ

ସ୍ୱପ୍ନରେ ଅନେକଥର ଜାହାଜ ଓ ବତୀଘର
କେବେ କେବେ ସମୁଦ୍ର ଓ ଦ୍ୱୀପ
ପୋଷ୍ଟରରେ ସୂର୍ଯ୍ୟାଲୋକ
ଫୁଲ ପକ୍ଷୀ ପ୍ରଜାପତି ଆହତ ଏପ୍ରିଲ
ତମକୁ ନିଶ୍ଚିତ ଭାବେ ସବୁ ଜଣା
ସ୍ୱପ୍ନରେ ଯେତେକ ଦେଖା
ଯେତେକ ଆନନ୍ଦ ଏବଂ ଯେତେକ ଯନ୍ତ୍ରଣା

# ଅନେକ ପ୍ରକାର ଦିନ

– ୧ –

କେବେ କେବେ ଦିନ ସବୁ ଅତି ଶାନ୍ତ
ଦୂରର ପର୍ବତମାନ ଆଚ୍ଛାଦିତ ସବୁଜ ଛାଇରେ
ସ୍ୱପ୍ନରେ ପ୍ରତୀତ ଥିବା ଚିତ୍ରମାନ ସରଳରେଖାର
ଚୁପଚାପ ଅରଣ୍ୟ ଓ ଜନଶୂନ୍ୟ ରାଜପଥ
ଅତି ସ୍ଥିର ମେଘମାଳା
ପ୍ରତିକ୍ରିୟା ମୁଗ୍ଧ ଆକାଶର
ସମୁଦ୍ରର ନିରୁଦ୍‌ବେଗ ଅଦ୍ଭୁତ ସ୍ଥିରତା ଏବଂ
ଅତ୍ୟନ୍ତ ହାଲୁକା ସ୍ମୃତି ନରମ ରଙ୍ଗର

ଏଠାରେ ନିଷ୍ପ୍ରୟୋଜନ ଯୁକ୍ତି ତର୍କ
ଏକାନ୍ତ ଅନାବଶ୍ୟକ ଖ୍ୟାତି ଓ ପ୍ରତିଷ୍ଠା
ଛାଇ ଏବଂ ବାସ୍ତବର ବ୍ୟବଚ୍ଛେଦ
ସମାଧାନ ସତ୍ୟ ଅସତ୍ୟର
ଅଥବା ତୁଳନାତ୍ମକ ଲାଭ କ୍ଷତି
ଥିବା ନ ଥିବାର
ଏଠାରେ ଆମର ଯାହା ସ୍ୱକୀୟ ଦାୟିତ୍ୱ
ଖାଲି ପବିତ୍ର ଓ ନିଷ୍ପାପ ହେବାର

ମୃତ୍ୟୁରୁ ଉଜ୍ୱଳତର ମୋ ହାତରେ
ପୂର୍ବ ପୁରୁଷଙ୍କ ରକ୍ତ
ନିଜ କଳ୍ପନାରେ ନିଜେ
ଜଳି ପୋଡ଼ି ଯାଉଥିବା ଇଚ୍ଛା
କେବେ ଭଲ ପାଇବାର ଭୟ କେବେ
ପ୍ରେମର ଅଭାବ ଅବା
ଆଶଂକା ପ୍ରେମରେ କେବେ ନିଶ୍ଚିହ୍ନ ହେବାର
ଅନେକ ନଗଣ୍ୟ ମୃତ୍ୟୁ
ଯାହା ଆସେ ନିର୍ଦ୍ଧାରିତ ଦିନମାନଙ୍କରେ
ଅଥବା ଅଧିକ ଯାହା ଦୁଃଖପୂର୍ଣ୍ଣ
ବଞ୍ଚିବାର ଅଭିନୟ
ତୁଚ୍ଛ ଏବଂ ଅକିଞ୍ଚିତକର

କେବେ କେବେ ଦିନ ସବୁ
ଅତି ଶାନ୍ତ ଥିବେ
ସ୍ୱର୍ଣ୍ଣାଭ ସକାଳମାନେ
ଦୀପ୍ତିମନ୍ତ ହେଉଥିବେ ସ୍ଫଟିକ ହ୍ରଦରେ
ନରମ ଆଲୁଅ ଥିବ ଆକାଶରେ
ଖୋଲୁଥିବ ସ୍ୱପ୍ନର ପାଖୁଡ଼ା
ଏଠାରେ ଆମର ଥିବା
ମନେ ହେବ ଅସଂଗତ
ସ୍ୱପ୍ନ ଭଳି ଯାହା

ମିଶିଯିବ ପକ୍ଷୀଙ୍କର କାକଳୀରେ
ଆଲୁଅରେ ସ୍ପର୍ଶରେ
ଓ ଫୁଲର ଗନ୍ଧରେ
ସବୁ ଆକାଂକ୍ଷାର ଶେଷ ଯେଉଁପରି
ଆକାଶରେ ପହଞ୍ଚିଲେ ତାରାଙ୍କୁ ଛୁଇଁଲେ
ନାଟକର ଶେଷ ଭଳି
ହାତ ତାଳି ଦୀର୍ଘ ନିଶ୍ୱାସରେ

– ୨ –

କେବେ ପୁଣି
ଛୁରୀ ଭଳି ଶାଣିତ ମଧ୍ୟାହ୍ନ ଆସି
କାଟିଦେବ ଘଣ୍ଟାର ମୁହଁକୁ
ମୁଠା ମୁଠା ଅଗ୍ନିକଣା ବୁଣିଦେବ
ପ୍ରତିକୂଳ ଆକାଶର ଛାତ
ରଂଗ ସବୁ ଜଳିଯିବେ ପ୍ରଜାପତି ଡେଣାରୁ
ଓ ଜଳନ୍ତା ଆକାଶ ଚିରି ବର୍ଷା ହେବ
ପକ୍ଷୀଙ୍କର ଆର୍ତ୍ତ କଳରବ
ମଖମଲ ନୀରବତା ବିଦ୍ଧ କରି
ଉଡ଼ିଯିବ ଶଂଖଚିଲ ଅଜ୍ଞାତ ଦିଗରେ
ପର୍ବତ ବିଧ୍ୱସ୍ତ ହୋଇ ସେଠାରେ ବସତି ହେବ
ନୂଆ ନୂଆ ଲୋକଙ୍କ ସହର
ଝଡ଼ ଆସି ଚାଲିଯିବ ସହରର ସମୁଦ୍ରରେ
ଦ୍ୱୀପ ଭଳି ଭାସୁଥିବେ ଭଙ୍ଗା ଘର ସବୁ
ଆମର ସମସ୍ତ ସ୍ୱପ୍ନ ସମସ୍ତ ବିଗତ ସ୍ମୃତି
ଶ୍ୱାସରୁଦ୍ଧ ଭଙ୍ଗା କୋଠରୀରେ
ଟ୍ରାଫିକ ବତୀର ଅସ୍ଥି ପଂଜର
ଓ ମୃତ ଆଲୁଅରେ

ଦିନ ସବୁ ରହିଥିବେ
ଯନ୍ତ୍ରଣାର ପୋଷାକରେ ଆଚ୍ଛାଦିତ
ଆଲୋକର ଗହ୍ୱରରେ ଶୋକ
ଏବଂ ଅନ୍ଧକାର ଥିବ

ଶୂନ୍ୟତା ଆଚ୍ଛନ୍ନ କରି ରଖୁଥିବ ସମସ୍ତଙ୍କୁ
ଗଭୀର ଦୁଃଖରୁ କିଛି ନିର୍ଜନତା ନେଇ
ଅନ୍ୟଥା ମୁଁ ଯାହା ସବୁ ଭାବୁଥିବି
ଏଭଳି ରହସ୍ୟାବୃତ ଆକାଶକୁ ଚାହିଁ
ରହିଥିବ ମୋର ଅତି ନିକଟ ଯଦିଓ ତମେ
ତମକୁ ତାହାର କିଛି ଧାରଣା ନଥିବ

ଖାଲି ଯାହା ଏଇଭଳି ଏକାନ୍ତ କ୍ଷଣରେ
ଆହୁରି ନୀରବ କରି ଆକାଶର ନିସ୍ତବ୍ଧତା
ପାର୍ଶ୍ୱଧ୍ୱନି ଭଳି
ତମର ପ୍ରତ୍ୟେକ ହସ ଶୁଭୁଥିବ ବାରମ୍ବାର
ସମୁଦ୍ରର ଲହରୀରେ
ମେଘରେ ଓ ଶେଷ ଦିଗନ୍ତରେ

-୩-

ତମ ପାଇଁ ସୁରକ୍ଷିତ ଗୋପନ ସିଢ଼ିରେ
ତମେ ଓହ୍ଲାଇବ ଭୀରୁ ପାଦ ରଖି
ଆକାଶର ପାହାଚରେ ସନ୍ଧ୍ୟା ଯେଉଁପରି
ଚିଠି ସବୁ ହସିବେ ମୋ ଟେବୁଲ ଉପରେ
ପକ୍ଷୀମାନେ ଉଡ଼ିଯିବେ କାନ୍‌ଭାସ୍ ଚିରି
ଛାଇ ଭଳି ବିସ୍ତାରିତ ହୋଇଯିବ ଅନ୍ଧାରର ସ୍ୱର
ନିରୁଦ୍ଧାର ଆତ୍ମାମାନେ ପ୍ରଜ୍ୱଳିତ ହେବେ
ଅନ୍ତିମ ବିଚାର ହେବ ପାପ ଓ ପୁଣ୍ୟର

ସୂର୍ଯ୍ୟାସ୍ତର ଶେଷ ରଶ୍ମି ଆମ ଚାରିପାଖେ
ନିର୍ବାସିତ ହୋଇ ଆମେ ପର୍ବତ ଛାଇରେ
ଅରଣ୍ୟରେ ହଜିଯିବେ ସନ୍ଧ୍ୟାର ବିଦାୟୀ ତ୍ରସ୍ତ
ହରିଣୀର ଦଳ ଏବଂ ମୋ ଶିକାରୀ ଆଖି
ଅତ୍ୟଧିକ ନିରାଶାରେ
ଜଳିଯିବେ ଶେଷ ପ୍ରଶ୍ନମାନ

ମୋ ମଥାରେ ଦିନ ସବୁ
କଣ୍ଟାର ମୁକୁଟ ହେବେ
ଆକାଶରେ ପ୍ରତିଧ୍ୱନି ହେଉଥିବ
ବ୍ୟର୍ଥତାର ସମବେତ ଗାନ

ଲହରୀରେ ବନ୍ଦ ହୋଇ
ସୂର୍ଯ୍ୟର ସମାଧି ହେବ ସମୁଦ୍ର ଗର୍ଭରେ
ଶେଷ ସୂର୍ଯ୍ୟାଲୋକ ଯିବ
ଅପସରି ନାମ ଫଳକରୁ
ପ୍ରଜ୍ଞାର ଛଳନା ସବୁ ମୂଲ୍ୟହୀନ
ଉତ୍ତରର ଏବେ ଆଉ ପ୍ରୟୋଜନ ନାହିଁ
ଏଠାରେ କେବଳ ତମେ ସ୍ମରଣରେ ଭଲ ପାଅ
ମତେ ତମେ କଥା କହ ଖାଲି ଇଙ୍ଗିତରେ
କିମ୍ବା ମତେ ଛୁଇଁ ପାର
ଆଖି ଦେଇ ଅନ୍ୟ ପୃଥିବୀରେ

-୪-

ମନ୍ଦିରର ବନ୍ଦ ଘରେ
ହତପ୍ରଭ ଦୀପର ଅନ୍ଧାର
ଈଶାନ କୋଣରେ ମୃତ୍ୟୁ
ଆଙ୍କୁଥିବ ନୂଆ ନୂଆ ମୁହଁ
ଅନ୍ଧାର ଜମିବ ପୁଣି ତରଳିବ ଆହୁରି ଜମିବ
ସମଗ୍ର ଆକାଶ ହେବ
କଳା ଶିରା ପ୍ରଶିରାର ଜାଲ
ତାରାମାନେ ଆଖିଭଳି ନିଷ୍ପ୍ରଦୀପ ଥିବେ
ଭୌତିକ ଜାହାଜ ଭଳି ମଲାଜହ୍ନ ଭାସି ବୁଲୁଥିବ

ରାତିର ମଧ୍ୟାହ୍ନ ମୋର କୋଠରୀରେ
ନିରାଟ ସତ୍ୟର ଥିବ ଆକ୍ରମଣ
ସୂର୍ଯ୍ୟ ଭଳି ଝରକା ସେପାଖେ
ବନ୍ଦ ଘରେ ପଡ଼ିଥିବ କ୍ଷୟଶୀଳ ଶବ

ଆବେଦନ ନାହିଁ ଯାହା ବିରୁଦ୍ଧରେ
ଯାହା ପାଇଁ ଥିବ କିଛି ପ୍ରଙ୍କାର ସ୍ୱୀକାର
କିନ୍ତୁ ପ୍ରବୃତ୍ତିର ପ୍ରତ୍ୟାଖ୍ୟାନ
ଅଚାନକ ଭୟ କିଛି ଥିବ

ତମର ସମସ୍ତ ଇଚ୍ଛା
ସମର୍ପଣ କରିବାକୁ ମୋ ପାଖରେ
ଆଉ ଥରେ ସଂପୂର୍ଣ୍ଣ ନିଜକୁ
ଆଖିରେ ଓଠରେ କିଛି ସ୍ୱୀକୃତି ଓ
ସାରା ଦେହ ଅଶେଷ ସମ୍ମତି
ଆମେ ଉଜ୍ଜୀବିତ ହେବା
ଏଇଭଳି କେତୋଟି ମୁହୂର୍ତ୍ତ ଦେଇ
ଏକମାତ୍ର ବିଗତ କ୍ଷଣରେ
ଏକାଧିକ ମୃତ୍ୟୁ ଦେଇ
ଉପଲବ୍ଧି କରିବା ରାତିକୁ
ସମ୍ମିଳିତ ହେବା ପାଇଁ
ଏକନିଷ୍ଠ ଦୁରନ୍ତ ଯାତ୍ରାରେ

ତମେ ଥାଅ ମୋ ପାଖରେ
ସାରାରାତି ସକାଳକୁ ଚାହିଁ
ତା ପରେ ପ୍ରସ୍ତୁତ ହୁଅ ଯିବା ଲାଗି
ତମର ସଂଗୀତ ସବୁ
ରହି ଥାଉ ଶେଷ ଦିନ ପାଇଁ

# ଅନ୍ୟ ସବୁ ମୃତ୍ୟୁ

ପ୍ରଥମେ ଭୁଲିବି ତମ ଆଖିକୁ
ଓ ତା ପରେ ତମକୁ

ତମର ସ୍ମୃତି ଓ ସତ୍ତା
ଯାହା ମୋର ନିଜସ୍ୱ କ୍ଷଣକୁ
ଶୂନ୍ୟ ଭଳି ଜଡ଼ି ଧରେ
ବନ୍ଦ କରେ ଶବାଧାର ଭଳି
ସବୁ ମୁଁ ଭୁଲିବି ଆଜି
ସୁନିଶ୍ଚିତ କ୍ରମାନ୍ୱୟ କରି

ମୋର ସବୁ ଅନୁଭୂତି
ତମେ ନେଇ ତମ ଦି ହାତରେ
କିଛି ତାକୁ ଖେଳି ସାରି
ରଖି ଦିଅ ତମର ଛାତିରେ
ତେଣୁ ମୁଁ ଭୁଲିବି ତମ ହାତକୁ
ଓ ଛାତିକୁ ଓ ତା ପରେ ତମକୁ
ତମ ଆଖି ତାରା ଏବଂ
ତମେ ନିଜେ ରାତି ହୋଇ କେବେ
ମନେ ରଖିବାକୁ ମତେ
ଏଇପରି ବାଧ୍ୟ କର ଯଦି
ସବୁ ମୁଁ ଭୁଲିବି ମୋର ମୃତ୍ୟୁ
ଅବା ଅନ୍ୟ ଭଲ ପାଇବା ଅବଧି

ଏପରି ଅଦ୍ଭୁତ ଦିନ
ସବୁ କିଛି ମାୟା ଏବଂ ଇନ୍ଦ୍ରଜାଲ ଭଳି
ଦିନର ଆକାଶ ମତେ ମୋହାଚ୍ଛନ୍ନ କରି ରଖେ
ବହୁ ରୂପ ଧରି
ମନ୍ଦିର ଉପରେ ହୋଇ ପତାକା
ଓ ଶାଢ଼ୀ ହୋଇ ଅନେକ ଛାତରେ
ଝରକାରେ ଫଟୋ ହୋଇ
ପଂକ୍ତି ହୋଇ କବିତାର ବିଜୁଳୀ ତାରରେ
ଦିନରେ ଅନେକ ରୂପ ନେଇଥାଏ
ରାତିରେ ବି ଆହୁରି ଅନେକ
କେବଳ ଆକାଶ ଯଦି

କିପରି ମୁଁ ସହିବି ଏ ତାରା ଓ ମେଘକୁ
ହେ ଈଶ୍ୱର ମତେ କିଛି ଶକ୍ତି ଦିଅ
ଏମାନଙ୍କ ସମର୍ଥ ହେବାକୁ

ତା ଠାରୁ ଅଧିକ ଭଲ
ରହିଥିବି ନିଜକୁ ମୁଁ ନେଇ
ପ୍ରବଞ୍ଚିତ ମଧ୍ୟାହ୍ନର ଶୂନ୍ୟଗର୍ଭ ଏକ ଅର୍ଦ୍ଧାଂଶରେ
ଅନ୍ୟ ଅର୍ଦ୍ଧାଂଶରେ ପଛେ
ରହିଥାଉ ସନ୍ଧ୍ୟା ସବୁ କମଳା ରଙ୍ଗର
ରହିଥାଅ ତମେ
ଏବଂ ଯେତେ ଅନ୍ୟ ସ୍ୱପ୍ନର ପୃଥିବୀ
ମତେ ପଛେ ଖୋଜୁଥାଅ
ଯଦିଓ ମୁଁ ସେଠାରେ ନ ଥିବି

କିମ୍ବା ଆସ ଚାଲିଯିବା
ପ୍ରବେଶ ଓ ପ୍ରସ୍ଥାନର ଏକକ ରାସ୍ତାରେ
ଉତ୍ତରାଧିକାର ଦାବୀ ଭୁଲିଯାଇ
ରାଜତ୍ୱ ଓ ସିଂହାସନ ଜଳାଂଜଳି ଦେଇ
ଏଠାରେ କେବଳ ଆୟୁ କ୍ଷୟ ହୁଏ
ବ୍ୟକ୍ତିଗତ ପରିତ୍ରାଣ ଖୋଜି
ଏଠାରେ କବିତା ସବୁ
ମୃତ ଶବ୍ଦମାନଙ୍କର ଅସଂଗତ ଯୋଗ
ମୁକ୍ତି ଏବଂ ସାର୍ଥକତା ସନ୍ଧାନରେ
ନିଜତ୍ୱ ବି ଯଦି ଯାଏ ହଜି
ସଂଶୟ ରହିଛି ଯଦି ସବୁଠାରେ
ପ୍ରଶ୍ନ ତମେ କରିବ କାହାକୁ
ଏକମାତ୍ର ପରିଣତି ମୂଲ୍ୟହୀନ କରି ଦିଏ
ମୁହୂର୍ତ୍ତକେ କାରଣମାନଙ୍କୁ

ଆମର ସନ୍ଧାନ କରି
ମୃତ୍ୟୁ ଦିନେ ଆସିବ ଏପରି

ସାକ୍ଷ୍ୟ ଓ ପ୍ରମାଣ ନେଇ
ଆମେ ସବୁ ବୟସ୍କ ହେବାର
ଆମେ ଠିଆ ହେବା ତାର ଚତ୍ୱରରେ
ଭୟଙ୍କର ମୁହୂର୍ତ୍ତଙ୍କୁ ଗଣି
ଆମର ସମସ୍ତ ଶୋକ
ଅସଂପୂର୍ଣ୍ଣ ଥିବ ଶେଷ ପ୍ରହର ପର୍ଯ୍ୟନ୍ତ
ସେଠାରେ ନଥିବ ଆଖି
ଦେହ ହାତ ଆକାଶ ବା ମେଘ
ଅନେକ ଆକାରମାନ
ସମୟର ଆଘାତରେ ବିପର୍ଯ୍ୟସ୍ତ ହୋଇ
ସେଠାରେ ସମସ୍ତ ଶ୍ୱେତ ବିବର୍ଣ୍ଣ
ଓ ଅନିର୍ଦ୍ଦିଷ୍ଟ ଥିବ

ଏଭଳି ମୁହୂର୍ତ୍ତ ସବୁ
ତମ ପାଇଁ ଶୁଭଙ୍କର ହେଉ
ତମେ ଫୁଟ ଫୁଲ ହୋଇ ଅନେକ ଋତୁରେ
ତମେ ଆୟୁଷ୍ମତୀ ହୁଅ
ତମେ ହୁଅ ପୁତ୍ରବତୀ
ସୁଜଳା ସୁଫଳା ହେଉ ତମର ପୃଥିବୀ

କଫିନରେ ମୋର ଶବ ସୁସଜ୍ଜିତ ରହିଥାଉ
ମତେ ଆସି ଦେଖୁଥାନ୍ତୁ ନିର୍ଲିପ୍ତ ଆଖିରେ
ବିଗତ ଯୌବନା ଯେତେ
ମୋର ପୂର୍ବଜନ୍ମର ବାନ୍ଧବୀ

# କୌଣସି ସକାଳ ପାଇଁ

କୌତୂହଳ ନାହିଁ କିଛି ପ୍ରକୃତିର
ସବୁ କିଛି ନିଶ୍ଚଳ ଓ ଅପରିବର୍ତ୍ତିତ
ଏଭଳି ସ୍ଥିରତା ଯାହା ବାରମ୍ବାର ଆବର୍ତ୍ତନ

କ୍ରମାଗତ ବିସ୍ଫୋରଣ ଦିନ ଓ ରାତିର
ଯିବା ଏବଂ ଆସିବାର ବାଧ୍ୟବାଧକତା
ଏଠାରେ ଜୀବନ ଏକ ଚିରନ୍ତନ ପୁନର୍ଜନ୍ମ
ସମୟ ଏଠାରେ ଖାଲି
ଏକମାତ୍ର ମୁହୂର୍ତ୍ତର ପୁନଃପୌନିକତା

ତମେ ମୋ ପାଖରେ ଥିବ
ଦୁଇଟି ହାତର ସେତୁ
ରହିଥିବ ଶୂନ୍ୟକୁ ଆବୋରି
ସମୁଦ୍ରକୁ ଛୁଉଁଥିବା ସ୍ରୋତ ଥିବ
ସ୍ଥିର ଓ ସ୍ଥାବର
କ୍ରମାନୁଗତିକ ଭାବେ ଗତିଶୀଳ
ସମୁଦ୍ରର ପ୍ରତିକୂଳ ବିସ୍ତାର ଓ
ସମୟର ବିରକ୍ତି କେବଳ

ଆକାଶର ଥିବ ନାହିଁ ଅଭିଯୋଗ
ଯାହା କିଛି ଘଟୁଥିବ
ଛାଇ ଖାଲି ବିଭିନ୍ନ ପ୍ରକାର
ସମୁଦ୍ରରେ ଲହରୀର ନିରଙ୍କୁଶ ହସ
ଆକାଶରେ ଷଡଯନ୍ତ୍ର ରଂଗମାନଙ୍କର
ରଂଗର ମେଘରେ ଯାଇ ଆତ୍ମହତ୍ୟା
ମେଘ ଯାଇ ମିଶୁଥିବ ପକ୍ଷୀର ସ୍ୱରରେ
ପ୍ରତିଧ୍ୱନି ହେଉଥିବ
ସ୍ୱର ଯାଇ ଫୁଲର ଗନ୍ଧରେ
କିଛିକ୍ଷଣ ସମ୍ମୋହିତ ରହିବେ ସମସ୍ତେ
ଆକାଶ ସମୁଦ୍ର ମେଘ ବର୍ଣ୍ଣ ଗନ୍ଧ ସ୍ୱର
ତା ପରେ ଆସିବ ଏକ ଭୟଙ୍କର ନୀରବତା
ଅକସ୍ମାତ ବିନା ଆଡମ୍ବର

ନୀରବତା ଆସିବ ଏପରି
ଶୂନ୍ୟ ମୁହୂର୍ତ୍ତରେ ପ୍ରତିଧ୍ୱନି ହୋଇ

ନିର୍ବିରୋଧ ହସ ହୋଇ ଆଳାପ ମଝିରେ
କେବେ ବା ବିରାମ ହୋଇ
ଦୁଇ ଅନୁଭବର ସୀମାରେ
ଅନ୍ତରାଳ ସ୍ୱପ୍ନର
ଓ ବୟସର ମଧ୍ୟାନ୍ତର
ବ୍ୟବଧାନ ହାତ ଓ ହାତର
ନୀରବତା ରହିଥିବ ବିଦ୍ୟମାନ
ସମୁଦ୍ରର ଗର୍ଜନରେ
ଶିଶୁର ଚିତ୍କାର ଏବଂ ମନ୍ତ୍ରୋଚ୍ଚାରଣରେ
ଶବ୍ଦ ପରେ ଶବ୍ଦ ଯାହା ଶବ୍ଦମାନ
ଉଚ୍ଛ୍ୱସିତ ଶବ୍ଦର ବନ୍ୟାରେ

ରାତି ସବୁ ଶୋଚନା ଓ ଚିନ୍ତାହୀନ
ଅନ୍ଧାର ଏଠାରେ ଥିବ ପରିମାପ
ନିରାନନ୍ଦ ଜୀବନ ଯାତ୍ରାର
ଆମ ଅପେକ୍ଷାରେ ଥିବେ ଗଛ ସବୁ ଉଚ୍ଚକିତ
ଦୁଇଟି କୂଳରେ ସେତୁ ରହିଥିବ ଅପରିବର୍ତ୍ତିତ
କେବେ ତମ ସହିତ
ଓ କେବେ କେବେ ତମ ଅଭାବରେ
ସୁଦୂର ସକାଳ ସବୁ
ପରିପୂର୍ଣ୍ଣ ହେଉଥିବେ ନିର୍ଜନ ସ୍ୱପ୍ନରେ

ସମୁଦ୍ରର ନାହିଁ କିଛି ଉଦ୍‌ବେଗ ଏଠାରେ
ଲହରୀର ଧୈର୍ଯ୍ୟ ଏବଂ ଅପେକ୍ଷା ମଝିରେ
ସାମାନ୍ୟ ଭାବରେ ଯାହା ଲିପିବଦ୍ଧ ହେଉଥିବ
ପରିଚୟ ଆମ ଦହିଁଙ୍କର
ନିରୁତ୍ତାପ ବର୍ଣ୍ଣନାର ପ୍ରହେଳିକା
କ୍ରମ ଖାଲି ବିସ୍ମୟ ଓ ବିରାମ ଚିହ୍ନର

ଲହରୀ ଲିଭାଇ ନେଲେ ବାଲି ଓ ଶାମୁକା
ସଂପର୍କର ସ୍ୱଳ୍ପ ବିସ୍ତାରକୁ

ସୁଦୂର ସକାଳ ପାଇଁ ପ୍ରାର୍ଥନା ଜଣାଇ
ଆମ ଦୁହିଁଙ୍କର ହାତ
ଅବରୁଦ୍ଧ କରିଦେବ ଯାଇ
ସମୁଦ୍ରର ଶେଷ ସୂର୍ଯ୍ୟାସ୍ତକୁ

# ବାଲ୍‌କନିର ସକାଳ

ତମେ ଦିନେ ଆସିଥିଲ ଏପରି ସନ୍ଧ୍ୟାରେ
ପୁରୁଣା କାଗଜ ଭଳି ପଡ଼ିଥିଲେ
ଦିନର ମୁହୂର୍ତ୍ତମାନ
ରାସ୍ତାମାନେ ଶୋଉଥିଲେ ଅଳସ ନିଦରେ
ପ୍ଲାଟଫର୍ମ ଖାଲି ଥିଲା
ଶେଷ ଟ୍ରେନ ଚାଲି ଯିବା ପରେ
ରବିବାର ଝୁଲୁଥିଲା ମୋ କାନ୍ଥରେ ଅସହାୟ
ଉଦାସ ସମୟ ଏକା ଚୁପଚାପ ବସିଥିଲା
ସାମନାର ଖାଲି ଚଉକିରେ

ନିଃସଙ୍ଗ ମୋ ବିଛଣାରେ
ଇତସ୍ତତଃ ମୋର ଚାରିପାଖେ
ରାସ୍ତାରେ ହଠାତ ଦେଖା
ଅସମୟ ଫୁଟିଥିବା ଫୁଲ
ପ୍ରଥମ କେତୋଟି ସ୍ପର୍ଶ
ପୁରୁଣା ଗୀତର କେଉଁ ଅନିର୍ଦ୍ଦିଷ୍ଟ ସ୍ୱର
ଅବାନ୍ତର ପ୍ରଶ୍ନ ଏବଂ
ତା ଠାରୁ ଆହୁରି ବେଶୀ ଉଭଟ ଉତ୍ତର
ବସନ୍ତର ହଠାତ ଆସିବା ପୁଣି

ହଜିଯିବା ଭୟ ଓ ଚିନ୍ତାରେ
କେତେକ ପାଖରେ ଥିବା
କେବେ କେବେ ରହିଯିବା ଏକା
ସମୁଦ୍ରର ଅନ୍ତର୍ଦ୍ଧାନ ଦିଗ୍‌ବଳୟ ଅପସରି ଯିବା
ଜାହାଜର ବିପନ୍ନ ଅବସ୍ଥା
ଏବଂ ହାତଭର୍ତ୍ତି ନିର୍ଜୀବ ଶାମୁକା

ତମେ ମୋର କୋଠରୀରେ
ଥିବ ଅତି ଆକସ୍ମିକ ଭାବେ
ତମେ ହିଁ ଈଶ୍ୱର ତମେ
ଜଳ ସ୍ଥଳ ବ୍ୟୋମବ୍ୟାପୀ ତମେ ଅବତାର
ତମେ ହିଁ ପରମ ସତ୍ୟ
ଅତୀତ ଓ ଭବିଷ୍ୟତ
ବର୍ତ୍ତମାନ ଇହ ଏବଂ ପର
ତଳ ନୀଳ ସିଫନ ହିଁ ଏକାଧାରେ
ସମୁଦ୍ର ଓ ଆକାଶର ଘନିଷ୍ଠ ବିସ୍ତାର

ତମ ଦେହ ଶାନ୍ତ ବେଳାଭୂମିର ଉଦ୍‌ବେଗ
ଜଳପ୍ରପାତର ଯେତେ ବିଶ୍ୱସ୍ତତା ତମର ବାଳରେ
ଅଭିଶପ୍ତ ସହରର ସବୁ ଅନ୍ଧକାର ଥିବ
ଆଶ୍ରିତ ତମର ଦୁଇ ଉଦାସୀନ ଆଖିର ହ୍ରଦରେ
ତମର ହସରେ ଋତୁ
ଫୁଲ ଭଳି ପ୍ରସ୍ଫୁଟିତ ହେବେ
ଦିନ ସବୁ ପକ୍ଷୀ ଭଳି
ଉଡ଼ିଯିବେ ଲକ୍ଷ୍ୟହୀନ ହୋଇ
ରାତିର ଝରକା ସବୁ
ଖୋଲିଯିବେ ଦୂର ଦୂରାନ୍ତରେ
ତମ ସନ୍ନିଧିରେ ହେବ କାୟାକଳ୍ପ ମୋର
ଅମରତ୍ୱ ପାଇଯିବି
ମୁଁ ତମର ସାମାନ୍ୟ ସ୍ପର୍ଶରେ

ସକାଳର ବାଲ୍‌କନିରେ ଆମେ ଦୁଇଜଣ
ଚଟାଣରୁ ଖରା ଯାଇ ତରଳିବ
ଝରକାର ଅସ୍ୱଚ୍ଛ କାଚରେ
ରେଳଗାଡ଼ି ଚାଲିଯିବ ପୋଲ ଟପି ସହର ସୀମାକୁ
ତମେ କିନ୍ତୁ ଚୁପଚାପ ତମ ଆଖି
ପ୍ରାତଃ ସଂସ୍କରଣ କାଗଜର ଶୀର୍ଷକରେ
ତମ ବ୍ୟବହାର ଅତି ସମ୍ଭ୍ରମ ଓ ସମୀଚୀନ
ମୁଁ କହିବି ଅବାନ୍ତର କଥା ସବୁ
ମାପି ଚୁପି ଛୋଟ ଛୋଟ ଚା' ଚାମଚରେ

ମୋ ପାଖରେ କିଛି ପ୍ରଶ୍ନ ରହିଯିବ :
ମୁଁ ତମର ମନେ ଅଛି ମନେ ନାହିଁ
ମତେ ତମେ ଭଲ ପାଅ ଭଲ ନାହିଁ ପାଅ
ନିଶ୍ଚୟ ଆସିବ ତମେ ଆଉ ଦିନେ
ଏ ଆମର ଅନ୍ତିମ ବିଦାୟ
ସତ୍ୟ ଓ ଅସତ୍ୟ କିଏ
ବାଲ୍‌କନି ନା କୋଠରୀ
ନା ରାତି ନା ସକାଳ
ସମୁଦ୍ର ଆକାଶ ହ୍ରଦ
ପୃଥିବୀ ନା ତମେ ନା ଈଶ୍ୱର

ମୋ ଆଖିରେ ଏଇପରି
କିଛି ପ୍ରଶ୍ନ ରହିଯିବ
ତମ ଆଖି ନିରୁତ୍ତର ଥିବ
କେବଳ ଅତୀତ ପାଇଁ
ବଞ୍ଚିବି ମୁଁ କିଛି ଏ ସକାଳେ
ରାତିରେ ଯେପରି ମୋର ଭବିଷ୍ୟତ ପାଇଁ
କିଛି ମୃତ୍ୟୁ ହୋଇଥିବ

# ଅନ୍ଧାର ରାତି ସମୟ

ମୋ ପାଖରେ ଥିଲା ବେଳେ
ତମେ ଅନ୍ଧାର ହୋଇ ଯାଅ

ଏଭଳି ଘଟଣା ଯାହା
କେଉଁ ହେଲେ ନିୟମର ବଶବର୍ତ୍ତୀ ନୁହେଁ
ମଧ୍ୟାହ୍ନରେ  ଅନ୍ଧକାର
ଆକାଶରେ ସୂର୍ଯ୍ୟ ଥିବ ମୃତ ଓ ଅଦୃଶ୍ୟ
ଦୂରର ସଂଗୀତ ସବୁ
ଆସୁଥିବେ ନିଃଶବ୍ଦ ଭାବରେ
ଶବ୍ଦହୀନ ପ୍ରତିଧ୍ୱନି କୋଠରୀରେ
ଆକାଶରେ ସମୁଦ୍ରର ସ୍ୱାଦ
ଝରକାରେ ଦୃଶ୍ୟହୀନ ମୁହଁ
ଏବଂ ଇନ୍ଦ୍ରଧନୁ କଳା ଓ ଧଳାର
ଯାହା ଥିବ ସ୍ୱପ୍ନ
ତାହା ସତ୍ୟ ଥିବ ଏବଂ ଅନ୍ଧକାର

ତମେ ଆଖି ବନ୍ଦ କଲେ
ଝରକା ବନ୍ଦ ହୋଇଯିବ
ଏବଂ ତମେ ରାତି ହୋଇଯିବ

ଘର ଏକ ଚତୁଷ୍କୋଣ ଦ୍ୱୀପ
ମୋର ଚାରିପାଖେ ରାତିର ସମୁଦ୍ର
ବନ୍ଦ ହୋଇ ରହିଥିବି
ମୋ ନିଜର ଲଜ୍ଜା ଏବଂ ଅନ୍ତର୍ଦ୍ୱନ୍ଦ୍ୱ ନେଇ
କେହି ବି ଦେଖିବେ ନାହିଁ
ଆଉ ମୋର ଆଖିର ଯନ୍ତ୍ରଣା

କେହି ବି ଶୁଣିବେ ନାହିଁ
ନିର୍ଯ୍ୟାତିତ ମୋର ଚିତ୍କାରକୁ
ବତୀଘର ରହିଥିବ ଅପେକ୍ଷାରେ
ମୋ ପାପର ପ୍ରତୀକ ସ୍ୱରୂପ
ସଂପୂର୍ଣ୍ଣ ଅପରିଚିତ ହୋଇଯିବ
ନାଁ ଧରି ଡାକିବି ଯାହାକୁ

ସ୍ମୃତିସ୍ତମ୍ଭ ଉପରୁ ମୁଁ ଓହ୍ଲାଇବି
ଶୂନ୍ୟ ହାତ ଶୂନ୍ୟ ଅନୁଭୂତି
ଯେଉଁ ରାସ୍ତା ଆସିଥିଲି
କେବେ ଦିନେ ତୋରଣର ଅଭ୍ୟର୍ଥନା ନେଇ
ମୁଁ ଫେରିବି ସେ ରାସ୍ତାରେ
ଅର୍ଦ୍ଧନତ ପତାକା ମଝିରେ
ସବୁ ରଖି ଦେବି
ମୋର ଖେଳନାର ତରବାରୀ କଣ୍ଟାର ମୁକୁଟ

ଅବିଶ୍ୱସ୍ତ ଦୃଷ୍ଟିପାତ ମୁଖା ଓ ଛଳନା
ଜରିର ପୋଷାକ ମୋର ରକ୍ତ ମାଂସ ଶବ ଓ କଙ୍କାଳ
ଧ୍ୟାନ ଜ୍ଞାନ ଚିନ୍ତା ଯୋଗ ଏକାଗ୍ରତା ନିଷ୍ଠା ଓ ସାଧନା

ତମେ ମୋ ପାଖରେ ନ ଥିବ
ବିଚ୍ଛେଦର ମୁହୂର୍ତ୍ତମାନଙ୍କରେ
ତମେ ସମୟ ହୋଇଯିବ

## କ୍ରମାଗତ ଭାବେ

ଏ କ୍ରମର ଶେଷ ନାହିଁ
ସମୁଦ୍ରର ଢେଉ ଭଳି କିଛିକ୍ଷଣ
ଖେଳୁଥିବା ବାଲିରେ ଓ ପୁଣି ଯାଇ
ଝାସ ଦେବା ମଝି ସମୁଦ୍ରରେ

ସମୁଦ୍ର ତଟକୁ କେବେ ଛୁଇଁବା ଓ ଫେରିଯିବା
ସମୟର ଅସରନ୍ତି ଧୂସର ସ୍ରୋତରେ

ଆମର ସମସ୍ତ ସ୍ମୃତି ଅନିବାର୍ଯ୍ୟ ଭାବେ
ରହିଥିବେ ଘେରି ଆମ ଚାରିପାଖେ
ନିର୍ଦ୍ଧାରିତ ନିଶ୍ଚିତ କ୍ରମରେ
ସାଂକେତିକ ପଞ୍ଜୁରୀରେ ବନ୍ଦ ଥାଏ
କାଳ୍ପନିକ ପକ୍ଷୀ ଯେଉଁପରି
ଅସ୍ୱୀକାର କରି ଆମ ସ୍ଥିତିକୁ
ଓ ଉପେକ୍ଷାରେ ଆମର ଇଚ୍ଛାର
ଆମ ଚାରିପାଖେ ଥିବ ଅଦୃଶ୍ୟ ପାଚେରୀ
କେବେ ଆତ୍ମ ସମର୍ପଣ କରୁଥିବା ପ୍ରେମ
କେବେ ଆଶ୍ୱାସନା ଖୋଜୁଥିବା ସହଜ ମୃତ୍ୟୁର

କେବେ ସେ ପଞ୍ଜୁରୀ ଥିବ ଖୋଲା
ଥିବ ଆକାଶ ଆଚ୍ଛନ୍ନ
ନିମନ୍ତ୍ରଣ ଥିବ କିଛି ଆସନ୍ନ ମେଘର
ପକ୍ଷୀ ଉଡ଼ି ଚାଲିଯିବ ଅକସ୍ମାତ
ରଙ୍ଗୀନ ଆଶ୍ରୟ ଖୋଜି ଖୋଲା ଆକାଶରେ
ମେଘରୁ ମେଘକୁ ତାର
ଗୋପନୀୟ କଥାମାନ କହି
ଧକ୍‌କା ଖାଇ କେବେ କାହା ବନ୍ଦ ଝରକାରେ
ସେ ପୁଣି ଫେରିବ ତାର ପଞ୍ଜୁରୀକୁ
ଅଜ୍ଞାତ ଆକାଶମାନ ଆବିଷ୍କାର କରି
ଆଧ୍ୟାତ୍ମିକ ଆକାଶରୁ
ନୂଆ ନୂଆ ଅଭିଜ୍ଞତା ନେଇ

ଏ କ୍ରମର ଶେଷ ନାହିଁ
ପକ୍ଷୀର ଆସିବା ଯିବା
ପଞ୍ଜୁରୀରୁ ଆକାଶକୁ
ଆକାଶରୁ ପଞ୍ଜୁରୀକୁ ପୁଣି

କେବେ ସେ ପଞ୍ଜୁରୀ ଥିବ ଭରପୁର
ବିନା କାରଣରେ
ଗୀତ ଗାଉଥିବ ପକ୍ଷୀ
ଗାଇବାର ଖୁସିରେ କେବଳ
କେବେ ପୁଣି ସେ ପଞ୍ଜୁରୀ
ଖାଲି ଏବଂ ଶୂନଶାନ ଥିବ
ସ୍ମୃତି କିଛି ରହିଥିବ
ପ୍ରମାଣ ସ୍ୱରୂପ ଖାଲି ପକ୍ଷୀର ଥିବାର
ପଞ୍ଜୁରୀର ଆକାଶରୁ
ଆକାଶର ପଞ୍ଜୁରୀକୁ ଯିବା ଆସିବାର

ସମୁଦ୍ରର ଅସରନ୍ତି ଢେଉ ଭଳି
ଆମେ ଦୁହେଁ ଏଇପରି ଭାବେ
କେବେ ଏକାକାର କେବେ ସଂପୂର୍ଣ୍ଣ ବିଚ୍ଛିନ୍ନ
ଆମର ଦୂରତ୍ୱ ଥିବ
କେବେ କେବେ ଅତି ସନ୍ନିକଟ
ଯେପରି ସାନ୍ନିଧ ଥିବ
କେବେ କେବେ ଅତି ଦୂରବର୍ତ୍ତୀ
ସକାଳ ଖରାରେ କେବେ ଉଦ୍‌ଭାସିତ
କେବେ ପୁଣି ଅନ୍ଧାରରେ ସଂପୂର୍ଣ୍ଣ ବିଲୀନ

# ପ୍ରେମ ଏକ ଋତୁ

ବହୁ ବର୍ଷ ପରେ ପୁଣି
କାଲି ରାତି ଅକସ୍ମାତ ଦେଖିଲି ତମକୁ
ତମେ ଏବଂ ପ୍ରସ୍ତ ପ୍ରସ୍ତ ସମୟ
ଓ ବିସ୍ମରଣ ରାତି ଓ ଅନ୍ଧାର
ତମକୁ ମୁଁ ଚାହିଁଥିଲି ଯେଉଁ ଭଳି

ତମେ ଥିଲ ଠିକ ସେଇ ଭଳି
ମୋର ସବୁ ଗୋପନୀୟ ମୁହୂର୍ତ୍ତର
ଅସମ୍ଭବ ଯନ୍ତ୍ରଣା ସକଳ
କାଲି ରାତି ତମକୁ ମୁଁ ଦେଖିଲି ହଠାତ
ଆଉ ଭୟ ପାଇ ସ୍ୱପ୍ନ ଭାଙ୍ଗିଗଲା
କିଛି କି ପ୍ରଭେଦ ନାହିଁ
ପ୍ରେମ ଓ ଭୟର କିମ୍ବା ସ୍ୱପ୍ନ ଓ ପ୍ରେମର

ମନେପଡେ ବହୁ ବର୍ଷ ଆଗେ ଦିନେ
କିପରି ମୁଁ ପାଇଥିଲି ତମକୁ ଏକଦା
ଅତିକ୍ରମ କରି ମୋର ଦେହର ଦ୍ୱିଧାକୁ
ଏବଂ ସମୟର ବହୁବିଧ ବାଧା
ପ୍ରେମର ଅନେକ ମିଛ ପ୍ରତିଜ୍ଞା
ଓ ପ୍ରଲୋଭନ ତ୍ୟାଗର ଛଳନା
ଅନର୍ଥକ କଥାର କୁହୁକ
ଜୀବନଟା ସାରା ଏବଂ କେବଳ ତମକୁ
ମନେପଡେ ଅକସ୍ମାତ ଆବିଷ୍କାର କରିଥିଲି
ତମକୁ ମୁଁ କିଭଳି ଭାବରେ
ଆମର ସଂପର୍କ ଯାଇ ବିଜ୍ଞପିତ ହୋଇଥିଲା
କେଉଁ ଭଳି ବସନ୍ତର ପ୍ରାଚୀର ପତ୍ରରେ

ମନେପଡେ ଦିନେ ପୁଣି
ମୋ ପାଖରୁ ମୋର ଅଜ୍ଞାତରେ
ସବୁ ମୋର ବ୍ୟକ୍ତିଗତ ଅବସ୍ଥିତି
ଚାଲିଗଲେ ଦୂରରୁ ଦୂରକୁ
ବ୍ୟତୀତ ମୁହୂର୍ତ୍ତ ସବୁ
ହୋଇଗଲେ ଅସତ୍ୟ ସହସା
ତମକୁ ମୁଁ ହଜାଇଲି
ଅସତର୍କ ସଂଳାପ ମଝିରେ
ଆମର ସମସ୍ତ କାଲି ଚାଲିଗଲେ
ହାତଠାରି ରୁମାଲ ଉଡାଇ

ଆମର ସଂପର୍କ ଖାଲି ରହିଗଲା
ଟେବୁଲର ବ୍ୟବଧାନ
ଛୋଟ ଛୋଟ କଫି ପିଆଲାରେ

ରିମ ଝିମ ରିମ ଝିମ ବର୍ଷା
ମୋର ସାମୟିକ ଘର ଚାରି ପାଖେ
ମୋ ହାତରେ ଚା' କପ ଥରୁଛି
ଓ ମୋ ନିଜର ଭବିଷ୍ୟତ ଭଳି
ପବନରେ ଉଡୁଛନ୍ତି ଛିନ୍ନପତ୍ର ଦିନ ପଞ୍ଜିକାର
ମୁଁ ଭାବୁଛି ଜନ୍ମ ମୃତ୍ୟୁ ରୋଗ ଶୋକ କଥା
ମୁଁ ରହିଛି ସ୍ୱର୍ଗ ଏବଂ ନର୍କର ଭୟରେ
ମୁଁ ଦେଖୁଚି କେବେ କେବେ
ମୋ ନିଜର ମୃତ ଦେହ ଆସି
ଆଶ୍ରୟ ଖୋଜୁଛି କେଉଁ
ଗର୍ଭ ଅବା କଫିନ ଭିତରେ

ପ୍ରେମ ଯଦି ଏଇପରି
ଛୋଟ ଛୋଟ ମିଳନର ସାମାନ୍ୟ ସଂଗ୍ରହ
ଆମର ଜୀବନ ମୃତ୍ୟୁ
ଅସଂପୃକ୍ତ ମୁହୂର୍ତ୍ତର କ୍ରମାଗତ ଭୟ
ପରିଚୟ ବିସ୍ମୃତିର ସୀମାରେଖା
ଏଇପରି ଲିଭିଯାଏ ଯଦି
ସନ୍ଧ୍ୟାର ମରଣ ଇଚ୍ଛା ହୋଇଯାଏ
ସକାଳର ବଞ୍ଚିବାର ମୋହ

ପ୍ରେମ ଓ ବିଚ୍ଛେଦମାନ
ସକାଳର ବିସ୍ମୟ ଓ ସଂଧ୍ୟାର ସଂଶୟ
ସବୁ ଯଦି ଏଇପରି ଅସ୍ତବ୍ୟସ୍ତ କରିଯାଏ
କେବଳ ସମୟ

# ଆମର ବୟସ୍କ ପ୍ରେମ

ସ୍ମୃତି କିଛି ସ୍ୱପ୍ନ ଭଳି
ମେଘର ରହସ୍ୟମୟ ଅନେକ ଆକାର
ଅମାୟିକ ଆକାଶରେ ଇନ୍ଦ୍ରଧନୁ
ବିସ୍ଫୋରଣ ସହସ୍ର ରଙ୍ଗର
କଳା ଓ ଧଳାର ହାଲ୍‌କା ଆତ୍ମୀୟତା
କେବେ କେବେ ସବୁଜର ସ୍ନେହ
ପକ୍ଷୀଙ୍କ କାକଳୀ ଏବଂ ଫୁଲଙ୍କ ହସରେ ଥିବା
ବହୁବିଧ ବିବର୍ଣ୍ଣ ବିଦ୍ରୋହ
ଯାହାକୁ ଲିଭାଇ ପାରେ ନୀରବତା ଦେଇ
କେବେ ବାଇଗଣି ରଙ୍ଗର ଉତ୍ସାହ

ସ୍ୱପ୍ନ କିଛି ସ୍ମୃତି ଭଳି
ଦାନବବିହୀନ ରୂପକଥାର ସାମ୍ରାଜ୍ୟ
କିନ୍ନରୀ ଓ ଗନ୍ଧର୍ବଙ୍କ ସମର୍ଥନ ସପ୍ତମ ସ୍ୱର୍ଗରେ
ଅସରନ୍ତି ସମୟର ସମ୍ବେଦନା
ଅନୁଭୂତିମାନଙ୍କର ଅଦ୍ଭୁତ ଉଷ୍ମତା
ବିଶ୍ୱସ୍ତ ଓ ବାସ୍ତବିକ ପ୍ରେମ
ଯାହା ସମ୍ଭାବିତ ହୋଇଥାଏ ଅଠର ବର୍ଷରେ

ଛାଇ ଲେଉଟିବା ବେଳେ
ଆମେ ଥିବା ଅତିକ୍ରାନ୍ତ ବିଦାୟୀ ରାସ୍ତାରେ
ବିକେନ୍ଦ୍ରିକ ସ୍ଥିତି ନେଇ
ସମୟର ସଂଶିତ ସୀମାରେ
ଧାର କରି ଆଣିଥିବା ପ୍ରେମ ଦେଇ
ପରସ୍ପର ମୁହଁକୁ ଅନାଇ
ଦୈନନ୍ଦିନ ମୁହୂର୍ତ୍ତକୁ ଗଣୁଥିବା

ଅହେତୁକ ଉଦ୍‌ବିଗ୍ନ ଭାବରେ
ଶୁଣୁଥିବା ଶାମୁକାରେ ସମୁଦ୍ରର
ଭୟଙ୍କର ଗର୍ଜନ ଅଥବା
ଫୁଲ ପାଖୁଡ଼ାରେ ଆମେ ଖୋଜୁଥିବା
ସମସ୍ତ ଅରଣ୍ୟ
ସ୍ମୃତି କିଛି ରଖୁଥିବା
ବନ୍ଦ କରି ବର୍ତ୍ତମାନ ସ୍ଥିତିର ଘେରରେ
ସାରାରାତି ବସିଥିବା ହାତରେ ହାତକୁ ଧରି
ପ୍ରତ୍ୟାଗତ ସ୍ୱପ୍ନର ଆଶାରେ

ଆମର ଏଠାରେ ଥିବା
ସାଧାରଣ ଯୁକ୍ତି ସବୁ ଅପ୍ରମାଣ କରି
ସମାନ୍ତର ଚାଲିଥିବ
ସମାନ ଭାବରେ ଦୁଇ କାଳର ଲହରୀ
ଅନୁର୍ବର ଆକାଶରେ
ରଙ୍ଗର ଫସଲ କିଛି
ସମୁଦ୍ର ମଝିରେ ଥାଇ
ଦ୍ୱୀପଠାରୁ ସାନ୍ତ୍ୱନା କିଞ୍ଚିତ
ଫୁଲ ଫୁଟିବାର କିଛି ସମ୍ଭାବନା
ମୃତ ଏବଂ ରିକ୍ତ ମୃତ୍ତିକାରେ
ଶୂନ୍ୟଗର୍ଭ ନିଃଶବ୍ଦରେ
କିଛି କ୍ଷଣ ସ୍ୱର୍ଗୀୟ ସଂଗୀତ
ସ୍ମୃତି କିଛି ଜଡ଼ିଥିବ ସ୍ୱପ୍ନ ଭଳି
ସମୟର ବିସ୍ତାର ଦେହରେ

ବୟସ୍କ ଆଖିରେ ଆମେ ଦେଖୁଥିବା
ପ୍ରାତ୍ୟହିକ ଅଭିଜ୍ଞତା ନେଇ
ଦେହର ଆଶ୍ଚର୍ଯ୍ୟମୁଗ୍ଧ
ଅନଭିଜ୍ଞ ଉତ୍ତେଜନା ଆମ ଦୁହିଁଙ୍କର
ନିରାପଦ ବତୀଘରୁ ଦେଖୁଥିବା
କେଉଁ ଭଳି ପହଁରୁଛୁ ଆମେ
ଭୟଙ୍କର ଲହରୀର ଦୌରାତ୍ମ୍ୟ ନ ମାନି

ସାରା ସମୁଦ୍ରକୁ ଦୁଇଭାଗ କରି
ଆମେ ଦେଖୁଥିବା ବସି
ଶୀତତାପ ନିୟନ୍ତ୍ରିତ କୋଠରୀ ଭିତରେ
ରାସ୍ତାରେ ଯାଉଚୁ ଆମେ ନିର୍ବିକାର
ହାତ ଧରି ଅତି ଅବଜ୍ଞାରେ
ବୈଶାଖ ଖରାରେ ଜଳି
କେବେ ପୁଣି ଥରି ଥରି ପୌଷର ଶୀତରେ

ରୂପକଥା ଶେଷ ହେଲେ ସକାଳର ସ୍ୱପ୍ନ ଭଳି
ଇନ୍ଦ୍ରଧନୁ ମିଶିବ ମେଘରେ
ସ୍ମୃତି ସବୁ ମିଶିଯିବେ ଦୈନିକ ସ୍ଥିତିରେ
ଏବଂ ସ୍ୱପ୍ନ କିଛି ଖିନଭିନ ହେବ
ଆକାଶରୁ ରଙ୍ଗ ସବୁ ତରଳିବେ
ଅସ୍ପଷ୍ଟ ଓ ଧୂସର ପ୍ରସ୍ତରେ
ସମୁଦ୍ର ଉଛୁଳି ଯିବ ଶାମୁକାରୁ
ଦିନ ସବୁ ମୁକୁଳିବେ ଘଣ୍ଟାର ମୁହଁରୁ
ବଞ୍ଚିବା କେବଳ ହେବ ପ୍ରବଞ୍ଚନା
ଛାଇମାନେ ଫେରିଯିବା ବେଳେ

ଏଥରକ ସବୁ କଥା ଭୁଲିବାର ବେଳ
ଆଉ ବୁଝାମଣା ନାହିଁ ବୟସର
ଏ ଭଳି ସତ୍ତାକୁ ଯାହା
ଭାବୁଥିଲେ ଅଲୌକିକ ସମ୍ଭାବନାମୟ
ପ୍ରତାରଣାପୂର୍ଣ୍ଣ ଏହା କାଳର ଅଦ୍ଭୁତ ଗତି
ସମୟର ପ୍ରମାଦ କେବଳ

# ସମୟର ଉଦ୍‌ବୃତ୍ତ କ୍ଷଣ

ପ୍ରତିଦିନ ଛାଇ ପଡେ ଆକାଶରେ ସମୁଦ୍ରରେ
ଛାଇ ପଡେ ଜଳନ୍ତା ନିଆଁରେ
ପ୍ରତିଦିନ ଛାଇପଡେ ଏ ଘରର ଛାତରେ କାନ୍ଥରେ
ଚେତନାର ନିଭୃତ କୋଣରେ

ଏଭଳି ଏ ଘର ଯାହା ମୋର ନୁହେଁ
ଖାଲି ଯାହା କ୍ଷଣିକ ଭାବରେ
ନିଜର ସ୍ୱତ୍ୱକୁ ଧରି ରଖିଥାଏ
ପୁଣି କେଉଁ ଏକାନ୍ତ କ୍ଷଣରେ
ଏକାକୀତ୍ୱ ଅଧିକାର କରିନିଏ ଏ ଘରକୁ
ମୁଁ ଯେବେ ଏଠାରେ ଥାଏ ନିଃସଙ୍ଗ ଭାବରେ

ଯଦିଓ ଅନେକ ଋତୁ
ଆସିଥାନ୍ତି ଘର ସୀମାନାକୁ
ପାର୍କର ରହସ୍ୟମୟ ପ୍ରସନ୍ନ ହସରେ
ମୋ ପାଇଁ ଅଜ୍ଞାତ ହୁଏ ସବୁ କିଛି
ମୋର ଚିଠି ମୋର ବହି ଏବଂ ମୋର ଛାଇ
ପକ୍ଷୀ ଚାହେଁ ନ ଜାଣିବା ପାର୍କର ଫୁଲକୁ
ନିଜର ହାତରେ ଗଢ଼ା
ବନ୍ଦୀଶାଳା ନିଜ ବିଚାରର
ବିସ୍ମୟରେ ଦେଖୁଥାଏ
ସାରାଦିନ ବିବର୍ଣ୍ଣ କାନ୍ଥକୁ

ମୃତ୍ୟୁକୁ ସମାନ ମୂଲ୍ୟ ଦେଉଥିବ
ସେନାପତିମାନଙ୍କର ଜୟଲାଭ
ମୁନି ଋଷିମାନଙ୍କ ସାଧନା
ପକ୍ଷୀମାନେ ଆଣୁଥିବେ ଆକାଶକୁ
ଅବିରତ ନିଜର ଡେଣାରେ
ସମୁଦ୍ର ବି ଆସୁଥିବ
ସଂଗୋପନ ଶବ୍ଦ ଓ ସ୍ୱାଦରେ
ମୋ ଦେହର ପଞ୍ଜୁରୀରେ
ଛଟପଟ କରୁଥିବ ଆତ୍ମାର ଛଳନା
ସ୍ମୃତି ଆସୁଥିବ ଧୀରେ
ଛପି ଛପି ଜହ୍ନ ଆଲୁଅରେ
ତମେ ଥିବ ପୂରାପୂରି ଅଙ୍କ ମୋର

ଅଭିଳାଷୀ ଆଖି ବିଷୟରେ
ତମ ହସ୍ତାକ୍ଷର ଯାହା ବ୍ୟତିବ୍ୟସ୍ତ ହେଉଥିବ
ସଙ୍ଗହୀନ ଅସ୍ତିତ୍ୱରୁ ନିସ୍ତାର ଇଚ୍ଛାରେ

ତମେ କେବେ ଆସିବ ଓ ଚାଲିଯିବ
ମୁଁ ଥିବି ଅକ୍ଷମ ଅତି
ଛୁଇଁବାକୁ ପାର୍କର ଫୁଲକୁ
ବଶୀଭୂତ କରି ମତେ ରଖିଥିବେ
ମୋ ନିଜର ବହୁବିଧ ଭୟ
ଯାହା କେବେ ମୃତ୍ୟୁ
କେବେ ପ୍ରେମ କେବେ କେବଳ ସମୟ
କେବେ ଯାହା ରହିଥାଏ ମ୍ରିୟମାଣ
ବିବେକର ବାହୁଚ୍ଛାୟା ତଳେ
କେବେ ଥାଏ ଅଧିକୃତ ସକାଳେ ବା
ଅତିକ୍ରାନ୍ତ ଉତ୍ତୀର୍ଣ୍ଣ ସନ୍ଧ୍ୟାରେ

ଆକାଶର ରାସ୍ତା ଥିବ ମୋ ଆଗରେ
ମେଘର ଓଭରବ୍ରିଜ
ବତୀଖୁଣ୍ଟମାନଙ୍କରେ ତାରାର ଆଲୁଅ
ନିୟନ୍ତ୍ରିତ ରହିଥିବ
ଦ୍ରୁତଗାମୀ ନକ୍ଷତ୍ର ଓ ଗ୍ରହର ଟ୍ରାଫିକ
କିଂକର୍ତ୍ତବ୍ୟବିମୂଢ଼ ମୁଁ
ଛାୟା ପଥ ଅନ୍ତିମ ଛକରେ
ଚାହିଁ ରହିଥିବି କେବେ
ଟ୍ରାଫିକ ବତୀର ଆଖି
ଲାଲରୁ ସବୁଜ ହେବ ପୃଥିବୀର ବିବର୍ତ୍ତନ
ନକ୍ଷତ୍ରର ଭାରସାମ୍ୟ ମାଧ୍ୟାକର୍ଷଣରେ

ଅଲୌକିକ ଆଲୋକରେ ନିର୍ବାସିତ
ସମୟର ଉଦ୍‌ବୃତ୍ତ କ୍ଷଣରେ
ଯାହା ସବୁ ଜୀବନର ପ୍ରଶଂସାରେ

କେବେ ଦିନେ ଶତମୁଖ ଥିଲା
ରହିଯିବ କେବଳ ସ୍ମରଣ
ସ୍ମୃତି ସବୁ ଚାଲିଗଲେ ବିଦେଶ ଯାତ୍ରାକୁ
ତମ ପାଇଁ ଲେଖାଥିବା କବିତାର ପଂକ୍ତିମାନ
ଅନୁଭୂତି ରଙ୍ଗ ନେଇ ହୋଇଯିବେ
କଳଙ୍କିତ ନିସ୍ତେଜ ମଳିନ
ଅନାୟାସ ବୁଲିଯିବ ଟିକ ଟିକ
ସମୟର ହାତ ଆଉ ଥରେ
ମୁଁ ଛକ ଉପରେ ଥାଇ ଘଣ୍ଟା ମିନିଟକୁ ଠିକ
ମିଳାଇବି ମୋ ହାତ ଘଡ଼ିରେ
ଏବଂ ଆଉ କିଛି ଛାଇ ଆସି
ମାଡ଼ି ଯିବେ ମୋ ଚାରି ପାଖରେ

## ହାୟ ମୋ ଦୁର୍ଭାଗ୍ୟ

ଦୁର୍ଘଟଣା ଘଟିଥିଲା
ଆଜିଠାରୁ ବାର ଘଣ୍ଟା ଆଗେ
ବିନା ନିର୍ଘଣ୍ଟରେ ଆସି
ଦୁଇ ମିନିଟ ଅଟକିଲା ଟ୍ରେନ
ଗୋଳମାଳ ହୋଇଗଲା ସବୁ କିଛି
ଷଡଯନ୍ତ୍ରକାରୀଙ୍କ ଭୟରେ
ପାର୍କରେ ପହରା ଏବଂ
ଖବରକାଗଜ ଭର୍ତ୍ତି ହତ୍ୟା ଓ ଲୁଣ୍ଠନ
ନର୍ସରୀ ସ୍କୁଲରେ ସେନା ଛାଉଣି
ଓ ସଡକରେ ପୁଲିସ ପ୍ୟାରେଡ୍
ଗମ୍ବୁଜ ଉପରେ ଚିଲ
ବ୍ଲଡ୍‌ବ୍ୟାଙ୍କ ଉପରେ ଶାଗୁଣା
ଟ୍ରେନ ଖାଲି ଦୁଇ ମିନିଟ ଅଟକିଲା

ଗୋଳମାଳ ହୋଇଗଲା
ସବୁଜ ଓ ଲାଲ ପତାକାର
ସିଗନାଲ ଭଳି ତମ ଆଖି ପତା
ଥରେ ମାତ୍ର ତଳକୁ ନଇଁଲା

ମୁଁ ଦେଖିଲି ମୁଁ ରହିଛି ଏକୁଟିଆ
ପ୍ଲାଟଫର୍ମ ଉପରେ
ଏଠାକୁ ଆସିବା ମୋର ଯଦିଓ ନଥିଲା
କେବେ କାର୍ଯ୍ୟକ୍ରମ ପ୍ରାତଃଭ୍ରମଣରେ
କିଏ ଅବା ଜାଣିଥିଲା
ଭୁଲ ଟ୍ରେନ ପହଞ୍ଚିବ ଅସମୟ ଆସି
ସବୁ ବିପର୍ଯ୍ୟସ୍ତ ହେବ
ଯଦିଓ ମୋ ପକେଟରେ ଅନେକ ଠିକଣା
ସାମନାରେ ଏକା ତମେ ରହିଥିବ
ଅତି ଅନ୍ୟମନସ୍କ ଭାବରେ
ଅନ୍ୟଥା ମୁଁ ଭୀତତ୍ରସ୍ତ ହେଉଥିବି
ସାଇରେନ ସିଟି ଏବଂ
କୋଇଲା ଓ ବାରୁଦ ଧୂଆଁରେ

ହାୟ ମୋ ଦୁର୍ଭାଗ୍ୟ
ଯାହା ପଢ଼ିଲି ମୁଁ ତମର ପ୍ରେମରେ
ଯାହା କିଛି ପଢ଼ିଥିବା କାବ୍ୟ ସବୁ
ଭୁଲ ବୋଲି ପ୍ରମାଣିତ କରି
ତମ ଓଠ ଲାଲ ନୁହେଁ
ତମ ଆଖି ମାଛ ଭଳି ନୁହଁ
ତମ ନାକ ଚେପ୍‌ଟା
ତମ ରଂଗ କଳା ଉଚ୍ଚତା ବି କମ
ଜନରବ ଅପବାଦ
ଅନେକ ଗୁଜବ ଅଛି ତମ ବିଷୟରେ
ତମେ ପୁଣି ଭଲ ପାଅ ଅନ୍ୟ କାହାରିକୁ
ତଥାପି କାହିଁକି ଏଠି

ଟ୍ରେନ ଆସି ଅଟକିଲା ଦୁଇମିନିଟ
କହିଁକି ଏଠାରେ ହେଲା ଦୁର୍ଘଟଣା
କାହିଁକି ଏପରି ଥରେ ସିଗନାଲ ନଇଁଲା ତଳକୁ

ହୋଇ ପାରିଥାଅ ତମେ
ଦେବୀ କେଉଁ ଅଦ୍ଭୁତ ଦେଶରେ
କେଉଁ ଏକ ବୁଦ୍ଧିହୀନ ଜୀବ
ପଡ଼ି ପାରିଥାଏ ତମର ପ୍ରେମରେ
ମୁଁ କିନ୍ତୁ ବୁଝୁଛି ଠିକ
ସବୁ କିଛି ସୁସ୍ଥ ମସ୍ତିଷ୍କରେ
ତମ ପାଇଁ ଲେଖା ନୁହେଁ
କେବେ ମୋର କବିତାରୁ କିଛି
ପ୍ରେମ ବିନା ଜାଣି ରଖ
ଶହେ ବର୍ଷ ନିଶ୍ଚୟ ବଞ୍ଚିବି
କବିତା ବି କେହି କେବେ ପଢ଼େ ନାହିଁ
ଠିକ ମୁଁ ଜାଣିଛି

ସହରରେ ଦୁର୍ଘଟଣା କର୍ଫ୍ୟୁ
ଓ ମାର୍ଶାଲ ଲ' ହୋଇଯାଉ
ମୁଁ ଆଉ ଆସିବି ନାହିଁ
ଷ୍ଟେସନକୁ ପ୍ରାତଃଭ୍ରମଣରେ
ତମେ ମୋ ଆଗରେ ଥାଇ
ଯେତେ ଥର ଚାହାଣୀର ସିଗ୍‌ନାଲ ଦେଲେ ବି
ମୁଁ ତମକୁ ନ ଅନାଇ ପାରେ
ଏବଂ ଅତି ଅନାୟାସ ଭାବେ
ତମ ଫଟୋକୁ ବି କେବେ
ଇଚ୍ଛା ହେଲେ ଟିକ ଟିକ ଚିରି ଦେଇପାରେ

ମତେ ତମେ କ୍ଷମା କର
ଏବେ ଆଉ ବେଳ ନାହିଁ
ତମେ ଯଦି ଇଚ୍ଛା ହୁଏ

ଆସି ପାର ଅନ୍ୟ ସମୟରେ
ଦୁଇ ମିନିଟ ସ୍ୱପ୍ନରେ

## ପ୍ରଥମେ କେବଳ ଶୂନ୍ୟ

ପ୍ରଥମେ କେବଳ ଶୂନ୍ୟ
ସୂର୍ଯ୍ୟାଲୋକ ଫେରିଯାଏ ଅନେକ ନକ୍ଷତ୍ର ଲୋକ
ପରିକ୍ରମା ଶେଷ କରି ପୁନଶ୍ଚ ଶୂନ୍ୟକୁ
ଅନେକ ଆଲୋକ ବର୍ଷ ଅନ୍ୟ ପୃଥିବୀକୁ
ଯେପରି ସରଳରେଖା
କ୍ରମେ ଯାଇ ବିନ୍ଦୁରେ ନିମଗ୍ନ
ଅନ୍ୱେଷଣ ଯେଉଁପରି ହୋଇଯାଏ
ବୃତ୍ତାକାର ଶୂନ୍ୟରେ ନିଷ୍ପନ୍ନ

ଛାୟାପଥ ଶୂନଶାନ ପଥର କବାଟ ବନ୍ଦ
ଚଟାଣରେ ମଲା ଲୋକ
ଚାରି ପାଖେ ଅଭେଦ୍ୟ ଅନ୍ଧାର
ଛୁଇଁବାକୁ ଆସି ତାକୁ ଫେରିଯିବେ
ଜଳୁଥିବା ତୀର ସବୁ ମଧ୍ୟାହ୍ନ ସୂର୍ଯ୍ୟର
ଏ ଘରର ପରିଧିରୁ
ଯେଉଁପରି ଆକାଶ ଅଦୃଶ୍ୟ
ଆକାଶର ପରିଧିରୁ
ଘର ଥିବ ପୂରାପୂରି ଦୃଷ୍ଟି ଅଗୋଚର

ଘର ଥିବ ନିଷ୍ପ୍ରଦୀପ
ବଞ୍ଚିଥିବା ଲୋକମାନେ ପୁନର୍ଜନ୍ମ ନେଉଥିବେ
ଟକ ଟକ କରୁଥିବ ଦୀପ୍ତି ତାଙ୍କ ସଫେଦ ଜନ୍ମର

ନିର୍ବିକାର ଶୋଇଥିବେ ପଥରର ମୂର୍ତ୍ତିମାନେ
ସହସ୍ର ଗ୍ରୀଷ୍ମ ଓ ଶୀତ ଋତୁ ନେଇ
ନିରାସକ୍ତ ଦେହରେ ତାଙ୍କର
କ୍ଷୟପ୍ରାପ୍ତ ହେଉଥିବେ ପ୍ରତି ମୁହୂର୍ତ୍ତରେ
କିନ୍ତୁ ଓଠରେ ତାଙ୍କର ହସ
ସର୍ବଂସହା ଅନେକ ପ୍ରେମର

ଅଜାତ ଶିଶୁ ଓ
ପୂର୍ବ ପୁରୁଷଙ୍କ ମଲା ଦେହ
ବନ୍ଦ ଥିବେ ଏକା କବରରେ
କିଛି ବି ଅନ୍ତର ନାହିଁ ଯେପରିକି
ମୃତ୍ୟୁ ଏବଂ ଜନ୍ମ ନ ହେବାରେ
ଏ ଘର ଯେପରି ଏକ
ପ୍ରବେଶ ଓ ପ୍ରସ୍ଥାନର ଦ୍ୱାର
କିଛି ଲୋକ ରହିଥିବେ ଘରେ
ପୂର୍ବ ପୁରୁଷଙ୍କ ସାରା କୃତିତ୍ୱ ହିସାବ କରି
ଗୋଟିଏ ହାତରେ ଥିବ ବରାଭୟ
ମଣିଷର ଭାଗ୍ୟ ମାପି ବଞ୍ଚି ରହିବାକୁ
ଭିକ୍ଷାଥାଳ ଧରିଥିବେ ଅପର ହାତରେ

ଛମଛମ କରୁଥିବ ଜହ୍ନରାତି
ରାସ୍ତା ଥିବ ନିଝୁମ ନିର୍ଜନ
ସହରର ସବୁ ଲୋକ
ଆନନ୍ଦରେ ଗୀତ ଗାଇ
ସାରାରାତି ଖୋଳୁଥିବେ ଅନେକ କବର
ସେମାନଙ୍କ ସମବେତ କଣ୍ଠସ୍ୱର
ତୋଳୁଥିବ ଅପୂର୍ବ ଗୁଂଜନ
ଯଦିଓ ତା କେହି ବୁଝେ ନାହିଁ
ପ୍ରତିଧ୍ୱନି ହେଉଥିବ ବାରମ୍ବାର
ପ୍ରତ୍ୟେକଟି ଶୂନ୍ୟ ଘରେ ଯାଇ

ମେଘର ଅନେକ ମୁହଁ
ଅନ୍ତର୍ହିତ ହୋଇଗଲେ ଶେଷ ପ୍ରହରରେ
ସେମାନେ ଫେରିବେ ମୃତ ପଳାତକ
ଲୋକଙ୍କର ସ୍ମୃତି ନେଇ ଘରକୁ ନିଜର
ଗୋପନ ଓ ଆରଣ୍ୟକ ଇଚ୍ଛା ଦେଇ
ସେମାନେ ଗଢ଼ିବେ କିଛି
ସଂପୂର୍ଣ୍ଣ ଅସତ୍ୟ କିନ୍ତୁ ଆଶ୍ଚର୍ଯ୍ୟ ସହର

ସ୍ୱପ୍ନରେ ଆହୁରି ସ୍ୱପ୍ନ କେବେ କେବେ ଥିବ
ପୃଥିବୀର ପରିକ୍ରମା ଯେଉଁପରି
ସମୁଦ୍ର ଓ ମହାଦେଶ ନେଇ
ନିଜ ନିଜ ଶୋକଗୀତ ଗାଉଥିବା
ତାରା ଏବଂ ନକ୍ଷତ୍ର ଭିତରେ
ପୃଥିବୀ ଆଗରୁ ଯାହା ସହନ କରିଛି ତାକୁ
ନବାଗତମାନେ ସବୁ ଭୁଲି ଯାଇଥିବେ
ସେମାନଙ୍କ ଜନ୍ମ ମୃତ୍ୟୁ ଦିନ ରାତି
ହେଉଥିବ କେବଳ ସ୍ୱପ୍ନରେ
ସାବ୍ୟସ୍ତ କରିବା ପାଇଁ ପୁନଶ୍ଚ ଦିନକୁ
ପ୍ରତି ସକାଳର ପ୍ରତ୍ୟାବର୍ତ୍ତନରେ

ଚୁପ ଚୁପ କଥା ସବୁ ଅରଣ୍ୟକୁ ଉଡ଼ିଯିବେ
ମୁହଁମାନ ପୋଛି ନେବ ସମୁଦ୍ରର ସ୍ୱର
ସେଠାରେ ଅଦୃଶ୍ୟପ୍ରାୟ
ଆକାଶର ପାହାଚରେ ଥାଇ
ଅପହୃତ ଦିନ ପାଇଁ
ରହିଥିବ ଶୋଚନା ସୂର୍ଯ୍ୟର
ଲୁହ ଥିବ ଆକାଂକ୍ଷାର ସଂପୂର୍ଣ୍ଣତା ପାଇଁ
ବ୍ୟକ୍ତିଗତ ମନସ୍ତାପ ରହିଥିବ
ବଞ୍ଚିବାର ପ୍ରତ୍ୟେକ ସ୍ତରରେ
ଅନେକ ଆକାର ଯାହା
ଭାଙ୍ଗିଯିବ ନାହିଁ କିନ୍ତୁ

ପ୍ରତିବିମ୍ବ ହେଉଥିବ ମହା ସମୁଦ୍ରରେ

ଯଦିଓ ଆମର ମନ
ମୁକ୍ତ ଓ ଶୋଚନାହୀନ
ଶ୍ମଶାନରୁ ଫେରିବା ବେଳରେ
ବାରମ୍ବାର ସଚେତନ ହେଉଥିବ
ଭୟ ଓ ଶଂକାରେ
ଆମେ ଥିବା ସନ୍ଦିଗ୍ଧ ଓ ଅତି ସନ୍ଦିହାନ
ଆମର ନିଦ୍ରିତ ଏବଂ ଜାଗ୍ରତ ଅବସ୍ଥା
ଏକାଧାରେ ସ୍ୱପ୍ନହୀନ ନିଦ୍ରା ଥିବ
ଏବଂ ଥିବ ଅନ୍ତିମ ନିର୍ବାଣ
ଆମକୁ ନ ଥିବ ଜଣା
ଯାହା କିଛି ରହିଗଲା ବାକି
ଧରି ରଖିଥିବୁ ଆମେ ଅତି ସଯତ୍ନରେ
ପରସ୍ପର ଅଧିକାର ଦୁଇହାତ ଦେଇ
ଏପରି ସାନ୍ତ୍ୱନା ଯାହା ମୃତ୍ୟୁର ସ୍ମାରକୀ

କେହି ନାହିଁ ଦେବଦୂତ
କାନ୍ଥରେ ଲେଖିବ ଆସି
ନିରଂକୁଶ ଆତ୍ମାର ଉଲ୍ଲାସ
କେହି ନାହିଁ ଅବତାର ସମ୍ଭବିବ ଏବେ
ଚିହ୍ନିତ ଇଲାକା ହେବ ସମତଳ
ଅସରନ୍ତି ନିଆଁ ଆସି
ଏକତ୍ର କରିବ ଶେଷ ସତ୍ୟର ନିର୍ଯାସ
ନିଲାମରେ ବିକି ଯିବ ସବୁ କିଛି
ଚାଲି ଯାଇଥିବା ଲୋକ
ଚିହ୍ନ ଯାହା ରଖି ଯାଇଥିବେ

ମୁଠା ମୁଠା ରଙ୍ଗ ଗନ୍ଧ
ଆକାର ବିହୀନ ସ୍ମୃତି କବର ଭିତରେ
ଶୂନ୍ୟକୁ ଆଶ୍ଲେଷ କରି ରହିଥିବ

# ସାକ୍ଷାତ ଗୋଟିଏ ଦିନ

ତମକୁ ମୁଁ ଦେଖିଥିଲି ପ୍ରଥମେ କେଉଁଠି କେବେ
କେଉଁ ଦିନ ଠିକ କେଉଁ ଦିନ
ସକାଳ ନା ସନ୍ଧ୍ୟା ଥିଲା
ପାର୍କ ନା କବରଖାନା ଟ୍ରାମ ପ୍ଲାଟଫର୍ମ
ଆକାଶରେ ଜହ୍ନ ଥିଲା ମେଘ ଥିଲା
ଉଲ୍‌କା ଥିଲା ଇନ୍ଦ୍ରଧନୁ ଥିଲା
ବଜାର ନା ଶୋଭାଯାତ୍ରା
ପାହାଚ ନା ଫୁଟପାଥ ନିଷିଦ୍ଧ ଗଳିରେ
ପ୍ରଥମ ବସନ୍ତ ଥିଲା ବର୍ଷା ଥିଲା ଶୀତ ଥିଲା
ଶୂନଶାନ ନଈକୂଳ ଥିଲା
ପ୍ରଥମ ସାକ୍ଷାତ ହେଲା କେଉଁ ଦିନ କେଉଁଭଳି
ଅନିର୍ଦ୍ଦିଷ୍ଟ କେଉଁ ସୀମାନ୍ତରେ

କାନ୍ଥରେ କି ଛବି ଥିଲା ମନ୍ଦିରରେ କେଉଁ ମୂର୍ତ୍ତି
ଦୋକାନରେ ଭିଡ କେତେ ଭଳି
ମୋ ହାତରେ ଅଧା ପଢ଼ା କେଉଁ ବହି
ମୋ ଗିଲାସ କେତେ ଥିଲା ଖାଲି
ତମ ଫ୍ରକ୍ ନୀଳ ଥିଲା ତମ ଶାଢ଼ୀ ସବୁଜ
ନା କମଳା ନା ଗୋଲାପ ରଂଗର
ତମର ମୁହଁରେ ଥିଲା ରାଗରୋଷ
ହସ ମିଛ ଅଥବା ବିସ୍ମୟ
ତମର ବୟସ ଥିଲା ସତର ନା ସତାଇଶ

ଜୁଆର ନା ଭଟ୍ଟା ଥିଲା ତମର ଦେହରେ
ତମର ଆଖିରେ ଥିଲା କୌତୂହଳ ନିମନ୍ତ୍ରଣ
ଅନାସକ୍ତି ଅବିଶ୍ୱାସ ବିଷାଦ ନା ଭୟ

ପ୍ରଥମ ସାକ୍ଷାତ ଦିନ
ମୁଁ ଦେଖିଲି ତମକୁ ଓ କେବଳ ତମକୁ
ମୁଁ ଭାବିଲି ସେ ରାତି ବି ଜହ୍ନରାତି ହେବ
ଏବଂ ଋତୁ ହେବ କେବଳ ବସନ୍ତ
ମନରେ ଲାଗିବ ରଙ୍ଗ ମେଳା ହେବ
ସ୍ୱପ୍ନ ସବୁ ପୁଷ୍ପବତୀ ହେବେ
ସକାଳ ସନ୍ଧ୍ୟାର କ୍ଷଣ ମିଶିଯିବ
ସବୁ ହେବ ଆସନ୍ନ ସମ୍ଭବ
ଲାଲ ଓ ଗୋଲାପ ରଙ୍ଗ ଏକ ହେବେ
କେବଳ ଗୋଟିକ ଦିନ ସାକ୍ଷାତର
ଋତୁ ହେବ ମନ୍ୱନ୍ତର ହେବ

ସାକ୍ଷାତ ଗୋଟିଏ ଦିନ
ଦେଖା ହେଲା ଏଇପରି କେବଳ ପ୍ରଥମ
ଅସ୍ପଷ୍ଟ ଭାବରେ ହେଲା କଥା ସବୁ
ଅଧା ଛାଇ ଅଧା ଆଲୁଅରେ
ଆମର ସାକ୍ଷାତ ହେଲା ଥରେ ମାତ୍ର
କେଉଁ ଭଳି କି ଭଳି ଲଗ୍ନରେ
ଆମର ବିଚ୍ଛେଦ ହେଲା ଏକମାତ୍ର
ସଙ୍କୁଚିତ କାତର ସ୍ପର୍ଶରେ

ତମକୁ ମୁଁ ଦେଖିଥିଲି ପ୍ରଥମେ କେଉଁଠି
କେତେ ଦିନ କେତେ ବର୍ଷ ତଳେ
ଆମର ସାକ୍ଷାତ ହେଲା କେଉଁ ଦିନ
କାଲି ରାତି ଆଜିର ସକାଳେ
ଆକାଶରେ ଜହ୍ନ ଥିଲା ମେଘ ଥିଲା
ଉଲ୍‌କା ଥିଲା ଧୂମକେତୁ ଥିଲା
ପୂର୍ଣ୍ଣିମା ନା ଅମାବାସ୍ୟା

ଅଥବା ଅଜ୍ଞାତ କ୍ଷଣ ଆଗାମୀ କାଲିର
ସକାଳ ନା ସନ୍ଧ୍ୟା ଥିଲା ବର୍ଷା ଅଛି ଶୀତ ଅଛି
ରାତି ଯେବେ ଥିବ ସୁଗଭୀର
ବଜାର ନା ନଈକୂଳ ଶୋଭଯାତ୍ରା
ମନ୍ଦିର ନା ଦୂର ଦିଗନ୍ତରେ
ତମକୁ ଦେଖିବି ପୁଣି ପ୍ରଥମେ କେଉଁଠି କେବେ
କେତେ ଦିନ କେତେ ବର୍ଷ ପରେ

ଆମର ସଂପର୍କ ସବୁ
ଅନିଶ୍ଚିତ ବିବରଣ ଅଦୃଶ୍ୟ ସ୍ୱପ୍ନର
ସ୍ପର୍ଶହୀନ ଅନୁଭୂତି
ଅସଂଗତ ଫଳାଫଳ ବିନା କାରଣର
ଅଘଟିତ ସମ୍ପର୍କର ଅନ୍ୱେଷଣ
ଅନାଗତ ଦିନର ଅପେକ୍ଷା
ନିଛକ ମୃତ୍ୟୁରେ ଯାହା ଶେଷ ହୁଏ
ବଞ୍ଚିବାର ଅଭ୍ୟାସ କେବଳ
ଆମର ଏପରି ସବୁ ସାକ୍ଷାତ ଗୋଟିଏ ଦିନ
ଅଧା ଛାଇ ଅଧା ଆଲୁଅରେ
ଆମର ଏପରି ପୁଣି ଅଚାନକ ଦେଖା ହେବ
କେଉଁ ଦିନ ହଠାତ ତା ପରେ

# ତମକୁ ଜାଣିବା

ତମକୁ ଜାଣିବା ଏକ ଅଭିଶାପ
ତମେ ଯଦି ମୋ ପାଖରେ ଥାଅ
ଝଡର ନିଶ୍ୱାସ ଯାଇ ଅସ୍ତବ୍ୟସ୍ତ କରି ଦିଏ
ଦୂରର ଦ୍ୱୀପକୁ
ଶୂନ୍ୟଗର୍ଭ ସଂଗୀତର ପ୍ରତିଧ୍ୱନି
ଖେଳିଯାଏ ବିଜୁଳୀ ତାରରେ
ସ୍ମୃତି ଆସି ଭରିଦିଏ ସମୟର ଶୂନ୍ୟସ୍ଥାନ ସବୁ

ପ୍ରତିବିମ୍ବ କରିଦିଏ ଜନାରଣ୍ୟ
କୋଠରୀର ନିଭୃତ କୋଣକୁ

ଅର୍ଦ୍ଧଚେତନାର କ୍ଷଣ ମୁକ୍ତି ନିଏ ଶବ୍ଦର ଜାଲରୁ
ଜଳନ୍ତା ନିଆଁରେ ରହେ ଲୁକ୍‌କାୟିତ
ବିଷାଦର ସାମୟିକ ସ୍ୱର
ସ୍ୱପ୍ନ ହୁଏ ପଳାତକ
ସକାଳର ସହଜ ଖରାରେ
ପୁଞ୍ଜୀଭୂତ ଦୀର୍ଘଶ୍ୱାସ ଘେରିନିଏ
କୋଠରୀର ପ୍ରତିଟି ପଥର

ତମେ ଥିଲେ ମୋ ଆଖିରେ
କୋଳାହଳ ଅନେକ ରଙ୍ଗର
ପ୍ରତିବାଦ ସବୁଜର ହସରେ ଓ
ସମର୍ଥନ କମଳାର ଦାର୍ଶନିକତାରେ
କଳାରଙ୍ଗ ଆର୍ତ୍ତନାଦ କରୁଥାଏ ମଳାଲୋକ ପାଇଁ
ଦିନର ଜାହାଜ ଯାଇ
ଭାଙ୍ଗିଯାଏ ପର୍ବତ ଶିଖରେ
କିଛି କ୍ଷଣ ପାଇଁ ପୁଣି ସବୁ ଲାଲ
ଜଳୁଥାଏ ନିଆଁ ସାରା ଆକାଶରେ
ଦିଗନ୍ତରେ ପତ୍ରରେ ଶେଯରେ
ଶୁଣିବାର ଅପେକ୍ଷାରେ ସମୟ ସ୍ତମ୍ଭିତ ରହେ
ସବୁ ଚୁପଚାପ ତମେ ମୋ ପାଖରେ ଥିଲେ
ଝରକା ସେପାଖେ ଆସି ଧକ୍କା ଦିଏ ମେଘର ଆକାଶ
ତା ପରେ କେବଳ ରାତି

ତମକୁ ଛୁଇଁଲେ
ବନ୍ଦ କରିଦେବ ଆଖି ସମୟ ନିଜର
ଲକ୍ଷ ଲକ୍ଷ ତାରା ଯିବେ
ପୋଛି ହୋଇ ଆକାଶ ଦେହରୁ
ଚାରିଆଡେ ବିଞ୍ଚିଯିବ ମୁଠା ମୁଠା

ଦୀର୍ଘ ଓ ବିଷର୍ଣ୍ଣ ରାତି ଶୀତ ଓ କାକର
ପ୍ରାଚୀନ ଅନ୍ଧାର ଆସି
ଘେରି ଯିବ ସାରା କୋଠରୀକୁ
ଦୂରାଗତ ରେଲଗାଡ଼ି ଚାଲିଯିବ ପର୍ବତକୁ ଚିରି
ଅରଣ୍ୟର ଭୟଙ୍କର ଆଖି ସବୁ ପ୍ରଜ୍ୱଳିତ ହେବେ
ସହସ୍ର ସୂର୍ଯ୍ୟର ହେବ ବିସ୍ଫୋରଣ
ଆକାଶକୁ ନିନାଦିତ କରିଦେବ
ବୋମାବର୍ଷୀ ବିମାନର ଅଟ୍ଟହାସ ଖାଲି

ତା ପରେ ଆସିବ ତମେ
ଅନ୍ଧକାର ଭଳି ମତେ କୋଳାଗ୍ରତ କରି
ମୋର ପ୍ରତି ରକ୍ତକଣାମାନଙ୍କରେ
ତମେ ହୋଇ ଯନ୍ତ୍ରଣାର ଅଶେଷ ଲହରୀ
ଏପରି ଯନ୍ତ୍ରଣା ଯାହା ଲୋଭନୀୟ
ପରିପୂର୍ଣ୍ଣ ଥିବ କିନ୍ତୁ ମୃତ୍ୟୁର ଇଚ୍ଛାରେ
ଆତ୍ମଘାତୀ ନିଶ୍ଚୟର ଏକମାତ୍ର ଦ୍ୱିଧା ଥିବ
ସଂପୂର୍ଣ୍ଣ ନିଶ୍ଚିହ୍ନ ହେବ ଆଖିରେ ନା
ଓଠରେ ନା ସମଗ୍ର ଦେହରେ

ମୋ ଦେହର ମୁକ୍ତି ଯାହା ତମକୁ ଜାଣିବା
ଶେଷ ତାର ପୁଣି ଯାଇ
ବନ୍ଦ ହେବା ପୃଥକ ଦେହରେ
ପ୍ରେମର ଏଠାରେ ହୁଏ
ଏକାଧାରେ ଆରମ୍ଭ ଓ ଶେଷ
ଜନ୍ମ ଦିନଠାରୁ ଠିକ ଉପକ୍ରମ ଯେପରି ମୃତ୍ୟୁର
ପ୍ରମାଣିତ କରିବାକୁ ଅସରନ୍ତି ସମୟ ଗର୍ଭରେ
କୃତ୍ରିମ ଆରମ୍ଭ ମାତ୍ର
ଇତସ୍ତତଃ କେତୋଟି କ୍ଷଣର

ବିମର୍ଷ ଅତୀତମାନ ବିସ୍ମୃତ ନ ହୋଇ
ଭବିଷ୍ୟତ ହୋଇଯିବେ

ଯେ ହେତୁ ମୁଁ ଜାଣିଛି ତମକୁ
ଅଜାତ ସ୍ମରଣ କିନ୍ତୁ
ରହିଥିବେ ଆପ୍ରାଣ ଚେଷ୍ଟାରେ
ଦୂର କରି ରଖିବାକୁ
ସମାଗତ ଆଗାମୀ କାଲିକୁ

## ସ୍ୱପ୍ନ କିଛି ବାକି

ସ୍ୱପ୍ନ ମୋର ଅଧା ଥିଲା
ଶେଷ ହେଲା ରାଜାର ମୃଗୟା
ଭାଙ୍ଗିଗଲା ଅରଣ୍ୟର ଆତଙ୍କ
ଓ ଶେଷ ହେଲା ଭୟର ରାଜତ୍ୱ
ବନ୍ଧୁତ୍ୱର ହାତମାନ କଅଁଳିଲେ
ଅନାତ୍ମୀୟ କଣ୍ଟାଗଛ ଶାଖା ପ୍ରଶାଖାରେ
ରାତି ଶେଷ ପହରରେ
ମୃଗଶିଶୁ ଶୋଇଲେ ଆଶ୍ୱସ୍ତ
ହାୟ ହାୟ କରୁଥିଲେ
ଅନାସକ୍ତ ପାରିଷଦ ନେପଥ୍ୟରେ ରହି
ମୃତଦାର ରାଜା ଥିଲା ବ୍ୟତିବ୍ୟସ୍ତ
ବିଛଣାର ମଉଳା ଫୁଲରେ

ଝରକା ଖୋଲିଲେ ଆଖି
ଯଦିଓ ମୋ ସ୍ୱପ୍ନ ଏବଂ ରାତି ଥିଲା ବାକି
ଅନ୍ଧାରର ଘନିଷ୍ଠତା କ୍ଷତ ଓ
ବିକ୍ଷତ ହେଲା ପକ୍ଷୀଙ୍କ ସ୍ୱରରେ
ପବନରେ ପତ୍ର ହେଲେ ଅସ୍ଥିର

ଓ ଗଛ ହେଲେ ଶୋକରେ ଏକାକୀ
ଦିଗ୍‌ବଳୟ ତରଳିଲା
ଆକାଶ ଜଳିଲା କୃଷ୍ଣଚୂଡ଼ାର ନିଆଁରେ
ସକାଳ ଆସିଲା କିଛି ବିରକ୍ତ ଖରା
ଓ କିଛି ଝଡ଼ କିଛି ଧୂସରତା ନେଇ
କିଛି ହୃତକମ୍ପନ ଓ ପ୍ରଖର ନିଶ୍ୱାସ ଆଉ
ପଲକରେ ଅବସାଦ ହୋଇ

ଏଥର ଯିବାକୁ ହେବ ଘରକୁ
ଯଦିଓ ରାସ୍ତା ଦୀର୍ଘ ଓ ଦୁସ୍ତର
ଅତ୍ୟନ୍ତ ଅସ୍ପଷ୍ଟ ଏବଂ ଅତି ଅନିର୍ଦ୍ଦିଷ୍ଟ ଥିବ
ପାଦଚିହ୍ନ ପଥଦର୍ଶକର
ସେଠାରେ ଯିଏ ବି ଥିବେ
କେବଳ ବିପଥଗାମୀ ଏବଂ ବାସ୍ତୁହରା
ସେଠାରେ କଦବା ଯଦି ଦେଖା ହୁଏ
ଅକସ୍ମାତ ପୁରୁଣା ଚେହେରା
ସେ ଥିବେ ପରିବ୍ରାଜକ
ତୀର୍ଥଯାତ୍ରୀ ଏବଂ ପ୍ରଚାରକ
ସବୁ ପୁଣି ଦେଖିବାର ଭୁଲ ଥିବ
ସାରା ରାସ୍ତା ଛାଇ ଛାଇ ଆଶ୍ରମର ଭ୍ରମ
ଆଶ୍ରୟ ଆଶାରେ ଯାହା ଖୋଜୁଥିବ
ତାହା ଥିବ କେବଳ ଅରଣ୍ୟ

ଏ ରାସ୍ତାର ଶେଷ ନାହିଁ
ଅରଣ୍ୟ ରହିଛି ଘେରି ସମସ୍ତ ରାସ୍ତାକୁ
ଏଠାରେ ଅଭିନ୍ନ ଅତି ରାସ୍ତା
ଏବଂ ଅରଣ୍ୟର ନିଜସ୍ୱ ବିସ୍ତାର
ପାଦ ଥକିଯିବ କିନ୍ତୁ
ସ୍ୱପ୍ନ ଭଳି ରହିଥିବ ରାତିର ରହସ୍ୟ
ଉତ୍ତରର ଅପେକ୍ଷାରେ ପ୍ରଶ୍ନମାନେ
ରହିଥିବେ ଦ୍ୱିଧାରେ ଅସ୍ଥିର

ସକାଳ ଉଦାସ ହେଉ ରାସ୍ତା ଆଉ ନ ସରୁ
ଓ ରହିଥାଉ ପ୍ରଶ୍ନ ନିରୁତ୍ତର
ଅରଣ୍ୟରେ ଜଳୁଥାଉ ଚିତା
ଝରୁ ଆକାଶରୁ ରକ୍ତ ହେଉ ପବନ ଚଞ୍ଚଳ
ମୁଠା ମୁଠା ନୀରବତା
ଶ୍ୱାସରୁଦ୍ଧ କରିଦେଉ ସମସ୍ତ ଇଚ୍ଛାକୁ
ରାସ୍ତା ଏବଂ ଅରଣ୍ୟର ପ୍ରମାଦରେ
ତମେ କିନ୍ତୁ ରହିଥାଅ ସନ୍ନିଧାନ ମୋର

ରାତିର ରହସ୍ୟମୟ ଶବାଧାର ଚମକିବ
ସକାଳର କଅଁଳ ଖରାରେ
ତମେ ମୋ ପାଖରେ ଠିଆ
ତମ ଦ୍ୱିଧାଗ୍ରସ୍ତ ହାତ ମୋ ହାତ ଉପରେ
ତମେ ହତବାକ ତମ ମୁହଁରେ ଅନେକ ପ୍ରଶ୍ନ
ତମ ଆଖି ଆଶଂକିତ ଥିବ
ମୁଁ ଥିବି ନିବିଷ୍ଟ ମୋର
ଅସମାପ୍ତ ସ୍ୱପ୍ନ ପୁଣି ଦେଖିବା ଚେଷ୍ଟାରେ

ସାହସରେ ଟାଣି ନେବି ସୂର୍ଯ୍ୟସ୍ନାତ ଶବାଧାର
ଉପରୁ ମୁଁ ଫୁଲର ଚାଦର
ମୁହଁ ଉଠାଇବ ତମେ ତଳୁ ଅତି ସଂତ୍ରାସରେ
ଆଖି ଥିବ ମୋ ମୁହଁ ଉପରେ
ମୋ ଆଖିରେ ଉତ୍ତର ଓ ନିରାପତ୍ତା ଖୋଜି
କିନ୍ତୁ ବୃଥା ଚେଷ୍ଟା ସବୁ
ମୃତ୍ୟୁର ରହସ୍ୟ କିଏ
ସମାଧାନ କରିପାରେ କଦାଚିତ ସାମାନ୍ୟ ପ୍ରେମରେ

# କେବଳ ଆଖିରେ ଥରେ

ଯାହା କିଛି କହିବାର ଥିଲା ସବୁ
କହି ଦିଅ ଆଜି ରାତି ସରୁ ବା ନ ସରୁ
ଏଭଳି ଅନେକ କଥା
ଆରମ୍ଭ ଓ ଶେଷ ନାହିଁ
କେବଳ ଉଦ୍ଧୃତ ଯାହା କବିତା ବହିରୁ
ଶେଷ ହେଉ ସେ ସବୁର ଆବୃତ୍ତି ଏଥର
ତମ କଥା କହିବାରେ ତାଳ ଦେଇ ଚାଲିଥିବା
ସଂଗୀତର ଧ୍ୱନି ଏବଂ
ଜହ୍ନ ମେଘ ଆକାଶର ସ୍ୱର
ସେ ସବୁକୁ ବନ୍ଦ କରି ଦିଅ
ତମ ରେଡିଓରେ ସୁଇଚ ଦେଇ
ଚିରି ଦିଅ ଡାଏରୀର ପୃଷ୍ଠା ସବୁ
ପ୍ରେମପତ୍ର ରହିଥାଉ ତମ ହାତ ବ୍ୟାଗ୍‌ରେ
ଓ ତମ ଓଠ ବନ୍ଦ ଥାଉ
ଯାହା କିଛି ଜାଣିବାର ଥିଲା ସବୁ
ତମ ମୋ ଭିତରେ
କେବଳ ଆଖିରେ ଥରେ କହିଦିଅ
କେବଳ ଆଖିରେ

ମୁଁ ନିଜକୁ ନିମଜ୍ଜିତ କରି ରଖେ
ସାବଲୀଳ ଶବ୍ଦଯୋଜନାରେ
ଶବ୍ଦ ବ୍ୟବଚ୍ଛେଦ କରେ ପ୍ରେମପତ୍ରମାନଙ୍କର
କିଏ ତାକୁ ଲେଖିଥିଲା କେଉଁ ଉଦ୍ଦେଶ୍ୟରେ
ସମୀକ୍ଷା କରେ ମୁଁ ବସି
କିଏ କେବେ କହିଥିଲା
କିପରି ସଂଳାପ ସବୁ କିଭଳି ଭାବରେ
ଭଲ ପାଇବାର ସଂଜ୍ଞା
ଖୋଜିଥାଏ ଅଭିଧାନ ଦେଖି
ମୁଖସ୍ଥ ମୁଁ କରିଯାଏ ପ୍ରେମର ସହଜ ପାଠ

ଅନାୟାସ ଚାରି ଅଧ୍ୟାୟରେ

ନିରର୍ଥକ ଯାଏ ସବୁ ତମ ପାଇଁ
ନାଟକ ଓ ଉପନ୍ୟାସ କବିତା ପ୍ରେମର
ତମ ପାଇଁ ଲେଖା ହେଲା ଯେତେ ଚିଠି
ଖୋଲା ହେଲା ଯେତେ ଡାକଘର
ତମ ନାଁ ଯେତେ ଥର ଉଚ୍ଚାରଣ କଲି
ବଶୀକରଣର ମନ୍ତ୍ର ଯେତେ ମୁଁ ପଢ଼ିଲି ସବୁ
ହୋଇଗଲେ ସେତୁ ନୁହେଁ
ପ୍ରତିକୂଳ ଶବ୍ଦର ପାଚେରୀ

ମୋ କୋଠରୀ ବନ୍ଦ ଏବଂ
ସମସ୍ତ କବିତା ମୋର ଝରକାର ରେଲିଂ ଧରି
ବହୁକ୍ଷଣ ତମ ପ୍ରତୀକ୍ଷାରେ
ଭଲ ପାଇବା ଆସେ ଓ ଚାଲିଯାଏ
ସେମାନଙ୍କ ଅଜ୍ଞାତରେ ସଡକରେ
ବଗିଚାରେ ପାର୍କରେ ଓ କଫି ହାଉସରେ

ମୁଁ ଥାଏ ଅପେକ୍ଷା କରି
ଶବ୍ଦର ସମୁଦ୍ର କେବେ ଚୁପ ହେବ
ସଂପୂର୍ଣ୍ଣ ନିର୍ବାକ ହେବେ ଚଳଚ୍ଚିତ୍ରମାନ
ଘୋଡାଗାଡ଼ି ଛୁଟୁଥିବ ନିଃଶବ୍ଦରେ
ଅସମାନ ପଥର ରାସ୍ତାରେ
ନିଥର ନିସ୍ପନ୍ଦ ଯିବେ ଟ୍ରେନ ସବୁ
ପ୍ଲାଟଫର୍ମ ଥରିବ ସାମାନ୍ୟ
ଜେଟ୍ ଯିବ ସ୍ୱଚ୍ଛନ୍ଦ ଓ ଶବ୍ଦହୀନ
ଆକାଶକୁ ଦୁଇ ଭାଗ କରି
ତା ପରେ ଆସିବ ବର୍ଷା ସବୁ କିନ୍ତୁ
ଚୁପଚାପ ବଜ୍ର ନାହିଁ କେବଳ ବିଜୁଳୀ

ଯେତେ ଯାହା କହିବାର ଥିଲା ସବୁ

ଶବ୍ଦର ସମୁଦ୍ର ଏବଂ ଧ୍ୱନିର ତରଙ୍ଗ
ତମ କଥା ତମ ଚିଠି ତମର ଡାଏରୀ
ଆଜି ରାତି ସବୁ କିଛି ବନ୍ଦ ଥାଉ ଦେଖି ନିଅ
ଗୋଟିଏ ଆଖିରୁ ଅନ୍ୟ ଆଖି ଯାଏ
ଗୋଟିଏ ଦ୍ୱୀପରୁ ଅନ୍ୟ ସମୁଦ୍ର ପର୍ଯ୍ୟନ୍ତ
ତମେ ଥରେ କହି ଦିଅ କଟାକ୍ଷରେ
ପୁଣି ଆସୁ ଦ୍ୱିତୀୟ ବସନ୍ତ

ନୀରବତା ଧରା ଦେଉ ସେତୁ ହୋଇ
ସମୟର ଦୁଇଟି କୂଳରେ
ଯେତେ କଥା କହିବାର ଅଛି ସବୁ
ପୂର୍ବରାଗ ପ୍ରେମ ମୃତ୍ୟୁ
ପୁନର୍ଜନ୍ମ ଇତ୍ୟାଦି ଇତ୍ୟାଦି
କେବଳ ଆଖିରେ ଥରେ କହି ଦିଅ
କେବଳ ଆଖିରେ

## ଦ୍ୱିତୀୟ ସକାଳ

ଭୁଲିଯିବା ବରଂ ଭଲ ଆଜିଠାରୁ
ଏ ସହର ପରିଚିତ ରାସ୍ତା ଗଳି ସବୁ
ଏଇ ଘର ଏଇ ଶେଯ ଏଇ ଦେହ
ଏବଂ ଏଇ ଦେହର ଜ୍ୟାମିତି
ସ୍ଥିର ହୋଇ ରହିଥିବା ଚିତ୍ର ମାନ
ନିଜ ନିଜ ଇଜେଲ ଉପରେ
ମନ୍ଦିରର ମୂର୍ତ୍ତି ଭଳି ଚିରସ୍ଥାୟୀ ହସ
ଏବଂ ମପାଚୁପା ପ୍ରତିକ୍ରିୟାମାନ

ଲେଖା ହୋଇ ରହିଥିବା କଥୋପକଥନ
ଏବଂ ଅବିଚ୍ଛେଦ୍ୟ ସମସ୍ତ ସଂପର୍କ
ଦୁର୍ନିବାର ଋତୁ ଚକ୍ର ବସନ୍ତ ଆସିବ
ଠିକ ଏଇ ଦିନ ଏଇ ମୁହୂର୍ତ୍ତରେ

ନିର୍ଭୁଲ ଭାବରେ ସବୁ ଜଣା ଥିବା
ପୃଥିବୀ ଓ ଚନ୍ଦ୍ରର ଦୂରତା
ପର୍ବତ କେଉଁଠି ଶେଷ କେଉଁଠାରେ ଉପତ୍ୟକା
ଅରଣ୍ୟ ଓ ମାନସରୋବର
ରାସ୍ତାରୁ ଏ ଘର କେତେ ଦୂର
ଏବଂ କେତେ ଦୂର ଚଉକିରୁ ଶେଯ
କେତେ ନିକଟରେ ଦେହ
କେତେ ପାଖ କେତେ ଦୂର କଟୀ ଓ କପାଳ

ମୁଁ ଜାଣିଚି ଆଜି ରାତି ମୋ କାନରେ
ତମେ ଠିକ କି କଥା କହିବ
ମତେ କେତେ ଛୁଇଁବ ଓ ମତେ ଦେବ
କେତେ ଭାଗ ତମର ନିଜର
ମୋ ଦେହ ହାଲୁକା ହେବ କେତେ ପରିମାଣ
ଏବଂ କେତେ ମୁଁ ଭାସିବି
କେତେ ଦୂର ଉଡ଼ିଯିବି
କ୍ଳାନ୍ତ ହେବ ଡେଣା ମୋର କେଉଁଠି କିଭଳି
କେଉଁଠି ହଠାତ ହେବ ଝଡର ବିରତି
ଏବଂ ଜହ୍ନ ଲୁଚିଯିବ
ସବୁ ଶାନ୍ତ ହୋଇଯିବେ
ସମୁଦ୍ର ଆକାଶ ମେଘ ପକ୍ଷୀର କାକଳୀ

ମୁଁ ଜାଣିଚି ଏ ରାତିର
ଶେଷ ହେବ ଠିକ କେତେବେଳେ
ତାରା ସବୁ ଇତସ୍ତତଃ ହୋଇଯିବେ
କେଉଁଭଳି ନୈରତ ଓ ଈଶାନ ଦିଗରେ

ମୁଁ ଜାଣିଛି ବିଛଣାରେ କେତେ ମୁଠା
ସୂର୍ଯ୍ୟାଲୋକ ପଡ଼ିଥିବ କେଉଁ ବିନ୍ୟାସରେ
ତକିଆରେ ପଡ଼ିଥିବ
କେତେ ଗୋଟି ଖୋଲା ସେଫ୍‌ଟିପିନ
ମୋ ଦେହରେ କେତେ କ୍ଳାନ୍ତି
ମୋ ଆଖିରେ କେତେ ନିଦ ଥିବ
ମଥା କେତେ ଭାରୀ ଥିବ
ଆଉ ଠିକ କେଉଁ ମୁହୂର୍ତ୍ତରେ
ମୁଁ ଭାବିବି ଭୁଲିଯିବା ବରଂ ଭଲ
ନିତ୍ୟ ପ୍ରତିଦିନର ଦାବୀକୁ
ଏଇ ଘର ଏଇ ଶେଯ
ଏଇ ଦେହ ଏଇ ମନ
ଏ ଚେତନା ଅବଚେତନାକୁ

ମୁଁ ଜାଣିଚି ହେବ ଠିକ କେତେବେଳେ
ମୋର ଏଇ ଭାବିବାର ହଠାତ ବିଲୟ
ମୋ ନାଁ ଶୁଭିବ ପାଖ ଗାଧୁଆ ଘରରୁ
ଏବଂ ମୁଁ ତାର ଜବାବ ଦେବି
ନିଶ୍ଚୟ ନିଶ୍ଚୟ

# କିଏ ଜାଣିଛି କେତେ ସମୟ

କିଏ ଜାଣିଛି କେତେ ସମୟ ନେଇ
ସନାତନ କାଳ ଅନନ୍ତ କାଳ
କେତେ କ୍ଷଣର ସମନ୍ୱୟରେ ଚିରନ୍ତନ
କିଏ କହିପାରିବ ସୀମାହୀନର ଦୂରତ୍ୱ କେତେ
ହାତ ବଢ଼ାଇଲେ ନା ଆଲୋକ ବର୍ଷ
କାହାକୁ ଜଣା ଚିରକାଳ କିପରି ମାପି ହେବ
ମୁହୂର୍ତ୍ତରେ ନା ଦିନ ମାସ ବର୍ଷରେ
ଦଶନ୍ଧିରେ ନା ଶତାବ୍ଦୀରେ
ସମୟର ପରିମାଣ କଣ
ଲୀତା ବିଲୀତା ନା ଅସଂଖ୍ୟ ତ୍ରିକାଳ
ମହାକାଳକୁ ବନ୍ଦ କରି ହେବ
ଷ୍ଟପ୍ ୱାଚ୍‌ରେ ନା ଇତିହାସରେ

ଦୂରାନ୍ତରକୁ ଯିବାର ରେଲଲାଇନ ସବୁ
ନିଜ ନିଜର ସମାନ୍ତରତାରେ ସମ୍ପନ୍ନ
ରେଲଗାଡ଼ି ଅତିକ୍ରମ କରି ଯାଉଛି
ଷ୍ଟେସନ ପରେ ଷ୍ଟେସନ
ଗୋଟିଏ ଦିଗ୍‌ବଳୟ ପରେ ଅନ୍ୟ ଦିଗ୍‌ବଳୟ
ଶୂନ୍ୟସ୍ଥାନ ପରେ ଶୂନ୍ୟସ୍ଥାନ

ଡବା ଭିତରେ ଯାତ୍ରୀ ହାତ ଘଡିରେ ସମୟ ଦେଖୁଛି
ଏବଂ ପୁଣି ନିଶ୍ଚିନ୍ତ ଶୋଇ ଯାଉଛି
ଦୁଃସ୍ୱପ୍ନ ଭିତରେ ଚାଲି ଯାଉଛି
ଶୂନଶାନ ଭୌତିକ ଷ୍ଟେସନ ସବୁ
ପ୍ଲାଟଫର୍ମରୁ ପ୍ଲାଟଫର୍ମକୁ ଡେଇଁ ଯାଉଛି
ଶେଷ ରାତିର ଏକ୍‌ସପ୍ରେସ ଟ୍ରେନ

ଫେରିବାର ଫାଟକ ସବୁ ବନ୍ଦ
ଝରକା ଆରପାଖେ କାହାର ଅଦୃଶ୍ୟ ହାତ
ହାତକୁ ବଢ଼ାଇ ଦେଉଛି ଆଗକୁ ଯିବାର ଟିକେଟ
ଫେରି ଚାହିଁବାର ବେଳ ନାହିଁ
ଅନିର୍ଦ୍ଦିଷ୍ଟ ରେଲଗାଡ଼ି କ୍ରମାଗତ ଅଗ୍ରସର
ଷ୍ଟେସନରୁ ଷ୍ଟେସନ ଆଗରୁ ଆଗକୁ
ସକାଳରୁ ସଞ୍ଜ ଚେତନାରୁ ଅବଚେତନାକୁ

ଘରେ ପହଞ୍ଚିବାର ଟେଲିଗ୍ରାମ ନିରୁଦ୍ଦିଷ୍ଟ
ପ୍ଲାଟଫର୍ମରେ କେହି ନାହିଁ
କେବଳ ଦୁଃସ୍ୱପ୍ନରେ ଦେଖିଥିବା ଅନ୍ୟ ଦେଶ
ଖାଲି ଷ୍ଟେସନର ପରିତ୍ୟକ୍ତ ଲାଇନ ଉପରେ
ଅଭ୍ୟାସବଶତଃ ରେଲଗାଡ଼ି ରହୁଛି କ୍ଷଣେ ମାତ୍ର
ଏବଂ ପୁଣି ଚାଲି ଯାଉଛି ଅସ୍ପଷ୍ଟ ହୋଇ
ଧୂଆଁର ଉଦ୍‌ଗାର ଭିତରେ

ରାସ୍ତା ସାରା ସିଗ୍‌ନାଲ ପରେ ସିଗ୍‌ନାଲ
ଲାଲ ପରେ ସବୁଜ ସବୁଜ ପରେ ଲାଲ
ଆତଙ୍କ ଭିତର ଦେଇ ଆଗକୁ ଯାଉଛି
ଦ୍ରୁତଗାମୀ ମେଲ୍ ଗାଡ଼ି
ଯାତ୍ରୀକୁ କିଛି ଜଣା ନାହିଁ
କେତେ ରାସ୍ତା ବାକି କେତେ ଅତିକ୍ରାନ୍ତ
କେତେ ସମୟ ବ୍ୟତୀତ
କେତେ ଭାବନାର ସମଷ୍ଟିରେ ସମ୍ପୂର୍ଣ୍ଣତା
କେତେ ଲବ ମୁହୂର୍ତ୍ତ ନିମେଷକୁ ନେଇ
ଯୁଗ ଏବଂ ସମ୍ବତ୍ସର
ନିତ୍ୟ ଶାଶ୍ୱତର ବିସ୍ତାର କେତେ
କେତେ ଘଡି ଯାବତ ଚନ୍ଦ୍ରାର୍କ
ଷ୍ଟେସନରୁ ଷ୍ଟେସନ ମଝିରେ
ସନ୍ତକ ଲେଖିଯିବ କେଉଁଠାରେ
କ୍ୟାଲେଣ୍ଡାର ପୃଷ୍ଠାରେ ନା ମିଉଜିୟମ କାନ୍ଥରେ

ଅନ୍ଧାର ଭିତରେ ଓଠରେ ହାତ ଦେଇ
ସମୟ ଅପେକ୍ଷା କରି ରହିଛି ଶେଷ ଷ୍ଟେସନରେ
ନିଜର ପ୍ରତିଶ୍ରୁତିମାନଙ୍କୁ
ନିଜ ଭିତରେ ସ୍ୱୟଂସମ୍ପୂର୍ଣ୍ଣ କରି
ଆକାଶରୁ ଖସି ପଡୁଥିବା ଉଲ୍‌କା ଚିନ୍ତାଗ୍ରସ୍ତ
ଆଉ କେତେ ମୁହୂର୍ତ୍ତରେ ଚିରନ୍ତନ

# ଯଦି କିଛି ପ୍ରଶ୍ନ କରିବାକୁ ହୁଏ

ଯଦି କିଛି ପ୍ରଶ୍ନ କରିବାକୁ ହୁଏ
ମତେ ନୁହେଁ ଆକାଶକୁ ପଚାର
ଆଖିକୁ ପଚାର ସମୟକୁ ପଚାର
ମତେ ନୁହେଁ ତମେ ସେମାନଙ୍କୁ ପଚାର
ଏଇ ନଦୀ ସହିତ କଣ ଜୀବନ ଜଡ଼ିତ
ଧୂମକେତୁ ସହିତ ପ୍ରେମ
ଏବଂ ଶୂନ୍ୟତା ସହିତ ମୃତ୍ୟୁ

ମତେ ପ୍ରଶ୍ନ କରି ଲାଭ ନାହିଁ
ଏଥର ବୈଶାଖ ମାସ
ବୟସ ହରାଇବାର ସମୟ
ଓ ନିଷ୍ପତ୍ତି ନେବାର ବେଳ
ମୁଁ କିନ୍ତୁ ଘଣ୍ଟାକଣ୍ଟାକୁ ଅନୁସରଣ କରୁଥିବି
ଯନ୍ତ୍ରଣାକୁ ଉପଭୋଗ କରିବା ପାଇଁ
ମୋର ଛ' ମାସ ଛୁଟି ଥିବ
ମୁଁ ବର୍ଷା ବିନ୍ଦୁ ସହିତ ପୁଣି
ମେଘକୁ ଫେରି ଯିବାକୁ ଖୋଜୁଥିବି

ମୁଁ ଖୋଜୁଥିବି ସବୁ ମୀମାଂସା କରିଯିବି
ସତ୍ ଅସତ୍ ଓ ଔଚିତ୍ୟର ଜଟିଳ ପ୍ରଶ୍ନମାନ
ମୁଁ ଭାବୁଥିବି ସବୁ ହିସାବ ଦେଇଯିବି
ମୋର ଅତୀତ ସମ୍ପର୍କ ଓ କୃତିତ୍ୱମାନଙ୍କର
କିନ୍ତୁ ଦୁର୍ଭାଗ୍ୟବଶତଃ
ପାପପୁଣ୍ୟର କାଠଗଡା ଭିତରେ ଥିବା ବେଳେ
ଦୁଃଖର ଭୟାନକ ମୁହଁମାନ ଆସି
ଯେତେବେଳେ ମୋର ପରିଚୟ ପଚାରିବେ
ଯଦିଓ ମୁଁ ନିରପରାଧ
ମୁଁ ମୁହଁକୁ ଲୁଚାଇ ନେବି
ମୋ ନିଜର ଅନ୍ତର୍ଦ୍ୱନ୍ଦ୍ୱ ଭିତରେ

ବର୍ଷା ଯଦିଓ ସମ୍ଭବ ନୁହେଁ
ପ୍ରତ୍ୟାଶାର ଶେଷ ନାହିଁ
ଏଇ ମୋର ଅଦୃଷ୍ଟ
ପ୍ରତିକୂଳ ସମୟ ଓ ନିର୍ଦ୍ଦୟ ଆକାଶ
ଏଇ ମୋର ଅନିବାର୍ଯ୍ୟ ଭାଗ୍ୟ
ଆଗରେ କେବଳ ଦୀର୍ଘ ଅବକାଶ

# ଭାଙ୍ଗି ପଡୁଥିବା ଦୁର୍ଗର

ଭାଙ୍ଗି ପଡୁଥିବା ଦୁର୍ଗର ଚାରିକାନ୍ଥ ଭିତରେ
ଚାଲ ବିରକ୍ତ ଦିନର ଧ୍ୱଂସସ୍ତୂପକୁ କବର ଦେବା
ଉଦ୍‌ବିଗ୍ନ ମନର ଶୂନଶାନ ଆକାଶରୁ
ଦୀର୍ଘଶ୍ୱାସର ଖରାକୁ ତୋଳି ନେବା
ଅନୁଶୋଚନାର ପ୍ରଗଳ୍‌ଭ ଉପତ୍ୟକାରେ
ପରିତ୍ୟକ୍ତ ସୂର୍ଯ୍ୟାସ୍ତକୁ ସାନ୍ତ୍ୱନା ଦେବା

କିଛି ସମୟ ଆହୁରି ଏପରି ବିତିଯାଉ
ମେଘ ସହିତ କିଛି ଯୁକ୍ତି କରି
ଦିଗ୍‌ବଳୟ ସହିତ ହାତ ମିଳାଇ
ପାହାଡକୁ କ୍ରୋଧାନ୍ୱିତ ଆଖିରେ ଦେଖି
ଏବଂ ନଦୀକୁ କିଛି ଆଶ୍ୱାସନା ଦେଇ

ସୂର୍ଯ୍ୟାସ୍ତର ଅଭିଶାପରେ
ଆକାଶ ତରଳିଗଲେ
ଖୋଜୁଥିବା ଦିନ ସବୁ
ଇନ୍ଦ୍ରଧନୁକୁ ବିଦାୟ ମାଗିବେ
ଜହ୍ନ ଆଲୁଅର ଅବସନ୍ନ ଲହରୀ
ଅଶାନ୍ତ ଦିଗ୍‌ବଳୟରୁ ଫେରିଯିବ
ଗଛର ଗହଳ ପତ୍ରରେ
ଅଟକି ରହିବ ଅମାବାସ୍ୟାର ଆଶଙ୍କା
ପ୍ରାୟଶ୍ଚିତ୍ତର ଦୂତମାନେ ଆସିବେ
ସାତ ରାତିର ଅନ୍ଧାର ନେଇ

କେହି ବି କ୍ଷମାର ଉପଯୁକ୍ତ ନୁହନ୍ତି
ଆସ ବତୀଖୁଣ୍ଟର ଆଲୁଅକୁ
ଗଳା ଚିପି ହତ୍ୟା କରିବା
ଛାଇମାନଙ୍କୁ ବିଦ୍ଧ କରି ରଖିବା କାନ୍ଥ କଣ୍ଟାରେ
ଶବ୍ଦମାନଙ୍କୁ ଦ୍ୱୀପାନ୍ତରିତ କରି
ସାରା ସହର ଉପରେ
ଭୟର ଚାଦର ଟାଣି ଦେବା

ଅଜ୍ଞାତ ଅରଣ୍ୟର କୃତଘ୍ନତାରୁ
ସବୁ ଦୂରତ୍ୱ ପାଦଶବ୍ଦ ହୋଇ ପାଖକୁ ଫେରିବେ
ପଶ୍ଚାତ୍ତାପର ନିରନ୍ଧ୍ର ଅନ୍ଧାର ଘେରିଯିବ
ସମୁଦ୍ର ଓ ଦିଗ୍‌ବଳୟ ସମେତ
ପୃଥିବୀର ସମସ୍ତ ଆନନ୍ଦକୁ

ତମେ କଣ ଦୁଃସାହସ ନେଇ
ମୋ ପାଖକୁ ଆସିପାରିବ ଏତେବେଳେ
ମୋର ପାପରେ ଅଂଶୀଦାର ହେବା ପାଇଁ

# ତମ ସହିତ ଛ'ଟି ଘଣ୍ଟା

ତମ ସହିତ କାଟିଥିବା ଛ'ଟି ଘଣ୍ଟା
ଇଞ୍ଜିନର ମ୍ଳାନ ଆଖିରେ ସଂକ୍ଷିପ୍ତ ହୋଇ
ଚାଲିଯିବେ ମଝି ଅନ୍ଧାରର ଏକାନ୍ତତାକୁ

ସମୟର କେତେ ଅଂଶ ଛ'ଘଣ୍ଟା
ତାକୁ କ'ଣ ବିସ୍ତାରିତ କରିହେବ
ସଂପର୍କକୁ ସଂକ୍ଷେପଣ କରି
କିଏ ବନ୍ଦ କରି ପାରିବ ଟ୍ରେନ କୋଠରୀରେ
ଅନ୍ଧାରକୁ କଣ ଶରବିଦ୍ଧ କରି
ଗଛରେ ବାନ୍ଧି ରଖି ହୁଏ
ଗୋଟିଏ ମାତ୍ର ଡାକରେ ଉଠାଇ ହୁଏ
ଅବାଧ ମେଘର ବିସ୍ତାରିତ ଦ୍ୱୀପକୁ
ଟୋକି ଆଣି ହୁଏ କୁହୁଡ଼ିର କମ୍ବଳ ଭିତରୁ
ଶୀତ ରାତିର ଘନିଷ୍ଠ ଜହ୍ନକୁ

ଛ'ଟି ଘଣ୍ଟା ଫେରି ଆସିବେ
ନିସ୍ତାର ପାଉ ନଥିବା ପ୍ରତିଧ୍ୱନି ଭଳି
ଆତ୍ମପ୍ରତ୍ୟୟରେ ନିଜକୁ ଏକତ୍ରିତ କରି
ଛ'ଟିଯାକ ଋତୁ ଫେରିଯିବେ
ମୃତ୍ୟୁକୁ ଅବଜ୍ଞା କରୁଥିବା ସ୍ନେହର ଉପତ୍ୟକାରୁ
ରୂପକଥାର ମୁହାଣରେ ସ୍ୱପ୍ନର ଦ୍ୱୀପକୁ
ଲହରୀର ଅନୁରୋଧକୁ ଡେଇଁ

ସମୁଦ୍ରର ଉନ୍ମୁଖ ବ୍ୟାକୁଳତାକୁ

ତମେ ଆଉ କେଉଁଆଡେ ଯିବ
ଆଖିରେ ବର୍ଷା ନେଇ ଏତେବେଳେ
ମୃତ ତାରକାମାନଙ୍କର ପାଉଁଶ ଭିତରୁ
ମୁଁ ତମକୁ ଅନାୟାସ ଆବିଷ୍କାର କରିବି
ମୁଁ ତମକୁ ଟେକିନେବି ଘାସ ଉପରେ
ସ୍ମୃତିର ଶୀତାର୍ତ୍ତ କାକରରୁ
ମୁଁ ତମକୁ ଖୋଜି ନେବି
ଦୁଃସ୍ୱପ୍ନର ଭୟାନକତାରୁ
ମୋର ଅନ୍ୱେଷଣର ସବୁ ପାହାଚ
ମିଶିଯିବ ତମ ଦେହର ଶୀର୍ଷରେ
ତମେ ଯେଉଁଠାରେ ପହଞ୍ଚିବ
ସେଠାରେ ମୁଁ ତମ ଅପେକ୍ଷାରେ

ଝଲକା ପବନରେ ସକାଳ ପ୍ରତୀୟମାନ ହେଲେ
ବିମୂର୍ତ୍ତ ଅନ୍ଧାର ଆସି
ସ୍ୱପ୍ନ ସହିତ ପୁଣି ଆଳାପରତ
ଆଉ କିଛି ସମୟର ସନ୍ଧାନରେ
ଶେଷ ଟ୍ରେନରେ ଆମେ ଦୁହେଁ
ପୁଣି ନକ୍ଷତ୍ରର ରାତ୍ରିକୁ

# ଏପରି ସକାଳ କାହିଁ

ଏପରି ସକାଳ କାହିଁ
ଯାହା ଅର୍ଥହୀନ ଶବ୍ଦମାନଙ୍କୁ
ସଙ୍ଗୀତରେ ପରିଣତ କରିବ

ଏପରି ନକ୍ଷତ୍ର କାହିଁ
ଯାହା ପଳାତକ ମୁହୂର୍ତ୍ତମାନଙ୍କୁ
ପୁନର୍ବାର ଆଲୋକିତ କରିବ

ଘୂର୍ଣ୍ଣାୟମାନ ଦର୍ପଣରେ ସବୁ ବିଶୃଙ୍ଖଳ
ଆକାରମାନ ବିରୂପ ବିକୃତ ଓ ଗୌଣ
ଯାହାସବୁ ଭାବୁଥିବ ଅନୁରାଗ ପୂର୍ବରାଗ ବୋଲି
ବୈଦେହୀ ଇଚ୍ଛାର କେତୋଟି
ବିଯୁକ୍ତ ଅନୁଭବ ମାତ୍ର ଥିବ
ସ୍ମୃତି ଥିବ କେବଳ ଏକ ଅସିଦ୍ଧ ଦୀର୍ଘଶ୍ୱାସ
ରାସ୍ତା କଟିଯିବ ବିନା ପରିଚୟର ମୌନରେ
ଘନିଷ୍ଠ ସମ୍ପର୍କ ଖିନ୍ନ ରହିଯିବ
ଦୁଇ ଧାଡ଼ି ଅସ୍ପଷ୍ଟ ହାତ ଅକ୍ଷରରେ

କେହି ଖବର ରଖିବେ ନାହିଁ
ଏକାନ୍ତ ବ୍ୟକ୍ତିଗତ ରାଗ ରାଗିଣୀର
କେହି ଦେଖିବେ ନାହିଁ
ହ୍ରାସ ପାଉଥିବା ପ୍ରାଚୀନ ନକ୍ଷତ୍ରକୁ
ଶବ୍ଦର ଗୁଞ୍ଜନ ରହିଯିବ
କେବଳ ମାତ୍ର ପ୍ରତିବିମ୍ବ ହୋଇ
ଆଲୁଅ ବିନ୍ୟସ୍ତ ହୋଇଯିବ
ପୃଥିବୀମାନଙ୍କର ମଝି ଶୂନ୍ୟତାରେ

ପ୍ରଜ୍ଞାର ଦୁଃସାଧ୍ୟ ଆରୋହଣ ପରେ
ଦୃଶ୍ୟ ଓ ସ୍ୱର ନିସ୍ତେଜ ହୋଇଗଲେ
ରାସ୍ତା ଜନଶୂନ୍ୟ ହୋଇଯିବ
ଛକ ଉପରେ ରହିଯିବେ କେବଳ
ଅଳ୍ପ କିଛି ଲୋକ
ଯେଉଁମାନଙ୍କ ପାଖରେ ଆଉ କିଛି ନାହିଁ
ନା ହଜି ଯାଇଥିବା ସକାଳ
ନା ସାନ୍ତ୍ୱନାଶୀଳ ସାୟାହ୍ନ

କେବଳ ହାତରେ ହାତକଡ଼ି
ଏବଂ ଆଖିରେ ସ୍ୱାଧୀନତାର ସ୍ୱପ୍ନ

ଆସନ୍ନ ନକ୍ଷତ୍ରର ସକାଳ
ଯେଉଁମାନଙ୍କର ଭାଗ୍ୟରେ ନାହିଁ
ହାରି ଯାଇଥିବା ଲୋକଙ୍କର ଉଚ୍ଛ୍ୱସିତ ହସ
ସେମାନଙ୍କ ରାତିକୁ ଆଲୋକିତ କରୁଥିବ
ନିର୍ବାଣମୁଖୀ ପ୍ରତିଧ୍ୱନିର
ଊର୍ଦ୍ଧ୍ୱମୁଖୀ ଐକ୍ୟତାନ
ଆକାଶକୁ ସାମାନ୍ୟ ନୀଳରଙ୍ଗ ଦେଉଥିବ

# ହେ ମୋର କୃତାର୍ଥ ଆଖିର

ହେ ମୋର କୃତାର୍ଥ ଆଖିର ଈଶ୍ୱର
ମୁଁ ତମକୁ ହିଁ ନତଜାନୁ ପ୍ରାର୍ଥନା କରୁଛି
ହେ ଅରକ୍ଷିତ ଭବିଷ୍ୟତର ଶେଷ ସମ୍ବଳ

ତମକୁ ସମସ୍ତ ଜ୍ଞାତ
ମୋର ପାପ କରିବାର ଅସାମର୍ଥ୍ୟ
ପୁଣ୍ୟ କରିବାର ଅନିଚ୍ଛା
ମୋର ଭଲ ପାଇବାର ସତ୍ୟ କିପରି
ଏକ ଅଦ୍ଭୁତ କ୍ଳୀବତାରେ ଆଶ୍ରୟହୀନ
ମୋର ଅବିଶ୍ୱସ୍ତ ପ୍ରତିଶ୍ରୁତି
କେଉଁ ବିଗଳିତ କରୁଣାରେ କୃତକୃତ୍ୟ

ହେ ମୋର ଅଧିଷ୍ଠାତ୍ରୀ ଦେବୀ

ତମର ସାର୍ବଜନିକ ପ୍ରେମକୁ
ସମସ୍ତଙ୍କୁ ସମ ପରିମାଣରେ ଦେଇଯିବା ପରେ
ହେ ଐଶ୍ୱରିକ ଶକ୍ତିର ଆଧାର
ଧର୍ମ ଦର୍ଶନ ଇତିହାସ
ଋଗ୍‌ବେଦ ଓ ଆପେକ୍ଷିକବାଦ
ସବୁ ତମ ଦେହରେ ନିଶ୍ଚିହ୍ନ ହୋଇଗଲେ
ମୁଁ ତମର ଆଖିର ଆଶ୍ରୟରେ
ମୋର ଭୟ ଓ ନ୍ୟୂନ ଭାବକୁ ଶାନ୍ତ କରିବି
ମୋର ସତ୍ତାର ଭଗ୍ନାଂଶ ସବୁ
ମନ୍ଦିରର ଚଟାଣ ଓ ଅନ୍ଧଗଳିରେ
ଇତସ୍ତତଃ ବିକ୍ଷିପ୍ତ ଥିବ
ଅପ୍ରତ୍ୟୟର ବୁଢ଼ିଆଣୀ ଜାଲରେ ବନ୍ଦ ଥିବ
ମୋର ମୃତ୍ୟୁ ଓ ଅମରତ୍ୱର ଏକମାତ୍ର ଦିନ
ମୁଁ ତମକୁ ଉପଲବ୍ଧି କରିବି
ସମୟ ଓ ଦେହର ଊର୍ଦ୍ଧ୍ୱରେ

ତମେ ଯଦି ଏତେବେଳେ ଆସ
ପ୍ରାପ୍ତିର ଶୂନ୍ୟତା ହୋଇ
ମୁଁ ତମକୁ କ୍ଷମା କରିବି

ତମର ଦୈବୀଶକ୍ତି ସବୁକୁ

## ଏକ ସଙ୍ଗେ ସମସ୍ତେ ବାହାରିବେ

ଏକ ସଙ୍ଗେ ସମସ୍ତେ ବାହାରିବେ ମନ୍ଦିରରୁ
ତୀର୍ଥଯାତ୍ରୀ ସାଧକ ଓ ପୁରୋହିତ
ପରିମିତ ରାସ୍ତାରେ ସାହଚର୍ଯ୍ୟ ଏତିକି ଦୂର
ପରାମର୍ଶ ଓ ସମର୍ଥନ ପାଇଁ ବେଳ ନାହିଁ

ଜଳନ୍ତା ନିଆଁ ଉପରେ ପାଦ ରଖି
ତ୍ରିକାଳଦର୍ଶୀ ହସି ହସି ଚାଲିଯିବ ଆରପାଖକୁ
ଅଗ୍ନି ଶିଖାର ଶେଷ ଲୟ ଭିତରେ
କେବଳ ଜ୍ଞାତି ଓ ଆତ୍ମୀୟମାନେ ବ୍ୟତିବ୍ୟସ୍ତ
ଆକାଶରେ ଭୟଙ୍କର ମେଘ

ଏ କେଉଁ ନିଆଁର ପୀଠ
ଯଜ୍ଞକୁଣ୍ଡ ହୋମାଗ୍ନି ନା ଚିତା
ଏଠାରେ ସାକ୍ଷୀ କିଏ ଚନ୍ଦ୍ର ସୂର୍ଯ୍ୟ
ଗ୍ରହ ନକ୍ଷତ୍ର ଗୁରୁଜନ ନା ଅଷ୍ଟ ଦିଗପାଳ
ଯିଏ କାନ୍ଦୁଚି ବିଧବା ନା ପ୍ରସୂତି
ଏଥରକ ଚିନ୍ତା ସବୁ ଆତ୍ମାର ମହାଯାତ୍ରାର
ନା ସ୍ୱାଭାବିକ ଫେରନ୍ତା ରାସ୍ତାର
ଏ ଦେହ ଆତ୍ମାର ଦୁର୍ଗ ଥିଲା
ନା ବନ୍ଦୀଶାଳା
ଆଗକୁ ଉଦ୍ୟତ ହାତ କାହାକୁ ଛୁଇଁବ
ଶାୟିତ ଦେହର ନିର୍ବେଦ ପାଦକୁ
ନ ବିବ୍ରତ ଦାୟାଦର ଆଶାୟୀ କପାଳକୁ

ପ୍ରସବ ଗୃହର ଥମଥମ ଅବସ୍ଥା ଭିତରେ
ନିଆଁ ଜଳୁଥିବ ବର୍ଷାର ଭର୍ତ୍ସନାକୁ ନ ମାନି
ଭୟାର୍ତ୍ତ ଚାହାଣୀ ଛାଇଯିବ ସ୍ମୃତିର ଉପତ୍ୟକାରେ
କ୍ରୋଧାନ୍ୱିତ ମୁହଁ ଅନାଇବେ ସ୍ମରଣର ଆକାଶରୁ
କପାଳ ଉପରୁ ଶେଷ ସୂର୍ଯ୍ୟାଲୋକ ଲିଭିଗଲେ
କ୍ଷତିପୂରଣ ମାରିବାର ବେଳ ନଥିବ

ସାଦୃଶ୍ୟ ସବୁ ଏତିକିରେ ସୀମିତ
ଦୈବବାଣୀ ଘୋଷଣା କରିଯିବ
ଯେ ପର୍ଯ୍ୟନ୍ତ ମଲାଲୋକର ଆଶୀର୍ବାଦ ମିଳିନାହିଁ
ଆଉ କେହି ଶିଶୁ ଜନ୍ମ ନେବେ ନାହିଁ

# ଆଖିରେ ଯାହା ଥାଏ

ଆଖିରେ ଯାହା ଥାଏ କେବଳ ପବନର ଝଲକା
ନା ସମୁଦ୍ର ମଝିରେ ଥିବା ଜାହାଜର ପ୍ରତୀକ୍ଷା
ରାତିର ବର୍ଷା ହଜିଯାଏ
ମୋହଶୂନ୍ୟ ଉଦାର ସକାଳରେ
ନା ଅପର୍ଯ୍ୟାପ୍ତ ସ୍ମୃତିର ବଦାନ୍ୟତାରେ
ପ୍ରଜ୍ଞା ସଞ୍ଚୟ କରି ରଖେ
କେବଳ ମନୋରଞ୍ଜନର ସାମାନ୍ୟ ପବକୁ
ନା ସମ୍ପୂର୍ଣ୍ଣ ଅନୁଭବର ଏକତ୍ରିତ ଉପଲବ୍ଧି

ଅଥବା ସବୁ କିଛି ମଧ୍ୟବର୍ତ୍ତୀକାଳୀନ
ଯାଦୁକରର ଅନିଶ୍ଚିତ ହାତ ଉପରେ
କପୋତ ଓହ୍ଲାଇବାର ପୂର୍ବବର୍ତ୍ତୀ ଅବସ୍ଥା
ପଥଚାରୀର ଉପରକୁ ଉଠିଥିବା ପାଦ
ଶାମୁକା ଭିତରେ ବିଦ୍ୟମାନ ଯାହା
ମୁକ୍ତା ନୁହେଁ ଜଳବିନ୍ଦୁ ବି ନୁହେଁ
କମ୍ପିତ ଓଠର ସ୍ଫୁରମାନ ମନ୍ତ୍ର
ଉଚ୍ଚାରଣ ଅପେକ୍ଷାରେ ଶବ୍ଦ
ବତୀଖୁଣ୍ଟ ଚାରିପାଖେ ଧୀର ଗତିରେ
ଭାସି ବୁଲୁଥିବା କାଗଜର ଟୁକୁରା

ଏଠାରେ ଗୋଟିଏ ପରେ ଗୋଟିଏ
ଅଭିଜ୍ଞତା ଏକତ୍ରିତ କରିବା ବେଳେ
ପ୍ରତିଟି ଘଟଣା ଡାକିଆଣେ ଅନ୍ୟ ଏକ ଘଟଣାକୁ
ପ୍ରତିଟି ବିସ୍ମୟ ନେଇଯାଏ ଅନ୍ୟ ଏକ ଆବିଷ୍କାରକୁ
ପ୍ରତି ମାଇଲଖୁଣ୍ଟ ହାତ ଦେଖାଏ
ଆଗରେ ଥିବା ମାଇଲ ଖୁଣ୍ଟକୁ
କିଏ ଏଠାରେ ସ୍ଥାନ ନିରୂପଣ କରିବ
ପ୍ରାମାଣିକ ଓ ନିର୍ଭରଯୋଗ୍ୟ ଭାବରେ
କାହାକୁ ଏଠାରେ ଜଣା

କେତେ ମୁଠା ବାଲି ଏବଂ କେତେ ମରୁଭୂମି
କେତେ ରାସ୍ତା ଶେଷ ହେଲା
ଏବଂ କେତେ ରାସ୍ତା ଆହୁରି ଆଗକୁ

ଯାତ୍ରା ସବୁ ବାକି ରହିଯିବ
କେବଳ ମାନଚିତ୍ର ଦେଖିବାରେ ବେଳ ଯିବ
ମଧ୍ୟାହ୍ନବର୍ତ୍ତୀ ସମୟର ଅନିର୍ଦ୍ଧାରିତ କ୍ଷଣରେ
କେଉଁ ଆଶ୍ୱାସନା ମତେ ଆଶାୟୀ ରଖିବ
ସଂଶୟର ସକାଳରୁ ବିଶ୍ୱାସର ଶେଷ ସୂର୍ଯ୍ୟାସ୍ତକୁ
କେଉଁ ଉପଲବ୍ଧି ମତେ ନେଇଯିବ
ଘନିଷ୍ଠ ପ୍ରତ୍ୟୟରୁ ଘନିଷ୍ଠତମ ସତ୍ୟ ନିକଟକୁ

# କେବଳ ତମେ ଖୋଲି ପାରିବ

କେବଳ ତମେ ଖୋଲି ପାରିବ
ସବୁ ଦୁର୍ଗର କବାଟ
ଗର୍ବିତ ଦେହର ଚାରି ସୀମାନ୍ତରୁ
ତମେ ଏକା ଖୋଲି ରଖି ଦେଇ ପାରିବ
ଅହଙ୍କାରୀ ସ୍ପର୍ଦ୍ଧାର ଯୁଦ୍ଧ ପୋଷାକକୁ

ଝରକା ବାହାରେ ଝଡ଼
ମୁହଁରେ ବର୍ଷଣମୁଖ ମେଘ ନେଇ
ତମ ଦେହର ବିଜୁଳିରେଖା
ଅନ୍ଧାରର ଘନିଷ୍ଠତାକୁ ଖୋଜୁଥିବ
ମୌନର ଦୂରତ୍ୱ ବିଚ୍ଛିନ୍ନ କରିଦେବ
ଆମର ସନ୍ନିଧିର ସମ୍ଭାବନା

କେତେ ମୁଁ ସହି ପାରିବି ତମକୁ

ଓ ତମର ଶାଣିତ ଆଖିର ଉପେକ୍ଷାକୁ
ତମ ମୁହଁରୁ ଆଖି ଉଠାଇ
ମୁଁ ଝରକା ବାହାରେ ଆକାଶକୁ
ଓ ପୁଣି ଆକାଶରୁ ତମକୁ ଦେଖୁଥିବି
ତମ ପାଖରେ ପହଞ୍ଚିବା ପାଇଁ
ଆଉ କେତେ ଆଲୋକ ବର୍ଷ

ପୁଣି ଯେତେବେଳେ ବର୍ଷା ଶେଷ
ଝରକା ବାହାରେ ଅଗ୍ନିଦୀପ୍ତ ଆକାଶ
ତମ ମୁହଁରେ ଜଳନ୍ତା ମଧ୍ୟାହ୍ନ
କପାଳରେ ଚକ ଚକ ସିନ୍ଦୂରର ସୂର୍ଯ୍ୟ
ବେକରେ ଅଗ୍ନିବଳୟ
ହାତରେ ଚୂଡୀର ବ୍ରହ୍ମାସ୍ତ୍ର

ତମେ ଖୋଲି ରଖିବ ତମ ଦେହରୁ ଅଗ୍ନିଶିଖା
ଆନୁଷ୍ଠାନିକ ଭାବେ ତମର ଅସରନ୍ତି ଦ୍ୱିଧା
ଦେହରେ ସୂର୍ଯ୍ୟର ସମ୍ଭ୍ରାନ୍ତ କିରଣ
ମୁହଁରେ ପ୍ରତିଶ୍ରୁତିର ସୁନା ରଙ୍ଗ
ମୁଁ କଣ ଚିହ୍ନି ପାରିବି ତମକୁ
ତମର ଏ ପ୍ରତ୍ୟାବର୍ତ୍ତନରେ

# ଅତିଥିମାନେ ଚାଲିଯିବା ପରେ

ଅତିଥିମାନେ ଚାଲିଯିବା ପରେ
ରାତିର ବସ୍ତିରେ ମେଳା ଶେଷ
ସଙ୍ଗୀତ ଅନେକ ବେଳୁ ସମାପ୍ତ
କେବଳ ପବନରେ ପ୍ରତିଧ୍ୱନିର ଦୀର୍ଘଶ୍ୱାସ
ଦୃଶ୍ୟ ଶେଷ ମଞ୍ଚ ଖାଲି

ଅନ୍ଧାରରେ ଅନିର୍ଦ୍ଦିଷ୍ଟ ଆକାରର ଛାଇ
ସକାଳର ସୀମାଲଘଂନ ପରେ
ଶ୍ରୋତୃବର୍ଗ ଯେ ଯାହାର ଘରକୁ

ଦର୍ଶକମାନଙ୍କର ସମବେଦନାରେ ନିର୍ବାଣ ଖୋଜି
କାହାଣୀର ଅଶରୀରୀ ଆତ୍ମା ଘୂରି ବୁଲୁଥିବ
ମୁକ୍ତ ଅଙ୍ଗନର ସୀମାରୁ ବାହାରି
ତୋରଣ ପରେ ତୋରଣ ଲଘିଂ
ପର ଜନ୍ମର ଛାଇ ଭଳି
ଧାଡ଼ି ଧାଡ଼ି ଗଛ ଭିତରେ

ଘରକୁ ଫେରିବା ବେଳେ
ଯାହା ପଛରେ ରହିଗଲା
ସମାପ୍ତ ବିସ୍ମୃତ ଓ ଉଦ୍‌ଯାପିତ
ଅବଶିଷ୍ଟ ଯାହା ସବୁ ଆଶ୍ୱାସନା
କିଛି ହଜିଯିବ ପରବର୍ତ୍ତୀ କାର୍ଯ୍ୟକ୍ରମରେ
ଆଉ କିଛି ଅର୍ଥହୀନତାର ରେଶମ ଅନ୍ଧାରରେ
ସୂର୍ଯ୍ୟଦଗ୍ଧ ସ୍ମୃତି ସାରାଦେହ ସଞ୍ଚରିଗଲେ
ଭାବିବାର ଅବକାଶ ନ ଥିବ
ପଶ୍ଚାତ୍ତାପର ଖରା ଜାଳିଦେବ ବୈଦିକ ଶୋକକୁ

ଘରେ ପହଞ୍ଚିବା ପରେ
ସହାନୁଭୂତିର ପୋଷାକ ଖୋଲି ରଖିଦେବେ ସମସ୍ତେ
ପୁଣି ଅନ୍ୟ ଦିନର ପ୍ରସ୍ତୁତି
ନୂଆ ମଞ୍ଚ ନୂଆ ଦୃଶ୍ୟ ନୂଆ ସଙ୍ଗୀତ

ଦୁର୍ଭାଗ୍ୟବଶତଃ ପ୍ରତିବିମ୍ବ କ୍ଷଣସ୍ଥାୟୀ
ସ୍ମୃତି ଉପରେ ପରଦା ପଡ଼ିଗଲେ
ଅତିଥିମାନେ ଚାଲିଯିବେ
ଅନୁଶୋଚନା ପୁଣି ଆକ୍ରମଣ କରିବ

# ମୁଁ ତମକୁ ନାଁ ଦେଇଯିବି

ମୁଁ ତମକୁ ନାଁ ଦେଇଯିବି
ସ୍ୱପ୍ନର ସ୍ଥାପତ୍ୟ ଯଦିଓ ତମର
ସମସ୍ତ ପରିଚୟକୁ ଗୋପନୀୟ ରଖିଥିବ
ଅଜ୍ଞାତ ଦେଶର ନାମହୀନ ଉପତ୍ୟକାରେ
ମୁଁ ତମର ସମ୍ମୁଖୀନ ହେବି
ମୁଁ ତମକୁ ଆବିଷ୍କାର କରିବି
ଆକାଶର ପୌରାଣିକ ସ୍ତବ୍ଧତାରେ

ଆକାଶରେ ଡାହାଣୀ ଖରା
ଆଶ୍ୱାସନା ଭଳି ବିସ୍ତାରିତ ଥିବ
ଅପରାହ୍ନ ଓହ୍ଲାଇବ
ଅନ୍ୟମନସ୍କ ପକ୍ଷୀ ଭଳି ଅଳସ ଗତିରେ
ପ୍ରତିଧ୍ୱନି ଫେରିଯିବେ ଶବ୍ଦହୀନ ଶୂନ୍ୟତାକୁ
ସନ୍ଧ୍ୟାର ଧୂଆଁରେ ପହଁରିଯିବ ଶେଷ ସୂର୍ଯ୍ୟ
ତମେ ମତେ ଚିହ୍ନିବା ମଝିରେ
ପୁରୁଣା ଦୁଃଖର ଛାଇ
ତମକୁ ନ ଛୁଇଁ ଭାସି ଯିବ

ଯାହା ସବୁ ମନୋମାଳିନ୍ୟ
ଦୂର କରିପାରିଥାନ୍ତି ଗୋଟିଏ କଥାରେ
ଶେଷ ମୁହୂର୍ତ୍ତରେ ମୁଁ ଦ୍ୱିଧାଗ୍ରସ୍ତ ରହିଯିବ
ଅପରାହ୍ନର ହସକୁ ସାଉଁଟି ନେଇ ତମେ ଚାଲିଯିବ
ସନ୍ଧ୍ୟାର କୁହୁଡ଼ି ନଇଁ ଆସିବ ଅଭିମାନ ଭଳି
ଆକାଶର ହାହାକାରରେ ମିଶିଯିବ ତମର ମୁହଁ

ଭ୍ରମାତ୍ମକ ନିର୍ଣ୍ଣୟକୁ ସ୍ୱୀକାର କରି କି ଲାଭ
ଆଉ ଫେରିବାର ସମ୍ଭାବନା ନାହିଁ
ବିଦାୟ ମାଗିବା ପରେ ସବୁ ଶେଷ
ବିରୋଧୀ ପ୍ରମାଣମାନଙ୍କର ବିଶ୍ଲେଷଣ ନିରର୍ଥକ
କେବଳ ଠିକଣା ଖୋଜିବାରେ ସମୟ ଯିବ

ତମ ନାଁର ଧ୍ୟାନରେ ଦୁଇଧାଡ଼ିର ଚିଠି ଲେଖି
ରଣ ସବୁ ପରିଶୋଧ କରିବି
ଏ ଭଳି ସୌଭାଗ୍ୟ ମୋର କାହିଁ

## ବୃତ୍ତର ଶେଷ କେତେବେଳେ

ବୃତ୍ତର ଶେଷ କେତେବେଳେ
ଦିଗ୍‌ବଳୟରେ ଆକାଶରେ
ନା ଅନୁଶୋଚନାରେ
ଯନ୍ତ୍ରଣାର ଆରମ୍ଭ କେଉଁଠାରେ
ଅଙ୍ଗୁଳି ଊରୁ ନା ଛାତି
ନା ସ୍ୱପ୍ନ ଦେଖିବାରେ
ବର୍ତ୍ତମାନର ସୀମାନ୍ତରେ କିଏ ଅପେକ୍ଷମାଣ
ପଳାତକ ଆସନ୍ନ ନା ଅବଶ୍ୟମ୍ଭାବୀ ଅତୀତ
ଶେଷ ନା ଆରମ୍ଭ ନା କେବଳ କ୍ରମ

ଶୋକକୁ ହିସାବ କରିବା ସହଜ ନୁହେଁ
ଏବଂ ଶୋଚନାର ପରିମାପ ନାହିଁ
ଆରମ୍ଭ ଓ ଶେଷ ଯେଉଁଠାରେ ରହସ୍ୟାବୃତ
ସେଠାରେ ମଧ୍ୟବିନ୍ଦୁ ଖୋଜିବା ନିରର୍ଥକ
କବରଖାନା ଭିତରେ ସ୍ମାରକୀ ଲିପି ପଢୁ ପଢୁ
ବାଟ ଭୁଲି ରହିଗଲେ
ଫାଟକ ସବୁ ବନ୍ଦ ହୋଇଯିବ
ବାହାରକୁ ଯିବାର ରାସ୍ତା ନାହିଁ
ଦେଖୁ ଦେଖୁ ସଞ୍ଜ ହୋଇଯିବ
ସମୟର ଅବିଚ୍ଛିନ୍ନ ଅନ୍ଧାରକୁ ବିଚଳିତ କରି
ଯେଉଁ ଧ୍ରୁବତାରା ସବୁ ଜନ୍ମ ନେବେ

ସେମାନଙ୍କ ପାଇଁ ପ୍ରାୟଶ୍ଚିତ୍ତ ନଥିବ

ସମୟର କ୍ରମାନ୍ୱୟତାରେ
ସମ୍ମୋହିତ ଅତୀତକୁ ଧରି ରଖିବାକୁ ଅସମର୍ଥ
ସନ୍ଦିଗ୍ଧ ବର୍ତ୍ତମାନକୁ ସଂପୂର୍ଣ୍ଣ କରିବାକୁ ଅଯୋଗ୍ୟ
ସମ୍ଭାବ୍ୟ ଭବିଷ୍ୟତକୁ ସ୍ୱୀକାର କରିବାକୁ ଅନିଚ୍ଛୁକ
ଆମେ ଯେଉଁମାନେ କେବଳ
ସାମୟିକ ସ୍ୱପ୍ନ ଦେଖୁଥିବା ଲୋକ
ଶାଶ୍ୱତ ସତ୍ୟର ତାତ୍ପର୍ଯ୍ୟ ଖୋଜିବା ବୃଥା
ନିର୍ବୈକ୍ତିକ ଆସନ୍ତାକାଲି ସବୁକୁ
ବନ୍ଧକ ରଖିଯିବା ବେଳେ
ଆମର ଆଉ ପଛକୁ
ଅବିଶ୍ୱସ୍ତ ଦୃଷ୍ଟିପାତ କରି ଲାଭ ନାହିଁ

# ଆମେ ମନ୍ତ୍ରଣା କରିବା ବେଳେ

ଆମେ ମନ୍ତ୍ରଣା କରିବା ବେଳେ
ଟିଣ ଛାତ ଉପରେ ମେଘର ପଦାଘାତ ଥିଲା
ଘର ଚାରିପାଖେ ସ୍ମରଣକୁ ଅସ୍ତବ୍ୟସ୍ତ କରୁଥିବା ଝଡ
ଭିତରେ ଆମର ଅର୍ଥହୀନ କଳ୍ପନା
ଓ ପାପର ଅସମ୍ଭାବ୍ୟ ଯୋଜନାମାନ
ଏକାଧାରରେ ଆତ୍ମହତ୍ୟାର ଚୁକ୍ତି
ଓ ଭବିଷ୍ୟତ ସହିତ କିଛି ସାଲିସ

ଲୁହ ସବୁ କାହା ପାଇଁ ଥିଲା
ନିବଦ୍ଧ ଅଭିପ୍ରାୟର ଗୁପ୍ତ କୋଠରୀରେ

କାହା ପାଇଁ ଗୋପନୀୟ ନକ୍‌ଶା
ଅରକ୍ଷଣୀୟ ଭବିଷ୍ୟତର ଧ୍ୱଂସାବଶେଷରେ
କେଉଁ ଉଦ୍ଦେଶ୍ୟ ଓ ବିଧେୟ ନେଇ
ବାଟ ଚାଲିବାର ପରିଚର୍ଯ୍ୟା
କାହା ପାଇଁ ଶୋଚନା କାହାପାଇଁ ଷଡଯନ୍ତ୍ର
ଅଜ୍ଞାତସାର ପ୍ରତିପକ୍ଷ ବିରୋଧରେ
ଅଥବା ଏକାନ୍ତ ନିଜସ୍ୱ ଭବିତବ୍ୟ ପାଇଁ

ଝଡର ପ୍ରଳୟ ପରେ
ଯଦିଓ କାହାରି ଅପେକ୍ଷା ନାହିଁ
ଆସ ଆମେ ସମସ୍ତଙ୍କୁ ନିମନ୍ତ୍ରଣ ଦେଇଯିବା
ନ ବୁଝିବାର ଛଳନାରେ ବେଳ କଟିଯିବ
ସମୟ ହୋଇଯିବ ସ୍ମୃତିହୀନ ଶୂନ୍ୟତାର ବିସ୍ତାର
ଏପରି ବିସ୍ମରଣର ଆକାଶ
ଯାହା ଏକାଧାରରେ ଅସୀମତା ଓ ନିରାପତ୍ତା
ଆସ ତାର ଆବରଣର ଆଶ୍ରୟରେ
ନିଜକୁ ସମର୍ପଣ କରିଯିବା
ବିନା ମୂଲ୍ୟ ସାରାରାତି ପାଇଁ

ବାହାରେ ଜହ୍ନ ଆଲୁଅର ପହରା
ବନ୍ଦ ଘରେ ଏକା ଆମେ ଦୁହେଁ
ଦେହର ଚେତନାତୀତ ଖାଲି କାନ୍ଥ
କାନ୍ଦ କାନ୍ଦ ମୁହଁର ଝରକା
ସାରା ଘର ଉଚ୍ଛନ୍ନ ରାତିର ଚିହ୍ନ
ଆମେ କଣ ସହି ପାରିବା ଏତେବେଳେ
ଜହ୍ନ ସାରା ରାତି ସାରା ରାତି ଜହ୍ନ

## ଆଲୁଅର ପରିତ୍ୟକ୍ତ ଦ୍ୱୀପରେ

ଆଲୁଅର ପରିତ୍ୟକ୍ତ ଦ୍ୱୀପରେ
ଜହ୍ନ ନିର୍ବାସିତ ହୋଇଗଲେ
କଣ୍ଟାଗଛରେ ଆହୁରି ଏକ ସୂର୍ଯ୍ୟୋଦୟ

ଜରିକାଗଜରେ ବନ୍ଦ ରତୁ ଭିତରୁ
ଉପରକୁ ଅନାୟାସ ଉଡ଼ିଯିବ
ସୂର୍ଯ୍ୟର ଅବିର ରଙ୍ଗର ବେଲୁନ
ଆକାଶରୁ ଝରି ପଡ଼ିବ
ସଙ୍ଗୀତର ଲାଲ ନୀଳ ରିବନ
ଶିଶୁମାନଙ୍କ ହାତରେ ରଙ୍ଗୀନ କାଗଜର ସକାଳ
ଫୁଲଗଛ ଚାରିପାଖେ
ପ୍ରଜାପତିଙ୍କର ଅସରନ୍ତି ମେରି ଗୋ ରାଉଣ୍ଡ
କଅଁଳ ପତ୍ରର ନୂଆ ସ୍ନେହରେ
ଡାକବାଲା ଦେଇଯିବ ବସନ୍ତର ପ୍ରଥମ ଖବର

ଏଭଳି ସକାଳକୁ ଅଗ୍ରାହ୍ୟ କରି
ସୂର୍ଯ୍ୟ ତର୍ପଣରୁ ଉଠି ଆସିବେ କିଛି ଲୋକ
ସଭା ଗୃହରେ ଯେଉଁ ଭିଡ ଜମିଯିବ
ଶୋକ ପାଇଁ ଥିବ ନା ଅଭ୍ୟର୍ଥନା ପାଇଁ
ସଂକଳ୍ପ ଓ ପ୍ରସ୍ତାବମାନ
ବନ୍ଦ ରାତିର ପରିତ୍ରାଣ ନା
ଖୋଲା ସକାଳର କାରାବାସ ପାଇଁ
ସମସ୍ତେ ଉଦ୍‌ବିଗ୍ନ ଅପେକ୍ଷାରେ
କେତେବେଳେ ଖୋଲିବ କବାଟ
ପରେ କବାଟ ପରେ କବାଟ
ଆଗନ୍ତୁକ ଫେରାଇ ଆଣିବ
ଜୀବନ୍ୟାସର ଆଚ୍ଛାଦନରେ ଢାଙ୍କି
ଫାଶି ଖୁଣ୍ଟ ଉପରୁ ମଲା ଦୀର୍ଘଶ୍ୱାସକୁ

ଟୋଳି ନେଇଯିବ ସଦ୍ୟଜାତ ଶିଶୁକୁ
ଝଡ ଓ ସମୁଦ୍ରକୁ ଭ୍ରୂକ୍ଷେପ ନ କରି
ବାହାର ଆକାଶରୁ ଉଖାରି ଆଣି ଦେବ
ଅନ୍ଧାର ଘର ମଝିକୁ ଜ୍ୟୋତିଷ୍ମାନ ସକାଳ

ପାଣି ଭିତରେ ଥାଇ
ପୁଣି ସୂର୍ଯ୍ୟକୁ ଡାକିବ ଉପାସକ
ଅନ୍ଧାର ଭିତରୁ ତାର ପ୍ରତ୍ୟୁତ୍ତର ନ ଥିବ
କେବଳ ବସନ୍ତ ଋତୁର ବୟସ ବଢୁଥିବ
ସଞ୍ଜ ବସ୍‌ରେ ଯାଇ ସକାଳ ବସ୍‌ରେ
ଫେରି ଆସୁଥିବା ଦିନକୁ ଉପେକ୍ଷା କରି
ସୂର୍ଯ୍ୟ ବିଦ୍ଧ ରହିଥିବ କଣ୍ଟାଗଛର କ୍ରସ୍‌ରେ

ପ୍ରଶସ୍ତ ଆଲୁଅରେ ରାତିର ଝଲମଲ ରହସ୍ୟ ବିଧ୍ୱସ୍ତ
ସକାଳକୁ ମେଘାଚ୍ଛନ୍ନ କରି ରଖିଥିବ ଭବିଷ୍ୟଦ୍‌ବାଣୀ
ରାତି ସରିବା ଆଗରୁ
ଆଲୁଅର ସ୍ୱପ୍ନ ଦେଖୁଥିବା ଲୋକ
ଅନ୍ଧାର ଘର ଭିତରେ
ଲଣ୍ଠନ ଧରି ଛାଇକୁ ଖୋଜୁଥିବେ

# ଆମର ଦୂରତ୍ୱର ସୌହାର୍ଦ୍ଦ୍ୟ

ଆମର ଦୂରତ୍ୱର ସୌହାର୍ଦ୍ଦ୍ୟ
ଖାଲି କାଗଜର ପୃଷ୍ଠା ଭଳି ରହସ୍ୟମୟ
ଭବିଷ୍ୟତ ଭଳି ବିଶ୍ୱସ୍ତ
ଏବଂ ଅନ୍ଧାର ଭଳି ନିର୍ଭରଯୋଗ୍ୟ

କେବେ କେବେ ତମେ କେବଳ ସକାଳର ପବନରେ
ସ୍ୱର୍ଶକୁ କଣ ନାଁ ଦିଆଯାଇ ପାରେ

ଅପରାହ୍ନର ଶ୍ରଦ୍ଧାରେ ମନେ ପଡ଼ିବାର ସୌଜନ୍ୟ
ସ୍ମୃତିର କଣ ଫଟୋ ନିଆଯାଇ ପାରେ
ଦର୍ପଣରେ ପ୍ରତିଫଳିତ ତମର ନିଷ୍କପଟ ଛାଇ
ପ୍ରତିବିମ୍ବକୁ କଣ ଆବଦ୍ଧ ରଖି ହୁଏ

ତମର ବର୍ଣ୍ଣନାର ଦୁର୍ବହ ଦାୟିତ୍ୱ
ଯଦିଓ ଦୁଃସାଧ୍ୟ ଓ ନିଷ୍ପ୍ରୟୋଜନ
ଏକମାତ୍ର ପରିଚୟର ସମ୍ମାନରେ
ମୁଁ ସବୁ ନାଁ ସବୁ ପ୍ରତିରୂପ ଭୁଲି
ମୋର କଳ୍ପନାକୁ ଭାରଗ୍ରସ୍ତ କରୁଥିବି
ସାନ୍ନିଧ୍ୟର ପରିଣତ ବିସ୍ମୟରେ
ସମସ୍ତ ଅନୁଭୂତି ବହିର୍ଭୂତ ଅଭିଜ୍ଞତା ବିଲୁପ୍ତ ହେଲେ
ଶବ୍ଦ ସବୁ ଯେତେବେଳେ
ବର୍ଣ୍ଣମାଳା ବାହାରେ ନିର୍ବାସିତ ହୋଇଯିବେ
ସକାଳର ରହସ୍ୟ ମିଶିଯିବ
ଅନ୍ୟ ଏକ ଅନ୍ଧକାରରେ
ମୁଁ ତମର ପ୍ରଶସ୍ତିନାମା ଲେଖିଦେବି

ଭୁଲ ଠିକଣାର ଚିଠି ନେଇ
ପୋଷ୍ଟମ୍ୟାନ ଘର ଘର ବୁଲୁଥିବ
ମୁଁ ନିଶ୍ଚିତ ଭାବରେ ଉପଲବ୍ଧି କରିବି
ଆମର ସମ୍ପର୍କ କିପରି ସିଦ୍ଧି ଓ ପରିଣତିର ଊର୍ଦ୍ଧ୍ୱରେ
ଅକ୍ଷୁର୍ଣ୍ଣ ଅନିର୍ବାର୍ଯ୍ୟ ଏବଂ ସମୟ ବହିର୍ଭୂତ
ବିସ୍ମରଣ ଭଳି

# ଖରାଦିନ ଆସିବ

ଖରାଦିନ ଆସିବ

ପୃଥିବୀର ଖଣ୍ଡିତ ଛାତି ଉପରେ
ଧୂସର ଧୂଳି ଝଡର ପୋଷାକ ପିନ୍ଧି
ପବନର ଶୁଖି ଯାଇଥିବା ଓଠରେ
ମଳା କୃଷ୍ଣଚୂଡାର ଶୋକ ନେଇ

ଖରାଦିନ ଆସିବ ଘୂର୍ଣ୍ଣିବାୟୁର ବାହନ ଚଢ଼ି
ସୌରମଣ୍ଡଳର ଫର୍ଣ୍ଣେସରେ ଅଗ୍ନିଶିଖା ଜାଳି
ଚିମନି ଧୂଆଁର ଧୂସର ଅନ୍ଧାରକୁ କାଟି
ଉପରକୁ ଛୁଟିଯିବ ସୂର୍ଯ୍ୟର ଜଳନ୍ତା ବଲ୍
ହଳଦିଆ ରଙ୍ଗର ନିଆଁ ମହା ସମୁଦ୍ରରେ
ପାହାଡର ଢେଉ କ୍ରମଶଃ ମ୍ଳାନ ଓ ଅଦୃଶ୍ୟ
ଗୁପ୍ତ ଅରଣ୍ୟରେ ଛାଇର ଛକାପଂଝା ଭିତରେ
ଦୁର୍ଘଟଣାଗ୍ରସ୍ତ ଉଡାଜାହାଜ ଭଳି
ପକ୍ଷୀମାନେ ତ୍ରସ୍ତ ଓ କାତର ଥିବେ
ରାତିର ପର୍ବତରେ ବନାଗ୍ନିର ନିଆଁଝୁଲ ବିଞ୍ଚିଦେଇ
ସମଗ୍ର ଋତୁ ଏକ ଆଗ୍ନେୟ ବିସ୍ମୟ ହୋଇଯିବ

ଫୁଟପାଥ ନିମଗ୍ନ ରହିଥିବ
ଶୀତତାପ କୋଠରୀର ଶୋଚନାରେ
ଧାନକ୍ଷେତ ପାଇଁ ତରଙ୍ଗାୟିତ ଧାରାର ସ୍ୱପ୍ନ
ଗଛଡାଳର ପତ୍ରାଚ୍ଛନ୍ନ ହେବାର ପ୍ରଚେଷ୍ଟା
ଆକାଶର ନୀଳ ରଙ୍ଗ ପାଇଁ ବ୍ୟାକୁଳତା
ସବୁ ଜଳିଯିବେ ଗ୍ରୀଷ୍ମର ରକ୍ତିମ କ୍ରୋଧରେ
ପୋଷ୍ଟମ୍ୟାନ ବାଣ୍ଟିଯିବ ମୁଠା ମୁଠା ଶିଖିଳା ପତ୍ର
ଅକାଳ ଓ ଅନାବୃଷ୍ଟିର ଭବିଷ୍ୟଦ୍‌ବାଣୀ

ପଥଚାରୀର ଆଖି ପ୍ରତିଚ୍ଛାୟାରେ ନ୍ୟସ୍ତ
ପାଦ ଅଟକି ଯିବ ଦ୍ୱିଧାର ବାଲିଚର ଭିତରେ
ରାସ୍ତା ନିଶ୍ଚିହ୍ନ ଓ ମରୂଦ୍ୟାନ ଅଦୃଶ୍ୟ
କେବଳ ଧାଡ଼ି ଧାଡ଼ି ତୃଷାର୍ତ୍ତ ଲୋକଙ୍କ ଶବ
ପଡି ରହିଥିବ ମୃଗତୃଷ୍ଣାର ଉପକୂଳରେ
ଫଟାଭୂଇଁ ଆହୁରି ବିଦୀର୍ଣ୍ଣ ହୋଇଯିବ

ଏକ ଚିରନ୍ତନ ବୈଶାଖ
ଭୂଭାଗକୁ ଧରି ରଖିବ କଠୋର ଆଶ୍ଲେଷରେ

ପ୍ରତିବାଦର ହାତମୁଠା ତଳକୁ
ଉପରକୁ ଚାହିଁ ରହିଥିବେ ଅଭିଶପ୍ତ ଲୋକ
ପବନର ଓଠରେ ବିଦ୍ରୂପର ହସ
ଆକାଶରେ ଅଣୁମାତ୍ର ମେଘ ଖଣ୍ଡ
ଶୋଭାଯାତ୍ରା ଚାଲିଯିବା ପରେ ଯାହା ଆଣିଦେବ
ସବୁ ଖାଲି ଶୀତଳ ଓ ମନୋରମ
ମୃତ୍ୟୁମୁଖୀ ସଙ୍ଗୀତର ଲୟ

# ତମ ଦେହର ଅସରନ୍ତି ଦୌରାତ୍ମ୍ୟ

ତମ ଦେହର ଅସରନ୍ତି ଦୌରାତ୍ମ୍ୟ
ଭ୍ରୂଲତାରେ ଭୟଙ୍କର ଲହରୀ
ଆଖିରେ ଉତ୍ତାଳ ସମୁଦ୍ର
କଟାକ୍ଷରେ ପ୍ରଳୟଙ୍କର ଝଡ
ତମ ହସରେ ଆନ୍ଦୋଳିତ ଆକାଶ
ତମ ମୁହଁରେ ପୁଞ୍ଜୀଭୂତ ମେଘ
ହାତ ପାପୁଲିରେ ମହାକାଳ
ବାଳରେ ଲୁକ୍‌କାୟିତ ମୃତ୍ୟୁ

ମୋ ଇଚ୍ଛାର ଲକ୍ଷ୍ମଣରେଖାକୁ ଲଙ୍ଘନ କରି
ମୋ ଅନ୍ୱେଷଣ ବାହାରେ
ଯଦିଓ ତମେ ଅନ୍ତର୍ହିତ
ମତେ ଚରମପତ୍ର ଦେଇଯିବ

ତମର ବନ୍ଦୀଶାଳାର ଦୈବୀ ଆକର୍ଷଣ
ମତେ ବାରମ୍ବାର ଡାକିଯିବ
ତମେ ଚିହ୍ନ ଦେଇଥିବା ପୀଠ ଉପରକୁ
ଫେରି ଆସିବାର ବାଧ୍ୟବାଧକତା
ତମର ନୈସର୍ଗିକ ନାଁ ପାଖରେ
ମୁଁ ମନ୍ତ୍ରମୁଗ୍ଧ ବସି ରହିଥିବି
ଯଦିଓ ମୋର ଉପସ୍ଥିତି ତମର ଅସହ୍ୟ
ତମକୁ ସ୍ମରଣ କରିବା ନିୟମର ଅବମାନନା
ତମ ପାଖକୁ ଚିଠି ଲେଖିବା ରାଜଦ୍ରୋହ
ତମର ନାଁକୁ ଉଚ୍ଚାରଣ କରିବା ବିଶ୍ୱାସଘାତକତା

କାଳବୈଶାଖୀରୁ ତମର ଉତ୍ପତ୍ତି
ମରୁଭୂମିରୁ ତମର ଦୀକ୍ଷା
ସବୁ କିଛି ମହାପ୍ରଳୟରୁ ସଂଭୂତ
ତମର ଯାବତୀୟ ଉପଦ୍ରବ
ଭୟାବହ ଦୀର୍ଘଶ୍ୱାସ
ମାରାତ୍ମକ କଣ୍ଠଧ୍ୱନି
ତମର ଚୁପ ରହିବାର ଭୟାନକତା
ଆଖିର ଆପଦ ହାତର ଆତଙ୍କ
ପ୍ରତ୍ୟାଖ୍ୟାନ କରୁଥିବା ତମ ମୁହଁର ବୈଶାଖ

ସବୁ ପୁଣି ଆଶ୍ଚର୍ଯ୍ୟ ଭାବେ
ମତେ ଟାଣି ନେବେ ତମ ପାଖକୁ
ରୀତି ପ୍ରଥା ଏବଂ ଶାସ୍ତ୍ର ଅନୁମୋଦିତ
ତମକୁ ମନେ ରଖିବା ଯାହା
ବୈଧ ନ୍ୟାଯ୍ୟ ଓ ଆଇନ ସମ୍ମତ
କ୍ରିସ୍‌ମାସ୍ କାର୍ଡର ବନ୍ଧୁତ୍ୱ
ତମକୁ ଭଲ ପାଇବା ଯାହା
ଔପଚାରିକତାରେ ପରିପୂର୍ଣ୍ଣ
ଅନିର୍ଦ୍ଦିଷ୍ଟ ସମୟ ପାଇଁ ଶାସ୍ତିବିଧାନ
ନିର୍ବାସନ ଓ ଅଜ୍ଞାତବାସ

# ଠିକ ଛ'ଟାରେ ଆଲାର୍ମ ଘଡ଼ିରେ

ଠିକ ଛ'ଟାରେ ଆଲାର୍ମ ଘଡ଼ିରେ ସକାଳ
ତା ପରେ ଔଷଧ ଗ୍ଲାସରେ
ଡାକ୍ତରର ମାପି ଦେଇଥିବା ପ୍ରହର
ଦଶଟାରେ ସାଇରେନ
ଆସନ୍ନ ମୁହୂର୍ତ୍ତରେ ଅବରୋହଣ
ଦଶ ନ ଆଠ ସାତ ଛ
ସାକ୍ଷାତକାର ସନ୍ଧ୍ୟା ଛ'ଟାରେ
ତା ପରେ କେବଳ ଉଧାର ଆଣିଥିବା ସମୟ

ହସ୍‌ପିଟାଲର ଆକାଶରେ
କେବଳ ତିନୋଟି ରଙ୍ଗ
କଳା ଧଳା ଓ ଧୂସର
ଲାଲର ରାଜଦ୍ରୋହ ନାହିଁ
ନୀଳର ବିଶ୍ୱାସଘାତକତା ନାହିଁ
ସବୁଜର ଅରାଜକତା ନାହିଁ
ଉଜ୍ଜୀବିତ ସ୍ମୃତିର ଚକମକ ଇନ୍ଦ୍ରଧନୁ ନାହିଁ
ଚେତନାର ଉତ୍ତରାୟଣରେ
ରକ୍ତ କଣିକାର ବହୁବର୍ଣ୍ଣ ସ୍ୱପ୍ନ ନାହିଁ
କୋଠରୀ ଭିତରେ ସବୁ କିଛି
ଦୀପ୍ତିମାନ ଶୁଭ୍ର ଓ ଉଜ୍ଜ୍ୱଳ
ସମୟ ଧଳା କାନ୍ଥ ଧଳା
ନର୍ସର ପୋଷାକ ଧଳା
ଟେବୁଲ ଉପରେ ମଲ୍ଲୀ ଓ ମାଳତୀ
ଦେହ ଉପରେ ଶ୍ୱେତ ବସ୍ତ୍ରର ଆବରଣ

ଦିନ ସବୁ ଅଦ୍ଭୁତ ଶୁଭ୍ରତାରେ ସ୍ନାତ
ଝରାର ଆକାଶରେ ରୂପା ରଙ୍ଗର ଜାହାଜ
ଅବସନ୍ନ ଆଖିର ଦୁଃସ୍ୱପ୍ନ ଦେଇ ଉଡ଼ିଯିବ
ଦେଶରୁ ଦେଶାନ୍ତରକୁ ଦୃଶ୍ୟରୁ ଦୃଶ୍ୟାତୀତକୁ

ବିଛଣା ଉପରେ ତପସ୍ୱୀ ଧ୍ୟାନରତ
ତାର ସହସ୍ର ମୁହୂର୍ତ୍ତର ପରିଗଣନାରେ
ଚାରିପାଖେ ବିଦାୟୀ ଲୋକଙ୍କର ଭିଡ
ବାହାରେ ବାହକମାନେ ଅପେକ୍ଷାରେ
ପାଖ ଟେବୁଲ ଉପରେ ଅନିବାର୍ଯ୍ୟ ଭିଜିଟ୍ କାର୍ଡ
ସମସ୍ତଙ୍କୁ ଘେରି ଅନିର୍ଦ୍ଦିଷ୍ଟ ସମ୍ଭାବନାର
ଅସ୍ପଷ୍ଟ ଓ ଭୟଙ୍କର ଛାଇ

କାନ୍ଥଘଡ଼ିର ମୁହଁ ବିବର୍ଣ୍ଣ ହୋଇଗଲେ
ସମସ୍ତେ ଚାଲିଯିବେ ଯେ ଯାହାର
ଡାକ୍ତର କହିବ ରକ୍ତ ସଞ୍ଚରଣର
ଆଉ ପଚାଶ ପଚାଶ ସମ୍ଭାବନା ନାହିଁ
ସମୟର ଆଗତୁରା ନୋଟିସ ପାଖରେ
ଋତୁମାନେ ଭବିଷ୍ୟତକୁ ରୂପକଥା କହୁଥିବେ
ଆଗନ୍ତୁକ ଘର ଭିତରକୁ ଆସିବ
ଡାକିବାକୁ ଅପେକ୍ଷା ନ କରି

# ଫୁଲ ଯଦିଓ ପ୍ରତୀକ ନୁହେଁ

ଫୁଲ ଯଦିଓ ପ୍ରତୀକ ନୁହେଁ
ପାଖୁଡାକୁ ଛୁଇଁଲେ ମୁଁ ତମ କଥା ବୁଝିପାରିବି

ତମର ସୌରଭର ସାମାନ୍ୟ ସ୍ପର୍ଶରେ
ମୁଁ ବୁଝିପାରିବି ଅନୁଚ୍ଚାରିତ ମନ୍ତ୍ରକୁ
ନିଃଶବ୍ଦ ନିର୍ଦ୍ଦେଶକୁ ଅପ୍ରକାଶ ଆର୍ତ୍ତନାଦକୁ

ତମେ ପ୍ରସ୍ଫୁଟିତ
ଭାସମାନ ଶୋକର ସ୍ମୃତିରେ
ରୋଗିଣୀର କବରୀରେ ଭଙ୍ଗା ଚଟାଣରେ
ତମେ ପ୍ରତିଧ୍ୱନିତ ଶବ୍ଦର ମରୁଭୂମିରେ
ସଙ୍ଗୀତହୀନ ନିର୍ଜନତାରେ ତମେ ଗୁଞ୍ଜରଣ
ତମେ ରଙ୍ଗ ଆଣି ଦେଇପାର
ଝଡରେ ବିଧ୍ୱସ୍ତ ଦେବୀ ପ୍ରତିମା ଦେହରେ
ଅବସନ୍ନ ଅପରାହ୍ଣରେ
ତମେ ହିଁ ନିର୍ଜନତାର ସାମାନ୍ୟ ଆନ୍ଦୋଳନ

ପତ୍ରର ନିବିଡତା ଭିତରେ ତମେ
ଅନାୟାସ ଭବିଷ୍ୟତକୁ ନିର୍ଦ୍ଦେଶ ଦେଉଥିବା
ତମର ଅସଂଖ୍ୟ ବୃନ୍ତର ଅଙ୍ଗୁଳି
ସକାଳରୁ ସଞ୍ଜ ମଉଳି ଯାଉଥିବା ମୁହଁ
ଅପ୍ରତ୍ୟୟର ମେଘ ଭିତରେ
କଣ୍ଟାର ପଞ୍ଜୁରୀରୁ ବାହାରି ଆସୁଥିବା ହାତ
ଆରଣ୍ୟକ ଶୂନ୍ୟତାରେ
ଖସିପଡୁଥିବା ଆଶୀର୍ବାଦର ପାଖୁଡା
ପ୍ରତ୍ୟାଶାର ବାଲିଚରରେ

ତମେ ଜଳୁଥିବ ଲିଭୁଥିବ
ନିଜକୁ ବିକିରଣ କରି
ଫୁଲ ଯଦିଓ ପ୍ରତୀକ ନୁହେଁ
ଜ୍ୟୋତିରିଙ୍ଗଣ ଭଳି

# ନିର୍ଦ୍ଧାରିତ ଅବସ୍ଥା କଥା

ନିର୍ଦ୍ଧାରିତ ଅବସ୍ଥା କଥା ଜାଣି ଲାଭ ନାହିଁ
ରାତିକୁ ଅବଜ୍ଞା କରିବା ବୃଥା
ମିଛ ପ୍ରଶ୍ନରେ କେବଳ ନିଜକୁ ପ୍ରତାରଣା
ମାତ୍ର ଆଙ୍ଗୁଳାଏ ହସରେ
ଦକ୍ଷିଣାବର୍ତ୍ତ ପ୍ରଭାବିତ ହେବ ନାହିଁ

ସମୟ ହେଉଛି ସବୁ ପ୍ରତ୍ୟୟର ଗୁଣିତକ
ଅନ୍ୟ ସବୁ ଗଣନା ତେଣୁ ମୂଲ୍ୟହୀନ
କାର୍ଯ୍ୟକାରଣର ଆକସ୍ମିକତା କଥା ଭାବିବା ନିରର୍ଥକ
ପବନର ପାଦଚିହ୍ନକୁ ମାପିଲେ
ଯାହା ମିଳିବ କେବଳ ହତାଶା
ଅସଫଳତାର ସମର୍ଥନରେ
କେବଳ ଗୋଟିଏ ଦୀର୍ଘଶ୍ୱାସ
ପରିବ୍ୟାପ୍ତ ହେବ ଗ୍ରହରୁ ଗ୍ରହକୁ
ଘର ଭିତରେ ନ ଶୁଣିବା ଲୋକ
ଘଣ୍ଟା କଣ୍ଟାକୁ ଭୂକ୍ଷେପ ନ କରି
ଯୋଗଫଳ ଦେଖୁଥିବ

ଆପାତତଃ ସବୁ ଶୂନ୍ୟ ହୋଇଯିବ
ଆଗ ଷ୍ଟେସନରେ ଓହ୍ଲାଇବା ଯାତ୍ରୀ
ଦୂର ଦୂରାନ୍ତର କଥା ଭାବୁଥିବା ବେଳେ
ରେଲଗାଡ଼ି ଅତିକ୍ରମ କରିଯିବ ସମସ୍ତ ଋତୁକୁ
ସମାନ୍ତର ରାସ୍ତାମାନ ଅତିକ୍ରମ କରି
ଶବବାହକ ଚାଲିଯିବେ ନିସ୍ପୃହ ଭାବରେ
ହାତରେ ଭଙ୍ଗା ଛତା
ବାହାରେ ଖରା ଓ ବର୍ଷା
ପ୍ରତିଦିନର ପଥିକ ଫେରି ଆସିବ

ଚିହ୍ନା ରାସ୍ତାରେ ପୁଣି ନିଜ ଘରକୁ

ଗ୍ରହ ଓ ନକ୍ଷତ୍ରଙ୍କୁ ପଚାରି ଲାଭ ନାହିଁ
ପ୍ରତ୍ୟେକ ଉପାଦାନର ଗତିରେ ସମ୍ମିଳିତ ହୋଇ
ସୌର ମଣ୍ଡଳକୁ ସ୍ୱୀକାର କରି ନିଅ
ଏଥରକୁ ଗର୍ଭାଶୟକୁ ଫେରିଯାଅ
ଏବଂ ଅନ୍ଧାରକୁ ତମର କାନ୍ଦ ଶୁଣାଅ

## ତମର ଇନ୍ଦ୍ରଜାଲରେ

ତମର ଇନ୍ଦ୍ରଜାଲରେ ଆଉ ଗୋଟିଏ ଦିନ
ତମ ମୁହଁରେ ସକାଳ
ଚିତ୍କାର କରି ଉଡ଼ି ଯାଉଥିବା ପକ୍ଷୀ
ଓ ହଠାତ ଆତ୍ମପ୍ରକାଶ କରୁଥିବା
ବେଳାଭୂମିର ସକାଳ
ଚୁପ ଚୁପ କଥାରେ ଦୋହଲୁଥିବା ପର୍ଦ୍ଦା
ଗୋଲାପୀ ଖରା ନରମ ପବନ
ଓ ମନ୍ତ୍ରଧ୍ୱନିର ସକାଳ

ତା ପରେ ତରଳା ରୂପାର ଖରା
ଶୂନଶାନ ହୋଇଯାଉଥିବା ଆକାଶ
ଅପହଞ୍ଚ ପ୍ରତିଧ୍ୱନିର ସୀମାହୀନ ଗହ୍ୱରରେ
ହଜିଯାଉଥିବା କ୍ଷୀଣ ଦୀର୍ଘଶ୍ୱାସ
କଳା ଚଷମାରେ ପ୍ରତିବିମ୍ବିତ
ଏକାକୀ ଗଛର ଏକାନ୍ତ ସାଧନା
ସମସ୍ତଙ୍କୁ ଆଚ୍ଛନ୍ନ କରି ରଖୁଥିବା
ଏକ ଅନ୍ତର୍ମୁଖୀ ଧୂସର ନିଃସଙ୍ଗତା

ପୁନର୍ଜୀବିତ ପବନର ଶ୍ରଦ୍ଧାରେ
ଲମ୍ବି ଯାଉଥିବା ଘାସର ଛାଇ
ପାଣିରେ ବହି ଯାଉଥିବା ସଙ୍ଗୀତରେ
ଇଷତ୍ ନୀଳର ଆଭାସ
ଅନ୍ତହୀନ ନିବିଡ଼ ବିସ୍ମୃତିରେ
ମନ୍ଥର ଗତିରେ ଦୋଳାୟମାନ ଅପରାହ୍ନ

ତମ ଆଖିରେ ପରିଚୟର ସନ୍ଦେହ
ତମ କପାଳରେ ସୁନାରଙ୍ଗର ସୂର୍ଯ୍ୟାସ୍ତ
ସବୁ ରାସ୍ତା ସରିଯିବ ସେଠାରେ
ଆକାଶ ପୁଣି ଘନନୀଳ
ମିଟି ମିଟି ତାରା ଓ ତାରା
ସବୁ ଝରକା ଦେଇ କେବଳ ଅନ୍ଧାର

## କେଉଁ ନିର୍ଣ୍ଣୟର ଭୟ

କେଉଁ ନିର୍ଣ୍ଣୟର ଭୟ
ପ୍ରେମର ନା ଅନାସକ୍ତିର
ନା କେବଳ ଅବୈଧ ପୂର୍ବାପର ସଂପର୍କର
ବିନା ନିଷ୍ପତ୍ତିର ପ୍ରତିଦ୍ୱନ୍ଦ୍ୱିତାରେ
ପୁଣି ଶୋଚନା କାହିଁକି
ଯଦି ଏଠାରେ ଜିଣିବା ନିରାନନ୍ଦ
ଏବଂ ହାରିବା ଶୋକରହିତ
ଅଧିକାର ହିଁ ଯଦି ଏଠାରେ
ନିଜର ଏକମାତ୍ର ସମର୍ଥନ

ଏଠାରେ ଘଟଣା ସବୁର

ନିଜ ନିଜର ନିର୍ଣ୍ଣିତ କ୍ରମ
ବୟସ ବଢ଼ିଯାଉଥିବା କୁମାରୀର ଦୁଷ୍ଟ ସ୍ୱପ୍ନରେ
ନିଷିଦ୍ଧ ଜୟଯାତ୍ରା ଚାଲିଯିବ
ଦିଗ୍‌ବଳୟ ଉପରେ ଧୀର ପାଦରେ ନିର୍ଗତ ହେବ
ହାରିଯାଇଥିବା ଦିନମାନଙ୍କର
ଆହୁରି ଏକ ଉପେକ୍ଷିତ ବର୍ଷ
ଅପରାହ୍ନର ଛାଇ ରାସ୍ତା ଉପରୁ ଓହ୍ଲାଇଗଲେ
ଟ୍ରାଫିକ ପୋଲିସ ହାତ ଦେଖାଇବ ରାସ୍ତା ବନ୍ଦ
ତା ପରେ ସାମୟିକ ଯୁଦ୍ଧ ବିରତି
କେବଳ ସୂର୍ଯ୍ୟମୁଖୀର ଅପରାଧୀ ମୁହଁ
ଉଦ୍‌ବେଗରୁ ଉଦ୍‌ବେଗକୁ ଘୁଞ୍ଚି ଯାଉଥିବ

ନିୟମ ଅନୁଯାୟୀ ପୁଣି ଅଭ୍ୟାସକୁ ମାନି
ଦୁଇ ପ୍ରତିପକ୍ଷ ଆସି ପହଞ୍ଚିବେ
ପ୍ରାତ୍ୟହିକ ଯୁଦ୍ଧ କ୍ଷେତ୍ରରେ
କେହି କାହାରି ବିକଳ୍ପ ନୁହେଁ
କେହି କାହାରି ପରିପୂରକ ନୁହେଁ
କେବଳ ଦୁଇ ପଥଭ୍ରଷ୍ଟ
ଅଚିହ୍ନା ଲୋକଙ୍କର ଭେଟା ଭେଟି
ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ ହୋଇ
ତା ପରେ ବାଦୀ ପ୍ରତିବାଦୀ ସାକ୍ଷୀ ସନାକ୍ତକାରୀ
ସମସ୍ତଙ୍କୁ ବସି ରହିବାକୁ ହେବ
ନ୍ୟାୟାଳୟର ପାହାଚ ଉପରେ
ବିଚାରପତିଙ୍କ ବିନାସର୍ତ୍ତ ନିଷ୍ପତ୍ତି ଅପେକ୍ଷାରେ

ହାତ ମୁଠାରେ ପ୍ରମାଣପତ୍ର ସବୁ ଖିନଭିନ
ମଧ୍ୟାହ୍ନର ପ୍ରତିଶ୍ରୁତି ହଜିଯିବ ସମୟର କିମ୍ବଦନ୍ତୀରେ
ଅନିଶ୍ଚୟର ବିରକ୍ତ ମେଘ ଛାଇଯିବ ଆକାଶକୁ
ପାହାଚ ଉପରେ ଶୀର୍ଣ୍ଣକାୟ ଛାଇଙ୍କର ମେଳରେ
ଅନାସକ୍ତ ଭାବେ ପରସ୍ପର ମୁହଁକୁ ଅନାଇ
କେତେ ସମୟ ଆଉ ବସି ରହିବାକୁ ହେବ

କେତେ ସମୟ ଆଉ କେତେ ସମୟ
ନିଜ ନିଜ ପାପର ହିସାବ ନେଇ

## ଯାଦୁକରର ଖେଳ ଶେଷରେ

ଯାଦୁକରର ଖେଳ ଶେଷରେ
ରାତିର ସମ୍ମୋହନ ସମାପ୍ତ
ଲଣ୍ଠନ ଆଲୁଅ ଫିକା
କେହି ନାହିଁ ଆଉ କେହି ନାହିଁ
ମଳା ଆଲୁଅ ଚାରିପାଖେ
ଏଥରକ ଚାଲି ଯିବାର ବେଳ

ତମକୁ ମୁଁ ଛାଡ଼ି ଆସିଲି
ବ୍ୟସ୍ତ ରାତ୍ରିର ଶେଷ ଭାଗରେ
ଦେହରେ ଆଶ୍ଚର୍ଯ୍ୟ ଶିଳ୍ପ
ମୁହଁରେ ଅପାର୍ଥିବ ସମ୍ମୋହନ
ବିସ୍ରସ୍ତ ରୂପରାଗରେ ତମେ
ପଲଙ୍କରେ ଜଡ଼ି ଯାଇଥିବା ବିସ୍ମୟ
ମୁଁ ଚାଲି ଆସିଲି
ତମର ସ୍ୱପ୍ନଗ୍ରସ୍ତ ଆଖିକୁ ଥରେ ମାତ୍ର ଛୁଇଁ

ସକାଳର ବସ୍‌ଷ୍ଟପ୍‌ରେ ଅସମ୍ଭବ ଭିଡ଼
ଅନେକଙ୍କ ମୁହଁ ମିଶି
ଏକ ସମ୍ମିଳିତ ମୁହଁର ଛଳନା
ସବୁ ପୁଣି ତମ ମୁହଁରେ ବିଲୀନ
ଏଥର ଆଗକୁ ଗଲେ
ସବୁ କିଛି ମନେ ରଖିବାର ଆବେଶ ମାତ୍ର

ସବୁ ବାର୍ତ୍ତାଳାପ ବିଦାୟ ନେବାର
ସବୁ ପାଦଚିହ୍ନ ଉତ୍ତର ଦିଗକୁ
ହାତରୁ ଖସି ପଡୁଥିବା ବାଲି
ସମୁଦ୍ରର ବେଳାଭୂମିରେ ନିଶ୍ଚିହ୍ନ

ମୁଁ ଯେତେବେଳେ ତମ ପାଖକୁ ଫେରିବି
ମୋର ଅଯୌକ୍ତିକ ବୁଲିବା ଶେଷରେ
ଆମର ପୁନର୍ବାର ସାକ୍ଷାତର ସକାଳେ
ମୋ ପାଦରେ ଫେରନ୍ତା ରାତିର କ୍ଳାନ୍ତି ନଥିବ
ମୋର ଆଖିରେ ପରିପୂର୍ଣ୍ଣତାର ଭୟ ନାହିଁ
ଦେହରେ ଉତ୍ତେଜନାର ଅନୁତାପ ନାହିଁ
ତମେ ଅପେକ୍ଷମାଣ ଥିବ
ତମର ପରିବର୍ତ୍ତିତ କାୟାକଳ୍ପରେ
ମୁଁ ଏଥରକ ଦେଖିବି ତମ ମୁହଁରେ
ସ୍ପର୍ଦ୍ଧାର ବିନ୍ଦୁମାତ୍ର ନଥିବ
କେବଳ କରୁଣା ଓ କ୍ରୂରତା ମିଶା
ଏକ ଅବ୍ୟକ୍ତ ଅନୁଭୂତି

ମୁଁ ଯେତେବେଳେ ତମକୁ ସ୍ୱୀକାର କରିବି
ତମ ଦେହରେ ଅନୁଶୋଚନା ବ୍ୟତୀତ
ଅନ୍ୟ କୌଣସି ଉପଲବ୍ଧି ନଥିବ
କେବଳ ନ କହିଥିବା ଶବ୍ଦମାନଙ୍କର ନିର୍ଯ୍ୟାତନା
ଯନ୍ତ୍ରଣା ସବୁ ଗୋଟିଏ ସ୍ଥିର ବିନ୍ଦୁ ହୋଇ
ତମର ଆଶ୍ଚର୍ଯ୍ୟ ଆଖିରେ

# ନିଜ ନିଜର ବିଶେଷ ପରିମାପରେ

ନିଜ ନିଜର ବିଶେଷ ପରିମାପରେ ଦେଖିନିଅ
କେତେଥର ପ୍ରଦକ୍ଷିଣ ହେଲା
କେତେ ପରିକ୍ରମା ଶେଷ
କେତେ ପୁଣ୍ୟ ହସ୍ତଗତ

ସ୍ୱପ୍ନର ପରିଧି କେତେ ବାକି ରହିଗଲା

କେତେ ଯନ୍ତ୍ରଣା ନିର୍ଗତ ରକ୍ତ ପ୍ରବାହରେ
କେତେ ଅନୁରକ୍ତି ନିଃଶେଷ ଦୀର୍ଘ ନିଶ୍ୱାସରେ
କେତେ ହସ ସଂକ୍ରମିତ ହେଲା ଆଖି ଓ ଓଠରେ
ସୀମାରେଖା ଉପରେ କ୍ରମାଗତ ଗତିଶୀଳ
ଅନୁଧାବନ ପଶ୍ଚାଦ୍ଧାବନରେ
କେତେ ଦୃଷ୍ଟି ନ୍ୟସ୍ତ
ବିଭ୍ରାନ୍ତ ଓ ସୀମିତ ହେଲା
କେନ୍ଦ୍ର ବିନ୍ଦୁ ଉପରେ

ଅନ୍ୱେଷଣ ତଥାପି ଅବିଚ୍ଛିନ୍ନ ରହିଥିବ
ପରିଧିର ବର୍ତ୍ତୁଳତାକୁ ଅନୁସରଣ କରି
ବୃତ୍ତର ବେଷ୍ଟନୀ ଭିତରୁ
ନିବୃତ ହେବାର ମନ୍ତ୍ର କାହିଁ
କେଉଁପରି ଦୁଃସାହସ ନେଇ
ସୀମାହୀନ ପାଇଁ ପ୍ରେମ
ଦେହରେ କେଉଁ ନଭଶ୍ଚାରୀ ପକ୍ଷୀର ଡେଣା
ନେଇଯିବ ଆଲୋକକୁ ଭୂଲୋକକୁ ଦ୍ୟୁଲୋକକୁ
ପକେଟରେ କେଉଁ ଦୈବୀ ଜନ୍ମର ପ୍ରମାଣପତ୍ର
ପାଦ ତଳକୁ ଆଣିଦେବ ପାପ ଏବଂ ପୁଣ୍ୟ
କିଏ ଏପରି ଅକ୍ଷରେଖାର ବର ଦେବ
ଯାହା ଉପରେ ଠିଆ ହେଲେ
ହାତ ମୁଠାରେ ଦିନ ଆସିବ
ଏବଂ ଆଖି ପଲକରେ ରାତି

ନିଜ ନିଜର ଅନ୍ୟମନସ୍କତା ସତ୍ତ୍ୱେ
ସମସ୍ତେ ଘୂର୍ଣ୍ଣାୟମାନ ଥିବେ
ଘୂର୍ଣ୍ଣିର ଚକ୍ରାକାର ଘେରରେ ଉଡୁଥିବେ
ଅନୁନୟ ବିନୟର ଛିନ୍ନପତ୍ର

ଅଭିଜ୍ଞତାର ପରିଶିଷ୍ଟମାନ
ଜଳାବର୍ତ୍ତରେ ମିଶିଯିବେ ଅବଚେତନାର ସ୍ରୋତସବୁ
ରଙ୍ଗଭୂମିର ଆଲୋକମଣ୍ଡଳ ଭିତରେ
ବିଦୂଷକର ହାସ୍ୟକର ପରିସ୍ଥିତି ମାତ୍ର ଥିବ
ଅର୍ଦ୍ଧବୃତ୍ତକୁ ଛୁଇଁ ହାତତାଳି
ପ୍ରତିଧ୍ୱନି ହୋଇ ଫେରି ଆସୁଥିବ

ବୃତ୍ତ ମଝିରେ ବୃତ୍ତ
କ୍ରମବର୍ଦ୍ଧମାନ ବୃତ୍ତରୁ ଅନ୍ୟ ବୃତ୍ତ
ଦୃଷ୍ଟିର ମାୟା ଘେରରେ
ସ୍ମୃତିର ଘୂରନ୍ତ ଉତ୍ତରଣ
ମଣ୍ଡଳ ପରେ ମଣ୍ଡଳର ଅନ୍ୱେଷଣ
ଋତୁଚକ୍ର ଚାଲିଥିବ ସମୟର ଶୋଭାଯାତ୍ରାରେ
ସହରକୁ ସହର ସହରରୁ ସହର
ସହର ବଦଳିବ ନାହିଁ
ଆଗରୁ ଆଗକୁ କ୍ଷୟିଷ୍ଣୁ ସମ୍ଭାବନାରେ
ବର୍ଷା ପରେ ପୁଣି ଖରାର ସହର

ଏଠାରେ କେଉଁ ବୁଝାମଣା ଆଉ
ଆଣିଦେବ ଶୀତର କାକର

# ଚିଠି ଲେଖିବାର ପର୍ବ

ଚିଠି ଲେଖିବାର ପର୍ବ ଏଥରକ ଶେଷ ହେଉ
କୁମାରୀ ଅକ୍ଷରମାନଙ୍କର ବ୍ୟକ୍ତିଗତ ଅନୁଶୋଚନା
ଇତସ୍ତତଃ ଶବ୍ଦମାନଙ୍କର ଶୃଙ୍ଖଳାର ନିର୍ଯାତନା
ପୃଷ୍ଠା ପୃଷ୍ଠା ଅନୁଭବର କପଟ ଇସ୍ତାହାର

ସମସ୍ତେ ସ୍ମୃତିର କଣ୍ଟାରେ ବିଦ୍ଧ ରହିଥାନ୍ତୁ

ତମେ ମୋ ପାଖକୁ ଆସ
ସମର୍ପଣର ଉଜ୍ଜ୍ୱଳତାରେ
ମୁହଁ ଅନ୍ଧାରରେ ତମର ଦେହ ହେଉ
ବିଜୁଳିର ବିନ୍ୟାସ
ତମେ ଆବିର୍ଭାବ ହୁଅ ଶୀତର ଶପଥକୁ
ପରିପୂର୍ଣ୍ଣ କରୁଥିବା ସମୁଦ୍ର ଗର୍ଭରେ
ସ୍ୱତଃସ୍ଫୁର୍ତ୍ତ ଲହରୀର ଊର୍ଦ୍ଧ୍ୱମୁଖୀ ସଙ୍କଳ୍ପ ନେଇ
ତମେ ମୋ ପାଖକୁ ଆସ
ସହାନୁଭୂତିର ସମ୍ମୋହନରେ ସ୍ପର୍ଶର ଉଲ୍ଲାସ ହୋଇ
ଧ୍ୱନିର କାକର କିଛି ବିଞ୍ଚିଯାଉ
ମୁଁ କିଞ୍ଚିତ ଭିଜିଯାଏ କଥାର ବର୍ଷାରେ

ଡାକଘରର କବାଟ ସଶବ୍ଦେ ବନ୍ଦ ହେଲେ
ଚିଠି ବାକ୍ସ ଉପରେ ଜମିଯିବ
ଅବଶିଷ୍ଟ ଦିନ ମାସ ବର୍ଷର ଅଭିଶାପ
ସବୁ ସମତଳ କରିଯିବ
ଲହରୀ ପରେ କ୍ରମହୀନ ଲହରୀ
ସମୟର ଜଳାବର୍ତ୍ତର ଅଦ୍ଭୁତ ଆକର୍ଷଣ
ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣ ସବୁକୁ ଟାଣି ନେବ
ପ୍ରତିଧ୍ୱନିର ଅତଳସ୍ପର୍ଶୀ ଶୂନ୍ୟ ଗହ୍ୱରକୁ

ସିଦ୍ଧାନ୍ତର ଶୁଭ ମୁହୂର୍ତ୍ତ ଉତ୍ତୀର୍ଣ୍ଣ ହେବା ଆଗରୁ
ଚିଠି ଲେଖିବାର ପର୍ବ ଶେଷ କରି
ତମେ ଯଦି ଓହ୍ଲାଇ ନ ଆସ
ଉପରେ ଶୂନ୍ୟ ଓ ତଳେ ନିସ୍ତବ୍ଧତା ମଝିରେ
ମୁହୂର୍ତ୍ତ ସବୁ ଅସିଦ୍ଧ ଓ ଅସମ୍ପନ୍ନ ରହିଯିବେ
କ୍ଷୟ ପାଉଥିବା ଶବ୍ଦମାନେ
ତାକୁ କୌଣସି ମୂଲ୍ୟ ଦେବେ ନାହିଁ

# ରାସ୍ତାପାଖ ଷ୍ଟେସନର

ରାସ୍ତାପାଖ ଷ୍ଟେସନର ଟିକେଟ ଘର ଖାଲି
ପକେଟରେ ଅଚଳ ପଇସାର ରୁଣଝୁଣ
କାନ୍ଥରେ ରକେଟର ବିଜ୍ଞାପନକୁ ଅନାଇ
ଝରକା ପାଖରେ
ପ୍ରାତ୍ୟହିକ ତୃତୀୟ ଶ୍ରେଣୀର ଯାତ୍ରୀ
ଫେରନ୍ତା ଟିକେଟ୍ ମାଗୁଛି ଭବିଷ୍ୟତକୁ

ଟିଣ ଛାତ ଉପରେ ଖରାର ରାଜତ୍ୱ
ଟେଲିଗ୍ରାଫ୍ ତାରର କମ୍ପନ
ଛୁଇଁ ଯାଉଛି ସିଗ୍‌ନାଲ ଖୁଣ୍ଟକୁ
ଟ୍ରେନର ସିଟି ତରଳି ଯାଉଛି
ବୈଶାଖର ନିର୍ଦ୍ଦୟ ପବନରେ
ତାଳ ଓ ଲୟ ଏକମାତ୍ର ସମ୍ବଳ
ଆସି ପହଞ୍ଚୁଛି ଏକ୍‌ସପ୍ରେସ୍ ଟ୍ରେନ୍
ସମାନ୍ତର ରେଖାର ବ୍ୟର୍ଥତା ସହିତ
କେବେ ଦ୍ରୁତ କେବେ ବିଳମ୍ବିତ

ଷ୍ଟେସନର ଅନ୍ତଃପୁରରେ ପ୍ରତିଧ୍ୱନିତ
ପ୍ରସ୍ଥାନର ତୃତୀୟ ଘଣ୍ଟି
ଶେଷ ସିଗାରେଟ୍ ଫୁଙ୍କି ସାରିବା ପରେ
ଦୁଃଖ ଅସ୍ୱସ୍ତି ନୈରାଶ୍ୟ କ୍ଳାନ୍ତି ବିରକ୍ତିର
ଏକତ୍ରିତ ଅବସ୍ଥା ନେଇ
ଟ୍ରେନରୁ ଓହ୍ଲାଇଥିବା ଯାତ୍ରୀ
ପୁଣି ଡବାରେ ଯାଇ ବନ୍ଦ

ଟ୍ରେନ ଚାଲିଗଲା ଠିକ ସମୟରେ
ଝରକା ସେପାଖେ କେହି ନାହିଁ
ଖାଲି ହାତ ଫେରି ଆସିବ ଖାଲି ପକେଟକୁ
ପ୍ରାଚୀରପତ୍ରମାନ ଅସହାୟ ଶୋଚନାରେ
ସମାନ୍ତର ରେଖାସବୁ ନିର୍ବାକ
ଖରାବେଳର ପ୍ଲାଟଫର୍ମ ଖାଲି

ସ୍ୱତଃ ପ୍ରମାଣିତ ସତ୍ୟ ଭଳି
କେବଳ ତମେ ଖୁଣ୍ଟକୁ ଆଉଜି
ଏବଂ ମୁଁ ପ୍ରବାସୀ

# ତମେ କହିଥିଲ ନିଶ୍ଚିତ

ତମେ କହିଥିଲ ନିଶ୍ଚିତ ଫେରିବ
ଅଧିକୃତ ଦିଗ୍‌ବଳୟର ଅନ୍ୟ ଦିଗରୁ
ମୋର ଚାହିଁବା ଯେତେବେଳେ ବିସ୍ତାରିତ ହୋଇ
ସୌର ମଣ୍ଡଳକୁ ଦି'ଭାଗ କରିବ
ମୁଁ ଯେତେବେଳେ ବୁଝି ପାରିବି
ନିର୍ଦ୍ଦୟ ମେଘର ନିଃଶ୍ୱାସକୁ
ଅନୁଭବ କରି ପାରିବି
ଜ୍ୟୋତିଷ୍ମାନ ଗ୍ରହର ଅନୁଶୋଚନାକୁ

ତମେ କହିଥିଲ ଫେରିବ
ସାତ ଦିନ ସାତ ରାତି ପରେ
ଝଡ ସରି ଯାଇଥିବ
ଶେଷ ମେଘ ଭାସିଯିବ

ଶୋକାଚ୍ଛନ୍ନ ସହର ଉପରେ
ଦିଗଭ୍ରାନ୍ତ ପବନ ଆସି
ଫେରାର ଆତ୍ମାକୁ ଆଶ୍ୱାସନା ଦେଇଯିବ
ଆଜ୍ଞାବହ ଶବ୍ଦ କାନ୍ଦିଯିବ
ଉଦ୍ଧୃତି ଚିହ୍ନର ନିଷ୍ପୀଡନରେ

ମୋର ଅପେକ୍ଷା ନିର୍ବିଶେଷରେ
ତାରାମାନେ ଚୁପ ରହିଥିବେ
ତମର ପ୍ରତ୍ୟାବର୍ତ୍ତନର ଅସଂଖ୍ୟ ଦର୍ପଣ
କ୍ଷମାଶୀଳ ଅନ୍ଧାରକୁ ପ୍ରସାରିତ କରୁଥିବେ
ତମର ଫେରିବାର ସମ୍ଭାବନାରେ
ମୁଁ କଣ କଳନା କରିପାରିବି
ଆକାଶର ଅଭିପ୍ରାୟକୁ
ମୁଁ କଣ ଦେଖିପାରିବି ଦୃଶ୍ୟର ଅନ୍ୟପାର୍ଶ୍ୱ
ମୁଁ କଣ ସହିପାରିବି ସମୟର ତିରସ୍କାରକୁ
ମୁଁ ମୋର ନିଜର ଚାହିଁବାରେ
ପ୍ରବୃତ୍ତ ରହିଥିବି
ଅପରିଚିତ ସହରର ଅନ୍ଧଗଳିକୁ
ପୋଷ୍ଟମାନ ଚାଲିଯିବ
ମଲା ଲୋକର ଟେଲିଗ୍ରାମ ନେଇ

# ସମୟର ଅନ୍ୟ ବିସ୍ତାରରୁ

ସମୟର ଅନ୍ୟ ବିସ୍ତାରରୁ ଆସି
ସ୍ୱପ୍ନ ମଝିରେ ଓହ୍ଲାଇଲେ ସବୁ ଅବ୍ୟବସ୍ଥା
ବଂଶାବଳୀର ବିଭ୍ରାଟରେ ମହାଯୁଦ୍ଧ ସ୍ଥାଣୁ ରହିଯିବ
ଇତିହାସର ଭୁଲ ଗଣନାରେ

ଏକ ସଙ୍ଗେ ଆସି ପହଞ୍ଚିବେ
ହିମଶୀତଳ ଅନ୍ଧକାର
ଏବଂ ଭାବୀ ଶତକର ଚମତ୍କାର

ବୟସର କ୍ରମାନ୍ୱୟ ଘଟଣା ସଂଗ୍ରହ ମଝିରେ
ଆଖି ବନ୍ଦ କରିନେଲେ
ତ୍ୱରାନ୍ୱିତ ଚାଲିଯିବେ ବାହାରର ରୂପ ସବୁ
ସହୃଦୟ ସକାଳରୁ ପ୍ରତିହିଂସାପରାୟଣ ରାତି
ପୁଣି କ୍ଷଣକରେ ନିର୍ଦ୍ଦୟ ସକାଳ
ଶୋଭାଯାତ୍ରା ବାହାରେ ଠିଆ ହେଲେ
ଆଗକୁ ଯିବାର ଗୋଟିଏ ବିସ୍ମୃତ ମୁହୂର୍ତ୍ତରେ
ଗଛରୁ ପତ୍ର ଝଡ଼ିପଡ଼ିବ
ଓ ପୁଣି ଯାଇ ଗଛରେ ଲାଗିବ
ଶୀତକୁ ଧକ୍କା ଦେଇ ବସନ୍ତ ଆସିବ
ପୁଣି ଖରା ପାଇଁ ଜାଗା ଛାଡ଼ିବାକୁ

ଟିକେଟ କାଟିବା ବେଳେ ହଠାତ
ଆସି ପହଞ୍ଚିବ ଗନ୍ତବ୍ୟ ସ୍ଥଳ
ସୂର୍ଯ୍ୟୋଦୟକୁ ଦେଖୁ ଦେଖୁ ଅନ୍ଧାର
ଗୋଟିଏ କ୍ଷଣିକର ସ୍ୱପ୍ନ ଏକତ୍ର କରିବ
ଏକ ସଙ୍ଗେ ତ୍ରେତା ଓ ଦ୍ୱାପର
ସମୟ ପୃଥକ କରି ରଖିଥିବା
ଜନ୍ମ ଓ ଜନ୍ମାନ୍ତର

ସମୀକ୍ଷାର ବେଳ ନାହିଁ
ଯାହା କିଛି ଦେଖି ପାରିବ
କେବଳ ଏକ କ୍ଷିପ୍ର ବିହଙ୍ଗାବଲୋକନ
ଗ୍ରହମାନେ ବାରମ୍ବାର ଭ୍ରାମ୍ୟମାଣ ଦ୍ରୁତ ଅନୁକ୍ରମରେ
ନିଜ ଭିତରର ଅନ୍ଧକାରକୁ
ବିକୀରଣ କରି ଯାଉଥିବ ସୂର୍ଯ୍ୟ
ଫଗୁଣର ଗନ୍ଧ ରତୁଚକ୍ରର ହାଓ୍ୱାରେ ନିଶ୍ଚିହ୍ନ

ପୃଥିବୀର ଶେଷ ଗୌରବର କବର ଉପରେ
ମଣିଷର ଭାବୀ ବଂଶଧରମାନେ
ମୃତ୍ୟୁର ପୋଷାକ ପିନ୍ଧି

## ମୋ ନାଁକୁ ସାକ୍ଷୀ ରଖି

ମୋ ନାଁକୁ ସାକ୍ଷୀ ରଖି
ତମର ଛାଇକୁ ଛାଡ଼ିଯାଅ

ଏଥରକ ସମୟ ସବୁ ଆଶଂକାହୀନ
ସ୍ମରଣର ଅନ୍ଧାରରେ କାହାରି ବିନାଶ ନାହିଁ
ମେଘରେ ପଶ୍ଚାତ୍ତାପର ଆଖି ସବୁ ବିଲୁପ୍ତ
ଆକାଶରେ ଆକ୍ରମଣକାରୀ ଖରା ନାହିଁ
ଝରକାରେ ଶାଖା ପ୍ରଶାଖାର
ଭୟଙ୍କର କରାଘାତ ନାହିଁ
କଳମରେ ଖସି ପଡୁଥିବା ଧୂମକେତୁ ଅସ୍ତମିତ

ମୁଁ ତମକୁ ଏତେବେଳେ ନ୍ୟସ୍ତ କରିଯିବି
ଧ୍ୱନି ଓ ପ୍ରତିଧ୍ୱନିରେ ଉଦ୍‌ଜୀବିତ
ମୌଳିକ ଶବ୍ଦମାନ
ମୁଁ ତମକୁ ଦେଇଯିବି ସିଦ୍ଧିର ମନ୍ତ୍ର
ସମୟର ବୁଦ୍‌ବୁଦ୍‌ରେ ପ୍ରତିଫଳିତ
ଯେତେକ ଚିରନ୍ତନ
ରାତିର ଅନ୍ଧାରରୁ ତୋଳି ନେଇ
ନିଷ୍ପାପ ସକାଳ ସବୁ ତମକୁ ଦେଇଯିବି

ଦୈବୀବାଣୀ ସବୁ ଦେଖ ଭୁଲ

ଶ୍ମଶାନର ପାଖଁଶରେ ହୃଦୟ ଓ ତୀର ଚିହ୍ନ
ଆକାଶରେ ଆଶୀର୍ବାଦର ଶୁକ୍ରତାରା
ମନ୍ଦିରର ପାର୍ଶ୍ୱଚ୍ଛାୟାରେ
ଆସନବଦ୍ଧ ହୋଇ ଲାଭ ନାହିଁ
ଧ୍ୟାନରୁ ଏଥରକ ଉଠି ଆସି
ମୋ ଆଖିକୁ ସମାନ ଦୃଷ୍ଟିରେ ଦେଖ
ମୁଁ ତମ ଆଖିରୁ ଭୟକୁ ନେଇଯିବି

# ଅସମୟ ଶଂଖଧ୍ୱନିରେ

ଅସମୟ ଶଂଖଧ୍ୱନିରେ
ଦେବତାମାନଙ୍କର ସ୍ୱପ୍ନ ଭଙ୍ଗ ହେଲା
ବ୍ୟଭିଚାରୀ ପୁରୋହିତମାନେ
ମନ୍ଦିରର କବାଟ ବନ୍ଦ କଲେ
ସୁନାର ବିଗ୍ରହ ଚୋରି କରିବାକୁ ଆସିଥିବା ଲୋକ
ଗର୍ଭଗୃହରେ ଲୁଚି ରହିଲେ

ମନ୍ଦିରର ଶିଖର ଭାଙ୍ଗି ପଡୁଛି
ଭଙ୍ଗା କାନ୍ଥ ଖସୁଛି ପୂଜାରୀ ଉପରକୁ
ପଣ୍ଡିତମାନଙ୍କର ଗଣନାରେ ଅମଙ୍ଗଳ
ମନ୍ତ୍ର ସବୁ ଖଣ୍ଡ ଖଣ୍ଡ
ବିରୂପ ଓ ବିକୃତ ହୋଇଯାଉଛି
ମୁଖଶାଳାରେ ଶାଗୁଣାର ଛାଇ
ବାଇଶ ପାହାଚରେ ବାରାଙ୍ଗନା
ଫୁଲ ଚାଙ୍ଗୁଡ଼ିରେ ଅଜାତ ଶିଶୁର ଭ୍ରୂଣ
ପୂଜାଥାଳି ଭିତରେ ସାପ
ମନ୍ଦିର ବେଢ଼ାରେ ଚଳପ୍ରଚଳ ହେଉଛନ୍ତି

ପିଶାଚ ବେତାଳ ଓ ଅପଦେବତା
ଭଙ୍ଗା ମଣ୍ଡପର ଅବିଶ୍ୱସ୍ତ ଚଟାଣ ଉପରେ
ଅମଙ୍ଗଳର ଶକୁନ ସବୁକୁ ଭ୍ରୂକ୍ଷେପ ନକରି
ସାଧକ ପଢ଼ି ଚାଲିଛି ସମୟାତୀତ ଧ୍ୟାନରେ
ମୃତଭାଷାର ଏପରି ସବୁ ମନ୍ତ୍ର
ଯାହା ତାର ଅବୋଧ
ଏପରି ଉତ୍ତରାଧିକାରୀଙ୍କ ପାଇଁ
ଯେଉଁମାନେ ତାର ଅଜ୍ଞାତ

ମନ୍ଦିରରେ ଶଙ୍ଖର ସାଇରେନ୍
ବାସୁକୀର ଫଣାରେ କ୍ରୋଧ
ଆଉ କୌଣସି ସମାରୋହ ନାହିଁ
ଆବାହନ ନାହିଁ ଉପାଲଭ୍ୟ ନାହିଁ
ତଥାପି ସମୟ ଓ ଶୁଭ ନିର୍ବିଶେଷରେ
ସାଧକର ତପସ୍ୟା ଅବିଚ୍ଛିନ୍ନ
ନିର୍ବାସନର ଅଭିଶାପକୁ ଭୁଲି
ସମସ୍ତେ ଅସମୟ ଅପେକ୍ଷାରେ
ଅସମାପ୍ତ ସ୍ଥାପତ୍ୟର ଭଙ୍ଗା ମିଉଜିଅମ ଭିତରୁ
ଦେବତାମାନେ କେତେବେଳେ
ରାସ୍ତା ଉପରକୁ ଓହ୍ଲାଇବେ

# କୌଣସି ନୂଆ ସମ୍ଭାବନା

କୌଣସି ନୂଆ ସମ୍ଭାବନାର ସ୍ୱାଗତରେ
ତମେ ଧରିତ୍ରୀକୁ ଖୋଲି ରଖି ଦେଇପାର
ଦିଗ୍‌ବଳୟକୁ ଆଉ କିଛି ଦୂରକୁ ଘୁଞ୍ଚାଇ
ପର୍ବତମାନଙ୍କୁ ଧାଡ଼ି ଧାଡ଼ି ସଜାଇ ରଖିପାର
ତମେ ଦେଇପାର ଗଛରେ ବିଭିନ୍ନ ରଙ୍ଗର

ପତ୍ର ଫୁଲ ଓ ପ୍ରଜାପତି
ଗୋଟିଏ ଡାଳରେ ଶୀତ ଅନ୍ୟ ଡାଳରେ ବସନ୍ତ
ସୂର୍ଯ୍ୟ ଓ ଚନ୍ଦ୍ରକୁ ଏ ହାତରୁ ସେ ହାତକୁ ନେଇ
ଆକାଶରେ ରଙ୍ଗୀନ ମେଘର ପର୍ଦ୍ଦା ଟାଣି ଦେଇପାର

ଅନ୍ୟ ସମୟ ଆସି ଅଧିକାର କରିନେଲେ
ପ୍ରତିହିଂସାର ଖରା ଶୋଷିନେବ ସ୍ରୋତହୀନ ନଈକୁ
ପକ୍ଷୀମାନେ ଖୁମ୍ପି ଖୁମ୍ପି ନିଶ୍ଚିହ୍ନ କରିଦେବେ ସୂର୍ଯ୍ୟକୁ
ସକାଳର ସମ୍ଭାବନାକୁ ନିମଜ୍ଜିତ କରିଦେବ
ଅପରାହ୍ନର ଅହଂକାର
ଗଛର ଡାଳପତ୍ରରେ ଢାଙ୍କିଯିବ ଆକାଶର ପ୍ରତ୍ୟାଶା
ଘାସଫୁଲର ନିଶ୍ୱାସରେ ନିଶ୍ଚିହ୍ନ ହେବ
ଦିବାସ୍ୱପ୍ନର କାକର
ସାମାନ୍ୟ ପ୍ରଶାନ୍ତିକୁ ଚିରି ଆମ୍ବୁଲାନ୍ସ ଚାଲିଯିବ
ଗୋଟିଏ ରାତିରୁ ଅନ୍ୟ ଏକ ରାତିକୁ
ସକାଳକୁ ଏକ ବିକଳ୍ପ ଅଭିପ୍ରାୟ ଦେଇ
ପ୍ରଜାପତିମାନେ ଚାଲିଯିବେ ଅନ୍ୟ ଉଜ୍ଜ୍ୱଳତାକୁ

ତମର ଅଦ୍ୱିତୀୟ ଚମତ୍କାରକୁ ଭ୍ରୂକ୍ଷେପ ନ କରି
ଅୟନାନ୍ତର ଚନ୍ଦ୍ରବନ୍ଧନୀ ଭିତରେ
ଶୋଭାଯାତ୍ରା ଚାଲିଯିବ ଏ ପାଖରୁ ସେ ପାଖକୁ
ଅଧୀର ଧ୍ୱନି ସବୁ ପରିକ୍ରମା କରୁଥିବେ
କିନ୍ତୁ ଫେରି ଆସିବେ ନାହିଁ
ନିଦ ଭିତରେ ସରିଯିବ ସ୍ମୃତି ଓ ସ୍ୱପ୍ନର ଉଠାଣି
ମାଳତୀ ଲତା ଓହ୍ଲାଇ ଆସିବ
ରୋଗୀର ବିଛଣା ପାଖ ଝରକା ଦେଇ

ତା ପରେ ତମେ କୁଆଡେ ଯିବ ଏଥରକ
ଘରକୁ ନା ହସ୍‌ପିଟାଲକୁ

# ତମ ଶାଢ଼ୀ ରଖିବା ଜାଗା

ତମର ଶାଢ଼ୀ ରଖିବା ଜାଗା ଶୂନ୍ୟ
ଦିଗନ୍ତକୁ ହାତ ବଢ଼ାଇଲେ
ଅନିଶ୍ଚୟ ସହିତ କ୍ଷଣିକ ସାକ୍ଷାତକାର
ମୋ ହାତରେ ମୁଠା ମୁଠା ଅସ୍ୱସ୍ତି
ସବୁ କେବଳ ମେଘର ଶୋକଗ୍ରସ୍ତ ଅନିଚ୍ଛା
ଅଥବା ସୂର୍ଯ୍ୟର ଦୀର୍ଘଶ୍ୱାସ
ଯାହାକୁ ମୁଁ ଅସ୍ୱୀକାର କରି ଆସୁଥିଲି

ଦେହର ଅସ୍ତବ୍ୟସ୍ତ ଉପତ୍ୟକା
କପାଳର ମରୁଭୂମି ଓ
କବରୀର ବିଧ୍ୱସ୍ତ ଇଲାକା
ତମ ଆଖିର ଉପକୂଳରେ
ଅଙ୍ଗୀକାରର ତରଙ୍ଗ ନାହିଁ
ଅଙ୍ଗୁଳିରେ ଅସମ୍ମତି
ଓଠରେ ଅପରିଚୟର ଝଡ଼
ଭୂଲତାରେ କ୍ଷୁରଧାର କ୍ରୋଧ
ଏ ତମର କେଉଁ ଅବତାର

ତମର କେଉଁ କଠୋର କଟାକ୍ଷରେ
ରାସ୍ତା ପୋଛିଗଲା ଅରଣ୍ୟ ଉପରୁ
ଏବଂ ନଦୀମାନେ ଫେରିଗଲେ ସମୁଦ୍ରକୁ
ତମର କେଉଁ ଅଭିଶାପରେ
ରାତିର ଅରଣ୍ୟରେ ତାରାର ଅଙ୍କୁର ନାହିଁ
ଲହରୀରେ ଯୌବନର ଦୁଃସାହସ ନାହିଁ
କେଉଁ ପ୍ରତ୍ୟାଖ୍ୟାନାର ଶାସ୍ତି ନେଇ
ଜଳୁଥିବା ନିଶ୍ୱାସରେ ଶ୍ରଦ୍ଧାର ସ୍ଫୁଲିଙ୍ଗ ନାହିଁ

ଚିନ୍ତାଶୀଳ ଗଛମାନେ ପ୍ରତୀକ୍ଷାରେ ଅଟଳ
ଘାସକୁ କଥା କହୁଥିବା ବିନ୍ଦୁ ବିନ୍ଦୁ ବର୍ଷା ଚୁପ

ତମର ଅବତୀର୍ଣ୍ଣ ଦେବୀତ୍ୱର ଆବାହନରେ
ମୋର ସମସ୍ତ ନିଃସଂଶୟ ପ୍ରତ୍ୟୟକୁ
ମୋ ଆଖିରେ ନେଇ ତମକୁ ଉପହାର ଦେବି
ତମର କୁଣ୍ଠିତ ହସର ସ୍ୱୀକାର
ଓ ତମ ମୁହଁର ସାମାନ୍ୟ ସମର୍ଥନରେ
ମୁଁ ପୁନର୍ବାର ବୁଝିପାରିବି
ସମସ୍ତ ଗର୍ହିତ ଶାସ୍ତ୍ରମାନ
କ୍ଷୁଧା ତୃଷ୍ଣା ଓ ବ୍ୟର୍ଥତା
ଦେହ ଓ ଆତ୍ମାର ଅସରନ୍ତି ସଂଳାପ
ପାପ ଓ ନିର୍ଜନତା

# ମନ୍ଦିରର ସ୍ଥାପତ୍ୟରେ ଦେଖ

ମନ୍ଦିରର ସ୍ଥାପତ୍ୟରେ ଦେଖ
ଚତ୍ୱରରୁ ଚୂଡ଼ା ପର୍ଯ୍ୟନ୍ତ ସମସ୍ତ ନିର୍ଦ୍ଧାରିତ
ମଞ୍ଚ ଉପରେ ମୂର୍ତ୍ତି ଚଟାଣ ଉପରେ ପୂଜକ
ପାହାଚ ଉପରେ ଆରୋହୀ
ଯେ ଯାହାର ନିରୂପିତ ସ୍ଥାନରେ
ସମସ୍ତେ ନିଜ ନିଜର କକ୍ଷରେ
ନିଜ ନିଜ ଭାରସାମ୍ୟରେ ସମନ୍ୱିତ

ଗୋଟିଏ ମାତ୍ର ଦୀର୍ଘଶ୍ୱାସ ଯେତେବେଳେ
ମଝିର ବ୍ୟବଧାନ ସବୁକୁ ଟାଣିନେବ
ଗୋଟିଏ ମାତ୍ର ସମ୍ମୋହନର ମନ୍ତ୍ର

ବିଭକ୍ତ କରି ରଖିବ ମୂର୍ତ୍ତି ଓ ପୂଜକଙ୍କୁ
ସାମାନ୍ୟମାତ୍ର ସାହଚର୍ଯ୍ୟର ପରିଣତି ସ୍ୱରୂପ
ମିଥୁନ ମୂର୍ତ୍ତି ପରସ୍ପରଙ୍କୁ ବିଦାୟ ମାଗିବେ
ଶିଖରକୁ ମୁହୂର୍ତ୍ତେ ଦୃଷ୍ଟିପାତ କରି
କାନ୍ଥମାନେ ଭାଙ୍ଗିପଡ଼ିବେ ସ୍ୱେଚ୍ଛାକୃତ ଅବିଶ୍ୱାସରେ

ଉତ୍ତରାଧିକାରୀମାନଙ୍କର ଅନୁତାପ ନାହିଁ
ମୂର୍ତ୍ତିମାନେ ଘୁଞ୍ଚିଯିବେ
ଗୋଟିଏ ନିର୍ଦ୍ଦିଷ୍ଟ ଖୋପରୁ
ଅନ୍ୟ ଏକ ନିର୍ଦ୍ଦିଷ୍ଟ ଖୋପକୁ
ମନ୍ଦିରର ବେଢ଼ା ଚାରିପାଖେ
ଘରଭଙ୍ଗା ଲୋକ ବ୍ୟସ୍ତ ରହିଥିବେ
ବୁଲଡୋଜର ଭାଙ୍ଗିଯିବ
ମଣ୍ଡପ ନାଟମନ୍ଦିର ଗର୍ଭଗୃହ
ଓ ମୁଖଶାଳାର ଶେଷ ସନ୍ତକକୁ
ସାଧକ ତପସ୍ୱୀ ପ୍ରାର୍ଥୀ ଓ ପୂଜକ
ସମସ୍ତେ ଶାପଗ୍ରସ୍ତ ଭଳି ନୀରବ ଦର୍ଶକ
ପ୍ରାର୍ଥନାର ପ୍ରତ୍ୟୁତ୍ତର ନଥିବ
କେବଳ ହଂସଗୀତିର ଗୁଂଜନ ଭିତରେ
ଉପରକୁ ରହିଥିବା ହାତମୁଠା
ସତ୍ୟର ନିଷ୍ଫଳ ସନ୍ଧାନ କରୁଥିବ

ପକ୍ଷୀମାନେ ଉଡ଼ି ଉଡ଼ି
ପ୍ରାର୍ଥନାର ଶେଷ ମୂର୍ଚ୍ଛନାରେ ବିଲୀନ ହେବେ
ମନ୍ତ୍ର ସବୁ ଫେରିଯିବେ
ନିଜ ନିଜର ଅନୁଚ୍ଚାରିତ ଅଭ୍ୟନ୍ତରକୁ
ଜରାଜୀର୍ଣ୍ଣ ପାହାଚର ଆୟତକ୍ଷେତ୍ରରେ
ବାରମ୍ବାର ପଡ଼ି ଯାଉଥିବା ଲୋକ
କେବଳ ପ୍ରମାଣ ରଖିବ
ବରାଭୟ ମୁଦ୍ରାରେ ରହିଥିବା
ଭଙ୍ଗା ହାତର ବିଶ୍ୱସ୍ତତା

# ତମକୁ ନ ଦେଖିବା ପର୍ଯ୍ୟନ୍ତ

ତମକୁ ନ ଦେଖିବା ପର୍ଯ୍ୟନ୍ତ
କେବଳ ଅନୁଭବରେ ଅଦ୍ଭୁତ ସ୍ୱପ୍ନମାନ
ହାତର ଅକ୍ଷର ଓ ଟେଲିଫୋନରେ କଣ୍ଠସ୍ୱର
ସ୍ମୃତି ନାହିଁ ସ୍ପର୍ଶ ନାହିଁ ଫଟୋଗ୍ରାଫ୍ ନାହିଁ
ଖାଲି ଅଧା ଆଲୁଅରେ ଯାହା କେବେ କେବେ
ତମର କଳ୍ପନାମିଶା ମୁହଁ

ତମକୁ ଜାଣିବା ଆଗରୁ
ତମେ ମୋ ପାଇଁ ଯେଉଁଭଳି ଥିଲ
ତାକୁ କଣ ମୂର୍ତ୍ତିମତୀ କରିହେବ
ହାତର ଅକ୍ଷର କଣ ଚରିତ୍ରର ପରିମାପ
କଣ୍ଠ ସ୍ୱର ବିଶ୍ୱସ୍ତତାର ପ୍ରମାଣ
ଅଥବା କଳ୍ପନା ମନେ ରଖିବାର ବିକଳ୍ପ

ନ ଜାଣିବାର ଅନୁଶୋଚନା ଆଉ ନାହିଁ
ତମକୁ ଜାଣିବା ନ ଜାଣିବା ମଝିରେ
ଯେଉଁ ଅଳ୍ପ ପରିମିତ ରହସ୍ୟ
ସେ ସବୁ ଆଜି ସମାହିତ
ପରିଚୟ ଓ ଅପରିଚୟ ମଝିରେ
କୌଣସି ସୀମାରେଖା ନାହିଁ
ସନ୍ଦେହ ଓ ଦ୍ୱିଧା ସବୁ ମୀମାଂସିତ

ଏ ସବୁର ବିଧେୟ କିନ୍ତୁ
କେବଳ ତମକୁ ଜାଣିବା ନ ଥିଲା
ତମର ପରିଚୟ ଆନୁଷଙ୍ଗିକ ମାତ୍ର
ମୁଁ ନିଃସଙ୍ଗତାକୁ ବୁଝିଥିଲି
ତମକୁ ଛୁଇଁବାର ଅନେକ ପୂର୍ବରୁ
ମୁଁ ଅନ୍ଧାରକୁ ଅନୁଭବ କରିଥିଲି
ତମର ଛାଇ ପଡ଼ିବା ଆଗରୁ
ନିସ୍ତବ୍ଧତାକୁ ଅନ୍ତରଙ୍ଗ କରିଥିଲି
ତମର କଣ୍ଠସ୍ୱର ଶୁଣିବା ଆଗରୁ
ଏବଂ ମୃତ୍ୟୁକୁ ଉପଲବ୍ଧି କରିଥିଲି
ତମେ ଜନ୍ମ ନେବା ପୂର୍ବରୁ

# ପଂଜିକାର ଶୁଭମୁହୂର୍ତ୍ତ ଗଣିଗଲା

ପଞ୍ଜିକାର ଶୁଭମୁହୂର୍ତ୍ତ ଗଣିଗଲା
ଅଭିମୁଖୀ ତୋରଣମାନଙ୍କର
ଅଭିନନ୍ଦନର ବିଜ୍ଞପ୍ତି
ନିଶ୍ଚେଷ୍ଟ ପବନରେ ସ୍ୱାଗତ ଲିପି
ଏବଂ ମୁହୂର୍ତ୍ତମାନ ଉଦ୍‌ବେଗରେ

ମୋ ଚାରିପାଖେ ବର୍ଷାର ରୁମ ଝୁମ
ଘଣ୍ଟା ବାଜୁଛି ଚାରି ଦିଗରୁ
ଉପର ତଳ ବାହାର ଭିତର
ଆଉ ମୋର ପରିତ୍ରାଣ ନାହିଁ
ନିଜେ ତିଆରି କରିଥିବା
ଚାରି କାନ୍ଥର ବେଷ୍ଟନୀ ଭିତରେ
ମୁଁ ବନ୍ଦ ରହିଯିବି ଏକ ଚିରନ୍ତନ ଅପେକ୍ଷାରେ

ତମ ପାଦ କବାଟ ବାହାରେ
ଭିତରକୁ ଆସିବା ପାଇଁ ତମର ଆପତ୍ତି
ଏବଂ ବିଚକ୍ଷଣ ସର୍ତ୍ତମାନ
ଅତୀବ ଜଟିଳ ସମାଧାନର ଗୋଲକଧନ୍ଦା
ଏବଂ ଉତ୍ତର ନଥିବା ଅସମ୍ଭବ ପ୍ରଶ୍ନ
ଆମ ଦୁହିଁଙ୍କୁ ଏପରି ପୃଥକ ରଖିଥିବ
ଭିତର ବାହାରର ସୂକ୍ଷ୍ମ ବ୍ୟବଧାନ
ସାମାନ୍ୟ ସନ୍ଦେହର ଦୋହଲୁଥିବା ପର୍ଦ୍ଦା
କୁଣ୍ଠାର ଭଙ୍ଗୁର ପ୍ରତିବନ୍ଧକ

ପ୍ରତ୍ୟାଶାର ଶେଷ ନାହିଁ
ମୁଁ ଚାହିଁଥିବି ଅସରନ୍ତି ଇଚ୍ଛା ନେଇ
କେତେବେଳେ ଶେଷ ହେବ ତମର
ଉତ୍କଣ୍ଠିତ ଅହଙ୍କାର ଓ ଭ୍ରମାତ୍ମକ ମୀମାଂସା
ନିଶ୍ଚୟର ଚାବିରେ କେବେ ଖୋଲିବ ପ୍ରତିରୋଧ
ଏବଂ କାନ୍ଥ ସବୁ ତରଳିଯିବେ ସହାନୁଭୂତିରେ

କୋଠରୀର ଚାରି ସୀମାନା ଭିତରେ
ଅପେକ୍ଷା ଯେତେବେଳେ ଅସହ୍ୟ ହେବ
ଝରକା ଖୋଲି ମୁଁ ପଚାରିବି
ରାତି କେତେ ଚୌକିଦାର
କେହି ଜବାବ ଦେବେ ନାହିଁ
ଅନ୍ଧାର ନିଜ ସହିତ ଆଳାପରତ ଥିବ
ନିଦ ଭିତରେ ସମୟ ବଢୁଥିବ
ଘୋଡା ଚାଲିଯିବ ଛାୟାପଥ ଉପରେ

# ଆମର ନିଜ ନିଜ ଏକାକୀତ୍ୱ

ଆମର ନିଜ ନିଜ ଏକାକୀତ୍ୱ ବିଷୟରେ
ତମେ କେବେ ଭାବି ଦେଖିଛ
ଆମକୁ ପୃଥକ କରି ରଖିଥିଲା କିଏ
ଅତୀତ ନା ଭବିଷ୍ୟତ ନା କେବଳ ସମୟ
ଆମ ମଝିରେ କିଏ ଥିଲା
ପଳାତକ ପ୍ରେମିକ ରହସ୍ୟମୟୀ ଯୁବତୀ
ନା ହଜି ଯାଉଥିବା ଅନୁଭବର ଅନବରତ ରାତି

ତମକୁ ନିଶ୍ଚିତ ଭାବେ ଜଣା ଥିଲା
କ୍ରୋଧ ଆମର ଉତ୍ତରାଧିକାର
ସନ୍ଦେହ ଆମର ଜନ୍ମଗତ ଦାବୀ
ତଥାପି ତମେ କାହିଁକି ଚାହିଁ ରହିଲ
ନିଶୂନ ଅନ୍ଧାରରେ ଜ୍ୟୋତିରିଙ୍ଗଣର ଦୀର୍ଘଶ୍ୱାସକୁ
ତମେ ଯଦି ଜାଣିଥିଲ ବନ୍ଧୁତ୍ୱରେ ପ୍ରେମ ଅସମ୍ଭବ
ତମେ କାହିଁକି ସ୍ୱୀକାର କରିନେଲ
ଜହ୍ନ ଆଲୁଅର ପ୍ରଲୋଭନକୁ

ସ୍ମୃତି ପାଖରେ ତମେ କେବଳ
ସାନ୍ନିଧ୍ୟକୁ ନ୍ୟସ୍ତ କରି ଯାଇ ପାର
ଆଉ କିଛି ନୁହେଁ
ଆମ ଦୁହିଁଙ୍କ ମିଳିତ ଏକାକୀତ୍ୱ ଭିତରେ
ତମେ କିପରି ବାଜ୍ୟାପ୍ତ କରିବ ସ୍ୱପ୍ନମାନଙ୍କୁ
ଆମ ଦୁହିଁଙ୍କର ବିପରୀତକ୍ରମ ଏକତ୍ର ହେବାରେ
ତମେ କିପରି ରଦ୍ଦ କରିବ
ରାତ୍ରିଚର ଇଚ୍ଛାମାନଙ୍କୁ

ଆଉ କୌଣସି ସମ୍ଭାବନା ନାହିଁ
ତମେ ଯଦି ନିର୍ଜନତାରୁ ଓହ୍ଲାଇ
ସକାଳର କୋଳାହଳରେ ମୋ ପାଖକୁ ନ ଆସ

କେହି ସାନ୍ତ୍ୱନା ଦେବେ ନାହିଁ
ନଦୀ ନିଶ୍ଚିହ୍ନ ହୋଇଯିବ
ଅସନ୍ତୁଷ୍ଟ ଦିନର ଭଙ୍ଗାପୋଲ ତଳେ
ଶିଉଳି ଜମିଯିବ ଅନୁଶୋଚନାର ପଥର ଉପରେ
ସ୍ମୃତିସ୍ତମ୍ଭ ଭାଙ୍ଗିଯିବ ନିସ୍ତବ୍ଧତାର ଭାରରେ

ପବନକୁ ସବୁ ଜଣାଥିବ
ସେ କିନ୍ତୁ ଜବାବ ଦେବ ନାହିଁ

# ଏଥରକ କାର୍ଯ୍ୟକ୍ରମ ଶେଷ

ଏଥରକ କାର୍ଯ୍ୟକ୍ରମ ଶେଷ
ନାୟିକାର ମୁହଁରୁ ରଙ୍ଗ ତରିଳିଗଲା
ମଞ୍ଚ ଉପରେ ଜରି କାଗଜ ଓ ମଉଳାଫୁଲ
ସମବେଦନା ବିସ୍ତାରିତ
ଦର୍ଶକମାନଙ୍କ ଆଖିରୁ ଆକାଶଯାଏ
କାଲିର ସକାଳ ତାକୁ ଖିନ୍ ଭିନ୍ କରିବ
ଏବେ ଖାଲି ବତୀ ସବୁ
କ୍ରମାନ୍ୱୟରେ ଲିଭିଯିବାର ପର୍ବ

ଦୃଶ୍ୟପଟ ବଦଳିଲା ଅଙ୍କ ପରେ ଅଙ୍କ
ରାସ୍ତାରୁ ଅନ୍ତଃପୁର କୋଠରୀରୁ ଅନ୍ୟ କୋଠରୀ
ନାୟକ ଖଳନାୟକ ଓ ବିଦୂଷକର ମୁଖା ପିନ୍ଧା
ଅନାସକ୍ତ ଅଭିନେତାମାନେ
କୀଟଦଷ୍ଟ ଜୀବନର ଭୂମିକାରେ
ନିଜ ନିଜ ଅଭିନୟ ଜାରି ରଖିଲେ

ସ୍ପଟଲାଇଟ ଛୁଇଁଗଲା ନାୟିକାର
ଚିବୁକ ଓଠ ଓ କପାଳ
ରୂପ ରାଗ ସ୍ୱରର ଆଲୁଅ ବିଞ୍ଚିଦେଇ
ମଞ୍ଚ ଉପରୁ ଲିଭିଗଲା ନର୍ତ୍ତକୀର ଚଞ୍ଚଳ ପାଦ
ଯାଦୁକରର ଟୋପିରୁ ଉଡ଼ିଗଲେ ଅସଂଖ୍ୟ କପୋତ
ପ୍ରେକ୍ଷାଳୟରେ ରୁଦ୍ଧଶ୍ୱାସ ଉତ୍ତେଜନା
ମଝିରେ ନ ବୁଝିବାର ଝଲମଲ ପର୍ଦ୍ଦା

ଆଉ କାହାରି ଅନ୍ୟମନସ୍କ ହେବାର ସମ୍ଭାବନା ନାହିଁ
ମଞ୍ଚ ଉପରେ ଏଥରକ ମୁହଁରୁ ମୁଖା ଖୋଲି
ଗୋଟିଏ ପଂକ୍ତିରେ ଆସି ଠିଆ ହେଲେ
ନାୟକ ନାୟିକା ଖଳନାୟକ
ବିଦୂଷକ ଓ ଯାଦୁକର
ବିରକ୍ତି ଦୀର୍ଘଶ୍ୱାସ ଓ ହାତତାଳି ପାଇଁ

ପ୍ରେକ୍ଷାଳୟରେ ହଠାତ୍ ବିଜୁଳୀବତୀର ପ୍ରମାଦରେ
ମଞ୍ଚ ଓ ଦର୍ଶକ
ପର୍ଯ୍ୟାୟ କ୍ରମେ ଦୃଶ୍ୟ ଓ ଅଦୃଶ୍ୟ ହେଲେ
ଅକସ୍ମାତ ମୁଖାସବୁ ଅଦଳ ବଦଳ
ମଞ୍ଚ ଓ ପ୍ରେକ୍ଷାଳୟ ଏକ ହେଲା
ସମସ୍ତେ ଅନ୍ୱେଷଣରତ
ଅଭିନେତା ଓ ଦର୍ଶକ
କେଉଁଠାରେ ନର୍ତ୍ତକୀ କାହିଁ ଯାଦୁକର
କେଉଁଠାରେ ସୂତ୍ରଧର ତଥାସ୍ତୁ କହିଲା
କେଉଁଭଳି ଅଟ୍ଟହାସ୍ୟରେ
ବିୟୋଗାନ୍ତ ନାଟକର ଶେଷ
କିଏ ରହିଲା ଓ କିଏ ଚାଲିଗଲା
କିଏ କାନ୍ଦେ ଏବଂ କାହାପାଇଁ କାନ୍ଦ
କେତେବେଳେ ଶେଷ ଅଙ୍କ ସମାପ୍ତ
କେତେବେଳେ ଯବନିକା ବିଦାୟ ବିଦାୟ

# ତମର ଆସିବା ଓ ଚାଲିଯିବା

ତମର ଆସିବା ଓ ଚାଲିଯିବା ଭିତରେ
ସବୁ ମିଶି ମାତ୍ର କେତୋଟି ଉଦ୍‌ବିଗ୍ନ କ୍ଷଣ

ତମେ ଆସିବା ଆଗରୁ
ତମର ଆସିବାର ଉତ୍ତେଜନାରେ
ମୁଁ ହଜିଗଲି ଦିଗ୍‌ବଳୟର ଅଶାନ୍ତ ସ୍ଥିତିରେ
ତମର ନ ଆସିବାର ଆଶଙ୍କା ନେଇ
ମୁଁ ଚିନ୍ତାଗ୍ରସ୍ତ ରହିଗଲି
ଆକାଶର ଥମ ଥମ ଅବସ୍ଥାରେ
ତମେ ଆସିବା ପରେ ସବୁ ଯେତେବେଳେ
ତମର ସମ୍ମୋହନରେ ଉଚ୍ଛନ୍ନ
ଓ ଅସ୍ତବ୍ୟସ୍ତ ହୋଇଗଲା
ମୁଁ ନିଜକୁ ଭୁଲିଗଲି
ଘୁଞ୍ଚି ଯାଇଥିବା ସୀମାରେଖା ଏବଂ
ଆକାଶରେ ରଙ୍ଗମାନଙ୍କର ଅଦ୍ଭୁତ କାୟାକଳ୍ପରେ

ତମେ ଚାଲିଯିବା ପରେ
ମୁଁ ଆଉ କଣ ବା କରି ପାରେ
କେତୋଟି ଅସଫଳ
ପ୍ରେମ କବିତା ଲେଖିବା ବ୍ୟତୀତ
ତମେ ମତେ ଏପରି ମନ୍ତ୍ର ଦେଇଗଲ ନାହିଁ
ଯାହାର ଧ୍ୟାନରେ ମୁଁ ଶିଖି ପାରିଥାନ୍ତି
ଦୁଃଖ ହତୋତ୍ସାହ ଓ ଅସହାୟତାର ଅର୍ଥ
ନିରାଶାର ସଂଜ୍ଞା ବ୍ୟର୍ଥତାର ପରିଭାଷା
ଶୋଚନା ଓ ଆଶଙ୍କାର ନିର୍ଣ୍ଣୟ
ମୁଁ ବୁଝି ପାରିଥାନ୍ତି
ସହୃଦୟ ଆଖିର ସହାନୁଭୂତି
ରକ୍ତାକ୍ତ କ୍ଷତର ପ୍ରତିବାଦକୁ

ଫାଶୀ ଆସାମୀର ଅନ୍ତର୍ଦାହ ଏବଂ
ବିଧବାର ନିର୍ଜଳା ଦୀର୍ଘଶ୍ୱାସକୁ

ତମେ ଏପରି ବର ଦେଇଗଲ ନାହିଁ
ମୁଁ ତମ ବ୍ୟତୀତ ସଂପୂର୍ଣ୍ଣ ହୋଇ ପାରିଥାନ୍ତି
ତମେ ମତେ ଏପରି ଆଶ୍ୱାସନା ଦେଇଗଲ ନାହିଁ
ମୁଁ ପୁଣି ନିଜକୁ ଫେରି ପାଇଥାନ୍ତି
ତମର ଏକମାତ୍ର ସ୍ମରଣରେ

# ଆକାଶରେ ଗାଢ ନୀଳ ରଙ୍ଗ

ଆକାଶରେ ଗାଢ ନୀଳ ରଙ୍ଗର ଝଲକ ଦେଇ
ସକାଳ ଉଡିଯିବ ସମୁଦ୍ରରୁ ସୀମାନ୍ତକୁ
ଆକାଶର ରକ୍ତାକ୍ତ ଶିରା ପ୍ରଶିରାରେ
ଲାଲ ହୃଦୟର ସୂର୍ଯ୍ୟ
ନିସ୍ତରଙ୍ଗ ସମୁଦ୍ର ଉପରେ ରଖିଯିବ
ମେଘର ସ୍ଥବିର ଛାଇକୁ
ଆଖିରେ ପ୍ରତିଫଳିତ ଉତ୍ତରକାଳକୁ ଜଣା ନ ଥିବ
କେତେ ସମୟ ଥିଲା ପ୍ରତୀକ୍ଷାର ପ୍ରଥମ ପ୍ରହର
କେତେ ସମୟ ଥିଲା ପ୍ରଥମ ପ୍ରତୀକ୍ଷାର ପ୍ରହର
କେତେ ଆଲୋକବର୍ଷକୁ ପ୍ରସାରିତ ହୋଇପାରେ ପ୍ରତୀକ୍ଷା
ପ୍ରତୀକ୍ଷା କଣ ନେଇ ଯାଇପାରେ ଅନ୍ୟ ଏକ ଜୀବନକୁ
ପ୍ରତୀକ୍ଷାରୁ କଣ ଅନ୍ୟ ଏକ ଜୀବନ ଶେୟସ୍କର

ମଧ୍ୟସ୍ୱର୍ଗରେ ବ୍ୟଞ୍ଜନା ଭଳି ରହିଥିବେ
ଡେଣା ଭଙ୍ଗା କିନ୍ନରୀମାନେ

ମନ୍ଦିରର ବନ୍ଦୀଶାଳାରେ ବନ୍ଦ ରହିଥିବେ
ସାର୍ବଭୌମ ଦେବୀ ମୂର୍ତ୍ତି ସବୁ
ପ୍ରାମାଣିକ ନିସ୍ତବ୍ଧତା କ୍ଷୁଣ୍ଣ କରି ରଖିବ
ଟା କେଟଲିରେ ଘୁଂଗୁରର ରୁମଝୁମ
ଏବଂ ପାହାଡରେ ଜଳପ୍ରପାତର ହସକୁ
ସବୁ ପୁଣି ହାର୍ଦ୍ଦିକ ଅବର୍ତ୍ତମାନରେ ନିମଜ୍ଜିତ ହେବେ
ସକାଳରୁ ସମ୍ଭାବନାକୁ ଚାହିଁଥିବା ବେଳେ
ମେଘାଚ୍ଛନ୍ନ ଅବସ୍ଥା ଦେଇ ଶୋଭାଯାତ୍ରା ଚାଲିଯିବ
ବସ୍ ଯାଇ ଅଟକିବ ବନ୍ଦ ଦୋକାନ ପାଖରେ
ଆନିକଟଠାରେ ନଈ ରହିଯିବ କିଛିକ୍ଷଣ
ଅନିଶ୍ଚୟର ମୁହୂର୍ତ୍ତମାନ ଆକାଶକୁ ଲମ୍ୱିଯିବେ

ଦିଶାନ୍ତରୀ ପବନରେ ରତୁଚକ୍ରକୁ ଅସ୍ତବ୍ୟସ୍ତ କରି
ଯେତେବେଳେ ଅଚିହ୍ନିତ ଅପରାହ୍ନ ଚାଲିଯିବ
ସମୟ ଆକାଶରୁ ତୋଳିନେବ ଦୀର୍ଘଶ୍ୱାସ ସବୁକୁ
କିଏ କାହା ଅପେକ୍ଷାରେ ଥିବ
କାହାରିକୁ ଜଣା ନ ଥିବ
ସାରା ପୃଥିବୀକୁ ଘେରି
ନ ଜାଣିବାର ଶୋକ କେବଳ ରହିଥିବ

# ପୃଥକ ଆନନ୍ଦର ଅନୁଭବ

ପୃଥକ ଆନନ୍ଦର ଅନୁଭବରୁ
ମିଳିତ ଯନ୍ତ୍ରଣାର ଉପଲବ୍ଧି
ପ୍ରେମ କଣ ସବୁଠାରୁ ସୁନ୍ଦର ବ୍ୟର୍ଥତା

ପ୍ରେମ କଣ ଆଗକୁ ଯିବାର ପ୍ରତି ମୋଡରେ
ବିଶ୍ୱାସର ଭାରରେ ଭାଙ୍ଗି ପଡୁଥିବା ଫୁଲଗଛ
ଅନୁବର୍ତ୍ତୀତାର ଉପତ୍ୟକାରେ
ନିର୍ବିରୋଧ ହସ ନେଇ ପ୍ରତ୍ୟୟର ଖରା
ଉଚ୍ଛୁଳି ପଡୁଥିବା ସମୁଦ୍ରର ଜୁଆରରେ
ପ୍ରତିଶ୍ରୁତିପୂର୍ଣ୍ଣ ଜହ୍ନ ଆଲୁଅର ଉଲ୍ଲାସ

ଅଥବା ପ୍ରେମ କଣ
ବ୍ରହ୍ମଚାରୀର ନଷ୍ଟ ଦିନ ଓ
ସନ୍ନ୍ୟାସିନୀର ବ୍ୟତୀତ ରାତ୍ରି
ଝଡରେ ଭାଙ୍ଗି ଯାଇଥିବା ମିଥୁନ ମୂର୍ତ୍ତି
ପଥର ଦେବଦାସୀ କଟୀରେ ଯନ୍ତ୍ରଣା
ଅକାଳପ୍ରସୂତ ସାକ୍ଷାତକାର
ଶେଷ ପାହାଚର ଅନୁଶୋଚନା
ଏବଂ ଲୋଭନୀୟ ଅପମୃତ୍ୟୁ
କିଏ କହିପାରିବ ପ୍ରେମ କଣ
ଦେହରେ ନିର୍ଣ୍ଣୀତ ଆତ୍ମା ନା
ଆତ୍ମାରେ ଉନ୍ନୀତ ଦେହ
ଜିଜ୍ଞାସା ନା ଅଭିଜ୍ଞାନ ସାଧନା ନା ସିଦ୍ଧି
ସ୍ୱୀକାର ନା ସନ୍ଦେହ

ସୂର୍ଯ୍ୟର ଅନ୍ଧକାରକୁ କିଏ ବୁଝିବ
ସାମାନ୍ୟ ସକାଳର ଆଲୁଅରେ
ବାଟଭୁଲା ଜାହାଜର ଯାତ୍ରୀ
ତାରାଙ୍କୁ ବା କି ଆଶ୍ୱାସନା ଦେବ

# ତମେ ମୋର ଅଳ୍ପ ସମୟର

ତମେ ମୋର ଅଳ୍ପ ସମୟର
ଆଶ୍ଚର୍ଯ୍ୟ ଆବିଷ୍କାର ନୁହଁ

ତମର ଅନୁଧ୍ୟାନ ପାଇଁ
ଅନେକ ଇତିହାସର ରୋମନ୍ଥନ
ଅନେକ ଦର୍ଶନର ଗବେଷଣା
ଅନେକ ଭାବାତୀତ ତପସ୍ୟା
ଏବଂ ଅନେକ ଶାସ୍ତ୍ରର ଅଧ୍ୟୟନ

ସମୟର ଦୋଳାରେ ବ୍ୟତୀତ
ତମ ପାଇଁ ଅଗଣିତ ଦିନ
ଇତସ୍ତତଃ ଦ୍ୱିଧାରେ ଅସ୍ତଗତ
ଜୀବନର ତିନିଟି ଯାକ କାଳ
ଯାହା ତମର ରସାୟନରେ ଆବର୍ତ୍ତିତ
ଦୁଇ ମିନିଟିର ସ୍ୱପ୍ନ ମାତ୍ର

ମୁଁ ତୁମକୁ ଯେତିକି ଉପଲବ୍ଧି କରିଛି
ସମୟ ଓ ଦୂରତ୍ୱର ଆଶ୍ରିତ
ଏକ ଆଚ୍ଛନ୍ନ ସ୍ୱପ୍ନର ଅଗାଧ ସମୁଦ୍ର
ଭଲପାଇବାରେ ଭିଜିଯାଇଥିବା
ଆକାଶର ନିଃଶଙ୍କ ବିସ୍ତାର
ମୋର ଅନୁଭବ ଯେଉଁଠାରେ
ଏକ ନିମଜ୍ଜମାନ ଜାହାଜ
କ୍ଷୟହୀନ ଦିଗ୍‌ବଳୟକୁ
ଉଡ଼ି ଯାଉଥିବା ପକ୍ଷୀ
ଅପସୃୟମାଣ ମେଘର ଶେଷ ବୃଷ୍ଟିପାତ

ପକ୍ଷୀ କେତେ ଛୁଇଁପାରିବ ଆକାଶର ଗଭୀରତା
ଧରିତ୍ରୀର ତୃଷ୍ଣା ଲିଭାଇବ ବିନ୍ଦୁ ବିନ୍ଦୁ ବର୍ଷା
ଜାହାଜ କେତେ ନେଇପାରିବ ସମୁଦ୍ରର ବିଶ୍ୱସ୍ତତା
କିଏ ବୁଝିପାରିବ ଲହରୀ ସହିତ
ତାରାମାନଙ୍କର ସଂଳାପକୁ
କିଏ ସମର୍ପଣ କରିଯିବ ଜୀବନକୁ
ସ୍ୱପ୍ନର ଅଶେଷ ଶ୍ରଦ୍ଧାରେ

ଏକ ସଙ୍ଗେ ଅନେକ କାମନା ଓ ଅନିଚ୍ଛା ନେଇ
ମୁଁ ତେଣୁ ତମ ଦେହର ସୀମାନ୍ତରେ
ସେଠାରେ ବା ଆଉ କଣ କରାଯାଇ ପାରେ
ମନେ ରଖିବା ବ୍ୟତୀତ

କିମ୍ବା ଭୁଲିଯିବା ବ୍ୟତୀତ

# ସଂଘଟିତ ହେବାର ଦୁଃସାହସ

ସଂଘଟିତ ହେବାର ଦୁଃସାହସ ନେଇ
ବିସ୍ମୃତ ଇତିହାସ ପୁନର୍ବାର ଉପଗତ
ପୁରୋହିତ ପ୍ରତାରକ ଓ
ଫାଶି ଆସାମୀର ଆଶୀର୍ବାଦ ନେଇ
ସ୍ମୃତିସ୍ତମ୍ଭ ଚାରିପାଖେ ଏକତ୍ରିତ ହେଉଛନ୍ତି
ସମୟ ନିର୍ବିଶେଷ ଆଖ୍ୟାନ ସବୁ
ଯାଦୁକରର ମନ୍ତ୍ର
ପର୍ଯ୍ୟାୟକ୍ରମେ ସଜାଇ ଯାଉଛି
ପ୍ରତ୍ୟାଗତ ସ୍ମୃତିର ଭଙ୍ଗା ଖେଳନାମାନଙ୍କୁ

ନିର୍ଜନତାର ଓଠରେ ଅପାର୍ଥିବ ସଙ୍ଗୀତ
ଆଉ କୌଣସି ସନ୍ଦେହର ଭୟ ନାହିଁ
ମୁଠା ହୋଇଥିବା ହାତରେ ଶପଥର ଦୃଢ଼ତା
ମୁହଁରେ ସଫଳତାର ହସ ନେଇ
ଅପରେଶନ ଘରୁ ବାହାରି ଆସୁଛି ଡାକ୍ତର
ଶରତର ପତ୍ରମାନେ ସୃଷ୍ଟି ବିଷୟରେ
ଆଲୋଚନା କରିବା ପାଇଁ ବଦ୍ଧପରିକର
ଶେଷପତ୍ର ଝଡ଼ିପଡ଼ିବା ପର୍ଯ୍ୟନ୍ତ

ଆଜି ତମ କଥା ଭାବିବା ବେଳେ
ସମସ୍ତ ଓଁ ଏବଂ ଅନ୍ୟାନ୍ୟ
ମୂଳଶବ୍ଦ ବିସ୍ମୃତ ହୋଇଗଲେ
ତମର ପ୍ରେମ ମତେ ସ୍ମରଣ କରାଇବ
ପୁନର୍ଜନ୍ମର ସମ୍ଭାବନା ଅଛି
ସିଦ୍ଧିର ସଂଗୀତ ଆସି
ଅଭିଷିକ୍ତ କରିବ ପୁନର୍ଜୀବିତ ଆତ୍ମାକୁ
ପବନର ଉଲ୍ଲସିତ ନିଶ୍ୱାସରେ
ସୂର୍ଯ୍ୟ ବିଞ୍ଚିଯିବ ଇତିହାସ ପୃଷ୍ଠାରୁ
ମୁଠା ମୁଠା ସୁସମ୍ବାଦ

ପ୍ରବୁଦ୍ଧମାନଙ୍କର ସତ୍ୟପାଠରେ
ପୃଥିବୀର ପ୍ରଶସ୍ତି ନିର୍ଦ୍ଧାରିତ ଥିବ
ବିଧର୍ମୀମାନେ ଯଦିଓ ବସନ୍ତର ଉତ୍ପତ୍ତିକୁ
ବୃଥା ପ୍ରଶ୍ନ କରି ଚାଲିଥିବେ

# ତମକୁ ମନେ ପକାଇବା ପାଇଁ

ତମକୁ ମନେ ପକାଇବା ପାଇଁ
ଜ୍ୟୋତ୍ସ୍ନାରାତି ଜରୁରୀ ନୁହେଁ
ରକ୍ତାକ୍ତ ଆକାଶକୁ ଦେଖିଲେ
ମୋର ତମ କଥା ମନେ ପଡ଼ିବ

ତମେ କଣ ସାର୍ବଭୌମ ଶୋକ
ଯାହା ଭଙ୍ଗା ଚଟାଣ ବୁଦା ଜଙ୍ଗଲ
ଧୂଳି ଝଡ଼ ଉଡୁଥିବା ପତ୍ର
ତମେ କଣ ପ୍ରାଚୀନ ମୃତ୍ୟୁ
ଯାହା ମଉଳାଫୁଲ ତୃଷାର୍ତ୍ତ ଧରିତ୍ରୀ
ଅସ୍ଥି ପଂଜରା ଓ ଖପୁରୀର ଉପତ୍ୟକା
ତମେ କଣ ଅନନ୍ୟ ଯନ୍ତ୍ରଣା
ଯାହା ଭାଙ୍ଗି ପଡୁଥିବା ମନ୍ଦିରର ଚୂଡ଼ା

ହେ ସର୍ବଂସହା ବିଷାଦର ଦେବୀ
ତମେ କଣ କହିପାରିବ କିପରି ସହିବାକୁ ହୁଏ
ସୂର୍ଯ୍ୟର ପାର୍ଶ୍ଵଭୂମିରେ ଛାଇର ବିଭୀଷିକାକୁ
ଅରଣ୍ୟର ମଧ୍ୟାହ୍ନରେ ହିଂସ୍ର ସ୍ତବ୍ଧତାକୁ
ତମେ କଣ କହିପାରିବ କିପରି ଭୁଲିବାକୁ ହୁଏ
ଖିନ ଭିନ ତାରାଙ୍କର ଭୟଙ୍କର ମେଘ
ରାସ୍ତାର ଆଲୁଅକୁ ପରାହତ କରୁଥିବା
ତୀର୍ଯ୍ୟକ ବର୍ଷାର ତୀରକୁ

ବିସ୍ମରଣ ଯଦି ଆୟାସହୀନ
ଆହୁରି ଅନାୟାସ ଅନୁସ୍ମୃତି
କିଏ ନିୟନ୍ତ୍ରଣ କରିପାରିବ ଇଚ୍ଛା ଅନୁଯାୟୀ
ମନେ ରଖିବା ଓ ମନେ ନ ରଖିବା

କିଏ କହିପାରିବ ନିଶ୍ଚିତ ଭାବରେ
ସେଭଳି ଅତୀତ ହିଁ ଶ୍ରେୟସ୍କର
ଯେଉଁଠାରେ ଅନ୍ୟ ଏକ ଅତୀତର ସ୍ମୃତି ନାହିଁ

ସ୍ମାରକଲିପିର ପ୍ରୟୋଜନ ନାହିଁ
ତମକୁ ଦେଖିଲେ ମୋର ସବୁ ମନେପଡ଼ିବ
ଛାଇ ଏବଂ ନିସ୍ତବ୍ଧତା
ଅନାବୃଷ୍ଟି ଦୁର୍ଭିକ୍ଷ ଓ ପ୍ରଳୟ
ରାସ୍ତା ଉପରେ ରକ୍ତ ବତୀଖୁଣ୍ଟ ଉପରେ ବର୍ଷା
ଡାହାଣୀ ଆଳୁଅ ଭଳି ଫୁଲ ସବୁ
ବନ୍ଧୁକର ବର୍ମ୍ମରେ ଏକାକୀ ପ୍ରଜାପତି
ପକ୍ଷୀମାନେ ସେମାନଙ୍କର ଛୋଟ ଛୋଟ କଫିନରେ

## ତମ ସହିତ ବହୁବାର

ତମ ସହିତ ବହୁବାର ସାଲିସ ହେଲା
ତମର ପ୍ରତିଟି ଚୁକ୍ତିରେ
ପୁଣି ଏକ ମନୋମାଳିନ୍ୟର ଅଙ୍କୁର
ତମର ପ୍ରତ୍ୟେକ ଅଙ୍ଗୀକାରରେ
ଏକ ପ୍ରଚ୍ଛନ୍ନ ପ୍ରତ୍ୟାଖାନର ସମ୍ଭାବନା
ତମ ହାତମୁଠାରେ ମୋ ହାତର
ଅତି ଅନିଶ୍ଚିତ ଅବସ୍ଥା
ତମ ଆଖିରେ ଏକ ସଙ୍ଗେ
ହଁ ନା ଓ ହୁଏ ତ

ସ୍ପର୍ଶ ଯେଉଁଠାରେ ଘନିଷ୍ଠତାର ସୀମାରେଖା
ସେଠାରେ ସତ୍ୱାଧିକାରର ସମ୍ଭାବନା କାହିଁ
ମପାଚୁପା ସଂଳାପ ଯଦି
ଭାବ ବିନିମୟର ଆଶୟ
ସେଠାରେ ପରସ୍ପରକୁ ବୁଝିବା କି ଭଳି
ଆତ୍ମୀୟତାର ପରିଧି ଯେଉଁଠାରେ
ଓଠରେ ହସର ସାମାନ୍ୟ ସୂଚନା
ପ୍ରତ୍ୟେକ ସାକ୍ଷାତକାର ସେଠାରେ କେବଳ
ଏକ ନୂତନ ପରିଚୟ

ଏଭଳି ସନ୍ଦିଗ୍ଧ ଅନିଶ୍ଚୟତାରେ
ଆତ୍ମପ୍ରତ୍ୟୟର ଦାବୀ କାହିଁ
ଏଠାରେ ମୁହୂର୍ତ୍ତକୁ ମୁହୂର୍ତ୍ତ କଟିଯିବ
ସଂପର୍କକୁ ସମନ୍ୱିତ କରିବାରେ
ଆକାଶକୁ ପଢ଼ିବାର ସ୍ତୋତ୍ରସବୁ
ଦୁର୍ବୋଧତାରେ ନିସ୍ତବ୍ଧ ହୋଇଯିବେ
ସୂର୍ଯ୍ୟର କିରଣ ମଳିନ ପଡ଼ିଯିବେ
ନିଜ ନିଜର ଅନ୍ଧକାରରେ
ଅପେକ୍ଷାର ସମୟମାନ ବିତିଯିବ
ଅନ୍ୟ ଏକ ସନ୍ଧିପତ୍ରର ଚିଠା ଲେଖିବାରେ

ଆକାଶ ସହିତ କୌଣସି ସଂପର୍କ ନାହିଁ
ଅରଣ୍ୟ ମୋର ଉପନିବେଶ
ବାଲିଚର ଉପରେ ମୋର ପାଦ
ସଂଶୟ ମୋର ଜୀବନର ମୂଳ ସ୍ରୋତ
ଦୁର୍ଘଟନା ମୋର ଅଦୃଷ୍ଟ
ଭଲପାଇବା ଏକ ବିଶେଷ ଅପରାଧ

ପ୍ରେମର ଯଦିଓ ଅନେକ ଆଧ୍ୟାତ୍ମିକ ନାଁ
ମୋ ପାଇଁ କେବଳ ରାଜିନାମାର ଅପେକ୍ଷା

# ଆଉ ସବୁ କଥା ଅପ୍ରାସଙ୍ଗିକ

ଆଉ ସବୁ କଥା ଅପ୍ରାସଙ୍ଗିକ
ମତେ କେବଳ ତମର ଅତୀତକୁ ଜାଣିବାକୁ ଦିଅ
ଯେଉଁଠାରେ ଅନେକ ଋତୁ ପଥଭ୍ରଷ୍ଟ ହେଲେ
ଅନେକ ସୂର୍ଯ୍ୟ ପ୍ରକାଶ ପାଇଲେ
ଓ ପୁନର୍ବାର ନିର୍ବାପିତ ହେଲେ
ପ୍ରତି ସୂର୍ଯ୍ୟୋଦୟର ପବିତ୍ର ବିସ୍ମୟ
ଓ ପ୍ରତ୍ୟେକଟି ସୂର୍ଯ୍ୟାସ୍ତର ଦୈବୀ ରହସ୍ୟ
ବନ୍ଧ୍ୟା ମୁହୂର୍ତ୍ତମାନଙ୍କୁ ଯେଉଁ
ଚରମ ସତ୍ୟ ଦେଇଗଲେ
ମତେ ସେମାନଙ୍କର ଜ୍ଞାନରେ ପ୍ରବୁଦ୍ଧ କର

ଜିଣିବା ଓ ହାରିବାର ପ୍ରଶ୍ନ ନାହିଁ
ଯୁଦ୍ଧର ପ୍ରସ୍ତୁତ ଓ ଆଧିପତ୍ୟ
ନିଜକୁ ପ୍ରତାରଣା ସମୟକୁ ନୁହେଁ
ମନେ ରଖ ପ୍ରେମ ସମୟର ଏକମାତ୍ର ନିର୍ଣ୍ଣାୟକ
ବିନା ପ୍ରେମର ଅଭିଜ୍ଞତା ସବୁ ବୃଥା ଓ ନିରର୍ଥକ
ସମୟ କୌଣସି ସମ୍ବେଦନା ମାଗେ ନାହିଁ
ସବୁ ତେଣୁ ନିର୍ଦ୍ୱନ୍ଦ୍ୱ ସମର୍ପଣ କରିଯାଅ
ମୋର ଭବିଷ୍ୟତକୁ ଦେଇଯାଅ
ତମର ବ୍ୟତୀତ ଅନୁଭବ ସବୁ

ହେ ମୋର ସୌଖୀନ ଜ୍ୟୋତିଷୀ
ତମ ହାତରେ ମୋର ହାତ
ତମର ନିର୍ଣ୍ଣୟ ଅପେକ୍ଷାରେ ମୋର ଭବିଷ୍ୟତ
ଆଜି ତମର ସମୁଜ୍ଜ୍ୱଳ ସାମୁଦ୍ରିକ ଜ୍ଞାନରେ
ନିର୍ଦ୍ଧାରିତ କରିଯାଅ ମୋର ଭାବୀ କାଳ ସବୁ
ଗୋଟିଏ ମାତ୍ର ରୂପକରେ ମତେ ଦେଇଯାଅ

ତମର ନିଭୃତତମ ଅନୁଭବର ଆତ୍ମଲିପି
ତମର ଏକକ ମନ୍ତ୍ରରେ ମତେ
ଉପାୟନ ଦେଇଯାଅ ତମର ମହାକାବ୍ୟମାନ
ତମର ଅତୀତର ଗୋଟିଏ ଗୋଟିଏ ମୁହୂର୍ତ୍ତରେ
ମୋର ସମଗ୍ର ଭବିଷ୍ୟତକୁ ସଂପୂର୍ଣ୍ଣ କରିଯାଅ

## ସମୁଦ୍ର ଅନ୍ୟ ଏକ ସହର

ସମୁଦ୍ର ଅନ୍ୟ ଏକ ସହର
ସାତତାଳ ରହସ୍ୟର ହଟଚମଟ
ପବନର ହାତ ଲାଗି ଚହଲୁଛି ପାଣିର ଚଟାଣ
ଲହରୀର ମାଛକାତିରେ ଚିକମିକ ଖରା
ଜୁଆରର ପାହାଚରେ ଓହ୍ଲାଇ ଆସୁଛି
ଭଙ୍ଗା ପ୍ରତିବିମ୍ବର କାଳପୁରୁଷ

ଗର୍ଭାଶୟ ଭଳି ଅନ୍ଧକାରମୟ
ଏବଂ ସୂର୍ଯ୍ୟର ସତ୍ୟ ଭଳି କଠୋର
ଅନ୍ତହୀନ ଅତଳର ସୌହାର୍ଦ୍ଦ୍ୟ ଆଶାରେ
ବ୍ୟତୀତ ହେଲା ଏକାଧିକ ଯୁଗ
ନାଗଲୋକ ଓ ମତ୍ସ୍ୟକନ୍ୟାର ବାଦ ବିସମ୍ବାଦରେ
କଟିଗଲା ବାକି ସମୟ ସବୁ
ରହସ୍ୟମାନ ତଥାପି ଅସମାହିତ
ମଝି ସମୁଦ୍ରର ଘନସବୁଜ ସ୍ଥିରତାରେ

ଶେଷହୀନ ନୀଳିମାର ଉପକୂଳରେ

ଜୁଆର ପରେ ଜୁଆରକୁ
ଅପେକ୍ଷା କରି ରହିଥିବାବେଳେ
ଜାହାଜ ପାଲ ଟାଣି ଚାଲିଯିବ ଭବିଷ୍ୟତକୁ
ଅବୋଧ୍ୟତାର କୁହୁଡ଼ି ଘୁଞ୍ଚିଗଲେ
କିଛି ଅବଶିଷ୍ଟ ନ ଥିବ ସମୁଦ୍ର ଉପରେ
ନା ସମୟ ନା କମ୍ପନ ନା ସମ୍ଭାବନା
କେବଳ ଏକ ନିଃସଙ୍ଗ ବ୍ୟାପକତା
କାହାରି ସହିତ କୌଣସି ସଂପର୍କ ନାହିଁ
ଦେଶ କାଳ ଓ ପାତ୍ର ନିର୍ବିଶେଷ
କେବଳ ଏକ ବ୍ୟାପକ ନିଃସଙ୍ଗତା

ଏତେବେଳେ ସ୍ୱତଃସିଦ୍ଧ ସତ୍ୟର ଉପଲବ୍ଧି ହେବ
ସିଦ୍ଧି ପୂର୍ବରୁ ସ୍ୱୀକାର କରିବା ଅପେକ୍ଷା
ବିସ୍ମରଣ ଶ୍ରେୟସ୍କର
ବିଭକ୍ତ ମୁହୂର୍ତ୍ତରେ ଶ୍ରେୟସ୍କର ସବୁକିଛି ଭୁଲିଯିବା
ଯେତେ କଥା ଅଦୃଷ୍ଟକୁ ଅଜଣା

ଦୁରନ୍ତ ସମୁଦ୍ର ନିଷିଦ୍ଧ କୂଳ
ଦିଗଭ୍ରାନ୍ତ ଜାହାଜ ନଷ୍ଟ ବତୀଘର

# ଭାବି ରଖିଥିବା କଥା ସବୁ

ଭାବି ରଖିଥିବା କଥା ସବୁ ଯେତେବେଳେ
ତମକୁ କିଛି ନ କହି ଫେରି ଆସିବେ
ପୁନରାବୃତ୍ତ ବୃନ୍ଦଗାନ ହୋଇ

ତମକୁ କହିବା ପାଇଁ ଯେତେବେଳେ
ଆଉ କିଛି ନୂଆ ସଂଳାପ ରହିଯିବ ନାହିଁ
ମୁଁ ସ୍ମରଣ କରିବି ଏକାନ୍ତତାର ଗୁପ୍ତ କଥାମାନ
ଯାହା ପଳାତକ ଆୟୁଷର ବିଭେଦିତ ସତ୍ୟ

ସ୍ମୃତି କୌଣସି ଇନ୍ଦ୍ରିୟର ବଶୀଭୂତ ନୁହେଁ
ତଥାପି ମୁଁ ତମକୁ ଅନୁଭବ କରିବି
ମୋର ସ୍ନାୟୁକେନ୍ଦ୍ରମାନଙ୍କରେ
ମୋର ଅନ୍ତର୍ମୁଖୀ ଚେତନାରେ ସାକାର
ତମର ବିଚକ୍ଷଣତା ତମର ଉଦାରତା
ଏବଂ ତମର ନିପୁଣତା
ତମେ ଯଦିଓ ମୋର ସମକ୍ଷରେ
ଓ କଥା କହିବାର ପ୍ରୟୋଜନ ନଥିବ
ମୋର ଭାବନାର ନିଃଶବ୍ଦ ପ୍ରଶ୍ନମାନଙ୍କର
ଉତ୍ତର ହେବ ତମର ଅଖଣ୍ଡ ନୀରବତା
ମୋର ଅଜସ୍ର ଇଚ୍ଛାର ଦାବୀକୁ
ଗ୍ରହଣ କରିନେବ ତମର ଅଭିବ୍ୟକ୍ତିହୀନ ମୁହଁ

ନିସ୍ତବ୍ଧତାର ସାମ୍ରାଜ୍ୟରେ ଆମେ ପୁଣି
ଆଉ ଥରେ ସ୍ମରଣର ଦୁଇ ବିଚ୍ଛିନ୍ନ କୂଳରେ
ଦୂରତ୍ୱର ଅଭିନ୍ନତାରେ
ଏକାଗ୍ର ଭାବେ ପରସ୍ପରଠାରେ ନିବଦ୍ଧ
ଆମର କ୍ରମ ବର୍ଦ୍ଧିଷ୍ଣୁ ଛାଇ ଦୁହେଁ
ନିଜ ନିଜର ପୃଥକ ନଶ୍ୱରତାର ସନ୍ଧାନରେ

# ମତେ ଯଦି ଆଉଥରେ

ମତେ ଯଦି ଆଉ ଥରେ ଛୁଇଁଦିଅ
ତମର ଛୁଇଁବା ଯାହା ତମ ପାଇଁ
ସାଧାରଣ ସାମୟିକ ଓ ଆନୁଷଙ୍ଗିକ
ତା ମୋର କିଛି ସମୟର
ନିର୍ଦ୍ଦିଷ୍ଟ ଭବିତବ୍ୟ ହୋଇଯିବ
ଏବଂ ମୋର ଉଚ୍ଚାକାଂକ୍ଷାର ଅବଧି
ଆଉ କିଛି ବଢ଼ିଯିବ

କେବଳ ତମେ ଜାଣ ତମର ଛୁଇଁବା
କେତେ ନିକଟ କେତେ ଦୂର କେତେ ଅନିବାର୍ଯ୍ୟ
କେବଳ ସ୍ପର୍ଶରେ କେତେ ଅନ୍ତରଙ୍ଗ କରି ହେବ
ସଂପର୍କର ବାଧ୍ୟବାଧକତାକୁ
କେତେ ଅଧିକାର କରିହେବ ଆକାଶକୁ
ସାମାନ୍ୟ ମାତ୍ର ସମ୍ବୋଧନରେ
ଘାସର ଆଦର କେତେଦୂର
ଢାଙ୍କି ଦେଇପାରିବ ଭଗ୍ନାବଶେଷକୁ

ମତେ ସମାନ ଭାବରେ ତଲ୍ଲୀନ କରି ରଖିଥିବ
ତମର ଥିବା ଏବଂ ତମର ନଥିବା
କେତେ ଆତ୍ମୀୟତା ଥିବ ତମର ଛୁଇଁବାରେ
କେତେ ନିବିଡ଼ତା ଆଣିଦେବ ତମର ସନ୍ନିଧି
କେତେ ଆମେ ଏକ ହୋଇ ପାରିବା
ପାଖରେ ବସିଥିବା ବେଳେ
ଆଖିରେ ଆଖିକୁ ରଖି କେତେ ଘନିଷ୍ଠତା
ରୁମାଲରେ କେତେ ଦୁଃଖ ପୋଛି ନିଆଯାଇପାରେ
ଅଙ୍ଗୁଳିରେ ଦେଇ ହେବ କେତେ ଉଷ୍ମତା

କିଏ ଜାଣେ କେତେ ସମୟ ଆଉ
ସଂଜୀବନୀ ଦେଇଯିବ
ଛୁଇଁବାର ଅନଭ୍ୟସ୍ତ ଆଶ୍ୱାସନା
ଶୂନ୍ୟତାର ଘେର ଦେଇ
ଆକାଶକୁ ବାନ୍ଧି ରଖି ପାରିବ
କେତେ ସମୟ ଆଉ କେତେ ସମୟ
ଆମ ଦୁହିଁଙ୍କ ମିଳିତ ହାତର ସ୍ୱସ୍ତିକ ଚିହ୍ନ

# ଚିଡ଼ିଆଖାନାରୁ ସୁନାସିଂହ

ଚିଡ଼ିଆଖାନାରୁ ସୁନାସିଂହ ବାହାରି ଆସିଲା
ଫାଟକସବୁ ଖୋଲା ଦର୍ଶକମାନେ ହତବାକ

ଖୋଲା ପଡ଼ିଆରେ ବସି
ଜହ୍ନଆଲୁଅ ଓ କାକରକୁ ନେଇ
ତାନ୍ତ୍ରିକ ତିଆରି କରୁଛି
ଅକାଟ୍ୟ ଜୀବନ୍ୟାସର ମନ୍ତ୍ର
ଛାଇ ଭିତରୁ ହସୁଛନ୍ତି
ଅବିଶ୍ୱାସର ଯମଦୂତମାନେ
ଜହ୍ନ ଆଲୁଅରେ ସବୁ ଝାପ୍‌ସା
ଦର୍ପଣକୁ କଥା କହିଲେ ସବୁ ଝଲମଲ
ଚେହେରାରେ ତୀବ୍ରତା ନାହିଁ
ଶବ୍ଦରେ ନାଟକୀୟତା ନାହିଁ
ସବୁ ମନଗଢ଼ା ମାୟା ମିଥ୍ୟା ଏବଂ ମରୀଚିକା
ସେଫ୍ ଡିପୋଜିଟ୍‌ରେ ବନ୍ଦ

ସ୍ମୃତିର ପଥର ସବୁ ମୂଲ୍ୟହୀନ
ମେଘ ମିଛ ମନ୍ତ୍ର ମିଛ ତପସ୍ୟା ମିଛ
ରୋଗୀର ଦେହକୁ ଯାଉଥିବା
ରାସାୟନିକ ରକ୍ତ ମିଛ
ରବିବାର ସବୁ ବହିଥାକରେ
ଜେଲଖାନା ଘଣ୍ଟାରେ ଜୀବନ ନାହିଁ
ଚିଡ଼ିଆଖାନାର ପାଚେରୀ ତଳକୁ ନଇଁଗଲା
ଭଙ୍ଗା ମନ୍ଦିର ଚାରିପାଖେ ପ୍ରଦକ୍ଷିଣ କରୁଛି
ଅଜ୍ଞାତ ଭୟର ବୁଲାକୁକୁର
ଚୌକିଦାର ଜଗି ରହିଛି
ନିର୍ଭର ଅଯୋଗ୍ୟ ଉତ୍ତର ସମୟକୁ

ହରିଣର ଶିଂଘ ଚୋରିଗଲା
ବାଘ ଦେହରୁ ପଟା ପଟା ଦାଗ ଉଭାନ
ଜହ୍ନ ଜଳି ପୋଡ଼ି ପାଉଁଶ ସକାଳର ଖରାରେ
କେବଳ କାଉମାନେ
ସେମାନଙ୍କର ଶୋକ ପୋଷାକରେ

# ଛାୟାପଥ ଉପରେ ସେ

ଛାୟାପଥ ଉପରେ ସେ କିଛିକ୍ଷଣ
ଅନ୍ୟମନସ୍କ ଭାବରେ ଠିଆ ହେଲା
ଆକାଶରୁ କିଛି ତାରା ତୋଳି ନେଲା
ଇନ୍ଦ୍ରଧନକୁ ନେଇ ମେଘ ଉପରେ ସେତୁ ବାନ୍ଧିଲା
ଓ ଶୂନ୍ୟ ସହିତ କିଛିକ୍ଷଣ କଥା କହିଲା

ତା ପରେ ହାତରେ କିଛି ଶବ୍ଦ ନେଇ
ସେ ପୃଥିବୀ ଉପରକୁ ଓହ୍ଲାଇଲା
ସେ ଦେଖିଲା ଫଟାଭୂଇଁ ଉପରେ
ଦୁର୍ଭିକ୍ଷ ଅକାଳ ଅନାବୃଷ୍ଟି
ଯନ୍ତ୍ରଣା ବ୍ୟର୍ଥତା ନୈରାଶ୍ୟ ଓ ଶୋକ

ପରିତ୍ୟକ୍ତ ଶିଶୁମାନଙ୍କର ଶବ ଓ
କଙ୍କାଳମାନଙ୍କର ଶୋଭାଯାତ୍ରା ପାଖରେ
ତା ହାତରୁ ଶବ୍ଦସବୁ ଖଣ୍ଡ ଖଣ୍ଡ ହୋଇ
ତଳକୁ ଖସି ପଡ଼ିଲେ ଓ
ବିନା ତାତ୍ପର୍ଯ୍ୟରେ ଜମିରହିଲେ
ସେ ଆଖି ବନ୍ଦକରି ମନ୍ତ୍ର ଜପିଲା
ଯେତେବେଳେ ତା ନିଶ୍ୱାସରେ ଝଡ଼ ଆସିଲା
ଓଠରେ ଅଗ୍ନିକଣା ହାତରେ ବଜ୍ର
ଅନାଥ ଶବ୍ଦମାନଙ୍କୁ ତଳୁ ଉଠାଇ
ସେ ଧୂଳି ଝାଡ଼ି ହାତରେ ଧରିଲା
ତା ପରେ ସେମାନଙ୍କୁ ସେ ଯୁଦ୍ଧ ପୋଷାକ ପିନ୍ଧାଇଲା
ଏବଂ ସେମାନଙ୍କ ହାତରେ ବନ୍ଧୁକ ଦେଲା

ଏଥରକ ଶବ୍ଦର ଯାଦୁକର ସେମାନଙ୍କୁ କହିଲା
ଆଗକୁ ଚାଲ ହେ ସୂର୍ଯ୍ୟସଂଧାନୀ ଯାତ୍ରୀମାନେ
ଦିଗ୍‌ବଳୟର ପାଚେରୀକୁ ଭାଙ୍ଗି
ଆଗକୁ ଚାଲ ଆଗକୁ

# ଆରମ୍ଭ

ଜୀବନର ଅନ୍ଧଗଳି ମାନଙ୍କରେ
ଅଚାନକ ସାକ୍ଷାତକାର
ଏବଂ ପ୍ରତିଶ୍ରୁତିମାନ

# ଫେରିଯିବା ବେଳେ

ସବୁ ଆମର ପ୍ରାପ୍ୟ ଥିଲା
ସମୟାତୀତ ସଂପର୍କର ଦାବୀରେ
ଅନେକ ଆନନ୍ଦ ଯାହା ଅଲୌକିକ
ଅନେକ ସଂସର୍ଗ ଯାହା ଅପାର୍ଥିବ

ଯାହା ସବୁ ଆମ ହାତମୁଠାରେ ଥିଲା
ସାକ୍ଷାତର ଅପ୍ରସ୍ତୁତ ମୁହୂର୍ତ୍ତରେ
ସମତଳ ବୟସକୁ ଅନାଇ
ଆମେ ତାକୁ ଅସ୍ୱୀକାର କରିଦେଲେ
ନିଜ ନିଜର କପଟ ନିର୍ଲିପ୍ତତାରେ

ଯାହା ଆମେ ପରସ୍ପରକୁ
ସମର୍ପଣ କରି ପାରିଥାନ୍ତେ
ଫେରିଯିବା ବେଳେ
ସବୁ ସମୟକୁ ଦେଇଗଲେ

## ପ୍ରତିବିମ୍ବ

ମୁଁ ଦର୍ପଣକୁ ଚାହିଁ ରହିଥିବି
ଯେ ପର୍ଯ୍ୟନ୍ତ ତମେ ଆସି
ମୋ ପାଖରେ ଠିଆ ନ ହୋଇଛ

ତମ ଓଠରେ ସାମାନ୍ୟ
ରହସ୍ୟମୟ ହସ ସଂଚରିଗଲେ
ଆମର ପ୍ରତିବିମ୍ବ ପହଁରିଯିବେ
ଏକ ସ୍ମରଣହୀନ ଅନ୍ଧାରକୁ
ମତେ ଏକା ଛାଡ଼ିଦେଇ

ମୁଁ ଆଖି ପୋଛି
ପୁଣି ଚାହିଁ ରହିବି
ପ୍ରତିବିମ୍ବର ଫେରି ଆସିବାକୁ

## ପ୍ରତୀକ୍ଷା

ମୋ ସ୍ୱପ୍ନ ଭିତରୁ ବାହାରି
ତମେ ଅନ୍ୟ ସ୍ୱପ୍ନ ଭିତରକୁ ଚାଲିଗଲେ
ମୁଁ ପୁଣି ଫେରିଯିବି
ମୋର ନିଃସଙ୍ଗ ଅନୁଭୂତିକୁ
ଯେଉଁଠାରେ ମୁଁ ସବୁବେଳେ
ପ୍ରତୀକ୍ଷାରତ ରହିଥିଲି

ତମେ ମୋର ଗୋଟିଏ ଅନୁଭୂତିରୁ
ଅନ୍ୟ ଅନୁଭୂତିକୁ ବାହାରିଗଲେ
ମୁଁ ପୁଣି ଫେରିଯିବି
ମୋର ସ୍ୱପ୍ନର ଅବିନଶ୍ୱରତାକୁ

ଯେଉଁଠାରେ କୌଣସି ପ୍ରତୀକ୍ଷା ନାହିଁ

## ବର୍ତ୍ତମାନ

ମୋର ଅପେକ୍ଷାମାନ
ଅତୀତ ପାଇଁ ଉଦ୍ଦିଷ୍ଟ ଥିଲା

ମୋର ସମସ୍ତ ସ୍ମୃତି
କେବଳ ଭବିଷ୍ୟତର

ଯାହା କିଛି
ସ୍ମୃତିହୀନ ଅପେକ୍ଷାହୀନ
ସେ ସବୁ ମୋର ବର୍ତ୍ତମାନ

## ସମୟ

ସମୟର ତୃତୀୟ ପାର୍ଶ୍ୱ ନାହିଁ

ଜୀବନ ହେଉଛି
ଜନ୍ମକୁ ଧରି ରଖିଥିବାରୁ
ମୃତ୍ୟୁର ଅଭିଶାପ

ସ୍ମୃତି ହେଉଛି

ବ୍ୟତୀତକୁ ଛାଡ଼ି ନ ଆସିଥିବାରୁ
ସମ୍ଭାବନାଠାରୁ ଶାସ୍ତି

ଅତୀତ ଯେତେବେଳେ ଆସେ
ବର୍ତ୍ତମାନକୁ ଖୋଜି ଖୋଜି
ଭବିଷ୍ୟତ ପାଇଁ
ସାକ୍ଷୀ ସଂଗ୍ରହ କରିବା ପାଇଁ

ସମୟର କୌଣସି ଶୋଚନା ନ ଥାଏ

## ସୀମାନ୍ତ

ଦୁଃସ୍ୱପ୍ନରେ ଭବିଷ୍ୟତ ଦେଖା ଦିଏ ନାହିଁ
କିନ୍ତୁ ଆଖି ସବୁ ଦେଖିନିଏ
ଯେବେ ସମ୍ଭାବନା ଯେତେ ଅନୁପଲବ୍ଧି

ତମେ ଆଖି ବନ୍ଦ କରି
ଦୁଇଟି ପତାର ଅନ୍ତରାଳରେ
ସ୍ୱପ୍ନର କେଉଁ ଅଭାବିତ ରାଜ୍ୟକୁ
ଚାଲିଯିବା ପୂର୍ବରୁ

ତମର ନିଶୂନ ସୀମାନ୍ତରେ
ମୋର ଖଣ୍ଡିତ ସ୍ୱପ୍ନମାନଙ୍କୁ
ଉଦ୍ଧାର କରିବା ପ୍ରୟାସରେ
ମୁଁ ନିଜକୁ ତମ ଆଖିର
ପରିତ୍ରାଣହୀନ ଅନ୍ଧକାରରେ

ନିଃଶେଷ ହୋଇଯିବାର ଦେଖିବି

## ଚୁକ୍ତି

ଅନ୍ଧାରକୁ ବିପର୍ଯ୍ୟସ୍ତ କରି
ତମେ ଯେତେବେଳେ
ଅପ୍ରସ୍ତୁତ ସକାଳ ଭଳି ଆସିବ
ପରିପାର୍ଶ୍ୱର ସମନ୍ୱୟକୁ ଭାଂଗିଦେଇ
ମୁଁ ଜାଣିବି ମୋର
ଆଧିପତ୍ୟ ଆଉ ସମ୍ଭବ ନୁହେଁ

ସ୍ମରଣ ଶକ୍ତି ହରାଇବା ପୂର୍ବରୁ
ମୋର ଇଚ୍ଛା ତମ ଉଦ୍ଦେଶ୍ୟରେ
ଗୋଟିଏ ସ୍ମରଣୀୟ ପଂକ୍ତି
ଲେଖି ରଖିଯିବି

ତା ପରେ
ମୃତ୍ୟୁ ସହିତ ଚୁକ୍ତି କରି
ମୁଁ ବାହାରକୁ ଆସିବି
ସକାଳର ସାମନା କରିବାକୁ

## ସୂର୍ଯ୍ୟାଲୋକ

ନିଜର ନୀଳ ରଙ୍ଗର ଆବରଣରେ
ଆକାଶ ବନ୍ଦ କରି ରଖି ପାରିବ
ସୂର୍ଯ୍ୟର ପ୍ରକାଶକୁ
କେବଳ ସୀମିତ ସମୟ ପର୍ଯ୍ୟନ୍ତ

ମେଘ ଯେତେବେଳେ ଓହ୍ଲାଇବ
ବିଷାଦର ଶୃଙ୍ଖଳିତ ଦିନମାନଙ୍କୁ
କୋଳାଗ୍ରତ କରି
ଆକାଶ ଉପରୁ
ନୀଳ ରଙ୍ଗର ଆସ୍ତରଣ ତରଳିଯିବ

ସୂର୍ଯ୍ୟାଲୋକର ରଙ୍ଗ ସବୁ
ଶୋକର ଏକ ଅଦ୍ଭୁତ ବିସ୍ଫୋରଣରେ
ଆକାଶକୁ ପରିପୂର୍ଣ୍ଣ କରିଯିବେ
ଇନ୍ଦ୍ରଧନୁର ବିଭିନ୍ନ ବର୍ଣ୍ଣରେ

## ଭଗ୍ନାଂଶ

ପ୍ରତିବିମ୍ବ ସବୁ ଯେତେବେଳେ
ଛଳନାରେ ଜର୍ଜରିତ ହୋଇ ଆସିବେ
ମୋର ଭଲ ପାଇବାକୁ ପ୍ରଶ୍ନ କରିବାକୁ
ମୁଁ ଅବିଶ୍ୱସ୍ତ ଦର୍ପଣକୁ
ଭାଙ୍ଗିଯିବା ପାଇଁ ଅଭିଶାପ ଦେବି

କାଚର ପାରଦର୍ଶୀ ଯନ୍ତ୍ରଣାରେ
ଆଉ କୌଣସି ଜିଜ୍ଞାସା

ଆଉ କୌଣସି ସଂଚାର ରହିବ ନାହିଁ

ଦର୍ପଣର ପ୍ରତ୍ୟେକ ଭଗ୍ନାଂଶ
ମୋ ଚାରିପାଖେ ବିଚ୍ଛୁରିତ ହୋଇଗଲେ
ପ୍ରତିବିମ୍ବ ସବୁ ଫେରି ଆସିବେ
ବାରମ୍ବାର ପ୍ରତିଧ୍ୱନିତ ବୃନ୍ଦଗାନରେ
ମୋର ପ୍ରତ୍ୟେକଟି ଦିନ ପାଇଁ
ବିଭିନ୍ନ ମୃତ୍ୟୁର କ୍ଷମାହୀନ ଡାକ ନେଇ

# ଅନ୍ୟ ଦେଶ

ଶୂନ୍ୟତାରୁ ନିସ୍ତାର ପାଇଁ
ବେଳାଭୂମି ଉପରେ ଠିଆ ହୋଇ
ମୁଁ ଯେତେବେଳେ ସମୁଦ୍ରକୁ ପ୍ରଶ୍ନ କଲି
ମୋର ପ୍ରଶ୍ନ ଓ ପ୍ରତିଧ୍ୱନିମାନ
ନୀଳ ରଙ୍ଗ ଭିତରେ
ନିଶ୍ଚିହ୍ନ ହୋଇଗଲେ

ଉତ୍ତର ସ୍ୱରୂପ କେବଳ
ଲହରୀ ମୋ ପାଦ ପାଖରେ ଦେଇଗଲା
ଅନ୍ୟ ଏକ ନିସ୍ତବ୍ଧତା

ଏ ବି ଏକ ଅଦ୍ଭୁତ ଦେଶ
ଯେଉଁଠାରେ ସବୁ ଅନୁଭବ
ଶୋକରେ ପାଲଟି ଯାଏ
ସବୁ ସ୍ୱର ନିର୍ଜନତା ହୋଇଯାନ୍ତି

## ସକାଳ

ରାତ୍ରିର ଦର୍ପଣରେ ପ୍ରତିବିମ୍ବ ନାହିଁ
ନିର୍ଜନତାର ନିଶ୍ୱାସ
ପୁଣି କାନ୍ଥରେ ଧକ୍‌କା ଖାଇ
ଘନିଷ୍ଠ ହୋଇଯାଏ
କୋଠରୀର ସାରା ଦେହ ଛାଇଯାଏ
ସ୍ତବ୍ଧ ପ୍ରତିଧ୍ୱନିର ଆବେଶରେ

ପୁଣି ସକାଳର ଆଲୋକରେ
ଏକାକାର ହୋଇଯାଏ ସବୁ
ପବନରେ ବିଧ୍ୱସ୍ତ ପ୍ରତିବିମ୍ବ
କାନ୍ଥରେ ଲଘୁ ପ୍ରତିଧ୍ୱନିର ଭଗ୍ନାଂଶ

ସାରା କୋଠରୀ ଏଥରକ
ଯେ ଯାହା ସ୍ଥାନରେ ସମନ୍ୱିତ
କେବଳ ତମର ମୁହଁର ଦର୍ପଣରେ
ଏକ ଅନୁପଲବ୍ଧ ରାତ୍ରିର ସ୍ମରଣ

## ନିଜେ ନିଜେ

ଆମେ ନିଜେ ନିଜର ରାସ୍ତା

ଯାହା ଉପର ଦେଇ ଆମେ ଚାଲିଗଲେ
ଆମର ଇନ୍ଦ୍ରିୟମାନଙ୍କର ତୋରଣ ତଳେ

ଆମେ ନିଜେ ନିଜର ବାତାବରଣ
ନିଜେ ନିଜର ସ୍ୱର ବର୍ଣ୍ଣ ଗନ୍ଧ
ଆମ ଭିତରେ ସରିଗଲା ସକାଳ ଓ ସାଧନା
ଆମ ଭିତରେ ଲିଭିଗଲା ଆକାଶ ଓ ଇଚ୍ଛା
ଆମ ଭିତରେ ହଜିଗଲା ସମୁଦ୍ର ଓ ଧୈର୍ଯ୍ୟ
ଆମେ ପଥଭ୍ରଷ୍ଟ ହୋଇଗଲୁ
ଆମର ନିରନ୍ତର ବ୍ୟାସହୀନତାରେ

ତା ହେଲେ କଣ
ନିଜର ସ୍ୱୟଂ ସଂପୂର୍ଣ୍ଣତାରେ
ମଣିଷ ଯାହା ଭାବେ ତାହା ହିଁ ଉଦ୍ଦେଶ୍ୟ
ଯେଉଁ ଆଡ଼େ ଯାଏ ତାହା ହିଁ ଲକ୍ଷ୍ୟ
ଯାହା ମିଳେ ସବୁ ପ୍ରାପ୍ୟ
ଯେଉଁଠାରେ ପାଦ ପଡ଼େ ସବୁ ତାର ରାସ୍ତା

## ସ୍ୱତ୍ୱ

ଶୂନଶାନ କୋଠରୀ ସଂଚୟ କରି ରଖେ
ପାଦଶବ୍ଦର କୋଳାହଳ

ସ୍ଥିର ପବନ ଅନ୍ତରଙ୍ଗ କରି ନିଏ
ଉଡନ୍ତା ଡେଣାର ସ୍ଫୁରଣକୁ

ବିବର୍ଣ୍ଣ ଆକାଶ ଛାଡେ ନାହିଁ

ଇନ୍ଦ୍ରଧନୁର ଶେଷ ଭଗ୍ନାଂଶ

ମହୁମାଛିର ଗୁଂଜନକୁ ବନ୍ଦ କରି ରଖେ
ଫୁଲର ନିଃସ୍ୱନ ପାଖୁଡ଼ା

ନିଜ ନିଜ ଅତୀତର ଉତ୍ତରଦାୟିତ୍ୱ ନେଇ
ଆମେ ଅଧିକାର କରିଯାଉ
ଭବିଷ୍ୟତର ପୂର୍ବଜମାନଙ୍କୁ

## ଭବିତବ୍ୟ

ମୁଁ ଯେତେବେଳେ
ଭବିଷ୍ୟତକୁ ଉଡି ଯାଉ ଯାଉ
ଆମର ଅତୀତରେ ବନ୍ଦି ରହିଯିବି
ଯେଉଁଠାରୁ ଆଗକୁ ରାସ୍ତା ନାହିଁ

ମୋର ବର୍ତ୍ତମାନକୁ
କାହା ହାତରେ ଦେଇଯିବି

ତମେ କଣ ନିଶ୍ଚିତ ଭାବେ
ନିର୍ଦ୍ଧାରିତ କରି ଦେଇ ପାରିବ
ମୋର ବର୍ତ୍ତମାନର ଭବିତବ୍ୟ
ଯାହାର କୌଣସି ଅତୀତ ନ ଥିବ

## ସ୍ୱୀକାର

ମୁଁ ତମ ହାତରେ ରଖିଯିବି
ଜୀବନକୁ ମୋର ପ୍ରଥମ ପଦକ୍ଷେପ
ଗୋଟିଏ ସମ୍ମିଳିତ ଆନନ୍ଦ
ଏବଂ ଗୋଟିଏ ପାରସ୍ପରିକ ବିଷାଦ

ତମର ସଂକୋଚ ସବୁ
ତାକୁ ଅସ୍ୱୀକୃତ ରଖିଯିବ
ଅନ୍ୟ ସମୟ ପର୍ଯ୍ୟନ୍ତ

ଆସନ୍ତା କାଲିମାନଙ୍କରେ
ତମେ ଯେତେବେଳେ
ସେମାନଙ୍କୁ ଅଙ୍ଗୀକାର କରିନେବ
ବର୍ତ୍ତମାନର ମୁହୂର୍ତ୍ତ ସବୁ
ଅତୀତରେ ପରିଣତ ହୋଇଯାଇଥିବେ
ଏଥର ସ୍ୱୀକାର ସମ୍ଭବ
କେବଳ ସମୟର ଅତିରିକ୍ତ
ଯେଉଁଠାରେ ଆମ ବ୍ୟତୀତ କେହି ନ ଥିବେ
ଏକ ବର୍ତ୍ତମାନର ସ୍ମୃତି ଦାବୀ କରିବା ପାଇଁ

## ସୂର୍ଯ୍ୟାସ୍ତ

ତମର ଅନ୍ତରାଳରେ
ଯେତେବେଳେ ସୂର୍ଯ୍ୟ ଅସ୍ତ ଯିବ
ସବୁ ଏକ ନିରାଲୋକ ଦେଶ

ନିଶୂନ ଅନ୍ତରୀକ୍ଷ ଏବଂ
ଅସ୍ପଷ୍ଟ ଛାୟାପଥ

ତମର ଦେହ ଦେଇ
ଘୂର୍ଣ୍ଣି ଚାଲିଯିବା ପରେ
ତମ ଆଖିରେ ରହିଯିବ
କେବଳ ଦୁଇଟି ତାରାଙ୍କର
ଭୟଙ୍କର ଅନ୍ଧାର
ଅନ୍ଧାର ଯାହା ତମେ

ମୁଁ ଭୟରେ ଫେରି ଆସିବି
ରାସ୍ତା ଖୋଜି ଖୋଜି
ମୋ ନିଜର ନିର୍ଜନତାକୁ
ସେ ନିର୍ଜନତା ବି ତମେ

## ଆଖି

ତାରାମାନେ ଯେତେବେଳେ
ମତେ ସେମାନଙ୍କର
ଅନ୍ଧକାରାଚ୍ଛନ୍ନ ରହସ୍ୟରେ
ଆବୃତ କରି ଦିଅନ୍ତି
ସେମାନଙ୍କୁ ସାକ୍ଷୀ ରଖି
ମୁଁ ସକାଳକୁ ହାତ ବଢାଏ

ତାରାମାନେ କ୍ରମଶଃ
ବିଲୀନ ହୋଇଗଲେ

ମୁଁ ତମର ଖୋଲି ଆସୁଥିବା
ଆଖିକୁ ଅନାଏ

ସକାଳ ହେବା ଆଗରୁ
ମୁଁ ପୁଣି ଥରେ ହଜିଯାଏ
ଅବଶିଷ୍ଟ ଦୁଇଟି ତାରାଙ୍କର
ନିଜସ୍ୱ ଅନ୍ଧାରରେ

## ଚରମ ସତ୍ୟ

ଏଠାରେ କୌଣସି ତଥ୍ୟ
ପ୍ରାସଙ୍ଗିକ ନୁହେଁ
ତମର ତାତ୍କାଳିକ କାମନା ବ୍ୟତୀତ
ଯାହା ଏକ ଚରମ ସତ୍ୟ

ଏଠାରେ କୌଣସି ତତ୍ତ୍ୱ
ଉପଯୁକ୍ତ ନୁହେଁ
ତମର ଇଚ୍ଛାକୃତ ଉଦାସୀନତା ବ୍ୟତୀତ
ଯାହା ଅନ୍ୟ ଏକ ଚରମ ସତ୍ୟ

## ସଂଜ୍ଞା

ମିଳନ ବିରହର କକ୍ଷ ଦେଇ
ଯାହା ଆସେ
ସେ ସବୁ ମୁହୂର୍ତ୍ତ
ଜରା ଓ ମୃତ୍ୟୁର ଆବୃତ୍ତିରେ ବିତେ

ଋତୁଚକ୍ରର କ୍ରମ
ଜନ୍ମ ମୃତ୍ୟୁର ବିବର୍ତ୍ତନରେ ଯାଏ
ଦିନ ମାସ ବର୍ଷ

ସ୍ମୃତିର ସାବଲୀଳତାରେ
ଜୀବନରୁ ଯାହା ହ୍ରାସ ହୋଇଯାଏ
ତା'ର ନାଁ ବୟସ

## ଭୟ

ଆମେ ଚୁପ ରହିଲେ
ନିର୍ଜନତାର ଯାଦୁ
ଭାଙ୍ଗିଯିବାର ଭୟରେ

ବିଦାୟ ନେବାକୁ ହେବ
ସେଥିପାଇଁ ସାକ୍ଷାତକାରକୁ
ସଂକ୍ଷିପ୍ତ କରି ଦେଲେ

ଆଖିରୁ ଆଖିକୁ ପ୍ରତ୍ୟାହାର କରିନେଲେ
ସଂଶୟ ସୃଷ୍ଟି ହେବା ପୂର୍ବରୁ

ଆମେ ବାର୍ତ୍ତାଳାପ ବିଛିନ୍ନ କରିନେଲେ
ସଂପର୍କ ଦୁଃସହ ହେବାର ଆଶଂକାରେ

ସମୟ ଓ ଋତୁଚକ୍ରର ଭୟରେ

ଆମେ ଜୀବନକୁ ନିଃଶେଷ କରି ଦେଲେ
ଗୋଟିଏ ପଲ୍ଲବର ବସନ୍ତରେ

## କ୍ରମ

ସକାଳ ଡାକିଆଣେ ଖରାବେଳକୁ
ଯାହା ଅନୁଭୂତିର ଗହ୍ୱରରୁ
ସ୍ମୃତିବଦ୍ଧ ଶବ୍ଦମାନଙ୍କୁ ନିଃଶେଷ କରି ଦିଏ
ଏକ ସ୍ୱୀକୃତ ସତ୍ୟରେ

ଖରାବେଳ ଡାକି ଆଣେ ସଂଜ ବେଳକୁ
ଯେଉଁଠାରେ କୌଣସି ଶୋଚନା ନାହିଁ
ଅପର୍ଯ୍ୟାପ୍ତ ସ୍ନେହର ଆଚ୍ଛନ୍ନ ଆକାଶ
ଏବଂ ଏକ ଶାଶ୍ୱତ ଗୋଧୂଳି

ସଂଜବେଳ ଡ଼ାକି ଆଣେ ରାତିକୁ
ଯେଉଁଠାରେ କେବଳ ଏକ ନିର୍ଜନ ଯନ୍ତ୍ରଣା
ଶୂନ୍ୟ ମୁହୂର୍ତ୍ତମାନଙ୍କୁ ପରିବ୍ୟାପ୍ତ କରିଦିଏ
ଏବଂ ପ୍ରେମ ସମୟର ସ୍ତୋତ୍ର ହୋଇଯାଏ

## ଶବ୍ଦ

ନିଃସଙ୍ଗତାର କ୍ଷତ ମାନଙ୍କରୁ
ଶବ୍ଦ ଝରି ଆସେ ରକ୍ତ ଭଳି

ତାକୁ ପୋଛି ନେବା ପାଇଁ

କୌଣସି ପ୍ରତ୍ୟୁତ୍ତର ନାହିଁ

ଶବ୍ଦ ସବୁ ଛୋଟ ଛୋଟ
ପ୍ରତିଧ୍ୱନି ହୋଇ ଜମି ଯାନ୍ତି

ରକ୍ତସ୍ରାବ ବନ୍ଦ ହୋଇଯାଏ
ଶବ୍ଦହୀନ ନିଃସଙ୍ଗତାରେ

# ନିର୍ବାସନ

ତମେ ମୋର ହାତ ଧରି
ଯେଉଁ ରାସ୍ତାମାନଙ୍କରେ ନେଇଗଲ
ସବୁ ମୋର ସ୍ୱପ୍ନରେ ସମ୍ମତ ଥିଲା

ଆମେ ଯେଉଁ ଋତୁରେ ପହଞ୍ଚିଲେ
ସବୁ ତମର ଉପାଦାନରେ ଗଢ଼ା
ମୋର ଇପ୍‌ସିତ ସମୟ

ଆମର ମନୋମାଳିନ୍ୟର ଦିନମାନଙ୍କରେ
ତମେ ମତେ ନିର୍ବାସିତ କରିବାର
ଦ୍ୱୀପ ସବୁ ନିଶ୍ଚିତ କରି ରଖିଛ

କିନ୍ତୁ ଏପରି ଦେଶ କାହିଁ
ଯାହା ତମର ବ୍ୟକ୍ତିତ୍ୱର ମାନଚିତ୍ର ନୁହେଁ
ଏପରି ସମୟ କାହିଁ

ଯାହା ତମର ବ୍ୟକ୍ତିଗତ ଦିନଲିପି ନୁହେଁ

# ନିଜ ଭିତରେ

ସବୁ ମୋ ନିଜ ଭିତରେ
ଯେତେକ ଦ୍ୱନ୍ଦ୍ୱ ଏବଂ ସମନ୍ୱୟ
ମୋ ନିଜର ଆକାଶ ସମୁଦ୍ର
ମୋ ନିଜର ଶୀତ ଓ ବସନ୍ତ
ମୋ ନିଜର ଆଶା ଓ ଅଂଗୀକାର

ମୁଁ ଶୂନ୍ୟତାକୁ ହାତମୁଠାରେ ବନ୍ଦ କରି ନିଏ
ଏବଂ ପୁଣି କେଉଁ ଅସଂଲଗ୍ନ ମୁହୂର୍ତ୍ତରେ
ହାତମୁଠା ଖୋଲିଲେ
ଅସଂଖ୍ୟ ତାରା ଉପରକୁ ଉଡିଯାନ୍ତି
ଆକାଶକୁ ବିନ୍ଦୁ ବିନ୍ଦୁ ପ୍ରତ୍ୟାଶାରେ
ଭରି ଦେବା ପାଇଁ

ମୋର ଆଖି ଭିତରେ ସୀମିତ ହୋଇଯାନ୍ତି
ଦ୍ୟୁତିମାନ ସୂର୍ଯ୍ୟର କିରଣ ସବୁ
ମୋର ବାହୁକୁ ଫେରି ଆସେ
ଉତ୍‌ପ୍ଲାବିତ ଚନ୍ଦ୍ରର ଲହରୀ
ମୁଁ ଦେବତ୍ୱକୁ ଆହ୍ୱାନ ଦେଇଯାଏ
ମୃତ୍ୟୁକୁ ଆଶ୍ୱାସନା
ଅସ୍ତିତ୍ୱର ଉପତ୍ୟକାରେ ଠିଆ ହୋଇ
ମୁଁ ସମୟକୁ ନୀତିବାକ୍ୟମାନ ଶୁଣାଇଥାଏ

ପୁଣି ନିଜସ୍ୱ ମରୁଭୂମିର
ବାଲି ଓ ସନ୍ତାପ ଭିତରେ
ରାସ୍ତା ଭୁଲି ଶୋଇଯାଇଥାଏ
ବାଟ ପାଇ ନ ଥିବା ପବନର
ଭର୍ତ୍ସନା ଓ ହାହାକାର ମିଶା
ସଙ୍ଗୀତ ଶୁଣୁ ଶୁଣୁ

## ତମେ ଯଦି

ତମେ ଯଦି ଆଉ କିଛି କ୍ଷଣ
ଅପେକ୍ଷା କରିଥାନ୍ତ
ମୁଁ ହୁଏତ ତମର ପ୍ରତ୍ୟାଖ୍ୟାନକୁ
ସ୍ୱୀକାର କରି ନେଇଥାନ୍ତି

## ଐଶ୍ୱରିକ

ଆମର ପ୍ରୟୋଜନ ବ୍ୟତୀତ
ଏଠାରେ କୌଣସି ଈଶ୍ୱର ନାହାନ୍ତି

ଯେତେବେଳେ ପ୍ରୟୋଜନମାନ
ବାରମ୍ବାର ଫେରି ଆସିବେ

ତମ ଦେହର ଅର୍ବାଚୀନତାରେ
ଲକ୍ଷ୍ୟଭ୍ରଷ୍ଟ ହୋଇ
ମୁଁ ତମ ଆଖିର ବନ୍ଦ ରାସ୍ତାମାନଙ୍କରେ
ମୋର ନିଜସ୍ୱ ଶାନ୍ତି ଖୋଜିବି
ଯାହା ମୋର ପ୍ରାପ୍ୟ

ତମର ଉତ୍ତୋଳିତ ଭ୍ରୂଲତା ଉପରେ
ଧକ୍କା ଖାଇ ମୁଁ ଫେରି ଆସିବି
ନିଜର ଧୃଷ୍ଟତାକୁ ତିରସ୍କାର କରିବା ପାଇଁ

ପୁଣି ନିଜର ପ୍ରୟୋଜନକୁ
ଯେଉଁଠାରେ କୌଣସି ଐଶ୍ୱରିକତା ନାହିଁ

## ପରିଚୟ

ମୋର କୌଣସି ପରିଚୟ ନାହିଁ
ତମର ପୂର୍ବାପର ସଂଗତି ବ୍ୟତୀତ

ତମର ପ୍ରଭାବରୁ ମୁକ୍ତ
ମୋର କୌଣସି ଜନ୍ମସ୍ଥାନ ନାହିଁ
ମୋର ସ୍ମୃତିର ପ୍ରାଚୀନତା ମୋର ବୟସ
ମୋର ଇଚ୍ଛାର ନିଷ୍କପଟତା ଅତିରିକ୍ତ
ମୋର କୌଣସି ଧର୍ମ ନାହିଁ

ମୁଁ ତମର ଅତୀତର ଦାୟାଦ
ଆମର ଭବିଷ୍ୟତର

ଉତ୍ତରାଧିକାର ମାଗିବା ବେଳେ
ମୋର ଆଉ କୌଣସି ପରିଚୟ ନ ରହୁ
ଆମ ଦୁହିଁଙ୍କର
ପରସ୍ପର ସଂଗତି ବ୍ୟତୀତ

## ସାକ୍ଷାତକାର

ଆଜିର ସକାଳେ
ମୁଁ ଯେତେବେଳେ ଦର୍ପଣକୁ ଅନାଇବି
ତମେ ଅନ୍ତର୍ଦ୍ଧାନ ହୋଇଯିବ
ବ୍ୟତୀତ ରାତିର ଅନ୍ଧାରରେ

ଦିନଲିପିର ପୃଷ୍ଠାରୁ
ତାରିଖ ଓହ୍ଲାଇ ଆସିବ
ଏବଂ ରତୁ ହୋଇ ଉଡିଯିବ
ମୋର ଖୋଲା ଝରକା ଦେଇ
ପ୍ରତିବିମ୍ବର ସୀମାନ୍ତକୁ
ଯେଉଁଠାରେ ମୋର
ତମକୁ ଭେଟିବାର ନିଶ୍ଚୟ ଥିଲା
ସମୟର ବାହାରେ

# ଅଭାବ

ପ୍ରତ୍ୟେକ ସାକ୍ଷାତକାରର ମୁହୂର୍ତ୍ତ
ଯେଉଁଠାରେ ଏକ ସ୍ୱତନ୍ତ୍ର ଦ୍ୱନ୍ଦ୍ୱ
ସେଠାରେ ଆଉ କିଛି ସମ୍ଭବ ନୁହେଁ
ତମ ପାଖରୁ ଧାର ଆଣିଥିବା ଭାଗ୍ୟକୁ
ପୁଣି ତମରି ହାତକୁ
ପ୍ରତ୍ୟର୍ପଣ କରିଦେବା ବ୍ୟତୀତ

ତମ ସହିତ ପରିଚୟର
ଏପରି ବିରୋଧୀ ମୁହୂର୍ତ୍ତମାନଙ୍କରେ
କେବଳ ତମେ ହିଁ ଦେଇପାରିବ
ତମକୁ ଭୁଲି ଯିବାର
ଏବଂ ତମକୁ ସାକ୍ଷାତ କରିବାର ସାମର୍ଥ୍ୟ

ଶେଷରେ ତମେ ମୋ ପାଇଁ କେବଳ
ଆଶା ନୁହେଁ ଆକାଂକ୍ଷା ନୁହେଁ
ଏକ ବିଷଣ୍ଣ ଅଭାବ ହିଁ ରହିଯିବ
ଯାହାକୁ କେବେ କେବେ
ବିଚ୍ଛେଦ ଅଲଗା କରି ଦିଏ
କେବେ କେବେ ସାକ୍ଷାତକାର

# ବାର୍ତ୍ତାଳାପ

ମୁଁ ତମ ନାଁ ଧରି ଡାକିବି
ଯାହା କେବଳ ଗୋଟିଏ
ଉତ୍ତର ନଥିବା ପ୍ରଶ୍ନ ହୋଇ
ଦୋଳାୟମାନ ରହିଯିବ

ମୋର ସମ୍ବୋଧନର ପ୍ରତିଧ୍ୱନି ଯେତେବେଳେ
ତମର ସ୍ମୃତିରେ ସମନ୍ୱିତ ହୋଇ ଆସିବ
ପ୍ରତ୍ୟାଶିତ ସକାଳର ସୂର୍ଯ୍ୟାଲୋକକୁ ଛୁଇଁ
ଝରଣାର କଲ୍ଲୋଳରେ ପ୍ରତିଶ୍ରୁତି
ପତ୍ରର ମର୍ମରରେ ପୁନରାବୃତ୍ତ ହୋଇ

ମୋ ପାଖକୁ ଫେରି ଆସିବ
ପକ୍ଷୀର କାକଳୀରେ ସମୁଦ୍ରର ଗର୍ଜନରେ
ନିର୍ଜନତାର ଗୁଂଜନରେ
ଦିଗବଳୟକୁ ବିସ୍ତୃତ ହୋଇ ଯାଉଥିବା
ପବନର ସନ୍‌ସନ୍‌ରେ

ସେ ପ୍ରତିଧ୍ୱନିର ପ୍ରତ୍ୟେକ ଧ୍ୱନିକୁ
ପୃଥିବୀ ବାଣ୍ଟିନେବ
ନିଜର ପ୍ରତ୍ୟେକ କୋଣରେ
ଏବଂ ମୁଁ ତାର ପ୍ରତ୍ୟୁତ୍ତର ଦେବି

ତମେ କିପରି ଅସ୍ୱୀକାର କରିବ
ଆମର ଏପରି ବାର୍ତ୍ତାଳାପକୁ

# ଅଦୃଷ୍ଟ

ତମର ପ୍ରତ୍ୟେକ ଶବ୍ଦ
ଗୋଟିଏ ଗୋଟିଏ ବଜ୍ରପାତ ଥିଲା
ଯାହା ପାଇଁ ମୁଁ ପ୍ରସ୍ତୁତ ନ ଥିଲି

ତମେ ମୋର ପଳାୟନ ପଥକୁ
ନିବଦ୍ଧ କରି ଦେଲ
ସମୟର ଅପବ୍ୟୟରେ

ସମୟର ଖୋପମାନଙ୍କରେ
ଏକାଧିକ ନିର୍ଜନତା ରଖିଦେଇ
ତମର ଅନୁପସ୍ଥିତି ଯେତେବେଳେ
ଅବଶିଷ୍ଟ ମୁହୂର୍ତ୍ତମାନଙ୍କୁ ତୋଳିନେଇଯିବ

ମୁଁ ସହଜ ଭାବେ ନୈରାଶ୍ୟକୁ ସହିନେବି
ତମର ଶେଷ ହସ
ଓ ଚୁପ ଚୁପ କଥାକୁ ମନେପକାଇ

# ପ୍ରେମପତ୍ର

ତମର ପ୍ରେମପତ୍ରମାନ
ଯେତେବେଳେ ମତେ ସେମାନଙ୍କର
ଆନନ୍ଦ ମଝିକୁ ଡାକି ନେବେ
ଏକ ସଂକ୍ଷିପ୍ତ ସ୍ୱପ୍ନରେ

ତମର ଦ୍ୱୈର୍ଥ ଶବ୍ଦମାନଙ୍କରେ
ବିଶ୍ୱାସଘାତକତାର ଅନ୍ତର୍ନିହିତ ତାତ୍ପର୍ଯ୍ୟ
ଆଉ ଥରେ ପଢ଼ିବା ପାଇଁ
ମୋର ଧୈର୍ଯ୍ୟ ନ ଥିବ

ସମ୍ବେଦନଶୀଳ କାଗଜ ଉପରେ
ପ୍ରତିବିମ୍ବିତ ମୋର ପ୍ରଥମ ଦୃଷ୍ଟିପାତ
ସେ ଶବ୍ଦମାନଙ୍କୁ ଜାଳି ଦେବ
ଏକ ଅନ୍ତିମ ନିର୍ଣ୍ଣୟରେ

ମୋର ଆଗ୍ରହୀ ଆଖି
ସେମାନଙ୍କୁ ପଢ଼ିବା ପୂର୍ବରୁ

# ରାଜିନାମା

ତମର ସନ୍ନିଧି ଯେତେବେଳେ
ମୋର ନିରାସକ୍ତିର କପଟତାକୁ
ଅନାବୃତ କରିଦେବ
ତମେ ମୋ ଆଡକୁ
ଅଭିଯୋଗର ଆଖିରେ ଦେଖିବା ପୂର୍ବରୁ
ମୁଁ ସବୁ ଅପରାଧ ସ୍ୱୀକାର କରିନେବି

ଖୋଲା ଝରକା ଦେଇ
ଆମ ଦୁହିଁଙ୍କ ହାତ ଚାଲିଯିବ
ବାହାରେ ଅଚିହ୍ନିତ ଆକାଶକୁ
ଯେଉଁଠାରେ ଆମେ ଆହୁରି ଗୋଟିଏ

ବିସ୍ମିତ ରତୁକୁ ଆଣି ସଜାଇ ଦେବା
ସକାଳର ଖବର କାଗଜ
ଓ ତାଜା ଗୋଲାପ ପାଖରେ

## ମୁଖା

ମୋର ହୃଦୟ ଯେତେବେଳେ
ଅସହନୀୟ ରହସ୍ୟମାନଙ୍କରେ ଭରିଯିବ
ମୋର ଅସଂଖ୍ୟ ମୁଖାର ଭାରରେ
ମୁଁ ଭାଙ୍ଗିପଡ଼ିବି

ମୋର ମୌଳିକ ନିଜତ୍ୱକୁ
ଦେଖିବା ପ୍ରଚେଷ୍ଟାରେ
ମୁହଁରୁ ମୁଖାସବୁ ବାହାର କରି
ମୁଁ ନିଜକୁ ଖୋଲି ରଖିଦେବି
ତମର ମୁହଁରେ ନିହିତ
ଆମର ସଂପର୍କର ଦର୍ପଣ ଆଗରେ

ତମର ମୁହଁର ଅବିଶ୍ୱାସ
ମତେ ଅନ୍ୟ ଏକ ମୁଖା ଭଳି ଭାଙ୍ଗିଦେବ
ମୋର ସମସ୍ତ ନିଜତ୍ୱ ଜଳିଯିବ
ତମ ଆଖିର ଜଳନ୍ତା ବିସ୍ମୟରେ

## ଭୁଲ ରାସ୍ତା

ତମ ପାଖକୁ ଯିବାବେଳେ
ଅନ୍ୟମନସ୍କ ହୋଇ
ମୁଁ ବାରମ୍ବାର ଫେରିଆସେ
ଭୁଲ ରାସ୍ତାରେ ବାଟ ଭୁଲି

ଏପରି ବାଟ ଭୁଲିବା ବେଳେ
କେବେ କେବେ ଅକସ୍ମାତ
ମୋ କାନ୍ଧରେ ହାତ ଦେଇ
ତମେ ମତେ ସତର୍କ କରିଦିଅ

ବାଟ ବଦଳାଇ
ମୁଁ ପୁଣି ଅନ୍ୟ ଏକ
ଭୁଲ ରାସ୍ତାକୁ ଚାଲିଯାଏ

## ସମୁଦ୍ର କୂଳରେ ସଂଜ

ରାସ୍ତା ସବୁ ହଜିଯାନ୍ତି
ଆକାଶର ଭଗ୍ନାବଶେଷରେ

ସମୟ ସଂଚରି ଯାଏ
ଗୋପନୀୟ କଥାର ଲହରୀମାନଙ୍କରେ

ସଂଜବେଳ ସରିଆସେ

ଦୁଃସ୍ୱପ୍ନର ଶେଷ ସଙ୍ଗୀତରେ

ଯେଉଁମାନେ ଅଚିହ୍ନା
ସମସ୍ତେ ଅଚିହ୍ନା ହିଁ ରହିଥାନ୍ତି

ସମୁଦ୍ରର ଅଚଞ୍ଚଳ ଦର୍ପଣ ଭିତରେ
ଇଚ୍ଛାସବୁ ନିଃଶେଷ ହୋଇଯାନ୍ତି
ନିଜ ନିଜର ମୂଲ୍ୟ ନିରୂପଣରେ

# ଦୂରତ୍ୱ

କେବେ କେବେ ମୋର ସମୀପବର୍ତ୍ତୀ
ତମେ ନିଜକୁ ପ୍ରତ୍ୟାହାର କରି
ନିଜ ଭିତରେ ଆଧାରିତ ହୋଇଯିବ
ମୋ ସହିତ ସମସ୍ତ ସମ୍ପର୍କକୁ ଅବଜ୍ଞା କରି

ପୁଣି କେବେ କେବେ ତମର ଅବର୍ତ୍ତମାନତା
ସମୁଦ୍ର ଓ ସମୟକୁ ଲଙ୍ଘନ କରି
ମୋର ଉଦାସ ବେଳାମାନଙ୍କୁ
ମୃଦୁ ସମ୍ଭାଷଣ ଜଣାଇବ

ଆମର ବିବିଧ ସମ୍ପର୍କର
ଅଯୌକ୍ତିକ ଦୂରତ୍ୱ
କ୍ରମିକ ଭାବେ ବିଚ୍ଛେଦ ଓ ମିଳନର
ସଂଜ୍ଞା ନିରୂପଣ କରି

## ପଛକୁ ଚାହିଁବା

ଫେରନ୍ତା ଯୌବନ ଆସି
ଯେତେବେଳେ ମୋ ପାଖରେ
ସାକ୍ଷାତକାର ପାଇଁ ପହଞ୍ଚିବ

ମୁଁ ମୋର ନାଁ ଭୁଲିଯିବି
ମୋର ଦେଶ ନ ଥିବ ସମ୍ବଳ ନଥିବ
ବ୍ୟତୀତ ଓ ଆଗତ ନ ଥିବ
କେବଳ କିଛି ଯନ୍ତ୍ରଣାର ପରିଚୟ ପତ୍ର
ଏବଂ ଆରଣ୍ୟକ ସ୍ମୃତିର ସୁଦୂରତା

ମୁଁ ମୁହଁପୋତି ଠିଆ ହେବି
ବିପଥଗାମୀ ବୟସ ପାଖରେ
ଆଗରେ ଅନ୍ଧଗଳିର ଭାବଶୂନ୍ୟ କାନ୍ଥ
ଏବଂ ଖାଲି ପଛକୁ ଚାହିଁବା

ଯେଉଁଠାରୁ ସବୁ ରାସ୍ତା ଫେରିଯାଉଥିବେ
ବାରମ୍ବାର ବାଧତାମୂଳକ ଭାବେ
ପ୍ରଥମ ଯୌବନର ସାକ୍ଷାତକାରକୁ

## ଅନ୍ଧାର

ମୋ ଆଖିର ସାମାନ୍ୟ ଆଲୁଅ ସବୁ ଯାଇ
ଘର ସାରା ତମକୁ ଖୋଜିବେ

ତମେ ଯେଉଁଠାରେ ସବୁ ଅନ୍ଧାରକୁ
ଏକତ୍ରିତ କରି ବସିଥିବ
ଶେଷ ରଶ୍ମିମାନଙ୍କୁ ଉପେକ୍ଷା କରି

ମୋର ସନ୍ଧାନୀ ଆଲୁଅ ସବୁ
ସଂପୂର୍ଣ୍ଣ ଭାବେ ଲିଭିଯିବା ପୂର୍ବରୁ
ତମକୁ ପୁନର୍ବିଚାରର ସମୟ ନ ଦେଇ
ତମ ସାରା ଦେହ ସଂଚରିଯିବେ
ତମର ଅସାମାନ୍ୟ ଅନ୍ଧାରକୁ ଭ୍ରୂକ୍ଷେପ ନ କରି

## ନିସ୍ତବ୍ଧତା

ପ୍ରତ୍ୟେକ ସଂପର୍କ
ଯେଉଁଠାରେ ଏକ ବାଦ୍ୟବୃନ୍ଦ
ଆମର କଥୋପକଥନ
ସମୟର ସ୍ୱରଲିପିରେ
ଏକ ପାରସ୍ପରିକ ମୌନ

ଆତ୍ମନିରୀକ୍ଷାର ମୁହୂର୍ତ୍ତରେ
ମୁଁ ତେଣୁ ନିସ୍ତବ୍ଧତାକୁ ଚିରିଦେବି
ପ୍ରେମପତ୍ର ଭଳି
ସୂର୍ଯ୍ୟାସ୍ତରୁ ମୁଁ ଖୋଲି ନେବି
ଇନ୍ଦ୍ରଧନୁର ସପ୍ତସ୍ୱର
ସାରାରାତି ତମର ହସକୁ ଖୋଜିବା ପରେ
ମୁଁ କ୍ଷମା କରିବି ତମର ନୀରବତାକୁ

ନିସ୍ତବ୍ଧତାର ଅନେକ ରୂପ
ଅନେକ ନିସ୍ତବ୍ଧତାକୁ ବୁଝି ହୁଏ
ଯେଉଁ ନିସ୍ତବ୍ଧତାକୁ ବୁଝି ହୁଏ ନାହିଁ
ସେ ସବୁ ତମର ସଂଳାପ

# ଗୋଟିଏ ଦିନ

ଆମର ବ୍ୟବଧାନର କାରଣ ଥିଲା
ତମ ଆଖିର ନିରଙ୍କୁଶତା
ଯାହା ଭବିଷ୍ୟତର ଦାବୀକୁ
ସମର୍ପଣ କରିଦେଲା
ବୈଶାଖର ବଞ୍ଚିତ ଜ୍ୱାଳାରେ

ମୋର ହାରିଯିବାର ଅଙ୍କୁର ଥିଲା
ତମର ଅପ୍ରସ୍ତୁତ ଦେହ
ଯାହା ସୂର୍ଯ୍ୟକୁ ପରାସ୍ତ କଲା
ତାର ଐକାନ୍ତିକ ଉତ୍ତରାୟଣରେ

ଆସନ୍ତା କାଲିର ସୀମାନ୍ତ ଉପରେ
ପଳାତକ ସମୟର ଘୋଷଣା
ମୋ ପାଖରୁ ବିଚ୍ଛିନ୍ନ କରିଦେଲା
ମୋର ବ୍ୟକ୍ତିଗତ ଦେବୀକୁ
ଗୋଟିଏ ଦିନର ସଂପୂର୍ଣ୍ଣ ଜୀବନକାଳରେ

# ଜ୍ଞାତି

ଅପରିଚିତମାନେ
ମୋର ଏକ ଅଦ୍ଭୁତ ଜ୍ଞାତି

ମୋ ଆଖି ରାସ୍ତାରେ ଖୋଜିନିଏ
ଅନ୍ୟ ଆଖି ସବୁ
ଯେଉଁଥିରେ ପରିଚୟର ହସ ନାହିଁ

ମୁଁ ସଠିକ ବୁଝି ନିଏ
ଅନୁଚ୍ଚାରିତ ଶବ୍ଦମାନ
ଯାହା ଓଠ ଉପରେ
କମ୍ପିତ ରହି ଯାଇଥାଏ

ତମେ ତା ହେଲେ କିପରି
ମୋ ଆଖିକୁ ଅତିକ୍ରମ କରି
ରାସ୍ତା ପାର ହୋଇଯିବ
ବିଷଣ୍ଣ ଓ ଚୁପ ଚାପ
ଅପରିଚୟର ଅନ୍ତରାଳରେ

# ଯିବାବେଳେ

ବୁଝାମଣାର ନିର୍ବାକ ମୁହୂର୍ତ୍ତରେ
ଫେରିଯାଉଥିବା ଦିନ ସବୁ
ଆମକୁ ପଛରେ ଛାଡ଼ି ଚାଲିଯିବେ
ଆମେ ସ୍ମରଣ କରାଇବା ପୂର୍ବରୁ

ଯେତେବେଳେ ଯିବାକୁ ହେବ
ଆମର ପରସ୍ପରକୁ ପ୍ରତିଜ୍ଞାମାନ
ଆମ ଆଡକୁ ଫେରି ଅନାଇବେ
ଅନୁକମ୍ପାର ସହିତ
ଆମେ କିଛି କହିବା ପୂର୍ବରୁ

## ଦ୍ୱିଧା

ଫିକା ହସର ବାଧ୍ୟବାଧକତା
ଲୋକାରଣ୍ୟକୁ ନିଶ୍ଚିହ୍ନ କରିଦିଏ
ଧୂସର ଅପ୍ରମେୟତାରେ

ସର୍ବସମ୍ମତ କଥାର ଧ୍ୱନିରେ
ଛାଇ ଓହ୍ଲାଇ ଯାଏ ଗଛ ଉପରୁ
ସବୁଜତାରୁ ସବୁ ମର୍ମର ପୋଛି ନେଇ

ହାତର ଔପଚାରିକ ସ୍ପର୍ଶରେ
ପବନ ଉଡ଼ାଇ ନିଏ ଘାସ ଉପରୁ
ଶିଶିର କଣାର ଆନ୍ତରିକତା ସବୁ

ନ ଦେଖୁଥିବା ଦୃଷ୍ଟିପାତରେ
ଦୂରକୁ ବିସ୍ତୃତ ହୋଇଯାଉଥିବା ଆଲୁଅ
ଜାଳିଦିଏ ଦିଗବଳୟର ପ୍ରତ୍ୟାଶାକୁ

ତମର ଆତ୍ମପ୍ରକାଶର ସଂକୋଚ
ଆଉ କିଛି ଅପନ୍ତରା ତିଆରି କରିଯାଏ

ସମୁଦ୍ରରେ ପ୍ରତିବିମ୍ବିତ
ଆକାଶର ପ୍ରାପ୍ତବୟସ୍କତାରେ

## ତମକୁ ଜାଣିବା ପରେ

ମୁଁ ତମକୁ ଜାଣିବା ପରେ
ତମେ କିପରି ଏକା ଭଳି ରହିପାରିବ

ତମେ କିପରି ହଜି ଯାଇପାରିବ
ମୋର ଖୋଜିବା ଆଗରୁ
ଅର୍ବାଚୀନ ଅନ୍ଧାର ଭିତରୁ
ତମେ ପୁଣି ଆସି ଧରା ଦେବ
ଯିବା ଆସିବାର ନିୟମାନୁବର୍ତ୍ତିତାରେ

ମୋର ହାତକୁ ନିବୃତ୍ତ କରିବ
ତମର ମୁହଁର ଶାସ୍ତ୍ରୀୟ ନିଷେଧ
ମୁଁ କିଂକର୍ତ୍ତବ୍ୟବିମୂଢ଼ ରହିଯିବି
ଏକ ଅଚିହ୍ନା କ୍ଷୋଭରେ
କିନ୍ତୁ ପୁଣ୍ୟ କେଉଁପରି
ପାପର ଅର୍ଥ ବୁଝିବା ପୂର୍ବରୁ

ତମେ କିପରି ଚାଲିଯାଇ ପାରିବ
ମୋର ଚାହିଁ ରହିବାକୁ ଉପେକ୍ଷା କରି
ସବୁ ରାସ୍ତା ଶେଷ ହୋଇଯିବ
ମୋ ଆଖିର ଦୂରଦେଶରେ

ତା ପରେ ଏକାନ୍ତ ସତ୍ୟ
ମୋର ଗୋପନୀୟ ସ୍ୱୟଂ ସବୁ
ଏବଂ ତମର ଅନିବାର୍ଯ୍ୟତା

# ଭାଗ୍ୟ

ତମ ମୁହଁରେ
ମୋ ନାଁର ସାମୟିକ ଉଚ୍ଚାରଣରେ
ଅପଶକୁନ ଥିଲା
ଏକତ୍ରିତ ହେଉଥିବା ଝଡ଼
ଉଲ୍‌କାର ବର୍ଷା ଭୂଲୁଣ୍ଠିତ ତାରା

ତମେ ଯେଉଁଭଳି କହିଥିଲ
ତାର କୌଣସି ବିକଳ୍ପ ନାହିଁ
ଯାହା କେବଳ ମନେ ପଡ଼େ
ଥରଥର ପବନର ପ୍ରଥମ ବାଟ ଭୁଲିବା
ବିନ୍ଦୁ ବିନ୍ଦୁ ବର୍ଷାର ପୃଥିବୀକୁ ପ୍ରଶ୍ନ
ମୋର ଭାଗ୍ୟ କେବଳ ତାକୁ ସହି ନେବା

ଉତ୍ତର ଦେବାର ଆଶୟ ନାହିଁ
ମୁଁ ତେଣୁ ତମକୁ ଦେବି
ପ୍ରଥମ ନୈବେଦ୍ୟ ନିର୍ଜନତାର
ତମର ସାମୟିକ ପ୍ରସାରିତ
ହାତ ଉପରେ ରଖିଯିବି
ସମୟର କ୍ଷୋଭ ମିଶା
ମୋର ପ୍ରାଥମିକ ସଂଶୟ ସବୁ

## ଦେହ

କେବଳ ମନ ହିଁ ତିଆରି କଲା
ପ୍ରେମ ବିରହ ଏବଂ ଆଶଂକା
କେବଳ ହୃଦୟ ଦେଇଗଲା
ସେଥିରୁ ଉଦ୍‌ଭବ ଯେତେ ଶୋକ

ଇନ୍ଦ୍ରିୟ ଦେଇଗଲା
ଉପଲବ୍ଧି କରିବାର ଆନନ୍ଦ
ଦେହ ଦେଇଗଲା
ଅଂଗୀକାର କରିବା ଭଳି ଅର୍ଥ

ଆଖିରେ ଧ୍ରୁବତାରାର ସତ୍ୟକୁ ଛୁଆଁଇ
ଦେହ ଦେଇଗଲା ଦିଗଭ୍ରାନ୍ତକୁ ଆଶ୍ୱାସନା
ବାଲି ଉପରେ ଲେଖିଗଲା ସାକ୍ଷାତର ସମୟ
ମନ ଆସି ମୁହୂର୍ତ୍ତକେ ସବୁ ଲିଭାଇ ଦେଲା

ମନ ଭିତରର ସବୁ ସ୍ୱପ୍ନର କ୍ଷଣିକତା
ଦେହ ଭିତରେ ଅବିନଶ୍ୱର ରହିଗଲା

## ବର୍ଣ୍ଣମାଳା

ମୁଁ ମୋର କବିତାକୁ ଅନାଏ
ଶୀତଳ ପଂକ୍ତିର ନିର୍ବାନ୍ଧବ ଦେଶ
ଯେଉଁଠାକୁ ତମେ
ମତେ ନିର୍ବାସିତ କରିଥିଲ

ଯେଉଁଠାରେ ଶବ୍ଦର ଧୂ ଧୂ ବାଲି
ସମୟ ନିର୍ବିଶେଷ ଅତୀତରୁ ଖୋଜୁଥାଏ
ସଂପର୍କର ଉଚ୍ଚାଟ ଶ୍ରାବଣ
ଓ ଘନିଷ୍ଠତାର ସ୍ୱାଭାବିକ ବର୍ଷା

ଶବ୍ଦମାନଙ୍କର ବନ୍ଦୀଶାଳା ଭିତରେ
ରୂପକଙ୍କର କାନ୍ଥମାନ ଘେରାଇ ନିଅନ୍ତି
ଅମୀମାଂସିତ ସ୍ୱପ୍ନମାନଙ୍କୁ
ଏକ ଐତିହାସିକ ସତ୍ୟରେ

ଦ୍ୱୀପାନ୍ତରର କାରାବାସରୁ
ଅର୍ଥର ଅର୍ଗଳୀମାନ ଖୋଲି
ମୁଁ ବାହାରକୁ ପାଦ ଦିଏ
ଆଗରେ କେବଳ ଗୋଟିଏ ରାସ୍ତା
ସେଠାରୁ ମୁଁ ଚାଲିଯାଇ ପାରିବି
ବର୍ଣ୍ଣମାଳା ଦେଇ
ଅତୀତକୁ ଅଗ୍ରସର ହେଉଥିବା
ତମର ଅବର୍ତ୍ତମାନତାକୁ

# ପରିଭାଷା

ତମର ସ୍ମୃତିକୁ ବିଶ୍ୱାସଯୋଗ୍ୟ କରିବା ପାଇଁ
ତମେ ମତେ କୌଣସି ତଥ୍ୟ ଦେଇଗଲ ନାହିଁ

ତମେ ମୋ ପାଇଁ ରହିଗଲ
ଶୂନ୍ୟରେ ବିଲୀନ ଆକୃତି
ନିଃସ୍ୱନରେ ସ୍ୱଚ୍ଛ ଲୟ

ଚେତନାରେ ନିବଦ୍ଧ ନିରାକାର

ତମକୁ ଆଉ କି ଉପସର୍ଗ ଦେଇହେବ
ତମେ ମୋର ଅନ୍ତର୍ନିହିତ ଅଭାବ
ତମ ପାଇଁ କି ପ୍ରକାର ଭାଷା
ତମେ ମୋର ଇନ୍ଦ୍ରିୟାତୀତ ମୌନ

ତମେ ସବୁ ଧ୍ୱନିର ମୂଳତତ୍ତ୍ୱ
ଅଶରୀରୀ ଶବ୍ଦର ଅଖଣ୍ଡ ଆଲୋକ
କେବଳ ଦୂରତ୍ୱ ତମକୁ ସଂଜ୍ଞା ଦେଇ ପାରିବ
ତମର ସ୍ମୃତିକୁ ସାର୍ଥକ କରିବା ପାଇଁ
କେବଳ ଅନ୍ଧାର ତମକୁ ବର୍ଣ୍ଣନା କରି ପାରିବ
ତମକୁ ସାକାର କରିପାରିବ ନୀରବତା

## ସଂଘର୍ଷ

ଦୁଇଟି ନିସ୍ତବ୍ଧତା ଯେତେବେଳେ
ପରସ୍ପରକୁ ଭେଟିବେ
ଏକ ଅପାର୍ଥିବ ସମ୍ଭାଷଣ ଜନ୍ମ ନେବ

ଛାଇ ଛାଇକୁ ଛୁଇଁବାର
ବିସ୍ଫୋରଣ ସୃଷ୍ଟି କରିବ
ଏକ ଅଲୌକିକ ଜ୍ୟୋତି

ପ୍ରତିବିମ୍ବ ପ୍ରତିବିମ୍ବକୁ ଦେଖିବ

ଦର୍ପଣର ପାରଦର୍ଶିତାକୁ ଭାଙ୍ଗି
ଅଦ୍ଭୁତ ଦୈହିକ ଆସ୍ଥାରେ

ସ୍ୱପ୍ନରେ ଯେତେବେଳେ ସ୍ୱପ୍ନ ଧକ୍କା ଖାଇବ
ଅପୂର୍ବ ଘନିଷ୍ଠତାରେ
ତାର ପରିମାଣ ସବୁ ଅତି ସତ୍ୟ ଥିବ
ଅତି ସତ୍ୟ ଅତି ସାଂଘାତିକ
ଏବଂ ଅତ୍ୟନ୍ତ ଭୟାବହ

## ସ୍ମୃତି

ମୁଁ ଯେତେ ଯାହା ଦେଖେ
ସବୁ ଏକ ଅପୂର୍ବ ସ୍ମୃତିର କାଚ ଦେଇ
ଯାହା ସାର୍ବଜନିକ ଦୃଶ୍ୟକୁ
ଅଦ୍ଭୁତ ଭାବେ ବର୍ଣ୍ଣାଢ଼୍ୟ କରିଥାଏ
ସମୟର ବୁଦ୍‌ବୁଦ ଉପରେ
ଇନ୍ଦ୍ରଧନୁ ରଙ୍ଗର ଛିଟା ଦେଇ

ମୁଁ ଯାହା ସବୁ ଭାବି ଥାଏ
କାହାରି ନିଜସ୍ୱ ସ୍ଥିର ରୂପ ନାହିଁ
ଅତୀତର ସଂପର୍କିତ କଥାରେ
ସବୁ ମୋର ଚେତନାରେ ତରଙ୍ଗାୟିତ

ତମ ଆଖିର ଅତଳତାରେ

ମୁଁ ନିଜକୁ ଯେତେ ଦେଖିଥାଏ
ତା ମୋର ଅଭିଜ୍ଞତାରେ ଜଡ଼ିତ
ଏକ ରୂପାନ୍ତରିତ ଆତ୍ମା

ତମର ଆଖିର ସମ୍ମୋହନ
ଯେତେବେଳେ ବିସ୍ତାରିତ ହୋଇଯାଏ
ମୁଁ ତମର ମୁହଁକୁ
ପଥରର ମୂର୍ତ୍ତି ହୋଇଯିବାର ଦେଖେ
ଅମରତ୍ୱର ପ୍ରଥମ ସ୍ପର୍ଶରେ
ମୁଁ ସ୍ମୃତିକୁ ପ୍ରତ୍ୟାଖ୍ୟାନ କରିଦିଏ

# କାଗଜର ଦେବୀ

ତମ ସହିତ ପରିଚୟ
ପ୍ରେମ କବିତାର ପଂକ୍ତି ଦେଇ
ତମକୁ ଘନିଷ୍ଠ ଭାବରେ ଜାଣିବା ସହଜ ନୁହେଁ
ତମ ଉପରୁ ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣର
ସାଜସଜ୍ଜାକୁ ଖୋଲି ନେବା ଅସମ୍ଭବ
ତମକୁ ବିବସ୍ତ୍ର ଦେଖିବା ସ୍ୱପ୍ନ ମାତ୍ର

ତମର ମୁହଁ ଉପରୁ ପଣତ ଖୋଲିବା ବେଳେ
ଅଥବା ଛାତି ଉପରୁ ଶାଢ଼ୀ
ତମେ ପୁଣି ତମ ଚାରିପାଖେ ବେଢ଼ାଇ ନିଅ
ଅତି ଅନ୍ତରଂଗ ଭାବରେ
ପ୍ରତୀକ ଓ ସଂକେତର ଓଢ଼ଣା
ରୂପକ ଓ ବିମ୍ବର ପୋଷାକ

ତମର କଥାର ସାଜସଜ୍ଜା

ଏବଂ ତମର ସଂଳାପର ଅସରନ୍ତି ଶାଢ଼ୀ ଭିତରୁ
ହେ କାଗଜର ଦେବୀ
ତମକୁ ମୌଳିକ ରୂପରେ
ଆବିଷ୍କାର କରିବା ସମ୍ଭବ ନୁହେଁ

## ଚାଲିଯାଅ

ମୋ ଆଖିରୁ ତମ ପର୍ଯ୍ୟନ୍ତ
ସୀମାହୀନ ଭାବରେ ବିସ୍ତୃତ
ଏକ ଶୂନଶାନ ମରୁପ୍ରାନ୍ତର
ଯାହା ଚିତ୍କାର କରି କହୁଥାଏ
ମୋ ପାଖରୁ ଚାଲିଯାଅ

ମୁଁ ଯେତେବେଳେ ପୁନର୍ବାର ତମକୁ ଦେଖିବି
ତମର ବହୁ ବିଳମ୍ବିତ ଆଖିରେ
ମେଘର ଘୂର୍ଣ୍ଣାୟମାନ ଲହରୀ ନ ଥିବ
ଅରଣ୍ୟର ସବୁଜ ବିସ୍ଫୋରଣ ନଥିବ
ତମ ଆଖିରେ ଥିବ କେବଳ ଧୂଳି ଝଡ଼

ଧୂଳି ଝଡ଼ରେ ବର୍ଷା ନ ଥାଏ
ଧୂଳି ଝଡ଼ରେ କେବଳ ଥାଏ
ଏକ ଶୂନଶାନ ମରୁପ୍ରାନ୍ତର
ଯାହା ଚିତ୍କାର କରି କହୁଥାଏ
ମୋ ପାଖରୁ ଚାଲିଯାଅ

# ଜ୍ଞାନଯୋଗ

ତମର ଦୁଃସାଧ୍ୟ ଅଧ୍ୟୟନ ପରେ
ମୋର ଅଧ୍ୟବସାୟର ଫଳ ସ୍ୱରୂପ
ମୁଁ ଠିକ୍ ଭାବରେ ବୁଝିପାରିବି
ତମର ପ୍ରତ୍ୟେକ କଥାର ଆଳଂକାରିକତା
ତମର ଉଚ୍ଚାରଣର ବିଶ୍ୱସନୀୟତା

ତମର ଆଖିର କ୍ଷୀଣ ଆନ୍ଦୋଳନ
ଅଂଗୁଳିର ହାଲୁକା କଂପନ
ଓ ମସ୍ତକର ସାମାନ୍ୟ ଅବନମନରେ
ନିହିତ ତାତ୍ପର୍ଯ୍ୟ ଓ ପ୍ରତିଶ୍ରୁତି

ମୁଁ ସଠିକ ଗଣନା କରି ପାରିବି
ତମର ଭାବନାର ରାଶିଚକ୍ର
ତମର ସମ୍ବେଦନାର ଉତ୍ତାପ
ତମର ହଁ ଓ ନା'ର ସାଦୃଶ୍ୟ

ପୁଣି ଯେତେବେଳେ
ମୋର ଅତ୍ୟନ୍ତ ଶ୍ରମଲବ୍ଧ ଜ୍ଞାନ ନେଇ
ମୁଁ ତମର ସମ୍ମୁଖୀନ ହେବି
ତମେ ତମର ଭାଷା ଭାବ ଓ ଭଂଗୀ
ପରିବର୍ତ୍ତନ କରିଦେବ
ତମେ ବଦଳାଇ ନେବ ତମର
ଶବ୍ଦର ଚାତୁରୀ ଉଚ୍ଚାରଣର ବ୍ୟଞ୍ଜନା
ଏବଂ ମୁଦ୍ରାମାନଙ୍କର ବ୍ୟାଖ୍ୟା

ତମର ଅମାୟିକ ରୂପାନ୍ତରମାନଙ୍କରେ
ମୋତେ ପୁଣି ବାରମ୍ବାର
ମୋର ପ୍ରଥମ ଅଜ୍ଞତାକୁ ନିର୍ବାସିତ କରି

## ସାମ୍ରାଜ୍ଞୀ

ତମର ଆଖିର କଳନାରେ
ଯେଉଁ ହ୍ରଦ ସମୁଦ୍ର ଜଳପ୍ରପାତ
ଓ ଦିଗ୍‌ବଳୟ ସମେତ ଆକାଶ
ଶତମୁଖ ହୋଇ ଉଠିଥିଲେ
ତମର ଏକମାତ୍ର ଦୃଷ୍ଟିପାତରେ
ତମେ ସେମାନଙ୍କୁ ନିସ୍ତବ୍ଧ କରିଦେଲ

ତମର ମାଧ୍ୟମରେ ଯେଉଁମାନେ
ଜୀବନର ଉଦାରତାକୁ
ସମ୍ବରଣ କରି ନେଲେ
ତମର ପ୍ରେମର ସାମାନ୍ୟ ଭଗ୍ନାଂଶ ଦେଇ
ତମେ ସେମାନଙ୍କୁ ଫେରାଇ ଦେଲ
ମଣିଷର ମୃତ୍ୟୁର ନୈତିକତାକୁ

# ସଂଧ୍ୟାବେଳା

ଡେଣା ଉପରୁ ଛାଇ ଓହ୍ଲାଇ ଯାଏ
ଫୁଲ ପାଖୁଡ଼ା ଉପରୁ ଖସି ପଡ଼େ
ଖରାର ବିନ୍ଦୁ ବିନ୍ଦୁ ଶ୍ରଦ୍ଧା
ଋତୁର ବିସ୍ମୟମାନ ଘୁରି ଘୁରି
ସ୍ଥିର ରହିଯାନ୍ତି

କାନ୍ଥକୁ ଜାବୁଡ଼ି ଧରି
ମାଳତୀ ଲତା ଆକାଶକୁ ମୁହଁ ଉଠାଏ
ଶୂନ୍ୟରୁ ଛିଟିକି ପଡୁଥିବା ସ୍ଫୁଲିଙ୍ଗ
କ୍ଷଣକରେ ଲିଭିଯାଏ
ଅନ୍ଧାରର ଛୋଟ ଛୋଟ ହ୍ରଦ ମଝିରେ

ପର୍ବତ ମଝିରେ ପ୍ରତିଧ୍ୱନି ବନ୍ଦ ରହିଯାଏ
ମହୁମାଛିର ଗୁଂଜନ ଜଡ଼ିଯାଏ
ପତ୍ରର ଅଶାନ୍ତ ନିଶ୍ୱାସରେ
ଜ୍ୟୋତିରିଂଗଣର ବାର୍ତ୍ତା ଆସେ
ସବିରାମ ଆଲୋକର ସଂକେତ ଲିପିରେ

ଉଡ଼ନ୍ତା ମୁହୂର୍ତ୍ତର ଚଞ୍ଚଳତା ବୁଣି ଦେଇ
ଛାଇର ସାନ୍ଦ୍ରତା ଜଣାଇଯାଏ ସମୟ
ପ୍ରଜାପତି ଉଡ଼ି ଆସି ଓହ୍ଲାଏ
ସଂଜରେ ମଉଳି ଯାଉଥିବା ଫୁଲ ଉପରେ

## ବିଦାୟ ମାଗିବା ବେଳେ

ବିଦାୟ ମାଗିବା ବେଳେ
ଆଉ କିଛି ରହିଯାଏ ନାହିଁ
ସମୁଦ୍ର ମଝିରେ ଅଧୋଗାମୀ ଲୋକର
ବୁଡ଼ିଯିବା ବେଳେ
ଚିତ୍କାରର କୌଣସି ଇଚ୍ଛା ନ ଥାଏ

ବିଦାୟ ମାଗିବା ଲୋକ ଭାବେ
ପ୍ରେମରୁ କେତେ ଅଲଗା ଥିଲା ଭଲ ପାଇବା
ବଂଚିବାରୁ କେତେ ଅଲଗା ଥିଲା ଜୀବନ
ଗାଇବାର କେତେ ଦୂରରେ ସଂଗୀତ

ବୁଡ଼ିଯିବା ଲୋକ ଭାବେ
ଏବଂ ନିଜକୁ ସମର୍ପଣ କରି ଦିଏ
ଲହରୀରୁ ପୃଥକ ସମୁଦ୍ରକୁ ଖୋଜୁ ଖୋଜୁ
ନିଜକୁ ଅଲଗା କରିଦିଏ ବିଦାୟ ମାଗିବାରୁ
ବୁଡ଼ି ଯାଉଥିବା ଲୋକ

## ଅନୁଷଙ୍ଗ

ତମେ ଏପରି ଆଚ୍ଛନ୍ନ ସ୍ୱର
ଯାହା ମୋ କଣ୍ଠରୁ ନିସୃତ ହେଲା ନାହିଁ
କିନ୍ତୁ ଯାହା ପ୍ରତିଧ୍ୱନିର ଗୁଂଜରଣ ଭଳି
ମୋ ଚାରିପାଖେ ବ୍ୟାପ୍ତ ରହିଲା

ତମେ ଏପରି ଅଖଣ୍ଡ ଜ୍ୟୋତି
ଯାହା ମତେ ଆଲୋକିତ କଲା ନାହିଁ
କିନ୍ତୁ ମୋର ଅନ୍ଧାର ସବୁକୁ
ଆହୁରି ସାନ୍ଦ୍ର କରିଦେଲା

ତମେ ଏପରି ତୀବ୍ର ଅନୁଭବ
ଯାହା ମୋର ନିଜସ୍ୱ ହେଲା ନାହିଁ
କିନ୍ତୁ ଯାହା ମୋର ସମଗ୍ର ଜୀବନର
ପ୍ରତ୍ୟେକ ଘଟଣାକୁ ଘନିଷ୍ଠ କରିଗଲା

ତମେ ଏପରି ଏକ ଯନ୍ତ୍ରଣା
ଯାହା କ୍ରମେ କ୍ରମେ
ମୋର ଶୋକରେ ପରିଣତ ହୋଇଗଲା

## ସ୍ତୁତି

ତମର କିପରି ବର୍ଣ୍ଣନା କରି ହେବ
ତମର କେଶରାଶି ଯେଉଁଠାରେ ସମାପ୍ତ ହୁଏ
ସେଇଠାରୁ ଆକାଶର ଆରମ୍ଭ

ମୁଁ ତମ ଆଖିରେ
ସୂର୍ଯ୍ୟର କଠୋର ଆଲୋକକୁ
କ୍ରମଶଃ ନିଶ୍ଚିହ୍ନ ହୋଇ ଯିବାର ଦେଖିଛି
ତମ ଛାତି ଉପରେ
ଝଡ଼ ଚୁପ ହୋଇ ଛାଇ ଯିବା
ଏବଂ ତମର ଅଂଗ ପ୍ରତ୍ୟଙ୍ଗରେ

ସମୁଦ୍ରର ଉତ୍ତାଳ ଲହରୀ
ନିସ୍ତବ୍ଧ ହୋଇଯିବା ଦେଖିଛି

ସୃଷ୍ଟିର ଆରମ୍ଭ ଓ ଶେଷ
ଅନ୍ତରୀକ୍ଷ ପରେ ଆହୁରି ଅନ୍ତରୀକ୍ଷ
ଦିଗବଳୟ ଛାୟାପଥ ମହାଶୂନ୍ୟ
ମେଘ ଇନ୍ଦ୍ରଧନୁ ଝଡ଼ ବଜ୍ର ଉଲ୍‌କାପାତ
ଏବଂ ସବୁ କିଛିର ବିଲୟ

ତମ ପାଖରେ ପହଞ୍ଚିବା ପାଇଁ
ମୋର ମହାଯାତ୍ରାମାନ
ଅଶୌଚ ପୁଣ୍ୟର ମଧ୍ୟାହ୍ନରୁ
ପବିତ୍ର ପାପର ମଧରାତ୍ରି ପର୍ଯ୍ୟନ୍ତ
ସତ୍ୟ ଓ ଛଳନାର ଆଶ୍ରୟ ଦେଇ
ଦେବତ୍ୱ ଓ ଦୁଷ୍କୃତିର ମାଧ୍ୟମରେ
ମୁଁ ତମର ଭିତର ଦେଇ
ମୃତ୍ୟୁକୁ ଛୁଇଁ ପୁଣି ଫେରି ଆସିଛି

ତମର କିପରି ବର୍ଣ୍ଣନା କରି ହେବ
ଆକାଶ ଯେଉଁଠାରେ ସମାପ୍ତ ହୁଏ
ସେଇଠାରୁ ତମର କେଶରାଶିର ଆରମ୍ଭ

# ଉପଲବ୍ଧି

ଛାୟା ଓ ପ୍ରତିଧ୍ୱନିର ସାମ୍ରାଜ୍ୟରେ
ସତ୍ୟର ଉପଲବ୍ଧି ଅସମ୍ଭବ

ପୂର୍ଣ୍ଣତା ଖୋଜିବା ବୃଥା
ଦୋଦୁଲ୍ୟମାନ ସମୟର ବକ୍ରତାରେ

ବାସ୍ତବିକତା ଧରା ଦିଏ ନାହିଁ
ଭଙ୍ଗା ଦର୍ପଣର ସୀମାନ୍ତରେ

ଆମେ ଆଉ କେତେ ଜାଣି ପାରିବା
ଜଣେ ଆଉ ଜଣକୁ
ଘାସ ଫୁଲ ଯଦି ଜାଣେ ନାହିଁ
ବାଟ ଭୁଲା ପକ୍ଷୀ କଣ ଭାବୁଥାଏ
ହତାଶ ପଥଚାରୀ
ନିଜର ପ୍ରତ୍ୟାବର୍ତ୍ତନରେ ବୁଝେ ନାହିଁ
ଇନ୍ଦ୍ରଧନୁରେ କେଉଁ
ଅଚିହ୍ନା ବ୍ୟଥା ଚମକୁଥାଏ

# କବିମାନେ

ଖରାର ବୃତ୍ତ ମଝିରେ ଠିଆ ହୋଇ
ସେମାନେ ପ୍ରେରଣା ଖୋଜୁଥାନ୍ତି
ସାମୟିକ ଧୂଳି ଝଡ଼ରୁ
ଯଦି ଓ ବହିଯାଉଥିବା ପବନ
ଅପରିଚିତ ଶବ୍ଦମାନ କହୁଥାଏ

ସମୟର ଧିକ୍କାର ଉଡାଇ ନିଏ
ଶୁଖିଲା ପତ୍ର ଓ ବାଲି
ଦିଗ ସବୁ ପରସ୍ପରକୁ ଅନାଇ ରହିଥାନ୍ତି
ଶବ୍ଦହୀନ ମୁଦ୍ରାରେ

ପବନ ଆଣି କଲମ ମୁନରେ
ଛୁଆଇଁ ଯାଏ କିଛି ସୂର୍ଯ୍ୟାଲୋକ
ଯାହା ଏକ ପ୍ରଶାନ୍ତ ମୁହୂର୍ତ୍ତରେ
ସ୍ଥିରୀକୃତ ରହିଯାଏ

କବିମାନେ ଛାଇ ଉପରକୁ ଓହ୍ଲାଇ ଆସନ୍ତି
ଏବଂ ପବନ ସହିତ ତାଳ ରଖି
ଆଉ କିଛି ନିର୍ଜନତା ଲେଖିଯାନ୍ତି

## ସଂପର୍କ

ସ୍ମରଣକୁ ପ୍ରଶ୍ନ କରିବା ବେଳେ
ଆମେ କଣ ଆଉ ପୂର୍ବ ଭଳି ରହିପାରିବା

ଆମର ଆଗକୁ ଯାଉଥିବା ରାସ୍ତାରେ
ଫେରି ଆସୁଥିବା ଝଡ଼
କିଛି କ୍ଷଣ ଅଟକି ଗଲେ
ଆମେ କଣ ଅତିକ୍ରମ କରିଯାଇ ପାରିବା
ପ୍ରଥମ ସାକ୍ଷାତକାରର ରକ୍ତିମ ଦିଗନ୍ତକୁ

ଆଉ କଣ ଫେରି ଯାଇ ହେବ
ପ୍ରତିଜ୍ଞାର ବିଦାୟୀ ରାସ୍ତାରୁ
ଦ୍ୱିଧାଗ୍ରସ୍ତ ପ୍ରଥମ ସୀମାନ୍ତକୁ
ଯାହାକୁ ଆମେ ଛାଡ଼ି ଆସିଥିଲେ
ଏକ ସଂଗେ ନ କଟାଇଥିବା
ଦିନମାନଙ୍କରେ

ସବୁ ସାକ୍ଷାତକାର ପରିଚୟ ନୁହେଁ
ସବୁ ବିଦାୟ ବିଚ୍ଛେଦ ନୁହେଁ
ତା ହେଲେ କାହିଁକି
ପ୍ରତିଧ୍ୱନିର ପ୍ରତ୍ୟାବର୍ତ୍ତନରେ
ଆମେ ବୁଝିବାକୁ ଚେଷ୍ଟା କରିବା
ସ୍ମରଣର କିଛି ସାମାନ୍ୟ ବ୍ୟତିକ୍ରମ
ଯେଉଁଥିରେ ଆମେ ପ୍ରତାରିତ ହୋଇଥିଲେ

## ଅବତରଣ

ଶୂନ୍ୟରୁ ନିଃସୃତ ଗୋଟିଏ ଶବ୍ଦ
ଅନ୍ତରୀକ୍ଷରୁ ଖସି ପଡ଼ିଲା
ଆକାଶକୁ ବିଦ୍ଧ କରି
ଗିରି ଶୃଙ୍ଗ ଉପରେ ଚମକି
ପୃଥିବୀ ପୃଷ୍ଠକୁ ଓହ୍ଲାଇଲା

ମେଘମାନଙ୍କର ସ୍ନେହରେ ସିକ୍ତ
ପବନର ଦୋଳାରେ
ଗଛମାନଙ୍କର ଅସଂଖ୍ୟ ହାତକୁ ଛୁଇଁ

ଝରଣାରେ ବିଧୌତ ହୋଇ
ଶିଶିର ବିନ୍ଦୁ ଉପରେ ପାଦ ରଖି
ସେ ମୋ ପାଖକୁ ଆସିଲା
କଣ୍ଟକିତ ରାସ୍ତା ଦେଇ
ଅରଣ୍ୟରେ ବାଟ ଭୁଲି
ପଥର ଉପରେ କ୍ଷତ ବିକ୍ଷତ

ପୁଣି ମୋ ଭିତରେ ନିଶ୍ଚିହ୍ନ ହୋଇଗଲା
ମୁଁ ତାକୁ ଉଚ୍ଚାରଣ କରିବା ପୂର୍ବରୁ

## ବର୍ଷା

ଅସହାୟ ଅପରାହ୍ନର ଛାଇ ତଳେ
ଖରା ଆତ୍ମ ସମର୍ପଣ କରିଦିଏ
ଆକାଶ ପାଖରେ
ଅପରିଣତ ଦିନ ବିଲୀନ ହୋଇଯାଏ
ମେଘର ପ୍ରାପ୍ତବୟସ୍କତାରେ
ମୋର ଏକାଗ୍ରତାକୁ ଉପେକ୍ଷା କରି

ଦୁଃଖ ଜର୍ଜରିତ ସ୍ୱପ୍ନଟିଏ
ଭିଜି ଭିଜି ଆସି ଛିଡ଼ା ହୁଏ
ବନ୍ଦ କବାଟ ପାଖରେ

ପବନର ଧକ୍କା ଆସି
ମତେ ହଠାତ୍ ସଚେତନ କରିଯାଏ
ଅସମୟ ଅନ୍ଧାରର
ଫେରି ଆସୁଥିବା କୁତ୍ସିତ ପ୍ରଶ୍ନମାନଙ୍କ ପ୍ରତି

ଭ୍ରାନ୍ତି ଦୂର କରିବାର ମୁହୂର୍ତ୍ତମାନଙ୍କରେ
ମୁଁ କେବଳ ଚାହିଁ ରହିଥାଏ
ବିନ୍ଦୁ ବିନ୍ଦୁ ବର୍ଷାଙ୍କର ପରିଧି ଆଡକୁ
ଛୋଟ ଛୋଟ ଜିଜ୍ଞାସା ନେଇ

ଆଶା ଛାଡ଼ି ଚାଲିଯାଏ ପ୍ରତ୍ୟୟକୁ

# ଅପେକ୍ଷା

ମୁଁ ତମକୁ ସେ ପର୍ଯ୍ୟନ୍ତ ଅପେକ୍ଷା କରିବି
ଯାହା ପରେ ମୋର ଅପେକ୍ଷା
ତମର ଯିବା ଆସିବାର ନିର୍ବିଶେଷ ଥିବ

ତମେ ଚାଲିଯିବ ଅନ୍ତରୀକ୍ଷର ପାର୍ଶ୍ୱକୁ
ସମୟକୁ ଅତିକ୍ରାନ୍ତ କରି
ରହସ୍ୟର ନରମ ଗାଲିଚା ଉପରେ
ନୈସର୍ଗିକ ସଂଗୀତ ଉପରେ ପାଦ ରଖି
ସମ୍ମୋହନର ଦୋଳାରେ
ବିସ୍ମୟର ମେଘରେ ଭାସି ଭାସି
ସଂପୂର୍ଣ୍ଣ ବ୍ୟଗ୍ରତା ବିହୀନ
ଅପେକ୍ଷାରେ ରହିଥିବା ଲୋକ ପାଇଁ
କିଛି ବି କୌତୂହଳ ନ ରଖି

ତମେ ଯେତେବେଳେ ଆସି ପହଞ୍ଚିବ

ମୋର ଅପେକ୍ଷାର ତଟସ୍ଥ ଦେଶରେ
ଦୂରତ୍ୱକୁ ହାତରେ ସାଉଁଟି
ମୃତ୍ୟୁର କ୍ଷମା ପତ୍ର ନେଇ
ମୁଁ ନିଜକୁ ସଂଯତ କରି
ଆଖିର ଉଦ୍‌ବେଗକୁ ସଜାଡ଼ି ନେବି

ସମୟର ସ୍ପର୍ଦ୍ଧାକୁ ଅନାଇ
ମୁଁ ଅପେକ୍ଷା କରି ରହିବି
ତମର ବାରମ୍ବାର ଫେରି ଆସିବା
ଓ ପୁଣି ଚାଲିଯିବାକୁ

## ସାକ୍ଷୀ

ଆମେମାନେ ସମୟର ଦାୟାଦ
ଆମକୁ ଚିହ୍ନି ହେବ
କେବଳ ଉତ୍ତରାଧିକାର ଦେଇ

ଆମେ ବର୍ତ୍ତମାନର ଅପ୍ରକୃତ ଚେହେରା
ଆମେ ଏପରି ଅତୀତ
ଯାହା ସଂଘଟିତ ହେବାକୁ ଯାଉଛି
ଆମେ ଏପରି ଭବିଷ୍ୟତ
ଯାହା ଆମର ଅନୁଭୂତ

ଆମେମାନେ ନିର୍ବାକ ସାକ୍ଷୀ ରହିଥିବା
ଆମ ଭିତର ଦେଇ
ସମୟର ପ୍ରଶ୍ନମାନ ଚାଲିଯିବେ

## ଋତୁ

ତମେ ମୋ ପାଖକୁ
ଯେଉଁ ପରୀକ୍ଷାମୂଳକ
ପ୍ରେମପତ୍ର ଲେଖିଥିଲ
ତାର ଶବ୍ଦମାନଙ୍କର ବିଷଣ୍ଣ ହସ
ଶୀତର କୁହୁଡ଼ି ଭଳି
ବସନ୍ତକୁ ଦୂରରେ ରଖିଲା

ତା ପରେ କେବଳ
ନିର୍ଲିପ୍ତ ସମୟର ଧୂସର ରାଜତ୍ୱ
ଶୀତ ନାହିଁ ବସନ୍ତ ନାହିଁ
କେବଳ ନିର୍ବୈକ୍ତିକ
ଶବ୍ଦ ସମଷ୍ଟିରେ ନିର୍ମିତ
କୃତ୍ରିମ ପ୍ରହରମାନ

ବୟସର ସୀମାରେଖା ଉପରେ
ମୋର ଦିନ ସବୁ ଚିରିଗଲେ
ଛୋଟ ଛୋଟ ମୁହୂର୍ତ୍ତ ହୋଇ
କାଗଜ ଖଣ୍ଡ ଭଳି ଉଡ଼ିଗଲେ
ଅବର୍ତ୍ତମାନର ଋତୁକୁ

## ସହର

ସକାଳ ନିଜକୁ ସ୍ୱୟଂ ଉଦ୍‌ଘାଟିତ କରିବ
ପୃଷ୍ଠ ପରେ ପୃଷ୍ଠ ଖୋଲିଯିବ ଅନ୍ଧାର

ସାଇରେନର ରଙ୍ଗ ଛାଇ ଯିବ
ଚିମନି ଧୂଆଁର ଧୂସର ଆକାଶରେ

କାର୍ପେଟ ଭଳି ଖୋଲିଯିବ ରାସ୍ତା
ବିଜୁଳି ତାରସବୁ ରାସ୍ତା ବଦଳାଇ
ଖୋଲା ଫାଟକ ପାଖକୁ ଲମ୍ବିଯିବେ

ଟୁପ ଟାପ କିଛି ବିନ୍ଦୁ ବର୍ଷା
ପାଦଶବ୍ଦକୁ ଅନୁଧାବନ କରି
ପହଞ୍ଚିବେ ପୋର୍ଟିକୋ ପାଖରେ

ଲିଫ୍‌ଟର କବାଟ ଖୋଲିଯିବ
ଓ ପୁଣି ବନ୍ଦ ହୋଇଯିବ
ମୋର ଆବିଷ୍କାରକୁ ଆତ୍ମସାତ କରି

ଫୁଟପାଥ ଉପରେ ଠିଆ ହୋଇ
ମୁଁ ହରାଇ ଦେବି ମୋର
ଆଖିର ସୁଦୂର ଇଚ୍ଛାମାନ
ଅନିବାର୍ଯ୍ୟ ସୌଜନ୍ୟମାନ ଦେଇ
ସହରର ଲୋକାରଣ୍ୟ ଅପନ୍ତରାରେ

## ବିକଳ୍ପ

ମୁଁ ଯାହା ଦେଖୁଛି
ସେ ତମର ମୁହଁ ମୁଁ ଯାହାକୁ ଚିହ୍ନେ

ନା ତମ ମୁହଁ ଉପରେ ଭାସି ଯାଉଥିବା
ଅନେକ ଇଚ୍ଛାର ଆକୃତି

ମୁଁ ଯାହା ଶୁଣେ ତମର କହିଥିବା କଥା
ନା ପ୍ରତ୍ୟେକ ଶବ୍ଦରେ ନିହିତ
ବିଭିନ୍ନ ସମୟର ଦ୍ୱୈର୍ଥ ଧ୍ୱନି

ତମ ବିଷୟରେ ଯାହା ସବୁ ମନେ ଅଛି
ସେ ସବୁ ଯାହା ଘଟିଥିଲା ଅଥବା
ମୋର ସମସ୍ତ ଅନୁଭବକୁ
ଏକତ୍ରିତ କରିଥିବା
ଏକ ସହୃଦୟ ରୂପକଥା ମାତ୍ର

ଏକଦା ତମକୁ ଭଲପାଇଥିବା
କଣ ବାସ୍ତବିକ ତମକୁ ପାଇଥିବା ଥିଲା
ଯାହା ତମର ସଂପୂର୍ଣ୍ଣ ସମର୍ପଣ
ଏବଂ ମୋର ବିନାସର୍ତ୍ତ ସ୍ୱୀକାର ଥିଲା

ଅଥବା ମୋର ଚତୁଃସୀମା ଭିତରେ
ତା ଥିଲା ତମର ଭିତରକୁ ବାହାରକୁ
ଅନାୟାସ ଯିବା ଓ ଆସିବା
ଏପ୍ରିଲ ମୋ ଉପରେ ଅଜାଡ଼ି ଦେଇଥିବା
ଋତୁମାନଙ୍କ ହାର୍ଦ୍ଦିକ ଆଶୀର୍ବାଦ
ଏବଂ ଇନ୍ଦ୍ରଧନୁମାନଙ୍କ ସହିତ
ମୋର ସାମୟିକ ଚୁକ୍ତି ସବୁ

## ଅସ୍ୱୀକାର

ଆମେ ଆଖିରେ ଆଖିର ସଂଳାପକୁ
ସ୍ୱୀକାର କଲେ ନାହିଁ

ହାତରେ ହାତର ବୁଝାମଣାକୁ
ଆମେ ପ୍ରତ୍ୟାଖ୍ୟାନ କରି ଦେଲେ
ଆମେ ନେଇ ପାରିଲେ ନାହିଁ
ପରସ୍ପରକୁ ସମର୍ପଣ କରିବାକୁ ଚାହୁଁଥିବା
ଗଭୀରତମ ଆସ୍ଥା ଓ ବିଶ୍ୱାସକୁ

ଓଠରୁ ବାହାରି ଆସୁଥିବା ସଦିଚ୍ଛା
ଆଗକୁ ବଢ଼ି ଆସୁଥିବା ହାତ
ଆଶ୍ରୟ ଖୋଜୁଥିବା ଦେହ
ଆମେ ନେଇ ପାରିଲେ ନାହିଁ
ଅଭ୍ରାନ୍ତ ଓଠରେ ଆଶ୍ୱସ୍ତ ହାତ ମୁଠାରେ
ଦେହର ଉଚ୍ଛ୍ୱସିତ ଆଗ୍ରହରେ

ଆମେ ଅତୀତକୁ ସ୍ୱୀକାର କଲେ ନାହିଁ
କିନ୍ତୁ ବର୍ତ୍ତମାନକୁ ବଳାତ୍କାର କରି ହାୟ
ଭବିଷ୍ୟତକୁ ପଛରେ ଛାଡ଼ି ଆସିଲେ

# ଅନ୍ତତଃ

ଏତିକି ଅନ୍ତତଃ କଥା କହ
ନିସ୍ତବ୍ଧତାକୁ ଉପଲବ୍ଧି କରି ହେବ

କିଛି ମାତ୍ର ସନ୍ନିଧି ଯାହା
ଦୂରତ୍ୱକୁ ସ୍ୱୀକାର କରି ପାରିବ

ସାମାନ୍ୟ ଅନୁଭୂତି
ନିସ୍ପୃହିର ସମ୍ମୁଖୀନ ହେବା ପାଇଁ

କ୍ଷଣକର ସାକ୍ଷାତ ଯେଉଁଥିରେ
ବିଚ୍ଛେଦକୁ ମାନି ନେଇ ହେବ

ଏତିକି ଅପେକ୍ଷା ଦେଇଯାଅ ଯାହା
ତମେ ନ ଆସିବା ପର୍ଯ୍ୟନ୍ତ
ତମେ ଆସି ସ୍ୱୀକାର ନ କରିବା ପର୍ଯ୍ୟନ୍ତ

# ନିଜେ ନିଜକୁ

ମୋର ଆତ୍ମଜୀବନୀର ପୃଷ୍ଠା ଦେଇ
ମୁଁ ନିଜେ ନିଜ ପାଖକୁ ଫେରି ଆସିବି
ଗୋଟିଏ ପାଦରୁ ଆଉ ଗୋଟିଏ ପାଦ
ଶବାଧାରରୁ ଗର୍ଭାଶୟ
ପାଦ ଚିହ୍ନରେ ନୂଆ ରାସ୍ତା ତିଆରି କରି

ମୋର ନିଜସ୍ୱ ଭୟକୁ ଅନୁସନ୍ଧାନ କରି
ମୁଁ ପୁଣି ନିଜକୁ ଆବିଷ୍କାର କରିବି
ପ୍ରାଗୈତିହାସିକ ଅନ୍ଧକାରର ନିଷ୍କପଟତାରେ
ମୁଁ ନିଜର ଅଭିଷେକ କରିବି
ନିଜ ବିରୁଦ୍ଧରେ ନିଜେ
କଠୋର ଯୁଦ୍ଧରେ ଜୟଲାଭ ପରେ
ଆତ୍ମସନ୍ତୋଷର ମଳିନ ସମାରୋହରେ

ବିରୋଧୀ ପ୍ରତିବଚନର ବିପନ୍ନ ଲଗ୍ନରେ
ନିଜର ସୃଷ୍ଟିରେ ନିଜେ ସ୍ୱୟଂ ସଂପୂର୍ଣ୍ଣ

ମୋର ନକାରାତ୍ମକ ବ୍ୟକ୍ତିତ୍ୱ ଦେଇ
ସମସ୍ତ ଦାୟିତ୍ୱ ଓ ଦାବୀକୁ
ପୂର୍ବପୁରୁଷ ଓ ଉତ୍ତରାଧିକାରୀଙ୍କ ହାତରେ
କ୍ରମିକ ସମର୍ପଣ କରି ଦେବା ପରେ

ମୁଁ ପୁଣି ମୋର ନିଜର
ପ୍ରତ୍ୟାବର୍ତ୍ତନ ଅପେକ୍ଷାରେ ରହିଥିବି
ଗୋଟିଏ ପାଦରୁ ଆଉ ଗୋଟିଏ ପାଦ

## ଅଭ୍ୟର୍ଥନା

ତମର ଓଠର ରକ୍ତିମ ହସ ବ୍ୟତୀତ
ତମେ କୌଣସି ପୁଷ୍ପ ଗୁଚ୍ଛ ଆଣି ନଥିଲ

ଫେରନ୍ତା ଛାଇମାନେ
ଅପ୍ରତ୍ୟାଶିତ ସମ୍ଭାଷଣ ଜଣାଇବା ପୂର୍ବରୁ
ତାରାମାନଙ୍କର ଅପର ପାର୍ଶ୍ୱରେ
ଏକାଗ୍ରତା ସବୁ ବିଧ୍ୱସ୍ତ ହୋଇଯିବ
ସ୍ୱୟଂସିଦ୍ଧ ଅନୁଶୋଚନାମାନ
ଅବ୍ୟାହତ ରହିଯିବେ
ତମର ଆଖିର ଶୀର୍ଷ ଦେଶରେ

ଅଭ୍ୟର୍ଥନା ପାଇଁ ଉଦ୍ଦିଷ୍ଟ ସୂର୍ଯ୍ୟମୁଖୀ
ନବଜାତକ ପାଇଁ ସମର୍ପିତ
ସୂର୍ଯ୍ୟୋଦୟକୁ ନ ଦେଖି
ତମ ଆଡକୁ ଅନାଇବ

ପାଖୁଡ଼ା ସବୁ ଝଡ଼ି ପଡ଼ିବା ପର୍ଯ୍ୟନ୍ତ

ସମସ୍ତେ ଅପେକ୍ଷା କରିଥିବେ
ମୃତ୍ୟୁକୁ ଅତିକ୍ରମ କରି ଫେରିବା ପରେ
ତମେ କେତେବେଳେ ଆଖି ଖୋଲିବ
ତମର ହସର ଆକସ୍ମିକତାରେ

# ତମର ଫେରିବା

ତମର ଫେରନ୍ତା ସ୍ମୃତି
ଏକାକୀ ମନ୍ତ୍ରଧ୍ୱନି ଭଳି
ମତେ ଭେଟିବାକୁ ଆସିବ
ନିଶାର୍ଦ୍ଧର ହଠାତ ମୁହୂର୍ତ୍ତରେ

ତମେ କିନ୍ତୁ ରାସ୍ତା ଭାଙ୍ଗି ଚାଲିଯିବ
ତମେ ଅତିକ୍ରମ କରିଯିବ
ଅନୁଚ୍ଚାରିତ ଶବ୍ଦମାନଙ୍କର ଭଙ୍ଗା ସେତୁମାନ
ବିଷାଦମାନଙ୍କୁ ଜୂଡ଼ାରେ ସଜାଇ
ଜନ୍ମଦିନର ଫୁଲମାଳ ସବୁ ହାତରେ ଧରି

ମୁଁ ଅପେକ୍ଷାରେ ରହିଥିବି ତମେ ଆସିବ
ଅକାଳର ଆକାଶରେ ଅଚାନକ ମେଘ ହୋଇ
ଅନ୍ଧାରର ଅନ୍ନଛତ୍ର ମାନଙ୍କରେ
ହସର ମୁଠା ମୁଠା ଖରା ବାଣ୍ଟିଦେଇ

ତମେ କିନ୍ତୁ ଫେରିବ

ଧ୍ୱନି ତତ୍ତ୍ୱରେ ଧକ୍‌କା ଖାଇ
ଅମିତ୍ରାକ୍ଷର ଛନ୍ଦରେ ଝୁଣ୍ଟି
ତମେ ଫେରିବ
ପ୍ରେମ କବିତାର ସମୀକ୍ଷା ଦେଇ
ସାହିତ୍ୟ ଉତ୍ସବର ସମାରୋହରେ

ରତୁର ଉଚ୍ଛାଟକୁ
ଧ୍ୱନିରେ ପର୍ଯ୍ୟବସିତ କରି
ମୁଁ ଆଉ କିଛି ଶବ୍ଦ ବିଞ୍ଚି ଦେବି
ମୁଁ ଫେରି ଆସିବି ମୋର
ହୃଦୟର ସରଳ ରାସ୍ତା ସବୁକୁ
ଅପେକ୍ଷା ଶେଷରେ ଯାହା
ଗୋଲକଧନ୍ଦା ହୋଇଯାଇଥିବ

## ରାସ୍ତା

ତମେ ମଧ୍ୟରାତ୍ରିର ସନସନ ହାୱା
ଯାହା ଏକାକୀ ପଥିକର ରାସ୍ତାକୁ
ଭୟସଙ୍କୁଳ କରିଥାଏ

ତମେ ଅନ୍ଧାରରେ ହାତର ହାତକୁ ଛୁଇଁବା
ଯାହା ମାଇଲଖୁଣ୍ଟର ଦୀର୍ଘଶ୍ୱାସ ଭଳି
ବ୍ୟବଧାନ ସବୁକୁ ଆଚ୍ଛାଦିତ କରିଦିଏ
ଅନ୍ତରୀକ୍ଷର ଶୂନ୍ୟ ଆତଙ୍କରେ

ତମେ ଅସ୍ଥିର ଧ୍ରୁବତାରା

ଯାହାର ବ୍ୟସ୍ତ ଅଙ୍ଗୁଳିର ନିର୍ଦ୍ଦେଶ
ମରୁଭୂମିର ସାମୟିକ ଲହରୀକୁ ଲିଭାଇ ଦିଏ
ବାଲିଚରର ଆକ୍ରୋଶରେ

ମୋର ନିରୁଦ୍ଦିଷ୍ଟ ଯାତ୍ରାର ମୁହୂର୍ତ୍ତମାନଙ୍କରେ
ପାଦର ଚଞ୍ଚଳତାକୁ
ଚେତନାରେ ସନ୍ନିବିଷ୍ଟ କରୁଥିବା ତମେ
ଆହୁରି ମଧ୍ୟରାତ୍ରି ଆହୁରି ଏକାକୀତ୍ୱ
ଏବଂ ତମେ ଆହୁରି ରାସ୍ତା

ଆହୁରି ଅନେକ ରାସ୍ତା
ଆହୁରି ଅନେକ ରାସ୍ତା

# ଅପରିଚୟ

କିଛି କ୍ଷଣ ପରେ
ଆମେ ଯେତେବେଳେ ଓହ୍ଲାଇବା
ଆକାଶର ଅମୂର୍ତ୍ତ ଚିତ୍ର ଭିତରୁ
ସମର୍ଥ ଉପତ୍ୟକାର
ନିର୍ଲିପ୍ତ ସମତଳତା ଉପରକୁ

ପ୍ରଥମ ସାକ୍ଷାତର ଅପରିପୂର୍ଣ୍ଣତାରେ
ଆମେ ପୁଣି
ଅପରିଚିତ ହୋଇ ସାରିଥିବା

ତା ପରେ ଆମେ

ପରସ୍ପରକୁ ଆଉ କଣ କହି ପାରିବା
ଆଉ କେଉଁ ଅଲୌକିକ
ଘଟଣାର ପ୍ରତ୍ୟାଶା ନେଇ
ସ୍ମୃତିର ପରିସଂଖ୍ୟାନର
ଆଉ କେଉଁ ବିସ୍ମିତ କ୍ରମରେ

## ବିସ୍ମରଣ

ତମେ ଏଥରକ ଫେରି ଆସ
ସ୍ମୃତିର ସଂସର୍ଗରୁ ମୁକ୍ତ ହୋଇ

ସମୟର ଅବିଭାଜ୍ୟ ଅଂଶମାନ
ପରସ୍ପରତାରୁ ସ୍ୱତନ୍ତ୍ର ହୋଇଗଲେ
ପରିଧିର ପ୍ରତ୍ୟେକ ବିନ୍ଦୁ ଫେରିଯିବେ
ନିର୍ଦ୍ଧାରିତ କେନ୍ଦ୍ର ଆଡକୁ

ପରବର୍ତ୍ତୀ ରାତ୍ରିମାନଙ୍କରେ
ଦୋଦୁଲ୍ୟମାନ ଜୀବନ ମୃତ୍ୟୁର
ଐତିହାସିକ ବିକଟ କ୍ଷଣମାନ
ଆଲୋକିତ ହୋଇଯିବେ

ତମେ ଫେରିଆସ ଯେଉଁଠାରେ
ଅତଳସ୍ପର୍ଶ ନିର୍ଜନତାର ଶୀର୍ଷ ଦେଶରେ
ଏକ ଅଦ୍ଭୁତ ସ୍ଥିରତା
ଏବଂ ତୁଷାରାବୃତ୍ତ ସୂର୍ଯ୍ୟର
ଶୀତଳ ବିସ୍ଫୋରଣ

ଯାହା ମୃତ୍ୟୁ ନୁହେଁ ମୋକ୍ଷ ନୁହେଁ
କେବଳ ଏକ ନିର୍ଦ୍ଧାରିତ ଉପସଂହାର

## ଅନାବରଣ

ତମର ନୈତିକତାର ନିଷ୍କାମ ସନ୍ଧ୍ୟାରେ
ଆକାଶରେ ଯେଉଁ ବିଶେଷ
ରକ୍ତିମ ରଙ୍ଗର ଯନ୍ତ୍ରଣା ଛାଇଗଲା
ତମ ଦେହରେ କଣ ସେ ଯନ୍ତ୍ରଣାର
କିଛି ବ୍ୟଥା ଜରି ଯାଇ ନଥିଲା
ସୂର୍ଯ୍ୟର ସେଇ ଶେଷ ଅନୁଶୋଚନାରେ

ତା ପରେ ତମର ବନ୍ଦ ଆଖି
ଏବଂ ବିଶ୍ୱସ୍ତ ମୁହଁ ଉପରେ
ଏକ ଅଲୌକିକ ଛାଇ ଭାସିଗଲା
ତମର ଆତ୍ମ ସଂଯମ ସତ୍ତ୍ୱେ
ଆଖି କୋଣରେ ସାମାନ୍ୟ କମ୍ପନ ଦେଇ
ଭ୍ରୂଲତାରେ ସାମାନ୍ୟ ଲହରୀ
ଓଠରେ ସାମାନ୍ୟ ସଂକୋଚନ ଆଣି

କିଏ ଏତେବେଳେ ତମକୁ
ଅନାବୃତ କରିଦେଲା
ତମର ବ୍ୟକ୍ତିତ୍ୱକୁ ଅସ୍ତବ୍ୟସ୍ତ କରି ଦେଇ

କାହାର ଐକାନ୍ତିକ ସ୍ମରଣ

କିଏ ଅତିଥି କେଉଁ ଅତୀତ
କାହାର ସୂର୍ଯ୍ୟାସ୍ତ କିପରି ମେଘ
କେଉଁ ତୃଷାର୍ତ୍ତ ଆକାଶ କିଭଳି ଝଡ଼
କେଉଁ ଫୁଲ ସଂଜର ଉପତ୍ୟକା

## ଶୀତ ରାତି

ଅଭିଶପ୍ତ ଦିନ ବିଳମ୍ବରେ ଆସି
ଶୀଘ୍ର ଚାଲିଯାଏ
ବିଭିନ୍ନ ପ୍ରକାରର ସଂଯୋଗ ଦେଇ

କୁହୁଡ଼ି ଭିତର ଦେଇ
ବୁଢ଼ିଆଣୀ ଜାଲ ଭଳି ଆକାଶ
ଅମୂର୍ତ୍ତ ଓ ନିଶ୍ଚୁପ ପାହାଡ଼ ଉପରେ
ତାରାଙ୍କର ବିନ୍ଦୁ ବିନ୍ଦୁ ବର୍ଷା
ଗଛ ସବୁ ଅଭିସନ୍ଧିହୀନ
ଦୁଃସ୍ୱପ୍ନ ଦେଇ ଉପରୁ ଝରିପଡେ
ଟୋପା ଟୋପା ଦୁଶ୍ଚିନ୍ତା

ରାତି ସଂଜ୍ଞାହୀନ ଅବସ୍ଥାରେ ରହିଥାଏ
ଅଧାରାତିର ବତୀ ସବୁ
ଛୋଟ ଛୋଟ ଆଲୁଅର ବୃତ୍ତ ହୋଇଯାନ୍ତି

ଦୁର୍ଘଟଣାମାନ ସଙ୍କୁଚିତ ହୋଇଯାନ୍ତି
ଛୋଟ ଛୋଟ ନିବିଡ଼ ସତ୍ୟରେ

## ସ୍ୱୟଂସିଦ୍ଧା

ତମେ ଏକାଧାରରେ
ଆରମ୍ଭ ଏବଂ ଶେଷ ଏବଂ
ଦୁହିଁଙ୍କୁ ଯୋଗ କରୁଥିବା ରାସ୍ତା

ତମେ ତମର ହସରେ ମୁଖରିତ ଗଳି
ଏବଂ ତମ ଆଲୁଅରେ
ବିଚ୍ଛୁରିତ ହେଉଥିବା ଝରକା ସମେତ
ତମେ ସଂପୂର୍ଣ୍ଣ ସହର

କାଳ ଓ ପାତ୍ର ବହିର୍ଭୂତ
ତମେ ଏପରି ସୂର୍ଯ୍ୟାଲୋକର ଦେଶ
ଯେଉଁଠାକୁ ନିରାପଦ ଯାଇ ହେବ
କେବଳ ଅନ୍ଧାର ରାତିରେ

## ଜହ୍ନ ରାତି

ହାତ ହାତକୁ ଛୁଇଁଲା
ପ୍ରୟୋଗାତ୍ମକ ଭାବରେ
ଆଖିରେ ଆଖି ମିଶିଲା
ପରୀକ୍ଷାମୂଳକ ଭାବରେ

ଯେତେବେଳେ ଚନ୍ଦ୍ର
ସାମାନ୍ୟ ବିଚଳିତ ହେଲା

ଅନ୍ତରୀକ୍ଷର ସଠିକ ମାନଚିତ୍ର
ଓ ନକ୍ଷତ୍ର ମଣ୍ଡଳର
ସମନ୍ୱିତ ନକ୍‌ଶାରେ
ତମେ ଫେରାଇ ନେଲ
ସମୟକୁ ସମର୍ପିତ
ସମସ୍ତ ଆତ୍ମବିଶ୍ୱାସକୁ

ନିମେଷକରେ ସମସ୍ତେ ଫେରିଗଲେ
ଯେ ଯାହାର କକ୍ଷକୁ
ଦୂରାଶ୍ରିତ ତମେ ଓ ମୁଁ
ଏବଂ ଚନ୍ଦ୍ରର ନିର୍ମମ ଉପହାସ

## ଭୁଲି ଯିବା

ରାସ୍ତା କେବେ ବାଟ ଭୁଲେ ନାହିଁ
ବାଟ ଭୁଲେ କେବଳ ପଥିକ

ସୁଦୂର ସୂର୍ଯ୍ୟୋଦୟକୁ ଯିବାବେଳେ
ପାଦ ରହିଯାଏ ସମତଳ ସନ୍ଧ୍ୟାର
ନିର୍ଲିପ୍ତ ସମ୍ଭାବନାରେ
ସମୟର ଉପର ମହଲାରେ
ଶରଣାର୍ଥୀ ବୟସ ଛଟପଟ ହୁଏ

ସମୟ ଓ ଦୂରତ୍ୱ ଭୁଲାଏ ନାହିଁ
ଭୁଲିଯାଏ ମନ

# ସମୁଦ୍ର

ସମୁଦ୍ର ଏକ
ଅନନ୍ତ ଅନୁଭୂତିର ଆଲେଖ୍ୟ
ଯେଉଁଠାରେ ପ୍ରତିଫଳିତ ହୋଇଯାଏ
ମୋର ଚିନ୍ତାର ଐକାନ୍ତିକ ମୂଲ୍ୟ ସବୁ

ପ୍ରତ୍ୟେକ ଶାମୁକାରେ
ଉତ୍ତୀର୍ଣ୍ଣ ହୁଏ ତାର ସ୍ୱର
ପ୍ରତ୍ୟେକ ଶଂଖରେ
ପ୍ରତିଶ୍ରୁତ ତାର ନିନାଦ

ମୋର ଅନୁଭୂତି ବହିର୍ଭୂତ
ଅଭିଜ୍ଞତା ସବୁ
ଲହରୀମାନଙ୍କରେ ନିଃଶେଷ ହୋଇଗଲେ
ସମୟକୁ ସମର୍ପିତ ସମସ୍ତ ଆତ୍ମବିଶ୍ୱାସକୁ
ମୁଁ ପ୍ରତ୍ୟାନ୍ୱିତ କରିନିଏ

ଲକ୍ଷ୍ୟଚ୍ୟୁତ ଦୁଃଖର ମୁହାଣରେ
ସମୟ ଫେରାଇ ଦିଏ
ଗୋଟିଏ ଗୋଟିଏ କରି
ଅଭିଜ୍ଞତାର ପ୍ରତିବିମ୍ବ ସବୁ

## ଯୁଦ୍ଧ ବିରତି

ହେ ମହାକାଳର ଦେବୀ
ମୋର ପ୍ରାତ୍ୟହିକ ସୁଖଦୁଃଖର
ନିଭୃତ ରଣାଙ୍ଗନରେ
ତମେ ଅସ୍ତ୍ର ଖୋଜି ନେଇପାର
ଶତ୍ରୁ ନୁହେଁ

ମୋର ପ୍ରତ୍ୟେକ ଆନନ୍ଦ
ଏକ ନ୍ୟୂନତର ମୃତ୍ୟୁ
ଏବଂ ପ୍ରତ୍ୟେକ ଶୋକ
ଏକ ଅଖଣ୍ଡ ଆନନ୍ଦର ଶେଷ ପର୍ଯ୍ୟାୟ

ମୁଁ ଆତ୍ମସମର୍ପଣ କରିଦେବି
ତମର ଯୁଦ୍ଧ ଘୋଷଣା ପୂର୍ବରୁ
ତମେ ଯେତେବେଳେ
ସେ ଆନନ୍ଦ ଓ ଶୋକକୁ
ନିକ୍ଷିପ୍ତ କରିଦେବ
ସମୟର ଅସ୍ୱୀକୃତ ଦୂରତ୍ୱକୁ

## ପାନ୍ଥଶାଳା

ଋତୁମାନେ ସମୟ ଉପରେ
ସେମାନଙ୍କ ନକ୍‌ଶା ରଖିଯାନ୍ତି
ପୃଥିବୀ ବିଭକ୍ତ ହୋଇଯାଏ
ଅଗଣିତ କୋଠରୀମାନଙ୍କରେ

ଆମେ ସବୁ ରାସ୍ତାରୁ ଓହ୍ଲାଇ
ପଶିଯାଉ ଅଚିହ୍ନା ସ୍ମୃତିମାନଙ୍କର

ବ୍ୟୂହ ଭିତରକୁ

ପ୍ରଥମ ଅତୀତ ସବୁ
ସଂପର୍କର ନିତ୍ୟବର୍ତ୍ତମାନ ହୋଇଯାନ୍ତି
ସବୁ ବିଲୀନ ହୋଇଯାଏ
ନିର୍ମମ ପରିଚୟର ବିଚିତ୍ର କ୍ରମରେ

ଅଚେତନ ଅବସ୍ଥା ଦେଇ ସରିଯାଏ
ଯୁକ୍ତିତର୍କର ଦୀର୍ଘ ରାତି
ଆଗକୁ ରାସ୍ତା ଦେଖାଇ ଦିଏ
ଇତସ୍ତତଃ ସ୍ମୃତିର ମାଇଲ ଖୁଣ୍ଟ

## ସୂର୍ଯ୍ୟୋଦୟ

ଏକ ନିରୁଦ୍ଧାର ରାତି ଶେଷରେ
ମୁଁ ଆକାଶକୁ ଅନାଏ
ଭସ୍ମୀଭୂତ ତାରକାର
ଏକ ଶୀତଳ ଉପତ୍ୟକା
ଏବଂ ନିର୍ବୈକ୍ତିକ ସଂପର୍କର ଅପନ୍ତରା

ଶୋଭାଯାତ୍ରା ଭିତରେ ସୂର୍ଯ୍ୟୋଦୟ ହୁଏ
ଛାଇ ଲମ୍ବିଯାଏ
ଜେଲଖାନାର ଫାଟକ ଡେଇଁ

ଯମଜ ବ୍ୟକ୍ତିତ୍ୱର
ନିଭୃତତମ ସ୍ଥାନମାନଙ୍କରେ
ଜମାଟ ହୋଇଯାଏ

ପାରସ୍ପରିକ ସଂପର୍କର ନିରାଲମ୍ବ ମୁକ୍ତି

ମୁଁ ବୁଝାମଣା କରି ନିଏ
ନୀରନ୍ଧ୍ର ନିର୍ଜନତା ସହ
ଯାବଜ୍ଜୀବନ ବନ୍ଦୀ ଯେଉଁ ଭଳି
ଚୁକ୍ତି କରି ନେଇଥାଏ
ଜେଲଖାନା କାନ୍ଥ ଭିତରେ ପଡ଼ିଥିବା
ନିଜର ଛାଇ ସହିତ

ଏବଂ ଶେଷରେ ମୋର
ସାମର୍ଥ୍ୟକୁ ହଜାଇ ଦିଏ
ଘେରି ଆସୁଥିବା ସକାଳର ସମାରୋହରେ

## ଆପେକ୍ଷିକ

ପରସ୍ପରତାରୁ ମୁକ୍ତି ନାହିଁ
ଆମର ଏପରି ବାରମ୍ବାର ଦେଖା ହେଉଥିବା
ଭେଟିବାର ମ୍ଲାନ ସମାରୋହ
ଓ ବିଦାୟର ନିବିଡ଼ତାରେ

ସଂପର୍କମାନ
ସମାନଭାବେ ଅକ୍ଷୁଣ୍ଣ ରହିଥିବେ
ଏକାଠି ହେବା
ଅଥବା ଅଲଗା ରହିଥିବାରେ

ସଂଶୟର ଶେଷ ପର୍ଯ୍ୟାୟରେ
ଯେତେବେଳେ ଉଦ୍‌ବେଗର ଛାଇ ଆସି

ଲିଭାଇଯିବ ଅବିସ୍ମୃତ ଦ୍ୱିଧାମାନଙ୍କୁ

ମୋର ଅପେକ୍ଷାର ମୂଳମନ୍ତ୍ର ହେବ
ଚାଲି ଯାଇଥିବା ଲୋକମାନଙ୍କର
ବିଭିନ୍ନ ଜନ୍ମର ଉଦାସୀନ ଜ୍ଞାନ
ଏବଂ ମୋର ଅଖଣ୍ଡ ଆସ୍ଥାର ପ୍ରମାଣ ହେବ
ମୋର ଆତ୍ମ ଜୈବନିକ ଉପାଖ୍ୟାନ

ଏବଂ ମୋର ଅଭ୍ୟସ୍ତ ଧୈର୍ଯ୍ୟ

# ମୁହୂର୍ତ୍ତ

ସମୟକୁ ରଙ୍ଗ ଦେଇଯାଏ
ଜ୍ଞାନଲବ୍ଧ ଅଭିଜ୍ଞତା ନୁହେଁ
ପ୍ରସ୍ତୁତି ବିହୀନ ହଠାତ ପ୍ରବୃତ୍ତି

ଜୀବନକୁ ଅର୍ଥରେ ସମୃଦ୍ଧ କରିଦିଏ
ଅନନ୍ତ କାଳର ଜିଜ୍ଞାସା ନୁହେଁ
ଛୋଟ ଛୋଟ ବର୍ତ୍ତମାନର ଉପଲବ୍ଧି

ମୁଁ ନିତ୍ୟବର୍ତ୍ତମାନତାରୁ ଫେରାଇ ନିଏ
ମୋର ସମୟସୀମିତ ଇଚ୍ଛାମାନଙ୍କୁ
ଜୀବନର ଶୂନ୍ୟ ସ୍ଥାନମାନଙ୍କରେ
ମୁଁ ପୁନର୍ବାର ସଜାଇ ଦିଏ
ଛୋଟ ଛୋଟ ଘଟଣା ମାନଙ୍କୁ
ଏକ ସହଜ ତାତ୍କାଳିକତାରେ

# ଦେବୀ

ତମକୁ ଦେଖିବା ବେଳେ
ମୋର ଭୟ ହୁଏ
ମୁଁ ହୁଏ ତ ଆସ୍ତିକ ହୋଇଯିବି

# ବର୍ଷାଦିନର ସନ୍ଧ୍ୟା

ଅପରାହ୍ନର ବର୍ଷା ଶେଷରେ
ସବୁ ସଂଭ୍ରମ ରହିଯାଏ କିଛିକ୍ଷଣ
ସମୟକୁ ଅନୁଶୀଳନ କରି

ଆକାଶର ଅନଭ୍ୟସ୍ତ ହାତ ଆସି
ବାଧ୍ୟ କରେ ଇନ୍ଦ୍ରଧନୁର କୋମଳ ବକ୍ରତାକୁ
ସୂର୍ଯ୍ୟର ମୁମୂର୍ଷୁ ଦେହକୁ
ଗ୍ରାସ କରିନିଏ ଗୋଧୂଳିର ସ୍ପର୍ଦ୍ଧା

ପୁଣି ମେଘ ଘେରିଯାଏ
ଅନ୍ଧାରର ଅନ୍ୟୋନ୍ୟ ନିବିଡତାକୁ
ବର୍ଷାର ଅଗଣିତ ହାତ ଓହ୍ଲାଇ ଆସି
ଆମକୁ ନିକ୍ଷିପ୍ତ କରି ଦିଅନ୍ତି
ନ କାଟି ଥିବା ସମୟର

ଭୟାନକତା ଆଡକୁ

## ମାଧ୍ୟମ

ମୋର ଆତ୍ମନିରୀକ୍ଷଣର
ଧାର୍ମିକ କ୍ଷଣମାନଙ୍କରେ
ତମେ ବାଟ ବନ୍ଦ କରି ଠିଆ ହୋଇଥିବ
ଦେବତାମାନଙ୍କର ଫେରିବା ରାସ୍ତାରେ

ତମ ଆଖିରେ ପ୍ରାଚୀନ ଶ୍ଳୋକର ଆବୃତ୍ତି
ତମ ନିଃଶ୍ୱାସରେ ଅଗୁରୁ ଓ ଚନ୍ଦନ
ତମ ବାତାବରଣରେ
ଆରତି ଘଣ୍ଟା ବାଜିବା ପୂର୍ବର
ଥମ ଥମ ଅବସ୍ଥା
ତମ ମୁହଁରେ ଧର୍ମଶାସ୍ତ୍ରର ସମସ୍ତ କ୍ରୋଧ

ମୁଁ ମନ୍ଦିରର ପାର୍ଶ୍ୱ ଛାୟାରେ
ଆସନବଦ୍ଧ ରହିଥିବି
ମୋର ପ୍ରାଚୀନ ଭକ୍ତିରେ
ତମ ଦେହ ଦେଇ
ଦେବତାମାନେ ଚାଲିଯିବେ
ନିଜ ନିଜର ଅମରତ୍ୱ ଆଡକୁ

## ଆବେଶମାନ

ତମର ଫେରି ଆସିବାକୁ ଅପେକ୍ଷା କରି
ଆବେଶମାନ ଛାତି ଭିତରୁ ବାହାରି ଆସନ୍ତି
ତମକୁ ସ୍ୱାଗତ କରିବା ପାଇଁ

ଅପେକ୍ଷାର ବ୍ୟର୍ଥ ଅବ୍ୟାହତି ପରେ
ଦିନ ପୁଣି ବାଟ ଭୁଲି ଯେତେବେଳେ
ସ୍ମୃତିର ସୀମାନ୍ତକୁ ଚାଲିଯାଏ

ଆବେଶମାନ ଓଠ ପର୍ଯ୍ୟନ୍ତ ଆସି
ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣକୁ ଛୁଇଁବା ପୂର୍ବରୁ
ଦୀର୍ଘଶ୍ୱାସରେ ପରିଣତ ହୋଇଯାନ୍ତି

## ମନ

ଆକାଶ ସବୁବେଳେ ସମାନ ନଥାଏ
ଆମେ ଯେଉଁ ଆକାଶକୁ ଦେଖିଥିଲେ
ସେ ଆକାଶ ଆଉ ନାହିଁ
ମେଘ ଓ ନକ୍ଷତ୍ରମାନ
ନିଜକୁ ସଜାଇ ନେଲେଣି
ଅନ୍ୟ ଏକ ବିନ୍ୟାସରେ

ଭାସମାନ ଚତୁର୍ଥ ବିସ୍ତାରରେ

ଆଖି ଓ ତାରାଙ୍କର କୌଣସି ଘନିଷ୍ଠତା ନାହିଁ
ଜାହାଜ ଯାଇ ଲାଗିଯାଏ ଅଜ୍ଞାତ ଦ୍ୱୀପରେ
ଅସରନ୍ତି ଚିନ୍ତା ସବୁ ଆମକୁ ନ ଛୁଇଁ
କାଗଜ ଉପର ଦେଇ ଓହ୍ଲାଇ ଯାନ୍ତି

ଉଲ୍ଲସିତ ବୟସର ହସରେ
ମନ କେବଳ ଏକ ସ୍ମାରକ
ସ୍ମୃତିସ୍ତମ୍ଭ ପାଖରେ ସେ ରଖିଯାଏ
ବର୍ଷର ନିର୍ଦ୍ଦିଷ୍ଟ ଦିନମାନଙ୍କରେ
ଗୋଟିଏ ଗୋଟିଏ ସଜଫୁଲର ସ୍ତବକ

# ନିର୍ଜନତା

ଅକ୍ଷରମାଳାର ସମସ୍ତ
ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣ
ନିଃଶେଷ ହୋଇଯିବା ପରେ
ଶବ୍ଦ ଦେଇଗଲା
ଯେତେ ମିଛ ଆଶ୍ୱାସନା
ଏବଂ ଯେତେ ମନୋମାଳିନ୍ୟ
ସଂଜ୍ଞାମାନଙ୍କ ବାହାରେ
ଅକ୍ଷର ସବୁ ମଉଳିଯିବା ପର୍ଯ୍ୟନ୍ତ

ତା ପରେ ଶବ୍ଦ ଆଉ ସେଠାରେ
ଦୈବୀ ଶକ୍ତି ସଂପନ୍ନ ନୁହେଁ
ଯେଉଁଠାରେ ନିର୍ଜନତା
ରାଜତ୍ୱ ବିସ୍ତାର କରିଯାଏ

ଏବଂ ନିସ୍ତବ୍‌ଧତାର ଏକ
ସ୍ୱତନ୍ତ୍ର ପରିଭାଷା ଅଛି

## ପିଲା ଦିନର ରାସ୍ତା

ଭୁଲି ଯାଇଥିବା ରାସ୍ତା ସବୁ
ମାନଚିତ୍ର ଟାଣି ଦେଇଯିବେ
ମନେ ପଡୁଥିବା ସହରର ଅସ୍ପଷ୍ଟ ଦେହରେ

ରାସ୍ତାର ଆକ୍ରୋଶ ମନେ ପକାଇ ଦେବ
ବାଧ୍ୟବାଧକତା ନ ଥିବା ସଂପର୍କମାନ

ବନ୍ଦ ଓ ନିଷିଦ୍ଧ ଅଂଚଳମାନଙ୍କୁ
ରାସ୍ତାର ଆଲୋକିତ ହାତ ଲମ୍ବିଯିବ
ଝରକାର ଅନ୍ତରାଳରେ
ଭୁଲି ଯାଇଥିବା ମୁହଁକୁ ଛୁଇଁ

ରାସ୍ତା ଆଗକୁ ବଢ଼ିଯିବ
ସଂଗୀତର ଶେଷ ଲହରୀ ଭଳି
ନାଁ ସବୁ ନ୍ୟସ୍ତ ହୋଇଯିବେ
ମୌଳିକ ଧ୍ୱନିମାନଙ୍କରେ

ଗଲାକାଲି ପ୍ରତିଶ୍ରୁତି ଦେଇ ଯିବ
ଆଜିର ଶୋକକୁ
ସାରା ସହରକୁ ଆବୃତ୍ତ କରିଦେବ
ପିଲାଦିନର ରାସ୍ତା

# ସବୁ ବୁଝି ହୁଏ

ସବୁ ବୁଝି ହୁଏ
ଯାହା କିଛି ଲେଖା ଥାଏ
ଆଦ୍ୟ ମଧ୍ୟ ଓ ଅନ୍ତରହିତ
ଆତ୍ମନିରୀକ୍ଷାର ସଜଳ ଶୂନ୍ୟତାରେ

ସବୁ ମୃଦୁ ଭର୍ତ୍ସନା
.ସମସ୍ତ ପରିଚ୍ଛନ୍ନ ଶୋକ
ସବୁ ନିରୁଦ୍‌ବିଗ୍ନ କ୍ରୋଧ
ସମସ୍ତ ନିର୍ବୋଧ ଭୟ

ସବୁ ବୁଝି ହୁଏ
କେବେ ପୂର୍ବରୁ ଓ କେବେ ପରେ
ଖରାରେ ଜଳି ଯାଇଥିବା ସମ୍ବତ୍ସର
ମେଘରେ ଆଚ୍ଛାଦିତ ଦେବତ୍ୱ
କୁହୁଡ଼ିରେ ଫେରି ଯାଉଥିବା ପୁଣ୍ୟ

ଏବଂ ଯେଉଁ ସବୁ
ବିକଳାଙ୍ଗ ଅନୁଶୋଚନାମାନ
ସ୍ଥିର ହୋଇ ରହିଥାନ୍ତି
ନିଷ୍ଫଳ ପ୍ରତିଧ୍ୱନିର ଅଦ୍ଭୁତ ମୁଦ୍ରାରେ

# ଏକାକୀ ଝିଅ

ଛାତ ଉପରେ ସକାଳର ଖରା ବୁଣିଗଲେ
ଏକାକୀ ଝିଅଟି ବସିଥାଏ ଗଛ ଛାଇରେ
ନଈ କୂଳରେ କାହା ଅପେକ୍ଷାରେ

ନଦୀର ସଦିଚ୍ଛାମାନ ସମୁଦ୍ରକୁ ଲମ୍ବିଗଲେ
ଲହରୀର ଉଦ୍‌ବିଗ୍ନ ହାତ ବଢ଼ାଇ
ସମୁଦ୍ର ଆକାଶକୁ ଛୁଇଁଲେ
ଆକାଶର ଆଲିଙ୍ଗନ ଶୂନ୍ୟରେ ମିଶିଗଲେ
ପ୍ରେମିକମାନେ ସେମାନଙ୍କର
ଆଖିର ଦୂରାଗତ ଦୃଷ୍ଟିପାତ ସଜାଡ଼ି ନିଅନ୍ତି
କଣ ଭାବି କେଉଁ ଶୋଚନାରେ

ଝରକା ଉପରୁ ଛାଇ ଓହ୍ଲାଇଗଲେ
ଛାଡ଼ି ଯାଇଥିବା ପ୍ରିୟଜନ ପ୍ରତି
ଜମା ବି ବିମୁଖ ନ ହୋଇ
ଶୂନ୍ୟକୁ ଅନାଇ ଆଖି ବନ୍ଦ କରି
ପୁଣି ନିଜ ଭିତରେ ହଜିଯାଏ କିଏ
ସଂଜ ହୋଇଗଲେ ନଈ କୂଳରେ

# ରୂପାନ୍ତର

ତମର ମୁହଁର ଦର୍ପଣ ଭିତରୁ

କିଛି ବି ଉପଲବ୍ଧି କରିବା
ସମ୍ଭବ ନୁହେଁ
ନା ସ୍ପର୍ଶ ନା ବର୍ଣ୍ଣ ନା ଗନ୍ଧ

କେବଳ ତା ଭିତରେ ଦେଖିବା ସମ୍ଭବ
ସବୁ କିଛି ଅହେତୁକ ଭାବେ
ରୂପାନ୍ତରିତ ହୋଇଯାଉଥିବା

## ଛାୟାପଥ

ତମେ ଯେତେବେଳେ
ମୋ ମନର କୋଳାହଳରୁ
ବାହାରି ଚାଲିଯିବ
ଅନ୍ୟ ଛାୟାପଥ ଉପରକୁ
ତାରାମାନେ ଚୁପ ହୋଇଯିବେ

ମୁଁ ପୁଣି ନିର୍ବାକ ହୋଇଯିବି
ତମର ଅପାର୍ଥିବ ନିର୍ଜନତାରେ
ତଲ୍ଲୀନ ହେବା ପାଇଁ

## ଶେଷ

ଆମେ ହସକୁ ଛାଡ଼ି ଆସିଲେ
ମଝି ରାସ୍ତାର ଶୂନ୍ୟତାରେ

ସମସ୍ତଙ୍କ ଆଖି ସମୁଦ୍ରରେ ନିବଦ୍ଧ
ଧୂମକେତୁ ରାସ୍ତା ଭାଙ୍ଗି ଚାଲିଗଲା

ଏକାକୀ ଗଛର ହାତ ଆକାଶକୁ
ପଛକୁ ଘୁଞ୍ଚିଗଲା ଅରଣ୍ୟ

ଦ୍ୱୀପମାନ ଅଜ୍ଞାତ ରହିଗଲେ
ପବନ ଉଡ଼ାଇ ନେଲା ସ୍ୱପ୍ନ ସବୁ

ଯୁଦ୍ଧ କ୍ଷେତ୍ର ଶୂନଶାନ
କାହାରି ଆଖିରେ ଲୁହ ନାହିଁ

# ଯାତ୍ରାର ପ୍ରଥମ ପାଦ

ହଠାତ ସମୟ ହୋଇଯାଏ
ତାରାମାନେ ଜହ୍ନକୁ ବେଷ୍ଟନ କରି ନିଅନ୍ତି
ଖେଳ ଆରମ୍ଭ ହେବା ଆଗରୁ
ଅଭିଜିତ ନିଜର ଜାଗା ଖୋଜିନିଏ
ଉତ୍ତରାଷାଢ଼ା ଓ ଶ୍ରବଣା ମଝିରେ
ଦିଗ୍‌ବଳୟର ଅଗଣିତ ଫାଟକମାନ ଖୋଲିଯାନ୍ତି
ଦିଗନ୍ତର ପକ୍ଷୀ ଆସି ଓହ୍ଲାଏ
ଟାଉନ ହଲର ଘଣ୍ଟା ଉପରେ

ସୂର୍ଯ୍ୟକୁ ପ୍ରଣାମ ଜଣାଇ
କିଏ ଏ କଥାକୁ ଆସନ୍ନ ସକାଳ କହେ
ଆଉ କେହି ଘରକୁ ଫେରିବା ବେଳେ
ଦୀର୍ଘଶ୍ୱାସରେ ଜଣାଇ ଯାଏ
ଆହୁରି ଗୋଟିଏ ଦିନ
ଏହିପରି କଟିଗଲା ଯା' ହେଉ
ଆଉ ଯଦି କିଏ ବେଳା ଅବେଳା
ଓ କାଳବେଳାର ତାରତମ୍ୟ ଜାଣିବାକୁ
ଉପରକୁ ଅନାଏ
ଉଡ଼ି ଯାଉଥିବା ପକ୍ଷୀର ଡେଣାରେ
ତାର କୌଣସି ଉତ୍ତର ନ ଥାଏ

ତମେ କଣ ମତେ ଠିକ ଏତିକିବେଳେ
ସାକ୍ଷାତର ସମୟ ଦେଇଥିଲ
ମୋର ସଠିକ ମନେ ନାହିଁ କେଉଁଠାରେ
ପାର୍କ ନର୍ସିଂହୋମ ନା ଟାଉନହଲରେ
କେତେବେଳେ ଆମର ଶେଷ ଦେଖା ଥିଲା
ମୁଁ ଯେତେବେଳେ ହସପିଟାଲରେ

ନର୍ସର ମୁହଁରେ ତମର ମୁହଁକୁ
ସମ୍ୟକ ମିଶିଯିବାର ଦେଖିଥିଲି
ଅଥବା ତମେ ଯେତେବେଳେ
ମୋର ସକାଳର ସ୍ୱପ୍ନକୁ ନିର୍ବିରୋଧ
ଫେରି ଆସିଥିଲ ଅସମୟରେ

ହଠାତ ସମୟ ଅଜାଡ଼ି ପଡ଼େ
ପାର୍କର ବେଞ୍ଚ ଖାଲି ରହିଥାଏ
ଯଦିଓ ଗଛର ଛାଇ ତାକୁ
ବିଭିନ୍ନ ଭାବରେ ସଜାଇ ଦେଇଯାନ୍ତି
ପତ୍ର କିଛି ଝଡ଼ି ପଡ଼େ ଏପାଖ ସେପାଖ
ଖରା ଓ ବର୍ଷାର ଆତ୍ମୀୟତାରେ
ରଙ୍ଗ ସବୁ ଫିକା ପଡ଼ି ଆସେ
ଶୀତ ଋତୁ ଯାଇ ଯେତେବେଳେ
ଫୁଲଙ୍କର ଶୋଭାଯାତ୍ରା ଭିତର ଦେଇ
ନୂତନ ସମୟ ଆସି ପହଞ୍ଚେ
ସେଠାରେ ଆଉ ପାର୍କର ବେଞ୍ଚ ନ ଥାଏ
ସେଠାରେ ପଡ଼ି ରହିଥାଏ
କେବଳ କେତେଖଣ୍ଡ କାଠ
ହସପିଟାଲର ଫାଟକ ଦେଇ
ନିଃଶବ୍ଦରେ ଗାଡ଼ି ବାହାରି ଗଲେ
ପାର୍କ ଆଉଜି ପଡେ ଅବସନ୍ନ ରାସ୍ତା ଉପରକୁ
ଛାଇ ଛାଇ ଅପରାହ୍ନ ବେଳରେ

ତା ପରେ ମୁଁ ଆବିଷ୍କାର କରେ
ମୁଁ ଏକାକୀ ଛିଡ଼ା ହୋଇଛି
ଏକ ପ୍ରାଚୀନ ମନ୍ଦିରର ଅଙ୍ଗନରେ
ଯେଉଁଠାରେ କେବଳ ନିଶ୍ଚଳ ଅନ୍ଧାର
ଓ ଅନେକ ଉର୍ଦ୍ଧ୍ୱରେ ପକ୍ଷୀମାନଙ୍କର

ଚଳ ପ୍ରଚଳ ହେବାର ଶବ୍ଦ
ନାଟ ମଣ୍ଡପ ଶୂନଶାନ ଗର୍ଭଗୃହ ଖାଲି
କେବେ କେମିତି କେବଳ
ଖଣ୍ଡିତା ଓ ଅଳସକନ୍ୟାର
ଚୁପ ଚୁପ କଥୋପକଥନ
ଏବଂ ଅନ୍ୟମନସ୍କ ଦେବଦାସୀର
ପାଦର ନୂପୁରରେ ଗୋଟିଏ ମାତ୍ର ନିକ୍ୱଣ

ସିଂହଦ୍ୱାର ବାହାରକୁ ଅନାଇଲେ
ମୁମୂର୍ଷୁ ଜହ୍ନ ଆଲୁଅରେ ପ୍ରତିଫଳିତ
ଅନ୍ୟ ଏକ ଭୟଙ୍କର ଅନ୍ଧକାର
ପାର୍ଶ୍ୱ ମନ୍ଦିର ଶିଖର ଉପରୁ
ଓହ୍ଲାଇ ଆସେ ମସ୍ତକରେ ମଣି ଖଚିତ
ଦୀପ୍ତିମନ୍ତ ମହାପଦ୍ମ ନାଗ
ପକ୍ଷୀମାନଙ୍କର କାକଳୀରେ
ପରିପୂର୍ଣ୍ଣ ହୋଇଯାଏ
ପଥରର ପଶ୍ଚାତ୍ତାପ ସବୁ
ଶ୍ୱେତବସ୍ତ୍ର ପରିହିତ ପୁରୋହିତ
ଆଗକୁ ଆସି ହାତ ବଢ଼ାଏ
ମୁଁ ତାକୁ ସାଷ୍ଟାଙ୍ଗ ପ୍ରଣିପାତ କରେ
ମୁଁ ସମର୍ପଣ କରି ଦିଏ ମୋର ଯୌବନ
ଆଶା ଆକାଂକ୍ଷା ଅଭିପ୍ରେତ ଓ ଭବିଷ୍ୟତ
ମୁଁ ସହିନିଏ ସେଇ ଶାପକୁ
ଯାହା ମୋର ପୂର୍ବପୁରୁଷଙ୍କ ନିମିତ୍ତ ଥିଲା
ମୁଁ ଦମିତ କରି ଫେରାଇ ନିଏ
ମୋର ପ୍ରଜ୍ୱଳିତ ପୌରୁଷକୁ
ବ୍ରହ୍ମଚର୍ଯ୍ୟରେ ଉର୍ଜ୍ୱସିତ ବୀର୍ଯ୍ୟକୁ
ନିଜ ଶିରାରେ ଆସ୍ୱାଦନ କରିନିଏ
ପ୍ରଥମ ଋତୁସ୍ନାତା କୁମାରୀମାନଙ୍କର
କୁକ୍ଷିଦାହକୁ ଅଗ୍ରାହ୍ୟ କରି

ତା ପରେ କେବଳ ଧର୍ମର ପାଳନ
ଯୌବନର ପ୍ରତ୍ୟର୍ପଣ ଆଶାରେ
କେବଳ ମନ୍ତ୍ରରେ ମନୋନିବେଶ
ଏବଂ ସମସ୍ତଙ୍କୁ ଆପ୍ୟାୟିତ କରିବାର ଚେଷ୍ଟା
ଯଜ୍ଞରେ ଦେବତାଙ୍କୁ
ଶ୍ରାଦ୍ଧରେ ପିତୃପୁରୁଷଙ୍କୁ
ଦାନରେ ଦ୍ୱିଜଙ୍କୁ
ଓ ଅନୁକମ୍ପାରେ ଶୂଦ୍ରଙ୍କୁ
ଯଦିଓ ଏ ସବୁ ବିଧିମାତ୍ର ବୋଲି ଜଣା

ଯଦିଓ ମୁଁ ଜାଣେ
ମୋର ଶିରାରେ ପ୍ରବାହିତ ଯୌବନ
ଅବିଳମ୍ବେ ଶିଥିଳ ଓ ଜୀର୍ଣ୍ଣ ହୋଇଯିବ
ଶେଷରେ ସେ ରାଜ୍ୟକୁ ବାଣ୍ଟି ଦିଆଯିବ
ସମସ୍ତ ଦାୟାଦମାନଙ୍କ ଭିତରେ
ଯାହା କେବଳ ମୋ ପାଇଁ ଉଦ୍ଦିଷ୍ଟ ଥିଲା
ଏପରିକି ସେମାନେ ମଧ୍ୟ
ମୋ ସହିତ ଅଂଶୀଦାର ହେବେ
ଯେଉଁମାନେ ବାର୍ଦ୍ଧକ୍ୟରୁ ଯୌବନର ପରିବର୍ତ୍ତନ
ଅସ୍ୱୀକାର କରି ଦେଇଥିଲେ

ତା ପରେ ଆଉ କୌଣସି କାମରେ ଆସିବ ନାହିଁ
ମୋର ଫେରି ପାଇଥିବା ଯୌବନ
କିଛି ବି ପ୍ରୟୋଜନ ନ ଥିବ
ଆଉ ମୋର ମାଂସପେଶୀମାନଙ୍କର
କୌଣସି ମନ୍ତ୍ର ପହଞ୍ଚିବ ନାହିଁ
ଅପ୍‌ସରାମାନଙ୍କ ଯୋନିଜଳରେ
ବୁଡି ରହିଥିବା ଦେବତାମାନଙ୍କ ପାଖରେ
ଯଜ୍ଞ ପାଇଁ ଆଉ ପୁରୋହିତ ମିଳିବେ ନାହିଁ
ପ୍ରାୟଶ୍ଚିତ୍ତ ପାଇଁ କୌଣସି ସ୍ତୋତ୍ର ନ ଥିବ

ମୁଁ ଫେରି ଆସିବି ରିକ୍ତହସ୍ତ
ଜରାଗ୍ରସ୍ତ ଲୋଳଚର୍ମା ଶୁକ୍ଳକେଶ ନିର୍ବୀର୍ଯ୍ୟ
ମୋର ପତନୋନ୍ମୁଖ ସାମ୍ରାଜ୍ୟକୁ
ଏବଂ ଛିନ୍ନପକ୍ଷ ଦୁରାକାଂକ୍ଷାମାନଙ୍କୁ
ପଞ୍ଜୁରୀରୁ ଖୋଲି ଉଡାଇ ଦେବି
ଅପ୍ରମେୟ ଆକାଶର ଶୂନ୍ୟରେ

ଆକାଶର ରଙ୍ଗ ସବୁ ମଉଳି ଯିବ
ଭୟାନକ ସ୍ୱରବର୍ଣ୍ଣମାନଙ୍କରେ
କ୍ରମେ କ୍ରମେ ସବୁ ଶୂନ୍ୟ ହୋଇଯିବ
ପବନର ହାହାକାର ଛାଇଯିବ
ମରୁଭୂମିର ବନ୍ଧ୍ୟା ବିସ୍ତାର ଉପରେ
ଉପଦେବତାର ମୁହଁ ତରଳିଯିବ
ନୈବେଦ୍ୟର ଭୟଙ୍କର ଅଗୁରୁ ଓ ଚନ୍ଦନରେ
ପୁରୋହିତ ଉଠି ଆସିବ
ତାର ସଂଯମବଦ୍ଧ ସମାଧିରୁ
ବାୟୁମଣ୍ଡଳ ପ୍ରକମ୍ପିତ ରହିଯିବ
ନୀଳଲୋହିତ ରୁଦ୍ରର କ୍ରନ୍ଦନ ଧ୍ୱନିରେ

ଆଉ କେଉଁ ଗଣକ ଆସି ପଢ଼ିବ
ଏଭଳି ମୁହୂର୍ତ୍ତମାନଙ୍କର ଜଣା ଅଜଣା
ଯାହା ଅନାମଧେୟ ମୁହଁଙ୍କର ଆଶ୍ୱାସନା
ଖୋଜି ଖୋଜି ହତୋତ୍ସାହ ହୋଇଗଲା
କିଏ ଧାର୍ଯ୍ୟ କରିବ ଶୁଭ ଅଶୁଭ
ଓ ରାଶି ସଂକ୍ରମଣର ମୁହୂର୍ତ୍ତମାନ
କିଏ ବିଶ୍ଳେଷଣ କରିପାରିବ
ଗ୍ରହ ନକ୍ଷତ୍ରମାନେ ଧାଇଁ ଧାଇଁ
ଖେଳ ଶେଷରେ କେଉଁଠାରେ ରହିଯାନ୍ତି
ଅନ୍ଧକୂପରୁ କୁସଂସ୍କାରମାନ ବାହାରି
କିପରି ଗ୍ରାସ କରନ୍ତି ସମସ୍ତ ଅବଲମ୍ବନକୁ

ଆଣବିକ ଧୂଆଁ ଭଳି ରକ୍ତ ଛୁଟେ
କାହା ଛିନ୍ନ ମସ୍ତକର
କେଉଁ ଉତ୍ତପ୍ତ ଧମନୀମାନଙ୍କରୁ

ଠିକ ଏତିକି ବେଳେ ଘଣ୍ଟା ବାଜେ
ଟାଉନ ହଲରେ ଶୋକ ସଭା ଭାଙ୍ଗେ
ନିଷେଧାଜ୍ଞା ଜାରି ହେବା ଆଗରୁ
ଛିନଛତ୍ର ହୋଇଯାଏ ଜନାରଣ୍ୟ
ତୈଳଚିତ୍ର ଉପରୁ ପାଖୁଡ଼ା ସବୁ ଝଡ଼ି ପଡନ୍ତି
ମାଇକ୍‌ରେ ବିସ୍ଫୁରିତ ରହିଯାଏ
ସମସ୍ତ ଯଶ କୀର୍ତ୍ତି କଳାପ
କୃତିତ୍ୱ ଓ ପରାକ୍ରମର ପ୍ରଶସ୍ତି
ବିରକ୍ତିକର ବକ୍ତୃତାରେ କଟିଯାଏ
ଏକ ଅସଂପୂର୍ଣ୍ଣ ଜୀବନର ଖ୍ୟାତି
ନୂଆ ପ୍ରତିକୃତି ଧରି ବ୍ୟତିବ୍ୟସ୍ତ ହୁଅନ୍ତି
ବାହାରେ ଠିଆ ହୋଇଥିବା ଲୋକମାନେ
ପତ୍ରକାରର କ୍ୟାମେରାରେ ଲିପିବଦ୍ଧ ହୋଇଯାଏ
ଆଉ କିଛି ଅସହାୟ ମୁହଁ
ପ୍ରହରୀ ଆସି ଯେତେବେଳେ
କବାଟ ବନ୍ଦ କରିଦିଏ
ପକ୍ଷୀଟି ବାହାରକୁ ଯିବାର ବାଟ ନ ପାଇ
କ୍ରମାଗତ ଚିତ୍କାର କରୁଥାଏ

ପ୍ରତିଧ୍ୱନି ଆସି ଧକ୍କା ଖାଏ ଦୂରତ୍ୱ ସହିତ
ପକ୍ଷୀର କାକଳୀ ସମେତ
ସେଠାରେ ଅନେକ ଶବ୍ଦ ତିଆରି ହୁଅନ୍ତି
ଦ୍ରବ୍ୟ ନୁହେଁ ଗୁଣ ନୁହେଁ କେବଳ ଶବ୍ଦ
ଏଭଳି ଅନେକ ଶବ୍ଦ ଯାହା
ଅସ୍ଥିର ଆଖିରେ ପ୍ରତିବିମ୍ବିତ

ପ୍ରେତାତ୍ମାଙ୍କ ନୃତ୍ୟର ମର୍ମାନ୍ତିକ ସ୍ୱର
ଅନାଗତ ନିସ୍ତବ୍ଧତାର ମହୋତ୍ସବ ଭିତରେ
ଓଁକାର ଓ ଅନାହଦ
କପୋଳକଳ୍ପିତ ମନସ୍କାମନାର ବର୍ଣ୍ଣମାଳାରୁ
ପାର୍ବତ୍ୟ ଝରଣା ପରି ଯାହା ଆସି
ଉଚ୍ଛାଟରେ ମିଶିଯାଏ ଶବ୍ଦର ନଦୀରେ
ଶବ୍ଦ ଯାହା ଶୂନ୍ୟତାର କେନ୍ଦ୍ର ବିନ୍ଦୁ
ଶବ୍ଦ ଯାହା ଅଭିସାରିକାର ଆଖିର ସଙ୍କେତ
ଏବଂ ଆତତାୟୀର ଉପରକୁ ଉଠିଥିବା ହାତ
ସବୁ ଶବ୍ଦ ଜରିଯାଏ
ଶିରା ପ୍ରଶିରା ଧମନୀମାନଙ୍କ ଭିତରେ
ଓ ଶେଷରେ ଯାଇ ଆଖିର ପୁତ୍ତଳିକାର
ଘନିଷ୍ଠ ନୀରବତାରେ ସଙ୍କୁଚିତ ହୋଇଯାଏ

ସାକ୍ଷାତକାର ପାଇଁ
ତମେ ଯେଉଁ ଶବ୍ଦଲିପି ଲେଖି ଯାଇଥିଲ
ତାର ଆଉ କେହି ପାଠକ ନାହାନ୍ତି
ମୁଁ ହିଁ ଏକମାତ୍ର ନିୟାମକ
ତମର ଭବିଷ୍ୟତ ଓ ଭାଗ୍ୟର
ଯଦିଓ ମୁଁ ନିଜେ
ତମ ପାଇଁ ଯେତେକ କବିତା
ସେ ସବୁର ନିୟୋଜିତ ଶବ୍ଦମାତ୍ର
ମୁଁ ହିଁ ନିର୍ଦ୍ଧାରିତ କରି ଦେଇଯାଏ
ତମ ହାତର ନିର୍ମମ ରେଖାମାନଙ୍କର ଅର୍ଥ
ଯଦିଓ ସେ ସବୁ ଆଶୟମାନଙ୍କ ଉପରେ
ମୋର କୌଣସି କର୍ତ୍ତୃତ୍ୱ ନାହିଁ
ଯାହା କେବଳ ମୋ ନିଜ ଭିତରେ ଉତ୍ପନ୍ନ
ମୁଁ ବଶୀଭୂତ କରିବାକୁ ଚେଷ୍ଟା କରେ
ସେ ସବୁ ସ୍ୱରମାନଙ୍କୁ

ଯାହା କେବଳ ମୋ ନିଜ ଭିତରେ ଧ୍ୱନିତ

କିନ୍ତୁ ମୁଁ କିପରି ସମାଧାନ କରିପାରିବି
ଏଇ ପଞ୍ଜୁରୀବଦ୍ଧ ପକ୍ଷୀର ପ୍ରହେଳିକା
ସେ କାହାର ଅର୍ଜିତର ଫଳ
କିଏ ଡାକି ଆଣିଥିଲା ତାକୁ
କି ଭଳି ନିମନ୍ତ୍ରଣ ପତ୍ର ଦେଇ
କେଉଁମାନେ ବନ୍ଦ ରହିଗଲେ ତାର
ବିସ୍ଫାରିତ ଆଖିରେ ନିହିତ ସମ୍ମୋହନର
ଏକ ବୃହତ୍ତର ପଞ୍ଜୁରୀରେ
ପକ୍ଷୀଟିର ବନ୍ଦ ହୋଇ ରହିବାର
କିଏ କାରକ କିଏ କର୍ମ
କିଏ କାରଣ ପୁଣି କିଏ ସମ୍ବନ୍ଧ
ସଂପ୍ରଦାନ ଓ ଅଧିକରଣ
ତାର ଅବ୍ୟକ୍ତ ସ୍ୱରର ଅସ୍ଫୁଟ ଧ୍ୱନିରେ
କି ଉଦ୍ଦେଶ୍ୟ ଓ ବିଧେୟ
କାହାପାଇଁ ତାର ମର୍ମାନ୍ତିକ ବାର୍ତ୍ତା
ବର୍ତ୍ତମାନ ଯାହା
ସାମାନ୍ୟ ସନ୍ଦିଗ୍ଧ ଅପୂର୍ଣ୍ଣ ଓ ସମ୍ଭାବ୍ୟ
ଅଥବା ଭବିଷ୍ୟତ ଯାହା
ଆସନ୍ନ ନିଶ୍ଚୟାର୍ଥ ସାଙ୍କେତିକ ଅଦ୍ଭୁତ

ଜ୍ଞାତକୁ ଆଉ ଅଜ୍ଞାତ କରିବାର
ଅପଚେଷ୍ଟା କରି ଲାଭ ନାହିଁ

ଏବେ ନିଜର ଅନ୍ତର୍ଦୃଷ୍ଟି ଦେଇ
ନିଜ ଭିତରକୁ ଦେଖିବାର କଥା
ଆକାଶ ଆଡକୁ ଚାହିଁଲେ
କେବଳ ବ୍ୟର୍ଥ ସମୟ ଅପବ୍ୟୟ

ଯାହା ସବୁ ପ୍ରତିପାଦ୍ୟ ଥିଲା
କେବଳ ଗୋଟିଏ ମାତ୍ର ସଙ୍କେତରେ
ସ୍ୱଷ୍ଟ କରିବାକୁ ହିଁ ହେବ
ଆଶ୍ୱାସନା ଓ ନିଶ୍ଚିନ୍ତତା ଏଠାରେ ଦୁଷ୍ପ୍ରାପ୍ୟ
ଅର୍ଜିତ ଭାଗ୍ୟର ଗଣନା ଫଳ
ହିସାବ କରି ଆଉ ଲାଭ ନାହିଁ
ସ୍ୱର୍ଗମୁଖୀ ସଦୁଦ୍ଦେଶ୍ୟ ସବୁ
ମେଘକୁ ସ୍ପର୍ଶ କରି ପାରିବେ ନାହିଁ
ସେମାନଙ୍କର ଏକମାତ୍ର ଭାଗ୍ୟ କେବଳ
ନିତାନ୍ତ ତୃଷାର୍ତ୍ତ ହୋଇ
ପ୍ରାତ୍ୟହିକ ଇଚ୍ଛାର ଉଷ୍ମାରେ ଜଳିଯିବା

ତମର ଓ ମୋର ସାକ୍ଷାତ
ଅନ୍ୟ ସମୟର ବଶବର୍ତ୍ତୀ
ଏଠାରେ ବର୍ତ୍ତମାନର ଅଭାବରେ
ନଦୀମାନେ ଉପେକ୍ଷାରେ ଭର୍ତ୍ତି ହୋଇଯାନ୍ତି
ଉଜାଣିରେ ଭାସିଯାଏ
କବରୀର ଫୁଲ ଏବଂ ନିରାକାର ବ୍ରହ୍ମ
ସବୁ ମିଶିଯାଏ ଜହ୍ନ ଆଲୁଅରେ
ଇନ୍ଦ୍ରସଭା ସିନ୍ଦୂରର ଦାଗ
ରମ୍ଭା ଏବଂ ମେନକାର ସଂସାର
ମଶାଣିର ଅନ୍ଧକାର ଗ୍ରାସ କରିଦିଏ
ପିତୃପୁରୁଷଙ୍କ ଶୋକ
ସମୁଦ୍ର ଓ ସମୁଜ୍ଜ୍ୱଳ ଜ୍ୟୋତିକୁ

ତମେ ଏଥରକ ଚାଲି ଆସ
କେବଳ ଦୁଇ ମିନିଟ ପାଇଁ
ଘଣ୍ଟାର ବର୍ଚ୍ଛା ଭଳି ହାତକୁ ଲଂଘି
ମନ୍ଦିରର ଅସ୍ଥିପଞ୍ଜରା ଡେଇଁ

ସମୟର ଭଙ୍ଗାରୁଜା ସଂଗ୍ରହାଳୟକୁ
ଖଣ୍ଡିତ ଶାଳଭଞ୍ଜିକାର
ସମତଳ ଛାତି ଉପରେ
କିଛି କ୍ଷଣ ଅପେକ୍ଷା କର
ମୁଁ ତମ ପାଖକୁ ଫେରିଆସିବି
ତମର ସ୍ମୃତି ସବୁକୁ ଛିନଭିନ କରି
ତମର ଅଦମନୀୟ ଦେହକୁ
ଅସମ୍ଭବ ସ୍ୱପ୍ନମାନଙ୍କରେ ଉଜାଡ଼ି ଦେଇ
ମିଥୁନ ମୂର୍ତ୍ତି ଯେତେବେଳେ
ଦ୍ୱିଖଣ୍ଡିତ ହୋଇ ଅଧିକାର କରି ନେବ
ଆମର ଦ୍ୱିଧାଗ୍ରସ୍ତ ଆଧାରମାନଙ୍କୁ
ମୁଁ ତମକୁ ପୁଣି ଫେରାଇ ଦେବି
ତମର ମୁଦିତ ଆଖିର ସ୍ୱତନ୍ତ୍ରତାକୁ
ଯେଉଁଠାରେ ତମେ ପୁଣି
ସ୍ୱୟଂସଂପୂର୍ଣ୍ଣ ହୋଇଯିବ

(ମୁଁ କଣ ନିଜେ ତମର ସ୍ୱପ୍ନରୁ ସଂଭୂତ
ମୋର ଅନ୍ୟ କୌଣସି ଅବସ୍ଥିତି ନାହିଁ
ତମର ମୌଳିକ ସତ୍ତା ବ୍ୟତୀତ
ତମେ କଣ ମୋର ଜନ୍ମ ଜୀବନ ଜରା ମୃତ୍ୟୁ
ଏବଂ ଉଭୟ ସୁଖ ଓ ଦୁଃଖର ହେତୁ
ଅଥବା ଆମେ ଦୁହେଁ
କେବଳ ପରସ୍ପରର ସ୍ୱପ୍ନରେ ସଂଘଟିତ
ଗୋଟିଏ ଦର୍ପଣରେ ଅନ୍ୟ ଦର୍ପଣର ପ୍ରତିଫଳନ)

ଅନେକ ପ୍ରଶ୍ନର କୌଣସି ଉତ୍ତର ନ ଥାଏ
ମୁଁ ତମକୁ କାହିଁକି ଖୋଜି ବୁଲେ
ମୋର ଯୌବନ ଯଦି ଅନ୍ୟକୁ ସମର୍ପିତ
ମୋର ଉତ୍କଣ୍ଠିତ ହେବାରେ କି ଲାଭ
ଶଙ୍ଖନାଗର ନିଶ୍ୱାସରେ ଯଦି ନିସ୍ତବ୍ଧ ହୋଇଗଲା

ଉତ୍ପ୍ଲାବିତ ପକ୍ଷୀମାନଙ୍କର କାକଳୀ
ମୋର ସାଧନା ଓ ନୈବେଦ୍ୟର କି ପରିଣତି
ମନ୍ଦିର ଯଦି ଏଇପରି ଭାଙ୍ଗିରୁଜି ଯାଏ
ଅପଦେବତାମାନଙ୍କର ଅଭିଶାପରେ

ମୋର ଅପେକ୍ଷାର କି ତାତ୍ପର୍ଯ୍ୟ
ଯଦି ହଠାତ୍ ସମୟ ହୋଇଯାଏ
ସାଧକ ଫେରିଯାଏ
ନିଜର ସଂଯମବଦ୍ଧ ସମାଧି ଆଡକୁ
ନର୍ସର ମୁହଁ ଉପରେ ଖରା ମଉଳି ପଡ଼େ
ଟାଉନ ହଲରେ ତାଲା ବନ୍ଦ ହୋଇଯାଏ
ଘଣ୍ଟା ଧ୍ୱନିରେ କଟିଯାଏ
ଦୈବଲୋକର ଅଦ୍ଭୁତ ଇନ୍ଦ୍ରଜାଲ
ଶବ୍ଦର କଣ୍ଠରୋଧ ହୋଇଯାଏ
ସରୋଷ୍ଠ ନିରୋଷ୍ଠ ଛନ୍ଦ ବନ୍ଧ
ଏବଂ ସିଂହାବଲୋକନରେ
ପାର୍କ ବଦଳାଇ ନିଏ ଋତୁର ପୋଷାକକୁ
ପକ୍ଷୀ ଦର୍ପଣକୁ ଖୁମ୍ପିଚାଲେ ଅଦମ୍ୟ ନିଷ୍ଠାରେ

ତଥାପି ମୁଁ ଆସ୍ଥାର ସହିତ
ଆଗକୁ ପାଦ ବଢ଼ାଏ
ଯଦିଓ ମୁଁ ଜାଣେ ତଳକୁ ଓହ୍ଲାଇଲେ ରାସ୍ତା
ଏବଂ ହଠାତ ସମୟ ହୋଇଯିବ
ଶୂନ୍ୟରେ କିଛି ତାରା ମିଟି ମିଟି କରୁଥିବେ
ସବୁ ସ୍ୱରକୁ ଚୁପ କରିଦେଇ
ପବନ ନିଜର ଆର୍ତ୍ତନାଦ ଶୁଣାଇବ
ଫୁଲ ଗଛ ଉପରେ କିଛି ପ୍ରଜାପତି
ଉଡ଼ି ଆସି ବିଶ୍ରାମ ନେବେ
ସହରର ସଂକୀର୍ଣ୍ଣ ଦିଗ୍‌ବଳୟ ଉପରେ
ମନ୍ଦିରର ଚୂଡ଼ା ସବୁ ସୁସଜ୍ଜିତ ରହିଥିବେ

ଅନ୍ତିମ ଦୃଶ୍ୟ ଶେଷରେ ନାୟକ ନାୟିକା
ଚାଲିଯିବେ ଶେଷ ସୂର୍ଯ୍ୟାସ୍ତ ଭିତରକୁ
ଘଣ୍ଟାଘର ଉପରେ
ଦଳ ଦଳ ପକ୍ଷୀ ଉଡ଼ି ବୁଲୁଥିବେ
ଏବଂ
ସେମାନଙ୍କ ଉପରେ ଆକାଶ ଭାଙ୍ଗି ପଡ଼ିବ ନାହିଁ

## ତ୍ରିଯାମା

ଦୃଶ୍ୟ ବଦଳୁଥାଏ ସାରା ରାତି
କିଛି ଦୃଶ୍ୟକୁ ମନ ସ୍ୱୀକାର କରି ନିଏ
କିନ୍ତୁ ପୁଣି ଦୃଶ୍ୟ ବଦଳି ଗଲେ
ଆଖି ଯାହା ମାନି ନେଇଥାଏ
ଅନ୍ୟ ଇନ୍ଦ୍ରିୟମାନେ ପ୍ରତ୍ୟାଖ୍ୟାନ କରି ଦିଅନ୍ତି
ଅବଚେତନାର ସମତଳ ଉପତ୍ୟକା ଉପରେ
ସ୍ୱପ୍ନର ରେଳଗାଡ଼ି ଆସି ଠିଆ ହୁଏ

ସବୁ ମନେପଡ଼େ
(ସ୍ମୃତିର କଣ କୌଣସି
ଅତୀତ ବା ଭବିଷ୍ୟତ ନାହିଁ)
ଏପ୍ରିଲର ଖରାବେଳ କେଉଁ ପରି
ତମ କପାଳରେ ଲାଗିଗଲା
ବିନ୍ଦୁ ବିନ୍ଦୁ ଝାଳ ହୋଇ
ପଣତରୁ ଅନାୟାସ ଝଡ଼ିଗଲା
ପୌଷର ଦୁଇଟି ଅପରିଣତ ସଞ୍ଜବେଳ
ଘରର ଚାରିଟି କାନ୍ଥ କିପରି

ହିଂସ୍ର ହୋଇ ଆମକୁ ଘେରିଗଲେ
ଆରଣ୍ୟକ ଅସହିଷ୍ଣୁତାରେ
ମୁଁ କିପରି ଆଖି ବନ୍ଦ କରିନେଲି
ତମକୁ ସମ୍ପୂର୍ଣ୍ଣ ଜାଣିପାରିବାର ଭୟରେ

ଦୃଶ୍ୟ ବଦଳିଲେ ସବୁ ମନେପଡ଼େ
(ନିଜର କର୍ମମାନଙ୍କରୁ
କିପରି ବା ସନ୍ନ୍ୟାସ ନେଇ ହେବ
ସେ ସବୁ କର୍ତ୍ତୃତ୍ୱର
କଣ ଆଉ କରାଯାଇ ପାରେ
ଯାହା କେବଳ ନିଜର ବିଶେଷଣ)
ସୃଷ୍ଟିର ସମସ୍ତ ଶୋକ
ଆଖିରେ ଲାଗିଯାଏ ଅଞ୍ଜନ ଭଳି
ନିଲାମ ହୋଇ ଯାଇଥିବା ଘର ଛାଡ଼ି
ଚାଲି ଯାଉଥିବା ପରାଜିତ ପାଦ
ନିରନ୍ନ କୋଟରଗତ ଆଖିର
ପ୍ରତିଶୋଧହୀନ ସହୃଦୟତା
ଭିକ୍ଷା ଥାଳ ହାତରେ ଧରି
କଙ୍କାଳମାନଙ୍କର ଅନ୍ତହୀନ ଶୋଭାଯାତ୍ରା
ପ୍ଲାଟଫର୍ମରେ ଶେଷ ସାକ୍ଷାତକାର

ଆଖି ପୋଛି ନେଲେ ବି
ଦୁଃଖ ସବୁ ଅଟକି ରହେ
ସ୍ମୃତିର ଝରକା ଖୋଲି
ଅନ୍ୟ ସମୟର ଆଗନ୍ତୁକମାନେ
ଯେତେବେଳେ ପର୍ଯ୍ୟନ୍ତ ଆସି
ପହଞ୍ଚି ନଥାନ୍ତି
ତା ପରେ ଅତିଥି ସତ୍କାରର ପର୍ବ
(ଯେଉଁମାନେ ଫେରି ନ ଆସନ୍ତି

ସେମାନେ ସବୁ କଣ ଅନାତ୍ମୀୟ)

ଗୋଟି ସଂପୂର୍ଣ୍ଣ ଜୀବନ କାଳ
ସଂକ୍ଷିପ୍ତ ହୋଇଯାଏ
ଟ୍ରେନ ଭଳି ଛୁଟି ଯାଏ
ଟନେଲ୍‌ର ଏ ପାଖ ସେ ପାଖ
କିଛିକ୍ଷଣ ଅନ୍ଧାରର ବ୍ୟବଧାନ ମାତ୍ର
ତା ପରେ ପୁଣି ବିଚାରାଳୟରେ
ସମାଧାନ ଉଦ୍ଦେଶ୍ୟରେ
ଆସି ସାବଧାନ ଠିଆ ହେବା

ମୁଁ ଆଗକୁ ବଢ଼ାଇ ଦିଏ
ମୋର ପାପ ଓ ପୁଣ୍ୟର ହିସାବ ସବୁ
ମୋର ସୀମିତ ଭଦ୍ରତା
ଦୁଃଖମାନଙ୍କ ପାଇଁ ମୋର ଦାୟିତ୍ୱ
ଛାଡ଼ପତ୍ରର ଇତିବୃତ୍ତି
ଓ ବିଭିନ୍ନ ସମୟର ଆତ୍ମୀୟତା
ବିଚାରକ ନିଷ୍ପତ୍ତି କରେ ନାହିଁ
କେବଳ ଆଗରେ ଆଣି ରଖିଦିଏ ଦର୍ପଣ
କୌଣସି ପ୍ରତିକ୍ରିୟା ବିନା
ପ୍ରତିବିମ୍ବ ମୋ ହାତକୁ ଫେରାଇ ଦିଏ
ମୋର ସାକ୍ଷ୍ୟ ଓ ପ୍ରମାଣ
ମୋ ମୁହଁକୁ ଫିଙ୍ଗି ଦିଏ
ପ୍ରଶ୍ନ ଓ ବିସ୍ମୟଚିହ୍ନ ସବୁ

ଋଣ ପରିଶୋଧର ସମ୍ବଳ ନାହିଁ
ପ୍ରାୟଶ୍ଚିତ୍ତର ସମୟ ନାହିଁ
ଷ୍ଟେସନର ଘଣ୍ଟା ସୂଚାଇ ଦିଏ
ବର୍ତ୍ତମାନର ଯାତ୍ରା

ବିଗତ ଯାତ୍ରାର ପୁନରାବୃତ୍ତି ନୁହେଁ
ଆଜିର ରାତି ଅନ୍ୟ ଏକ ରାତି
ଏଇ ମୁହୂର୍ତ୍ତ ଅନ୍ୟ ଏକ ମୁହୂର୍ତ୍ତ
ଶାସ୍ତ୍ରୀୟ ନିୟୋଗମାନ ତାତ୍କାଳିକ
ତ୍ରିକାଳିକ ନୁହେଁ
ଅନୁଭୂତି ସବୁ ଶାଶ୍ୱତ ନୁହେଁ
ସାମୟିକ ମାତ୍ର

ତେଣୁ ମୁଁ ମନ ଭିତରେ
ଦୃଶ୍ୟ ସବୁକୁ ପୁଣି ଥରେ ସଜାଇ ଦିଏ
ଅନାୟାସ ପୁଷ୍ପଗୁଚ୍ଛ ଭଳି
ମଉଳି ଯାଇଥିବା ଫୁଲମାନଙ୍କୁ
ଫିଙ୍ଗି ଦେବାର ସାମର୍ଥ୍ୟ ନାହିଁ
ପୁଣି ତେଣୁ ମନେ ପକାଏ
ମୁଁ ଶୋଇ ରହିଛି ଟ୍ରେନ ଭିତରେ
ଆଉ ମୋ ମଥା ଭିତର ଦେଇ
ଛୁଟି ଯାଉଛି ଦ୍ରୁତଗାମୀ ଟ୍ରେନ
ଅଥବା ବିଭିନ୍ନ ଚିତ୍ରପଟ ଦେଇ
ମୁଁ ନିଜକୁ ଦେଖି ପାରେ
ମୋ ନିଜ ବାହାରେ
(ରାତି ହେଲେ ଅନ୍ଧାର ଯେପରି
ଆକାଶକୁ ଗ୍ରାସ କରି ନିଏ
ଏବଂ ଆକାଶ ଅନ୍ଧାରକୁ)

ରାତି ବଢୁଥାଏ ମୁହୂର୍ତ୍ତରୁ ମୁହୂର୍ତ୍ତ
ଭାବିବାର ସମୟମାନଙ୍କରେ
କେବଳ ଛୋଟ ଛୋଟ ମୁହୂର୍ତ୍ତର ରାଜତ୍ୱ
ଭୁଲିଯିବାର ସମ୍ଭାବନା ନାହିଁ
ଏପ୍ରିଲର ଖରାବେଳ ପୌଷର ସଞ୍ଜ
ମନେପଡ଼େ ସବୁ ମନେପଡ଼େ

ଦୁଃଖର ହେତୁ ନିଷ୍ପତ୍ତିର ଅପ୍ରାସଙ୍ଗିକତା
ସନ୍ଧ୍ୟାରୁ ସକାଳରୁ
ସନ୍ଧ୍ୟାରୁ ସକାଳ ପର୍ଯ୍ୟନ୍ତ
ଉନ୍ନିଦ୍ର ସମାନ୍ତରାଳ ରେଖା ଉପରେ
ଟ୍ରେନ ଛୁଟୁଥାଏ ଛୁଟୁଥାଏ

# ଦୃଷ୍ଟି ବିନ୍ଦୁ

କେବଳ ଦେଖିବାର ଭୁଲ
କେବଳ ବୁଝିବାର ଅପେକ୍ଷା
କାଚର ଅବତଳ ପାରଦର୍ଶକତାରେ
ଯାହା ବିରୂପ ହୋଇ ଯାଇଥିବ
ସବୁ ନିୟମିତ ହୋଇଯିବ
ସତ୍ୟର ଅବଧାରଣରେ
ଆଖି ବନ୍ଦ କରିନେଲେ
ସବୁ ଝରକା ଖୋଲିଯିବେ କ୍ରମାନ୍ୱୟରେ
ଘର ଭିତରକୁ ପଶି ଆସିବ
ସବୁ ସୂର୍ଯ୍ୟର ଆଲୋକ
ସବୁ କିଛି ଯଥାର୍ଥ
ଓ ବିନ୍ୟସ୍ତ ହୋଇଯିବ
ନିଜ ନିଜର ଭାରସାମ୍ୟରେ

ଦ୍ୱିଧାମାନଙ୍କ ସହିତ
ସନ୍ଧିପତ୍ର ସ୍ୱାକ୍ଷର କରିବା ପରେ
ଯେଉଁଠାରେ ଆଖି ପଡ଼େ
ତାହା ଉଚ୍ଚାକାଂକ୍ଷାର ଶୀର୍ଷତମ ବିନ୍ଦୁ

ଯାହା ହାତ ଧରି ନିଆଯାଏ
ସେ ହୁଏ ସହଧର୍ମୀ
ଚାଲିବା ବେଳେ ହିଁ ବାଟ ବଦଳିଯାଏ
ସଂଜୀବନୀ ଖୋଜିବାକୁ ଆସି
କିଏ ଆଶ୍ରମରେ ଅଟକି ଯାଏ
ଯେ ଯେଉଁଠାରେ ରହିଯାଏ
ତା ହିଁ ହୋଇଯାଏ ତାର ଘର

ବର୍ତ୍ତମାନର ଆଖିରେ
ଯାହା ସବୁ ଦେଖା ଯାଉଥାଏ
ପର ମୁହୂର୍ତ୍ତରେ ଆଉ ନ ଥାଏ
ଯେପରି ମୁଁ ତମକୁ ସବୁବେଳେ
ଦିନର ଆଖିରେ ହିଁ ଦେଖି ଆସିଥିଲି
ଯଦି କୌଣସି ସମ୍ପନ୍ନ ରାତି ଶେଷରେ
ମୁଁ ତମକୁ ଦେଖିପାରେ
ପରବର୍ତ୍ତୀ ସକାଳର ସହଜତାରେ
ତମେ ଆଉ ଏକା ଭଳି ରହି ନ ଥାଅ
ରହସ୍ୟ ଓ ସ୍ୱପ୍ନ ବିହୀନ
ଯେଉଁପରି ତମେ ମତେ
ନିଜକୁ ଦେଖାଇବାକୁ ଚାହିଁଥିଲ

ଦେଖିବାର କୌଣସି ଅନୁକ୍ରମ ନାହିଁ
ପରମ୍ପରା କେବଳ ପ୍ରଜ୍ଞାର ହୋଇପାରେ
ପ୍ରବୃତ୍ତିର ନୁହେଁ
ଯାହା ସବୁ ଦେଖି ହୁଏ
କେବଳ ନିଜ ନିଜ ସମୟର ଅନୁବର୍ତ୍ତୀ
କେବଳ ନିଜର ସ୍ମୃତି
ଓ ଅନୁଭୂତିର ସ୍ୱଚ୍ଛତା ଦେଇ
ଅନ୍ୟ କାହାରି ଦୃଷ୍ଟିର ମାଧ୍ୟମରେ

ନିଜସ୍ୱ ଅନୁଭବ ଅସମ୍ଭବ
ଏପରି କୌଣସି ତୃତୀୟ ନେତ୍ର ନାହିଁ
ଯାହା ଅନ୍ଧାରକୁ ଦୂର କରିବ

ଆଖିର ଅନନ୍ୟ ଅନ୍ୱେଷଣ
ଯେତେବେଳେ ଦୂରାନ୍ତକୁ ବିସ୍ତୃତ ହୋଇଯିବ
ଦୃଷ୍ଟିପାତ ଜାଳିଦେବ
ହତବାକ ଆଶ୍ଚର୍ଯ୍ୟମାନଙ୍କୁ
ଏକ ଭୟାନକ ସତ୍ୟରେ
ଦୃଷ୍ଟିପାତ ଉଠାଇ ନେବ
ଅବସନ୍ନ ହତାଶାମାନଙ୍କୁ
ଏକ ଉତ୍‌କୀର୍ଣ୍ଣ ଆକ୍ରୋଶରେ
ହାତ ମୁଠାରେ ଏକତ୍ରିତ କରିବ
ବଶ ମାନୁ ନଥିବା ସୌନ୍ଦର୍ଯ୍ୟ ସବୁକୁ
ଫେରାଇ ଆଣିବ କାଲିର ସ୍ୱପ୍ନମାନଙ୍କୁ
ପୁଣି ଥରେ ବନ୍ଦ ଆଖି ଭିତରକୁ

ଉପଲବ୍‌ଧିର ସୀମା ନାହିଁ
ଦେଖିବାର ଶେଷ ନାହିଁ
ନା ଅନ୍ଧକାର ନା ଦିଗ୍‌ବଳୟ
ସୀମିତ କରି ପାରିବ ଆଖିର କପୋତକୁ
ଯେଉଁଠାରେ ସତ୍ତା ଅନନ୍ତ
ସେଠାରେ ଦେଖିବାର ସମ୍ଭାବନା ବି ସୀମାହୀନ
ଗୋଟିଏ ଆକାଶ ଯେଉଁଠାରେ ସରିଯାଏ
ସେଠାରୁ ଆରମ୍ଭ ହୁଏ ଅନ୍ୟ ନଭମଣ୍ଡଳ
ଆଖିର ଦୁଇଟି ତାରା ଭିତରେ ଅଟକି ଯାଏ
ଅଗଣିତ ତାରାଙ୍କ ସମେତ ଆକାଶ
ଚିନ୍ତାର ଲୋଚନରେ ସବୁ ଦେଖାଯାଏ

କିପରି ଜୀବନ ସ୍ରୋତ ଧାଇଁ ଯାଏ
ମୃତ୍ୟୁର କରାଳ ସିନ୍ଧୁକୁ

ସବୁ ଦୃଶ୍ୟମାନ ହୁଏ
ବ୍ୟତୀତ ଓ ଭବିଷ୍ୟତ
ଊର୍ଦ୍ଧ୍ୱ ଅଧଃ ପୂର୍ବାପର
ସ୍ଥାବର ଓ ଚଳମାନ ସ୍ଥିତ ଓ ସମ୍ଭାବ୍ୟ
ସମସ୍ତେ ଦେଖି ନିଅନ୍ତି ସମସ୍ତଙ୍କୁ
ପକ୍ଷୀ ଅନାଏ ବନ୍ଧୁକର ବର୍ତ୍ମ ଦେଇ
ନିଜ ପାଇଁ ଉଦ୍ଦିଷ୍ଟ ଗୁଳିକୁ
ନର୍ତ୍ତକୀ ଦେଖେ ମଧମ ପଂକ୍ତିରେ
ଅବାକ ଦର୍ଶକର ବିସ୍ମିତ ମୁହଁକୁ
ଚିତ୍ରପଟ ଭିତରୁ ଅମୂର୍ତ୍ତ ଆଖି ଅନାଏ
ହତବୁଦ୍ଧି ଦ୍ରଷ୍ଟାର ଅସ୍ଥିରତାକୁ

ବଦଳୁଥିବା ଚିତ୍ରପଟ ମଝିରେ
ଆଖି ଅଟକି ଯାଏ
ମନ ବୁଝାମଣା କରି ନିଏ ମୁହୂର୍ତ୍ତ ସହିତ
କଠୋର ସତ୍ୟ ପ୍ରାମାଣିକ ରୂପ ନିଏ
ପ୍ରତି ସେକେଣ୍ଡରେ ଚବିଶଟି ଚିତ୍ରରେ

# ଭିନ୍ନ ଭିନ୍ନ ସତ୍ୟ

ସମସ୍ତ ସ୍ପଷ୍ଟୀକରଣ ସତ୍ତ୍ୱେ
ତଥାପି ସଂଶୟ ରହିଯାଏ

ସତ୍ୟର ତିନିଟି ସ୍ତର
ପ୍ରଥମ ସତ୍ୟ ପର୍ବତ ଗହ୍ୱରରେ
ପ୍ରତିଫଳିତ ଛାୟା
ଦ୍ୱିତୀୟ ସତ୍ୟ ବାହାରେ ଥିବା ବସ୍ତୁ
ଯାହା ତାର କାରଣ
ଏବଂ ତୃତୀୟ ସତ୍ୟ ସୂର୍ଯ୍ୟ
ଯାହା ପ୍ରତିଫଳନକୁ ସମ୍ଭବ କରିଥାଏ

ସତ୍ୟର ତିନିଟି ସତ୍ତା
ପ୍ରଥମ ପ୍ରତିଭାଷିକ
ଯାହାର ଅବସ୍ଥିତି କେବଳ
ବାହ୍ୟ ରୂପର ସାମ୍ରାଜ୍ୟରେ
ଦ୍ୱିତୀୟ ବ୍ୟାବହାରିକ
ଦୈନନ୍ଦିନ ଉପଯୋଗର ଆଶୟ
ଏବଂ ଶେଷ ପରମାର୍ଥିକ
ଯାହା ସର୍ବୋଚ୍ଚ ବାସ୍ତବିକତା

କିନ୍ତୁ କେଉଁଟି ବାସ୍ତବିକ ସତ୍ୟ
କୌଣସି ଅଲକ୍ଷିତ ଅପରାହ୍ନରେ
ମୁଁ ତମକୁ ଯାହା କହିବା ପାଇଁ ଭାବିଥିଲି
ଅଥବା ତମର ଉପସ୍ଥିତିରେ ଅପ୍ରସ୍ତୁତ
ଯେଉଁ ଶବ୍ଦ ସବୁ ମୋ ଓଠରୁ ନିଃସୃତ ହେଲା
ଅଥବା ସେ ସବୁର ସରଳ ଅର୍ଥ
ବୁଝିବା ପାଇଁ ଅସ୍ୱୀକାର କରି
ତମେ ସେମାନଙ୍କର ଯେଉଁ ବ୍ୟାଖ୍ୟା ଦେଇଥିଲ

ଆଉ କିଛି ବି ରହିଲା ନାହିଁ
ଅପରାହ୍ନ ମଉଳିଗଲା ପରେ

ଅନ୍ଧାରର ଅଚିହ୍ନା ହାତ ଆସି
ଯେତେବେଳେ ସବୁ ଲିଭାଇ ଦେଲା
ଗିରି କନ୍ଦର ଓ ଛାୟା ସମେତ
ସମସ୍ତ ସୂର୍ଯ୍ୟାଲୋକକୁ
ଶବ୍ଦ ଓ ସତ୍ୟ ସବୁକୁ
ସଂପୂର୍ଣ୍ଣ ଅର୍ଥହୀନ କରି ଦେଇ

ପ୍ରତିଧ୍ୱନି ଲିଭିଯାଏ ନିସ୍ତବ୍ଧତାରେ
ସୂର୍ଯ୍ୟ ବାଧ୍ୟ ହୁଏ
ଅନ୍ଧାର ଭିତରେ ଆଶ୍ରୟ ନେବାକୁ
(ଆଲୋକ ଅନ୍ଧାର ଉପଲକ୍ଷ ମାତ୍ର
ବସ୍ତୁ ଯେଉଁପରି ନିଜର ଛାଇରୁ ଅବିଚ୍ଛେଦ୍ୟ
ଏବଂ ଶବ୍ଦ ନିସ୍ତବ୍‌ଧତାର ଅଂଶ)
ପୁରାତନ କୋଳାହଳମାନ
ପୁନର୍ବାର ଶବ୍ଦ ହୋଇ ଜୀବନ୍ୟାସ ନିଅନ୍ତି
ଦର୍ପଣରୁ ପ୍ରତିବିମ୍ବ ଓହ୍ଲାଇ ଆସି
ମୁହଁରେ ବୋଳିଦିଏ ସମୟର ପାଣ୍ଡୁର ରଙ୍ଗ
ଇତିହାସ ଗର୍ଭରୁ ପ୍ରତିଧ୍ୱନି ଫେରିଆସେ
ଛିନଛତ୍ର କରିଯାଏ ପୃଥିବୀର ରାଜଧାନୀମାନଙ୍କୁ

ଉପଲବ୍‌ଧିର ଉଭୟ ପାର୍ଶ୍ୱରେ
ନିରୁକ୍ତ ଶବ୍ଦରେ ନିର୍ମିତ
ଏକ ସଂପୂର୍ଣ୍ଣ ବିଶ୍ୱ ବ୍ରହ୍ମାଣ୍ଡ
ଏବଂ ତାର ନିଜସ୍ୱ ଆକାଶ ସମୁଦ୍ର ମେଘ
ନଭମଣ୍ଡଳ ଆବର୍ତ୍ତନ ଓ ଋତୁଚକ୍ର
ଏକାଧାରରେ ଦିବାରାତ୍ରି ଶୀତ ବସନ୍ତ
ଜନ୍ମ ମୃତ୍ୟୁ ସୃଷ୍ଟି ଓ ବିଲୟ
ପୁଣି ସ୍ୱପ୍ନ ସମ୍ଭାବନା ପୁନର୍ଜନ୍ମର ଦାବୀ
ସମସ୍ତ ଶବ୍ଦରୁ ଉଦ୍ଭବ

ଯେତେ ସବୁ ଅବ୍ୟକ୍ତ ଓ ଅଭାବିତ
ସତ୍ୟାସତ୍ୟ ସମୟ ଓ ନିଜେ ଶବ୍ଦ

ତଥାପି ଶୋଚନା ରହିଯାଏ
ମୁଁ ଅନାଇ ରହେ ଆମ ମଝିରେ ଥିବା
ଅପ୍ରତିହତ ଅନ୍ତରାଳକୁ
ଯାହା ସାଧ୍ୟ ହୋଇ ପାରିଲା ନାହିଁ
ଶବ୍ଦମାନଙ୍କର ପ୍ରତାରଣା ମଝିରେ
ତଥାପି ସଂଶୟ ରହିଯାଏ
ବାସ୍ତବିକ ସତ୍ୟ କଣ
ଯଦି ସୂର୍ଯ୍ୟ ସମୁଦ୍ରକୁ ଜାଳି ଦେଇପାରେ
ସମୁଦ୍ର ଗର୍ଭରେ ନିଶ୍ଚିହ୍ନ ହେବା ପୂର୍ବରୁ

ବିନ୍ଦୁ ବିନ୍ଦୁ ପକ୍ଷୀ ଲିଭାଇ ଦିଅନ୍ତି
ଅବ୍ୟାହତ ଆକାଶର ତାରାମଣ୍ଡଳକୁ
ଲହରୀ ଫେରାଇ ଦିଏ
ଅନୁଦାର ସ୍ୱରମାନଙ୍କୁ ନେଇ
ସାୟାହ୍ନର ଅଗମ୍ୟ ଅନ୍ଧକାରକୁ
ଅଶ୍ୱମେଧର ଘୋଡ଼ା ଲଙ୍ଘିଯାଏ
ଇନ୍ଦ୍ରଧନୁର ସମ୍ଭ୍ରାନ୍ତ ସେତୁକୁ

ତଥାପି ମୀମାଂସା ବାକି ରହିଯାଏ
ଉପଲବ୍ଧିର ବିଭିନ୍ନ ସ୍ତରମାନଙ୍କରେ
ପକ୍ଷୀର ଡେଣା ଚଢ଼ି ସୂର୍ଯ୍ୟ ଉଠିଯାଏ
ଆଲୋକର ଶେଷ ପର୍ଯ୍ୟାୟକୁ
ପର୍ବତର ଗହ୍ୱରରୁ ଛାଇ ଫେରି ଆସି
ମିଶିଯାଏ ବାହାରେ ଥିବା
ନିଜର ମୌଳିକ ସତ୍ତା ସହିତ

ଦିନ ଯାକର ଦୁଃଖକୁ
ଅନୁଶୀଳନ କରିବା ବେଳେ
ଆଉ କିଛି ରହିଯାଏ ନାହିଁ
ସୂର୍ଯ୍ୟ ନାହିଁ ସମୁଦ୍ର ନାହିଁ
ପର୍ବତ ନାହିଁ ଆକାଶ ନାହିଁ
ଶୂନ୍ୟ ନାହିଁ ଶବ୍ଦ ନାହିଁ
ପକ୍ଷୀ ନାହିଁ ଅନ୍ଧକାର ନାହିଁ

ସ୍ୱପ୍ନର ମାୟାଦର୍ପଣ ଚମକି ଉଠେ
କେବଳ ଏକ ଅବ୍ୟକ୍ତ କ୍ଷୋଭରେ
ତିନିଟି ପ୍ରକାର ସତ୍ୟର
ତିନୋଟି ବିଭିନ୍ନ ସତ୍ତା
ସମସ୍ତେ ନିଶ୍ଚିହ୍ନ ହୋଇଯାନ୍ତି
ଆଖି ବନ୍ଦ କରି ନିଜ ଭିତରେ
ସଂପୂର୍ଣ୍ଣ ହୋଇଗଲେ

# ଗୃହ ପ୍ରବେଶ

କେହି ବି ଅପେକ୍ଷାରତ ନାହାନ୍ତି
ସଂପର୍କର ଅକ୍ଷାଂଶ ଦାଘ୍ରିମା
ଓଲଟପାଲଟ ହୋଇଗଲେ
ସବୁ ପୁଣି ବଦଳିଯାଏ
ସମସ୍ତେ ଅଚିହ୍ନା ହୋଇ ଯାନ୍ତି
ଅପରାହ୍ନ ରାସ୍ତା ଲ୍ୟାମ୍ପପୋଷ୍ଟ
କଫି ହାଉସ ଶୋଭାଯାତ୍ରା ଚୁପଚାପ କଥା
ପ୍ରାର୍ଥନା କ୍ରୋଧ ମନୋମାଳିନ୍ୟ

ଏବଂ
ସାକ୍ଷାତକାରର ସ୍ଥିରୀକୃତ ସମୟ

ରାସ୍ତା ବାଟ ଭୁଲି ଚାଲିଯାଏ
ଗୋଟିଏ ଅଜ୍ଞାତ ସ୍ଥାନରୁ
ଆଉ ଗୋଟିଏ ଅଜ୍ଞାତ ସ୍ଥାନକୁ

ଷ୍ଟେସନରେ ଅପେକ୍ଷା ହିଁ ସାର
ଦୂରାନ୍ତରୁ ଆସିଥିବା ରେଳଗାଡ଼ିରୁ
କେହି ଓହ୍ଲାଏ ନାହିଁ
ଆଖିର ଆରପାରିକୁ ଚାଲିଯାଏ
ଗୋଟିଏ ପରେ ଆଉ ଗୋଟିଏ ଗାଡ଼ି
ସଂଜବେଳ ଯେତେବେଳେ
ଚାରିଆଡ଼କୁ ସଂପୂର୍ଣ୍ଣ ଆବୃତ କରିଦିଏ
ହସପିଟାଲର ଚାଦର ଭଳି
ସାରା ପ୍ଲାଟଫର୍ମ ଏକ
ଅମୂର୍ତ୍ତ ଚିତ୍ରପଟ ହୋଇଯାଏ
ଯାହା ଭିତରୁ କୌଣସି
ନିର୍ଦ୍ଦିଷ୍ଟ ମୁହଁକୁ ଖୋଜିବା ସମ୍ଭବ ନୁହେଁ

ତା ପରେ ପକ୍ଷୀମାନଙ୍କର କଳରୋଳ
ଆଉ ମୁକ୍ତିର ବାର୍ତ୍ତା ଆଣେ ନାହିଁ
ସଂଜର ପଥଭ୍ରଷ୍ଟ ପବନ
ସ୍ମୃତିକୁ ଉତ୍ତେଜିତ କରେ ନାହିଁ
ପାର୍କର ବେଞ୍ଚ ଘାସଫୁଲ ସହିତ
ବାର୍ତ୍ତାଳାପ ବନ୍ଦ କରିଦିଏ
ଅଭିବାଦନ ସବୁ
ହତୋତ୍ସାହ ହୋଇ ଚାଲିଯାନ୍ତି
ରାସ୍ତାର ଦୂରତ୍ୱରେ ଲିଭି ଯାଇଥିବା

ବନ୍ଦ ଘର ଭିତରକୁ

ପୁରୋହିତ ପଢ଼ି ଚାଲେ
ସୃଜନ ଓ ସଂହାରର ସ୍ତୋତ୍ର
ଯଦିଓ ସେ ଜାଣେ ଯେ
ନିଜର ପ୍ରୟୋଜନ ସମୟରେ
ସେ ମନ୍ତ୍ର ମନେ ପଡ଼ିବ ନାହିଁ

ଶୋଭାଯାତ୍ରା ଆସେ
ପୃଥିବୀକୁ ଅବ୍ୟବସ୍ଥିତ କରିଦେବାର
ମହତ ଉଦ୍ଦେଶ୍ୟମାନ ନେଇ
ଯଦିଓ ଏକଥା ଜଣା ଯେ
ଟ୍ରାଫିକ କେବଳ ଲାଲ
ଓ ସବୁଜ ଆଲୋକର ବଶବର୍ତ୍ତୀ
ଭୁଲ ଠିକଣାର ଚିଠି ହାତରେ ଧରି
ଡାକବାଲା ପଚାରି ପଚାରି ଯାଏ
ଘରକୁ ଘରକୁ ଘରକୁ
ଯଦିଓ ସବୁ ଘର ଖାଲି

ଟ୍ରେନ ବାହନ ମାତ୍ର ଲକ୍ଷ୍ୟସ୍ଥଳ ନୁହେଁ
ରାସ୍ତା ଉପାୟ ମାତ୍ର ଉପଲବ୍‌ଧି ନୁହେଁ
ଚିଠି ଏକ ସାଧନ ମାତ୍ର ସିଦ୍ଧି ନୁହେଁ

(ପାଣି ଭିତରେ ବୁଡ଼ି ରହିଥିବା କଳସ
ପାଣିକୁ ଧରି ରଖି ନଥାଏ
କାରଣ ତାର ଭିତର ଓ ବାହାର
ସବୁଆଡେ ଜଳସ୍ରୋତ
ଏପରି ଘର

କିପରି କାହାକୁ ଧରି ରଖି ପାରିବ
ଯାହାର ଭିତର ଓ ବାହାର ସମସ୍ତ ଶୂନ୍ୟ)

ମନ୍ଦିର ଭିତରକୁ ଯାଇଥିବା ଯାତ୍ରୀମାନେ
ଆଉ ଫେରି ଆସନ୍ତି ନାହିଁ
ଷ୍ଟେସନର ଫାଟକରେ ତାଲା ବନ୍ଦ ହୁଏ
ଟ୍ରାଫିକର ସ୍ରୋତ ଶୁଖିଯାଏ
ଖୋଲା ଝରକାକୁ ଅନାଇ
ଲ୍ୟାମ୍ପପୋଷ୍ଟ ବାହୁନେ
ବିନ୍ଦୁ ବିନ୍ଦୁ ବର୍ଷା ଟୁପଟାପ ପଡ଼େ
ମୃତ ଛାଇମାନଙ୍କ ଉପରେ

କେହି ବି ଅପେକ୍ଷାରେ ନାହାନ୍ତି
ତଥାପି ଏକାକୀ ଲୋକଟି ଫେରି ଆସେ
ଶୂନଶାନ ରାସ୍ତା ଉପର ଦେଇ
ଅଧା ରାତି ବିତିଗଲେ

## ଦୁଃଖ କ'ଣ

ସୁଖର ସଂଜ୍ଞା ଜଣାଥାଏ
ତଥାପି ଦୁଃଖ ରହିଯାଏ

ଭାଗ୍ୟକୁ ମାନିନେବା ପରେ ବି
ଦ୍ୟୂତକ୍ରୀଡ଼ାରେ ଭାଗ ନେବାକୁ ହୁଏ
ପରିଣାମ ଜଣାଥାଇ
ଯୁଦ୍ଧ ଘୋଷଣା କରିବାକୁ ହୁଏ

ଉପଲବ୍ଧି ହିଁ ଦୁଃଖ
ପ୍ରଯତ୍ନ ହିଁ ଦୁଃଖ

ଉତ୍ତମର୍ଣ୍ଣ ଓ ଅଧମର୍ଣ୍ଣର ସମ୍ପର୍କ
ବିଚ୍ଛିନ୍ନ ହୋଇଯିବା ପରେ ବି
ଋଣ ସୁଝିବାକୁ ହୁଏ
ଯଜ୍ଞ ଯାଗରେ ଦେବତାଙ୍କ
ବେଦର ସ୍ୱାଧ୍ୟାୟରେ ଋଷିଙ୍କ
ଶ୍ରାଦ୍ଧରେ ପିତର ଦାନରେ ବ୍ରାହ୍ମଣ
ଓ ସତ୍କାରରେ ଅତିଥିଙ୍କ
ଋଣରୁ ମୁକ୍ତି ଖୋଜିବାକୁ ହୁଏ
ଦାୟିତ୍ୱ ହିଁ ଦୁଃଖ

ଅନୁଚିତ ଆଦେଶକୁ ମାନି
ମୁଖା ପିନ୍ଧିବାକୁ ହୁଏ
କ୍ଲୀବତ୍ୱ ପରିଗ୍ରହ କରି
ଦାସତ୍ୱ ସ୍ୱୀକାର କରିବାକୁ ହୁଏ
କେବଳ ବର୍ଷେ ଅବଧିର ସର୍ତ୍ତ
କିନ୍ତୁ ସବୁ ସ୍ୱଭାବସିଦ୍ଧ ହୋଇଯାଏ
ତା ପରେ ପୁଣି ଯିବାକୁ ହୁଏ
ସହଜ ଅଜ୍ଞାତବାସ ଛାଡ଼ି
କଠୋର ଯୁଦ୍ଧ ଭୂମିକୁ
ଅଭ୍ୟାସ ହିଁ ଦୁଃଖ

କେହି ଆସେ ନାହିଁ
ସମୟ କଟିଯାଏ ପଳ ଓ ନିମେଷରେ
ଦ୍ରବ୍ୟଯଜ୍ଞ ତପୋଯଜ୍ଞ
ଯୋଗଯଜ୍ଞ ଓ ଜ୍ଞାନଯଜ୍ଞମାନଙ୍କରେ
ନିଜକୁ ନିବିଷ୍ଟ କରି

ଉଦ୍‌ବିଗ୍ନ ରହିବାକୁ ହୁଏ
କାହାରି ଆସିବା ନ ଆସିବା ନିର୍ବିଶେଷରେ
ଅପେକ୍ଷା ହିଁ ଦୁଃଖ

ତୃଷା ବଢ଼ି ଚାଲେ
ମାୟା ସରୋବରର ସ୍ୱଚ୍ଛ ଜଳରାଶି
ସମିଧାରେ ପ୍ରଜ୍ୱଳିତ ଅଗ୍ନି ଭଳି
ଉଦ୍ଦୀପ୍ତ ହେଉଥାଏ
ପ୍ରଶମନର କୌଣସି ସମ୍ଭାବନା ନାହିଁ
ମୃତ୍ୟୁ ସେଠାରେ ଅପେକ୍ଷା କରି ରହିଥାଏ
ଅନେକ ଅବାନ୍ତର ପ୍ରଶ୍ନର ଅର୍ଗଳୀ ନେଇ

ଯାହାର ଉତ୍ତର ଖୋଜିବାକୁ ହୁଏ
ଜିଜ୍ଞାସା ହିଁ ଦୁଃଖ

## ଦିନଚର୍ଯ୍ୟା

ଜହ୍ନର କୌଣସି ଅପରାଧ ନଥିଲା
ତଥାପି ସକାଳର ଅଭିଯୋଗ ପତ୍ରକୁ
ସବିନୟ ସମ୍ମାନ ଦେଖାଇ
ସେ ନିଜକୁ ପ୍ରତ୍ୟାହାର କରି ନେଲା
ଜଳନ୍ତା ସିଂହାସନ ଉପରେ
ସୂର୍ଯ୍ୟର ରୋଷକଷାୟିତ ଦୃଷ୍ଟି
ନିସ୍ତବ୍ଧ କରିଦେଲା
ଛାୟାପଥର ଛକମାନଙ୍କରେ
ପ୍ରତିବାଦର ନିରୁଦ୍ଧ କୋଳାହଳକୁ

ସୁନାର ସୁଦୃଶ୍ୟ ହରିଣ
ଆଗରେ ଆସି ଠିଆ ହୋଇଥିଲା
ପୁଣି ସ୍ୱପ୍ନ ଭିତରକୁ ଧାଇଁଗଲା
ବିଛଣାରୁ ଓହ୍ଲାଇ
ତଳକୁ ପାଦ ପକାଇଲେ ଲକ୍ଷ୍ମଣ ରେଖା
ତା ପରେ କେବଳ ଦିନ ସାରା
ଏକ ସ୍ୱର୍ଣ୍ଣାଭ ସାଦୃଶ୍ୟ ପଛରେ ଧାଇଁବା

ଜହ୍ନ ସମସ୍ତଙ୍କ ଅଲକ୍ଷ୍ୟରେ
ବିଦ୍ରୋହର ପ୍ରସ୍ତୁତି କରି
ନିର୍ବାଣପ୍ରାୟ ତାରାଙ୍କ ହାତରେ ବାଣ୍ଟିଦେଲା
ଲକ୍ଷ ଲକ୍ଷ ଅଗ୍ନିଗର୍ଭ ପ୍ରଚାରପତ୍ର

ରାସ୍ତାମାନଙ୍କରେ ଭିଡ଼ ବଢ଼େ
ଦୋକାନରେ ଦରଦାମ କଷାକଷି ହୁଏ
ଆଖିରେ ଦୁରନ୍ତ ସ୍ୱପ୍ନ ନେଇ
ପିଲାମାନେ ସ୍କୁଲ ଭିତରକୁ ପଶନ୍ତି
ଝିଅଟି ସଜାଡ଼ି ନିଏ ଅସ୍ତବ୍ୟସ୍ତ
ବାଳ ଭିତରେ କାହାର ପ୍ରିୟ ଫୁଲଟି
ସିନେମା ଘରର କ୍ୟୁ ଲମ୍ବିଯାଏ
ଭିଖାରୀର ଟିଣରେ ପଡ଼େ ଆଉ କିଛି ପଇସା
ଫାଇଲର ସ୍ତୂପ ଘୁଞ୍ଚିଯାଏ
ଟେବୁଲର ବାଁ ପାଖରୁ ଡାହାଣକୁ

ନିର୍ବାଚନରେ ଥାଇ ଜହ୍ନ ସଂଗ୍ରହ କରେ
ବିଭିନ୍ନ ପ୍ରାନ୍ତରୁ
ସମର୍ଥନ ସୂଚକ ସ୍ୱାକ୍ଷର
ଏବଂ ସୁଯୋଗ ଅପେକ୍ଷାରେ ରହେ

ହରିଣର ସ୍ୱପ୍ନ ଲମ୍ଫ ଦିଏ

ଗୋଟିଏ ଦୂରତ୍ୱରୁ ଅନ୍ୟ ଏକ ଦୂରତ୍ୱକୁ
ଲକ୍ଷ୍ମଣରେଖା ଘୁଞ୍ଚି ଘୁଞ୍ଚି ଯାଏ
ପବନରେ ପ୍ରତିକୃତ ହୋଇଯାଏ
ଚିତ୍କାର ସବୁ

ଦୋକାନରେ ଭିଡ଼ ବଢ଼େ
ସମାବର୍ତ୍ତନ ମଣ୍ଡପରୁ ଛାତ୍ରମାନେ
କାଗଜର ଚିଠା ନେଇ ଫେରନ୍ତି
କବରୀରେ ଫୁଲ ମଉଳି ଯାଏ
ଜିନିଷପତ୍ରର ଦାମ ବଢ଼େ
ଟିଣ ଖାଲି ପଡ଼ି ରହିଥାଏ
ମ୍ୟାଟିନୀ ଶୋ ଭାଙ୍ଗେ

ସବୁ ଶାସ୍ତ୍ରାନୁମୋଦିତ ଓ ଜ୍ଞାତ
ବନବାସ ସୀତାହରଣ ଲଙ୍କାଦହନ
ରାବଣର ମୃତ୍ୟୁ ଅଗ୍ନିପରୀକ୍ଷା ଇତ୍ୟାଦି
ଝିଅଟି ଜାଣେ କେହି ଆସିବେ ନାହିଁ
ତଥାପି ସେ ଅଧୀର ହୋଇ
ଆଉ ଥରେ ଫୁଲଟିକୁ ଛୁଏଁ
ଦର୍ଶକ ଜାଣେ ଖଳନାୟକର ମୃତ୍ୟୁ ନିଶ୍ଚିତ
ତଥାପି ସେ ଚଉକିର ହାତକୁ
ଦୃଢ଼ ମୁଷ୍ଟିରେ ଧରି ରଖେ
ଶିକାରୀ ଜାଣେ ହରିଣ ନିରୁଦ୍ଦିଷ୍ଟ
ତଥାପି ସେ ଆହୁରି ଶର ଖୋଜେ
ମୀମାଂସାର ସମ୍ଭାବନା ନାହିଁ
ତଥାପି ସେ ଫାଇଲକୁ ଘୁଞ୍ଚାଏ
ଅଧିକ ଅନ୍ତରଙ୍ଗ ଉଦ୍‌ବେଗରେ

ଜହ୍ନ ଜାଣେ

ଏ ଏକ ଆହ୍ନିକ ରୀତି
ତେବେ ବି ଆସେ ବିଜୟୀ ତାରାବାହିନୀ ନେଇ
ଜୟଯାତ୍ରାର ଅଗ୍ରଭାଗରେ
ଜ୍ୟୋତିମଣ୍ଡଳର ଉଲ୍ଲସିତ ମୁକୁଟ ପିନ୍ଧି
ନକ୍ଷତ୍ରପୁଞ୍ଜର ଜୈତ୍ର ପତାକା ଉଡ଼ାଇ

ସୂର୍ଯ୍ୟ ପଛଘୁଞ୍ଚା ଦେଇ ଫେରିଯାଏ
ହରିଣ ଠିଆ ହୋଇ ପଛକୁ ଅନାଏ
ନୂଆ ରେଖାମାନ ଟଣାହୁଏ
କୋଳାହଳ ବନ୍ଦ ହୁଏ

ସ୍ୱର୍ଣ୍ଣାଭ ସ୍ୱପ୍ନ ପଛରେ
ନିର୍ଦ୍ଦିଷ୍ଟ କ୍ରମରେ ଧାଉଁଥିବା
ପ୍ରାତ୍ୟହିକ ପର୍ବମାନଙ୍କୁ
ସମୟ ନେଇ ସଜାଇ ରଖିଦିଏ
ଶ୍ୱେତବର୍ଣ୍ଣ ବିଛଣା ଉପରେ
ଅନ୍ୟ ଏକ ଅବଧି ପର୍ଯ୍ୟନ୍ତ

## ଜନାନ୍ତିକ

ଏକ ଅନିର୍ଦ୍ଦିଷ୍ଟ ଦୂରତ୍ୱରୁ
ତମେ ଯେତେବେଳେ ମୋର ନାଁ ଧରି ଡାକ
ମୁଁ ଲୋକ ଗହଳିରେ ବୁଲି ପଛକୁ ଅନାଏ
କିନ୍ତୁ ତମକୁ ଚିହ୍ନିବା କିପରି ସମ୍ଭବ ହେବ

ତମେ ଯଦି ଏପରି ଆସ
ମୋର କଳ୍ପନା ବହିର୍ଭୂତ ରୂପ ନେଇ
ଅତ୍ୟନ୍ତ ଆଶ୍ଚର୍ଯ୍ୟ ସମୟମାନଙ୍କରେ
ତମର ବୈଦେହୀ ସ୍ୱରକୁ
ଇତସ୍ତତଃ ପ୍ରକ୍ଷେପିତ କରି

(ଏ କଣ କେବଳ ଏକ ଶାବ୍ଦିକ ଭ୍ରମ
ଯାହା ମୋର ନିଜର
ନିରୁଦ୍ଧ ନୀରବତାରୁ ଉଦ୍ଭୁତ
ତମେ କଣ ଏପରି ଅଚିହ୍ନା ମୁହଁ
ଯାହା କେବଳ ମୋର କଳ୍ପନାପ୍ରସୂତ)

ଜନାକୀର୍ଣ୍ଣ ଛକକୁ ଅନାଇଲେ
ସବୁ ବିପର୍ଯ୍ୟସ୍ତ ହୋଇଯାଏ
ଅଦମ୍ୟ ଅନ୍ଧାର ମାଡି ଆସେ
ବତୀ ସବୁ ଲିଭିଯାଏ
ଟେଲିଫୋନ ତାର ଛିଣ୍ଡିଯାଏ
କାରଖାନା ଘରେ ତାଲା ପଡ଼େ
ଖବରକାଗଜ ଛପା ବନ୍ଦ ହୁଏ
ରେଳ ଲାଇନରେ କଳଙ୍କି ଲାଗିଯାଏ
ବହିର କାଗଜ ଜୀର୍ଣ୍ଣ ହୋଇ ଝଡ଼ିପଡ଼େ
କଙ୍କାଳ ଉପରୁ ଖସିପଡେ
ରକ୍ତ ମାଂସ ସ୍ନାୟୁର ଖୋଳ
ବାଲିଚର ମାଡ଼ିଆସେ
କ୍ଷୟିଷ୍ଣୁ ରାସ୍ତା ଉପରକୁ
ଭଙ୍ଗା କାନ୍ଥ ନଷ୍ଟବିନଷ୍ଟ ଚଟାଣ
ପତନୋନ୍ମୁଖୀ ମନ୍ଦିରର ଚୂଡ଼ା ନେଇ
ସହର ହୋଇଯାଏ ଧ୍ୱଂସାବଶେଷ

କିନ୍ତୁ ମୁଁ ସେ ସମ୍ବୋଧନର
ଉତ୍ତର ନ ଦେଇ ଫେରିଯିବି କିପରି
ଯଦିଓ ପ୍ରତିଧ୍ୱନିହୀନ ଅପନ୍ତରାରେ
ଶବ୍ଦ ସଞ୍ଚାର ଅସମ୍ଭବ
ମୁଁ କିପରି ମୁକ୍ତି ପାଇବି ମୋର
କଠୋର ଅଭିଶାପରୁ
ମୋର ଉଦ୍‌ବେଗମାନ
ଓଠରୁ ନିଃସୃତ ନ ହେବା ପର୍ଯ୍ୟନ୍ତ

ମୁଁ ତେଣୁ ତମକୁ ସ୍ମରଣ କରିବି
ଆମର ଅତୀତର ଦ୍ୱାହି ଦେଇ
ତମକୁ ପ୍ରତ୍ୟାନୟନ କରିବି
ମୋର ବ୍ୟକ୍ତିଗତ ମନ୍ତ୍ରପାଠରେ
ତମର ନାଁକୁ ବାରମ୍ବାର ଉଚ୍ଚାରଣ କରିବି
ମୋର ଆହ୍ନିକ ସଂସ୍କାରମାନଙ୍କରେ

ତୋଳି ଯାଇଥିବା ଫୁଲ ସବୁ
ଆସି ଖଞ୍ଜିଯିବେ ପ୍ରତିଟି ଡାଳରେ
ପତ୍ରହୀନ ଶାଖା ପ୍ରଶାଖାରେ ଛାଇଯିବ
ବର୍ଷାର ସବୁଜ ସ୍ମୃତି
କଳଙ୍କ ଓ ଶିଉଳି ଝଡ଼ି ପଡ଼ିବ
ପୁଣି ପଲସ୍ତରା ଲାଗିଯିବ କାନ୍ଥରେ
ଅଳସକନ୍ୟାର ହାତ ଯୋଡ଼ିଯିବ
ଲମ୍ଫ ଦେଇ ବାଘ ଫେରିଯିବ
ଚମତ୍କାର ଖୋଳ ଭିତରକୁ
ଅଦେଖା ହାତ ଆସି ବୋଳିଦେବ
ଆକାଶରେ ଇନ୍ଦ୍ରଧନୁର ରଙ୍ଗ

ଛକ ପୁଣି ଜନାରଣ୍ୟ ହୋଇଯିବ

ଦୂରର ଦ୍ୱୀପରେ ସ୍ୱର୍ଣ୍ଣାଭ ସକାଳ ହେବ
ନିରବୟବ ସମୟ ଭିତରୁ
ଜୀବନ ମୃତ୍ୟୁର ସୀମାରେଖା ଲଙ୍ଘି
ମୁଁ ମୋର ସତର୍କ ପ୍ରତ୍ୟୁତ୍ତରରେ
ଅଶରୀରୀ ପ୍ରତିଶବ୍ଦ ଶୁଣି ପାରିବି

(ଅସତ୍ୟ ସହର କଣ ବାସ୍ତବରେ
ଧ୍ୱସ୍ତ ହୋଇ ପୁଣି ଗଢ଼ି ଯାଏ
କଳ୍ପନା ତିଆରି କରେ
ଅନ୍ୟ ଏକ କଳ୍ପନାକୁ
ନୀରବତାର ପ୍ରତିଧ୍ୱନି ଫେରି ଆସେ
ଅନ୍ୟ ଏକ ନୀରବତା ହୋଇ
ପ୍ରତ୍ୟେକ ଦୀର୍ଘ ନିଶ୍ୱାସ ତିଆରି କରେ
ଏକ ନୂଆ ନିସ୍ତବ୍ଧତାର ଭୂମିକା)

ତମ ସହିତ ବାର୍ତ୍ତାଳାପର ଭଙ୍ଗାଗଢ଼ା ଚାଲିଥାଏ
ଏବଂ ଏକ ଅଜଣା ସଂଶୟ ଆସି
ମୋର ଭବିଷ୍ୟତକୁ ଆଚ୍ଛାଦିତ କରିଦିଏ
ଅନ୍ୟ ଏକ ଧ୍ୱଂସାବଶେଷରେ

## ଶବ୍ଦଭେଦ

ସବୁ ମିଛ ସକାଳ ଓ ସମ୍ବର୍ଦ୍ଧନା
ପ୍ରେମ ରକ୍ତ ଦୂରତ୍ୱ ଓ ଆତ୍ମବିଶ୍ୱାସ
ଆଖିରୁ ଅନ୍ଧପୁତୁଳି ଖୋଲି ନେଲେ
ସବୁଠାରୁ ପ୍ରିୟ ଲୋକ ହିଁ
ଧ୍ୱଂସ ପାଇଯାଏ

ଆକାଶର ଅନନ୍ୟ ଅଙ୍ଗରାଗରେ
ଇନ୍ଦ୍ରଧନୁ ଚମକେ ଓ ଲିଭେ
ସମୟ ଅତିରେକ ବ୍ୟଥା ସବୁ
ଦେହ ଉପରୁ ଓହ୍ଲାଇ ଯାନ୍ତି
ମହାସମ୍ଭବା ଭୂମି ଉପରେ ବର୍ଷିଯାଏ
ନକ୍ଷତ୍ର ମଣ୍ଡଳର ଆଶୀର୍ବାଦ
କିନ୍ତୁ ଦୃଷ୍ଟି ଫେରିପାଇବା ବେଳେ
ଦୃଶ୍ୟ ସବୁ ଅନ୍ତର୍ହିତ ହୋଇ ଯାଇଥାନ୍ତି

ନିଜ ଭିତରକୁ ଅନାଇଲେ
ସବୁ ଅନ୍ଧାରରେ ଆଚ୍ଛାଦିତ
ସୂର୍ଯ୍ୟରଶ୍ମିର ଆଗ୍ରହ ଲୁଚି ଯାଇଥାଏ
ଶୂନ୍ୟର ଅବ୍ୟକ୍ତ ଅପବ୍ୟୟରେ
ଜହ୍ନର କୌଣସି ବିବରଣୀ ନାହିଁ
ରାତି କେବଳ ଧାରାଶ୍ରାବଣର ବୃନ୍ଦଗାନ
ଦୃଷ୍ଟିର ସନ୍ଧାନୀ ଶ୍ୟେନ ଧକ୍କା ଖାଏ
ଅନ୍ଧକାରର ଅମୂର୍ତ୍ତ ପ୍ରାଚୀରରେ
ଏଠାରେ ବର୍ଣ୍ଣଅନ୍ଧତ୍ୱରେ କିଛି ଆସେ ଯାଏ ନାହିଁ
କାରଣ ଅନ୍ତର୍ନିହିତ ତତ୍ତ୍ୱମାନଙ୍କରୁ
ସବୁ ରଙ୍ଗ ଲିଭି ଯାଇଥାଏ

ସମୟ ସବୁକିଛି ବିଭକ୍ତ କରିଦିଏ
ସମସ୍ତ ପାରସ୍ପରିକତାକୁ ଫିଙ୍ଗିଦିଏ
ସେତୁହୀନ ଦୁଇଟି କୂଳରେ
ସେଠାରେ କେହି କାହାରି ଅସ୍ତିତ୍ୱର ସର୍ତ୍ତ ନୁହେଁ
ସମସ୍ତେ ଦୃଷ୍ଟିର ବାହାରେ
ଆଖି ଆଗରେ କେହି କେଉଁଠାରେ ନାହିଁ
ଶୋକସନ୍ତାପଶୂନ୍ୟ ଅଶୋକବନରେ
କେବଳ ବିଦେହୀ କାନ୍ଦଣା ହିଁ

ଘୂରି ବୁଲୁଥାଏ

## ଯକ୍ଷ ପ୍ରଶ୍ନ

ଅନେକ ଜିଜ୍ଞାସାର କୌଣସି
ଅନ୍ତିମ ଉପଲକ୍ଷ ନ ଥାଏ
ପ୍ରଶ୍ନ ହିଁ ନିଜର ଉଦ୍ଦେଶ୍ୟ
ତୃଷାର୍ତ୍ତ ଲୋକକୁ ଜାଣିବାକୁ ହୁଏ
ସ୍ୱର୍ଗରୁ ଉଚ୍ଚତର କିଏ ପବନରୁ ଚଞ୍ଚଳ କିଏ
ପଥିକର ବନ୍ଧୁ କିଏ ସୁଖର ସଂଜ୍ଞା କଣ

ତୃଷାର୍ତ୍ତ ଲୋକ ଜାଣେ
ଜିଜ୍ଞାସା ହିଁ ଜୀବନ ମୃତ୍ୟୁର ସୀମାରେଖା
କେବଳ ମୁଖଶାଳାର ପଥରକୁ ଜଣା
ଶିଳ୍ପ ଶାସ୍ତ୍ରର ମାହାତ୍ମ୍ୟ
ବାସକସଜ୍ଜା ହାତର ଦର୍ପଣ ହିଁ ଜାଣେ
ଛଳନାର ଆରମ୍ଭ କେଉଁଠାରେ
ତୃଷାର ନିବୃତ୍ତି ପରେ
ଆଉ ଜାଣି ହୁଏ ନାହିଁ
ସୂର୍ଯ୍ୟକୁ ପ୍ରତିଦିନ ଜ୍ୟୋତି ଦିଏ କିଏ
ପୃଥିବୀର ମହାନତମ ବିସ୍ମୟ କଣ
କିଏ ମୃତ୍ୟୁରେ ସାହଚର୍ଯ୍ୟ ଦିଏ

ବିସ୍ମୟ ବିମୂଢ଼ ଭକ୍ତର ଆଖିରେ
ଦେଶ ବିଦେଶର ଯେଉଁ ସୂର୍ଯ୍ୟୋଦୟ ଥାଏ
ମନ୍ଦିରର ଅନ୍ଧାର ପ୍ରକୋଷ୍ଠରେ

ତାର କିରଣମାନ ପଡ଼େ ନାହିଁ
ପର୍ଯ୍ୟଟକର କ୍ୟାମେରାରେ ଧରିହୁଏ ନାହିଁ
ଅମୃତ କଳସର ଉଚ୍ଚାକାଂକ୍ଷାକୁ
ମନ୍ତ୍ରରତ ପୁରୋହିତର ଅଜ୍ଞାତ ରହିଯାଏ
ବାୟୁମଣ୍ଡଳରେ ଯେଉଁ ଐଶ୍ୱରିକ ନିସ୍ତବ୍ଧତା
ଧ୍ୱନିତ ପ୍ରତିଧ୍ୱନିତ ହେଉଥାଏ

କେବଳ ଧର୍ମର ଦାୟାଦ ଜାଣେ
ଉତ୍ତର ଦେବାରୁ ମୁକ୍ତି ନାହିଁ
ମୃତ୍ୟୁର ଚିରନ୍ତନତାରୁ ଖୋଜିନେବାକୁ ହୁଏ
ବଞ୍ଚିବାର କ୍ଷଣିକ ମୁହୂର୍ତ୍ତମାନଙ୍କୁ
ସେ ତେଣୁ ଜ୍ଞାନରୁ ଫେରି ଆସେ
ଚାଲିଯାଏ ଏକ ଶାଶ୍ୱତ ଜିଜ୍ଞାସାକୁ

ପ୍ରତ୍ୟକ୍ଷ ଦେବପ୍ରତିମାମାନଙ୍କ ପାଖରୁ
ଦୃଷ୍ଟି ଫେରାଇ ନିଏ
ବିମୂର୍ତ୍ତ ଦୈବୀସତ୍ତା ଆଡ଼କୁ
ଆଞ୍ଜୁଳାରେ ତୋଳି ନୈବେଦ୍ୟ ଦିଏ
ମହାକାଳର ପ୍ରଶ୍ନମାନଙ୍କୁ
ମାୟା ସରୋବର ଭିତରୁ ବାହାରି
ସେ ସିଧା ଚାଲିଯାଏ ତୃଷ୍ଣା ଭିତରକୁ

# ସପ୍ତର୍ଷି

ଆକାଶକୁ ଅନାଇଲେ
ଅନେକ ପ୍ରଶ୍ନ କରିବାକୁ ଇଚ୍ଛା ହୁଏ
ସମୟ ଓ ସୀମାହୀନତା
ଚିରନ୍ତନ ଅୟନାନ୍ତ ଓ ପରିକ୍ରମା ବିଷୟରେ
କିନ୍ତୁ ଆକାଶ ସବୁ ପ୍ରଶ୍ନକୁ ଫେରାଇ ଦିଏ
ଏବଂ ଓଲଟା ପ୍ରଶ୍ନମାନ ପଚାରେ

ଆହୁରି କିଛି କ୍ଷଣ
ଶୂନ୍ୟକୁ ନିର୍ନିମେଷ ଅନାଇ ରହିଲେ
ସ୍ୱତଃ ସମସ୍ତ ପ୍ରଶ୍ନର ଉତ୍ତର ମିଳିଯାଏ
ସବୁ ଜାଣି ହୁଏ ସବୁ କିଛି
ଆକାଶ କିପରି ମହାଶୂନ୍ୟର ଭଗ୍ନାଂଶ ମାତ୍ର
କେହି ବି ସ୍ଥିର ଓ ଶାଶ୍ୱତ ନୁହନ୍ତି
ଅନେକ ସୌରମଣ୍ଡଳ ଜଳି ପୋଡ଼ି
ଭସ୍ମୀଭୂତ ହୋଇଯାନ୍ତି
ନୂତନ ନକ୍ଷତ୍ର ପାଇଁ ସ୍ଥାନ ଛାଡ଼ି ଦେଇ
ଅନେକ ବିଭିନ୍ନ ସୂର୍ଯ୍ୟ ଧକ୍କା ଖାଇଥାନ୍ତି
ନିଜ ନିଜର ଧାରାବଦ୍ଧ ଆବର୍ତ୍ତନରେ
ମହାଶୂନ୍ୟ ସବୁ ଦେଖି ନିଏ
କୌଣସି ଉଚ୍ଚବାଚ ନ କରି

ଆକାଶକୁ ଆହୁରି ବେଶୀକ୍ଷଣ ଅନାଇଲେ
ଦୃଷ୍ଟି ଲମ୍ବିଯାଏ ଆକାଶର ସୀମାନ୍ତ ବାହାରକୁ
ଅତି ଧୀରେ ସମସ୍ତେ ଘୁଞ୍ଚିଯାନ୍ତି
ମେଷ ଓ ମୀନ ବୃଶ୍ଚିକ ଓ ବୃଷ
ଋଷିମାନେ ଅବାକ ରହିଥାନ୍ତି
ବଶିଷ୍ଠ କୋଳାଗ୍ରତ କରିନିଏ ଅରୁନ୍ଧତୀକୁ
ଆକାଶଗଙ୍ଗାରେ କିଛି ଝଡ଼ ହୁଏ
ଧନୁରେ ଶର ଯୋଖି ଠିଆ ହୁଅନ୍ତି
ସୌର ପ୍ରତିଦ୍ୱନ୍ଦ୍ୱୀମାନେ

ମନ ଯେତେବେଳେ
ଏକ ନୀଳବର୍ଣ୍ଣ ପ୍ରଶାନ୍ତିରେ ଭରିଯାଏ
ସବୁ ବୁଝି ହୁଏ ସବୁ କିଛି
ଧ୍ରୁବୀୟ ସତ୍ୟ ସବୁ କିପରି
କେବଳ ପ୍ରଜ୍ଞା ଓ ଅଭିଜ୍ଞତାରୁ ଉଦ୍ଭୁତ ନୁହେଁ
ଦୂରତ୍ୱ କିପରି ସମୟର ବଶବର୍ତ୍ତୀ

ଏବଂ
ସୂର୍ଯ୍ୟ ଏକ ସାମାନ୍ୟ ନକ୍ଷତ୍ର

## ମଧ୍ୟ ପର୍ବ

ଲକ୍ଷ୍ୟ ନ ଥିବାର କ୍ଷୋଭରେ
ରାସ୍ତା ଏଇଠାରୁ ହଠାତ ନିଶ୍ଚିହ୍ନ ହୋଇଯାଏ
ଏହିଠାରେ ହିଁ ନିଶ୍ଚୟ କରିବାକୁ ହୁଏ
କାହା ମୁଖା ମୁହଁରେ ପିନ୍ଧି
କାହାର ଶବକୁ ବୋହି ନେବାକୁ ହେବ
କାହା ପ୍ରତି କି ପ୍ରକାର ସମଭିବ୍ୟାହାରରେ

ଏହିଠାରେ ଶେଷ ହୁଏ
ମନସ୍କାମନାର ନିଜସ୍ୱ ନଗରୀ
ସୁବର୍ଣ୍ଣ ମଲ୍ଲିକା ଭଳି ସକାଳ
ହଠାତ ଉଦ୍‌ଯାପିତ ହୋଇଯାଏ
ତା ପରେ ଆଉ
ଜଘନରେ ଯୌବନର ରଭସ ନାହିଁ
ନିଃଶ୍ୱାସରେ ନନ୍ଦନବନର ସୁରଭିତ ପବନ ନାହିଁ
ରକ୍ତରେ ମଧୁଚ୍ଛନ୍ଦାର ସଂଗୀତ ଲହରୀ ନାହିଁ
ଇନ୍ଦ୍ରିୟମାନଙ୍କର ବିଶେଷଣମାନ
ଏହିଠାରେ ହିଁ ସମାପ୍ତ

ଲକ୍ଷ୍ମଣରେଖାକୁ ଲଙ୍ଘିଗଲେ
ଆଉ ଫେରିବାର ଉପାୟ ନ ଥାଏ
ତା ପରେ କେବଳ

ସ୍ୱର୍ଣ୍ଣାଭ ଛଳନା ପଛରେ ଧାଇଁବା
ଯେଉଁଠାରେ
ଗୋଟିଏ ଛଳନା ଆଗକୁ ନେଇଯିବ
ଅନ୍ୟ ଏକ ଭ୍ରମାତ୍ମକ ପରିଣତିକୁ
ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ
ଯାହା ସବୁ ଉଦ୍ଦିଷ୍ଟ ଥିଲା
ସମସ୍ତ ମଧ୍ୟାନ୍ତରରେ ସମାପ୍ତ
ନାୟକ ପିନ୍ଧି ନେଲା ବିଦୂଷକର ପୋଷାକ
ବିପ୍ରଲବ୍ଧା ସାତ ପାଦ ଫେରି ଆସି
ସ୍ୱୀକାର କରି ନେଲା ଖଳନାୟକକୁ
ଉପସଂହାର ଯଦିଓ ସମ୍ୟକ ନିର୍ଦ୍ଧାରିତ
ଏଥରକ ବ୍ୟସ୍ତତାର ସହିତ ସମୟ ଗଣିବା

ସବୁ ଘଟି ଯାଇଥିବ
ଘଟନାଚକ୍ର ଅନୁଯାୟୀ
ଘଟକ ଯେଉଁପରି ଗଣନା କରିଥିଲେ
ଅର୍ଥଲାଭ ପୁତ୍ରଲାଭ ରାଜପ୍ରୀତି
ମାର୍ତ୍ତଣ୍ଡ ମଣ୍ଡଳ ଅର୍ଦ୍ଧୋଦୟ ପରେ
ସୂର୍ଯ୍ୟ ସ୍ୱଷ୍ଟ ଲଗ୍ନ ସ୍ୱଷ୍ଟ ଦଶମଭାବ ସ୍ୱଷ୍ଟ
ବୁଧ ମଧ୍ୟରେ ଅନ୍ତର୍ଦ୍ଦଶା
ଲଗ୍ନାଧିପ ସୁଖାଧିପ ଧନାଧିପ
ଅଙ୍ଗହାନି ଧନଜନ କ୍ଷୟ
ବୁଦ୍ଧିବିଭ୍ରମ ଓ ସୌଖ୍ୟହାନି
ସବୁ ସମ୍ପନ୍ନ ହୋଇ ଯାଇଥିବ ଏକାଧାରରେ
ପରାକ୍ରମ ଧନ ଭାବ ବ୍ୟୟ ଲାଭ ଭାଗ୍ୟ
ଆୟୁ ଶତ୍ରୁ ଓ ସନ୍ତାନ

ଆଉ ନିଶ୍ଚିତ କରିବାର ସମୟ ହୁଏ ନାହିଁ
ଅନ୍ତରଙ୍ଗ ଇଚ୍ଛା ସବୁ ମଉଳି ଯାଇ

ଦେହକୁ ଭାରାକ୍ରାନ୍ତ କରି ଦିଅନ୍ତି
ନିଜର ମୁହଁ ହିଁ ମୁଖା ପାଲଟି ଯାଏ
ଆଗରେ ଆଉ ଲକ୍ଷ୍ୟସ୍ଥଳ ନ ଥାଏ
କେବଳ ଅଭ୍ୟାସଗତ ଚାଲିଥିବା
ହତୋତ୍ସାହ ହୋଇ ଆଗକୁ ଅନାଇଲେ
ଦୂରବର୍ତ୍ତୀ ପାନ୍ଥଶାଳାର ଝରକାମାନଙ୍କରୁ
ସବୁ ଆଲୁଅ ଲିଭି ଲିଭିଯାଏ

## ସାମୁଦ୍ରିକ

ଦିଗନ୍ତର ପାହାଚ ଉପର ଦେଇ
ଶେଷ ସୂର୍ଯ୍ୟ ଅପର ପାର୍ଶ୍ୱକୁ ଓହ୍ଲାଇ ଯାଏ
ପାଦ ତଳୁ ବେଳାଭୂମିର ଘୁଞ୍ଚି ଯିବାରେ
କୌଣସି ଅଲୌକିକ ପ୍ରତିଶ୍ରୁତି ନ ଥାଏ
ତଥାପି ଦିଗ୍‌ବଳୟ ଆଖିକୁ ବାଧ କରେ
ଆକାଶର ଶୀର୍ଷଦେଶ ପର୍ଯ୍ୟନ୍ତ
ଯେଉଁଠାରେ ନକ୍ଷତ୍ରମାନଙ୍କର ସ୍ଥବିରତାକୁ ଝୁଣ୍ଟି
ଦୃଷ୍ଟିର ଆହତ ପକ୍ଷୀ ପୁଣି ଫେରି ଆସେ
ଅନ୍ଧକାରାଚ୍ଛନ୍ନ ନୀଳବର୍ଣ୍ଣର ଅଧୋବିନ୍ଦୁ ଆଡ଼କୁ

ମିଟିମିଟି ତାରା ଓ ଲହରୀମାନଙ୍କୁ
ଅନ୍ୟମନସ୍କ ହୋଇ ଚାହିଁ ରହିଥିବା ବେଳେ
ପବନ ଆସି ସମତଳ କରିଯାଏ
ସ୍ତୂପୀକୃତ ବାଲୁକାରାଶିର ବିଭିନ୍ନ ବ୍ୟକ୍ତିତ୍ୱକୁ
ଦୂରାନ୍ତର ନିର୍ଜନ ଦ୍ୱୀପମାନଙ୍କର ଆର୍ତ୍ତନାଦ ମିଶିଯାଏ
ଝାଉଁଗଛର ଅନ୍ତର୍ଘାତୀ ଦୀର୍ଘ ନିଶ୍ୱାସରେ

ପବନର ପ୍ରାମାଣିକ ଦାବୀ ଲିଭାଇ ଦିଏ
ଜଳକନ୍ୟାମାନଙ୍କର କିମ୍ବଦନ୍ତୀ
ତା ପରେ ସମୟର ଛତ୍ରଛାୟା ତଳେ
ଶୂନ୍ୟାରୂଢ଼ ଶବ୍ଦମାନଙ୍କର ରାଜତ୍ୱ

ଝଡ଼ର ଅଗଣିତ ହାତ ଆସି
ଯେତେବେଳେ ଖିନଭିନ କରିଯାଏ
ଉଦାର ନୀଳର ସ୍ୱଚ୍ଛ ଓ ଅସମର୍ପିତ ଧ୍ୱନିମାନଙ୍କୁ
ଏକ ଅସହିଷ୍ଣୁ ଆକ୍ରୋଶରେ
ଲହରୀ ଆଣି କୂଳରେ ଅଜାଡ଼ି ଦିଏ
ଅନ୍ଧାରର ନିଗୂଢ଼ ଘନିଷ୍ଠତାକୁ ନ୍ୟସ୍ତ
ଅତଳାନ୍ତର ଅପ୍ରମେୟ ତତ୍ତ୍ୱ ସବୁ
ସମୁଦ୍ର ଗର୍ଭରୁ ବାହାରକୁ ଫିଙ୍ଗିଦିଏ
ଦିଗ୍‌ବିଦିଗର ମଣିମୁକ୍ତା ମୋତି ଓ ପ୍ରବାଳ
ନାଗଲୋକର ନିର୍ମମ ଅଭିଶାପ
ଏବଂ ଅପ୍ରତ୍ୟାଶିତ ଅମରତ୍ୱମାନ
ଉପରକୁ ଛିଟିକି ପଡ଼ନ୍ତି ବିସ୍ଫୋରଣ ଭଳି
ଜାହାଜ ଓ ପ୍ରବାଳ ଦ୍ୱୀପ
ଚିକମିକ ତାରାର ଆଲୁଅ ଓ ଅତିଷ୍ଠ ଆକାଶ
ପକ୍ଷୀମାନେ ଉଡ଼ିଯାନ୍ତି
ଡେଣାରେ ଦୁଃସାହସ ନେଇ
ଝାଉଁବଣର ଅଦମ୍ୟ ଅନ୍ଧାର ଆଡକୁ

ଦିଗ୍‌ବଳୟ ଲୁଚିଯାଏ ଏକ ଅମୂର୍ତ୍ତ ଶୋଚନାରେ
ପୁଣି ପାଦ ତଳକୁ ଫେରି ଆସେ
ନିଜସ୍ୱ ଅନୁଭବର ଆର୍ଦ୍ର ଆତ୍ମୀୟତା
ଭାଙ୍ଗି ଯାଉଥିବା ପ୍ରତିବିମ୍ବମାନଙ୍କୁ
ସହୃଦୟ ସହାନୁଭୂତି ଜଣାଇ
ଲହରୀ ସାମାନ୍ୟମାତ୍ର ଛୁଇଁଯାଏଁ
ମୁହ୍ୟମାନ କୂଳର ଆତୁରତାକୁ

ଆକାଶ ସମୁଦ୍ର ଦିଗନ୍ତ
ଓ ବେଳାଭୂମିକୁ ଲଙ୍ଘି
ପକ୍ଷୀ ଫେରିଆସି ଆଶ୍ରୟ ନିଏ
ଏକ ସମନ୍ୱିତ ନୀଳବର୍ଣ୍ଣ ଅନ୍ଧାର ଭିତରେ

## ବାର ବେଳା

ଆଖି ବନ୍ଦ କରି ନେଲେ
ସବୁ କିଛି ସ୍ଥଗିତ ରହିଯାଏ
ସମୟର ନିସ୍ତରଙ୍ଗ ହ୍ରଦମାନଙ୍କରେ
ସମସ୍ତ ମୌଳିକ ରଙ୍ଗ
ଶ୍ୱେତ ପୀତ ବିଲୋମ କୃଷ୍ଣ ଓ ନୀଳ
ଉଦାତ୍ତ ଅନୁଦାତ୍ତ ଓ ସ୍ୱରିତ କଣ୍ଠଧ୍ୱନି
ଏବଂ ସମସ୍ତ ପର୍ଯ୍ୟାୟବାଚୀ ଶବ୍ଦ

ଏଥରକ ସମସ୍ତ ପ୍ରଯତ୍ନ ନିଷିଦ୍ଧ
ଏବଂ ସମସ୍ତ କର୍ମ ଗର୍ହିତ
ଏଠାରେ କେବଳ
ସ୍ମୃତିର ଏକଛତ୍ର ରାଜତ୍ୱ
ଆଉ କିଛି ସମ୍ଭବ ନୁହେଁ
କେବଳ ପଛକୁ ଫେରି ଚାହିଁବା
ଅତୀତର ଉପାଦାନମାନଙ୍କୁ ତୋଳିନେଇ
କ୍ଷୋଭ ଜର୍ଜରିତ ସ୍ୱପ୍ନମାନଙ୍କୁ ସଜାଇବା
ଏବଂ ଇଚ୍ଛାର ଅଦମ୍ୟ ଅନ୍ୱେଷଣମାନଙ୍କୁ
ପ୍ରତ୍ୟାହୃତ କରି ନେବା ବ୍ୟତୀତ

ଆଖି ଖୋଲିଲେ ହିଁ ଅନ୍ୟ ସମୟ
ମୁହୂର୍ତ୍ତ ପରେ ମୁହୂର୍ତ୍ତ ଯୋଡ଼ି ହୋଇ
ଲମ୍ବିଯାଏ ଅନନ୍ତ ସମ୍ଭାବନାକୁ
ଅସଂଖ୍ୟ ଛୋଟ ଛୋଟ ହ୍ରଦମାନଙ୍କୁ ଯୋଡ଼ିଦିଏ
ଉଦାର ସ୍ଥଳଭାଗର ବିସ୍ତାର
ବାସ୍ତବିକତା ଛନ୍ଦିଦିଏ
ଗୋଟିଏ ସ୍ୱପ୍ନକୁ ଅନ୍ୟ ଏକ ସ୍ୱପ୍ନ ସହିତ

ତା ପରେ ଆଉ
ସମୟର ଭଗ୍ନାଂଶ ନ ଥାଏ
ବର୍ତ୍ତମାନର ମୁହୂର୍ତ୍ତ
ଗୋଟିଏ ମାତ୍ର ମୁହୂର୍ତ୍ତ ପରେ
ଅତୀତର ମୁହୂର୍ତ୍ତ ପାଲଟେ
ତାତ୍କାଳିକ ଘଟଣା
କ୍ଷଣକରେ ଇତିବୃତ୍ତରେ ମିଶେ
ସାମାନ୍ୟ ବ୍ୟବଧାନରେ ଏବେର ଅନୁଭବ
ସ୍ମୃତିରେ ପରିଣତ ହୋଇଯାଏ

ଏଥର ଯଦିଓ ସମସ୍ତ ଅବିହିତ
ବଞ୍ଚି ରହିବା ଏଠାରେ ପ୍ରଯତ୍ନ
ସ୍ମରଣ ଏଠାରେ କର୍ମଣ୍ୟତା
ବର୍ତ୍ତମାନ ହେଉଛି ସ୍ମୃତି ଓ ସମ୍ଭାବନା
ନିଜକୁ ସମୟକୁ ସମର୍ପଣ କରିଦେଲେ
ଆଉ କୌଣସି ବାରଣ ନ ଥାଏ
ଆଉ ଭୟ ନ ଥାଏ
ଅତୀତ ଅଥବା ଭବିଷ୍ୟତର

ଏବଂ ଆଖି ଖୋଲିଲେ ହିଁ
ସମସ୍ତ ରୂପ ରସ ଗନ୍ଧ ବର୍ଣ୍ଣ

ସ୍ପର୍ଶ ସ୍ୱର ଓ ଶବ୍ଦରେ ପରିପୂର୍ଣ୍ଣ
ଅକାଶ ଆଡକୁ ଉନ୍ମୁଖ
ହ୍ରଦ ଦ୍ୱୀପପୁଞ୍ଜ ସମୁଦ୍ର ଓ ସ୍ଥଳଭାଗ ନେଇ
ସ୍ୱୟଂସଂପୂର୍ଣ୍ଣ ପୃଥିବୀମାନ

## ଉତ୍ତର ଜାତକ

ଆମ ହାତରେ ସବୁ ଦେଇଯାଅ
ଆମର ଯାହା ସବୁ ଉପଲଭ୍ୟ
ନିର୍ଦ୍ୱନ୍ଦ ଆତ୍ମସମର୍ପଣରେ
ସମସ୍ତ ପ୍ରତ୍ୟର୍ପଣ କରିଦିଅ
ତମର ଅବଲୁପ୍ତ ଜିଜ୍ଞାସା
ଓ ତମର ନୈତିକତାର ନ୍ୟୂନତା
ତମର ଚିରାଚରିତ ହିଂସ୍ରତା
ଓ ଲୁକ୍କାୟିତ ହାହାକାରମାନ
ତମର ଅସଂଖ୍ୟ ଅନିଶ୍ଚୟ
ଏବଂ ସ୍ମୃତିବଦ୍ଧ ଅନିଚ୍ଛା ସବୁ

ଆମର କୃତନିଶ୍ଚୟ ଆଖିକୁ ଅନାଅ
ଓ ସମସ୍ତ ପ୍ରଶ୍ନର ଉତ୍ତର ଦେଇଯାଅ
ତମର ସଂଶୟ ସବୁକୁ ନ୍ୟସ୍ତ କରିଯାଅ
ଆମର ଅବଧାରିତ ସତ୍ୟମାନଙ୍କ ସମୀପରେ
ଆଉ ଇତସ୍ତତଃ ଦେଖିବା ନିଷ୍ପ୍ରୟୋଜନ
ଆମର ଅପରିମିତ ଅନ୍ୱେଷଣର ବାହାରେ
ଆଉ କୌଣସି ଅସ୍ତିତ୍ୱ ନାହିଁ

ଆମକୁ ସେ ସବୁର ଉତ୍ତରଦାୟିତ୍ୱ ଦେଇଯାଅ
ଯାହା ତମକୁ ସ୍ୱୀକାର ହେଲା ନାହିଁ
ଆମେ ନେଇନେବୁ ତମର ନିର୍ଣ୍ଣୟମାନ
ଯାହା ଅକାଟ୍ୟ ଯୁକ୍ତି ପ୍ରମାଣରେ ସିଦ୍ଧ ନୁହେଁ
ଆମେ ନେଇନେବୁ କୀଟଦଂଷ୍ଟ ଚିତ୍ରପଟ ସବୁ
ଭୁଲ ରାସ୍ତାମାନଙ୍କର ନକ୍ସା ଓ ମାନଚିତ୍ର
ଯାହାକୁ ତମେ ସଯତ୍ନରେ ସମ୍ଭାଳି ରଖିଥିଲ
ତମର ଜିଜୀବିଷାମାନଙ୍କର ସହଜ ସାଧନରେ
ଆମ ହାତକୁ ଦେଇଯାଅ
ଯାହା କିଛି ଭ୍ରମାତ୍ମକ ଓ ଜରାଜୀର୍ଣ୍ଣ
ଆମେ ସବୁ କିଛି ସମ୍ୟକ ଓ ସମନ୍ୱିତ କରିଦେବୁ
ଆମର ଅନ୍ତହୀନ ଅନୁଧ୍ୟାନମାନଙ୍କରେ

ଆମ ହାତରୁ ଏଥରକ ହାତ ଖୋଲି ନିଅ
ସମୟକୁ ସଂଚରିବାକୁ ଦିଅ ଆମ ହାତ ଉପରେ
ଆମର ଆଖିରୁ ଆଖି ଫେରାଇ ନିଅ
ଆମ ଆଖି ଭିତର ଦେଇ ଚାଲି ଯାଉଛି
ଭବିଷ୍ୟତକୁ ଅଗ୍ରସର ହେବାର ସମସ୍ତ ରାସ୍ତା
ଅଭାବିତ ଘଟନାଚକ୍ରମାନଙ୍କରେ
ଯାହା ସବୁ ଆମକୁ ଯୋଡ଼ି ଦେଇଥିଲା
ପୂର୍ବପୁରୁଷମାନଙ୍କର ବ୍ୟତୀତ ସହିତ
ସବୁ ଆଜି ଉଚ୍ଛିନ୍ନ ହୋଇଯାଉଛି ଦେଖ
ଆସନ୍ନ ଭବିଷ୍ୟତମାନଙ୍କର ଅଦ୍ଭୁତ ସମାରୋହରେ

# ଚରୈବେତି

୧

ସବୁ ଅଦେଖା ରହିଗଲା
ନିଷ୍ପ୍ରହର ମେଘର ଅବର୍ଣ୍ଣନୀୟ ଉଲ୍ଲାସ
ଦେହର ନିବିଡ଼ତମ ଦେଶରେ
ଚିତ୍ରାର୍ପିତ ତିଳ ଚିହ୍ନର ତ୍ରିବିଧ ରହସ୍ୟ
ଆଖିରେ ସମୁଜ୍ଜ୍ୱଳ
ଅଖଣ୍ଡିତ ଯୌବନର ଏକନିଷ୍ଠତା
ନିକ୍ଷିପ୍ତ ନକ୍ଷତ୍ରମାଳାର
ଅଦୃଷ୍ଟପୂର୍ବ ବିନ୍ୟାସ

ରକ୍ତନଦୀରେ ଭାସିଗଲା
ପ୍ରାର୍ଥିତ ଆତ୍ମସମର୍ପଣର ରାଗରାଗିଣୀ
ସବୁ ନିବିଡ଼ ଭାବରେ ଦୂରକୁ ଚାଲିଗଲା
ଇନ୍ଦ୍ରିୟମାନଙ୍କର ଅବିବେକିତା ଆଡ଼କୁ ଅନାଇ
ସବୁ ସମର୍ପଣ କରିଦେଲି
ସମସ୍ତ ଓଜଃ ପ୍ରସାଦ ଓ ଲାଳିତ୍ୟ
ସବୁ ଭୁଲିଗଲି ମୋର
ଦୂରନ୍ତ ଅନୁଶୋଚନାମାନଙ୍କରେ
ମୋର ଦୟା ଦାନ ବିନୟ ଓ ସୌଜନ୍ୟ

ଅତି ଅନ୍ତରଙ୍ଗ ଭାବରେ
ବେଳ କଟିଯିବା ବେଳେ
ଆଗାମୀ ଆତଙ୍କକୁ ଗଣି ଗଣି
ସବୁ ସମୟ ବିତିଗଲା
ସାମାନ୍ୟ ସୌଖ୍ୟ ଖୋଜିବାବେଳେ
କଦାଚିତ ପଛକୁ ଅନାଇ
ଅନନ୍ତ କାଳକୁ ଦେଖିନେବାର ଭୟରେ

ଛାଇକୁ ଝୁଣ୍ଟିବା ପରେ
ଆଉ କିଛି ବାକି ରହିଲା ନାହିଁ
ପଛକୁ ଫେରିବି ନାହିଁ ବୋଲି
ସମସ୍ତଙ୍କ ପାଖରୁ ବିଦାୟ ନେଇଥିଲି
କିନ୍ତୁ ସବୁ ଅଗ୍ନି ଗର୍ଭରେ ସମର୍ପିତ କରି
ଫେରିଆସି ମାନିନେବାକୁ ହେଲା
ପୁନର୍ବାର ମୋର ନିର୍ଦ୍ଧାରିତ ପରିସ୍ଥିତି
ଅସୁସ୍ଥ ବାତାବରଣ ଖାଲି ଘର
ପ୍ରତାରିତ ସମୟ ଅଫେରନ୍ତା ପ୍ରତିବେଶୀ

୨

ଫେରନ୍ତା ରାସ୍ତାରେ
ପ୍ରତିଟି ମୋଡ଼ରେ ଯାହା ଦେଖିଲି
ସବୁ ତୋଳି ନେଲି
ଯାହା ସବୁ ଦୃଷ୍ଟ ଏବଂ ଜ୍ଞାତ ହେଲା
ବନ୍ଦ କୋଠରୀ ଭିତରେ ସମ୍ପୂର୍ଣ୍ଣ ତାରାମଣ୍ଡଳ
ଉଜ୍ଜ୍ୱଳ ରାତିର ଭ୍ରାନ୍ତି ଆଣୁଥିବା
ଚକମକ ଦ୍ୱିପ୍ରହର
ଦିନମାନଙ୍କୁ ସଂଗ୍ରହ କରିନେଲି
ଶୋଚନାହୀନ ସଞ୍ଜବେଳମାନଙ୍କରେ
ଆଖିକୁ ଉଡ଼ାଇ ଦେଲି
ନକ୍ଷତ୍ରଲୋକର ଅଜ୍ଞାତ କୋଣମାନଙ୍କୁ
ସାମାନ୍ୟ ମୁହୂର୍ତ୍ତମାନଙ୍କୁ ସ୍ୱୀକାର କରି
ମୁଁ ଫେରି ଆସିଲି ଅଗ୍ନି ନେଇ
ପୁଣି ପୃଥିବୀ ପୃଷ୍ଠ ଉପରକୁ

ଘନିଷ୍ଠ ବେଳାମାନଙ୍କୁ ସଜାଇ ରଖିଦେଲି
ସ୍ମୃତିର କମନୀୟ କୋଠରୀମାନଙ୍କରେ

ଯାହା କିଛି ଉପଲବ୍ଧ ହେଲା
ତାର ସବୁ ହିସାବ କରି ନେଲି
ଜମା ଘର ହିଁ ଆଶ୍ୱାସନାରେ ପରିପୂର୍ଣ୍ଣ
ବ୍ୟୟ ଦିଗକୁ ନ ଅନାଇ
ସବୁ ଅଙ୍ଗୀକାର କରିନେଲି

ବିଭିନ୍ନ ମାନସିକ ଅବସ୍ଥା
ଏବଂ ଭିନ୍ନ ଭିନ୍ନ ରଙ୍ଗର ମୁହୂର୍ତ୍ତରେ
ଆସକ୍ତି ଓ ବିରକ୍ତି ବିହୀନ
ସମସ୍ତ ହାନି ଭୟରୁ ମୁକ୍ତ ହୋଇ
ଅଭିଯୋଗମାନ ପ୍ରତ୍ୟାହାର କରିନେଲି
ଏବଂ ମୋର ପୁନଃପୌନିକ ଯାତ୍ରା ପାଇଁ
ପୁଣି ଘର ବାହାରକୁ ପାଦ ବଢ଼ାଇଲି
ପଛକୁ ଅନାଇବାର ବେଳ ନାହିଁ
ରାସ୍ତା ଲମ୍ବି ଯାଉଛି ଆଗରୁ ଆଗକୁ
ବିରତି ନାହିଁ ବିଶ୍ରାମ ନାହିଁ ଅନ୍ତ ନାହିଁ
କେବଳ ଗୋଟିଏ ଗୋଟିଏ ମାଇଲ ଖୁଣ୍ଟ ହୋଇ
ଆଗକୁ ବାଟ ଦେଖାଉଥିବା
ଆହୁରି ଅନେକ ଲୋଭନୀୟ ମୁହୂର୍ତ୍ତ

## ନାମ ରୂପ

ନିଜର ଘଟ ପରିବର୍ତ୍ତନ ଦେଇ
ନିଜକୁ ଅନାଇଲେ
ସ୍ୱପ୍ନ ହିଁ ଯଥାର୍ଥ

କବାଟ ଖୋଲିଲେ ହିଁ
ଭିତରକୁ ପଶି ଆସେ ସମୁଦ୍ର
ଉଚ୍ଛ୍ୱାସ ଗର୍ଜନ ଓ ନୀଳବର୍ଣ୍ଣ ନେଇ

ହାତମୁଠାରେ ହିଁ ସ୍ୱର୍ଗ
କିନ୍ନରୀ ଉଡନ୍ତା ଗନ୍ଧର୍ବ ଓ ଚନ୍ଦନବନ ସମେତ
ଆଖି ଭିତରେ ହିଁ ସମୟ
ଭବିଷ୍ୟତ ସବୁ ସଙ୍କୁଚିତ ହୋଇଯାଏ
କ୍ଷୁରଧାର ଉଦ୍‌ବେଗ ଭିତରେ

ପ୍ରତିବନ୍ଧ ନାହିଁ କୂଳ ନାହିଁ ଦିଗନ୍ତ ନାହିଁ
ଜୀବନ ଉଚ୍ଛୁଳି ଯାଏ
ନିଜକୁ ଉନ୍ମୋଚିତ କରି
ବର୍ତ୍ତମାନର ଏ ପାଖ ସେ ପାଖ
ଜଙ୍ଗଲ ଭିତର ଦେଇ ଧାଇଁଯାଏ
ବୈଶାଖର ଉଚ୍ଚାଟ ଦିନ
ଅନୁରାଗ ନାହିଁ ବିରାଗ ନାହିଁ
ଶୋଚନା ନାହିଁ ସମ୍ଭାବନା ନାହିଁ
ଫୁଲ ଫୁଟିଯାଏ ପର୍ଯ୍ୟାୟକ୍ରମେ
ପାର୍କର ଗୋଟିଏ ସୀମାନ୍ତରୁ
ରାସ୍ତାର ଅନ୍ୟ ସୀମାନ୍ତକୁ
ମନ ଭିତରର ଆବଦ୍ଧ ଧ୍ୱନି
ରୂପକଳ୍ପର ଆଶ୍ରୟ ଖୋଜୁଥାଏ
ଶୁଚିମନ୍ତ ଶ୍ରାବଣ ଆକାଶରୁ ଅଜାଡ଼ି ଦିଏ
ଶବ୍ଦାୟମାନ ସମୁଦ୍ରର ଜଳଧାରା

ସବୁ କିଛି ନାମର ଆଶ୍ରିତ
ବାସ୍ତବତାରୁ ବିଚ୍ଛିନ୍ନ
କୌଣସି କାଳ୍ପନିକତା ନାହିଁ

ଦଣ୍ଡକ ଭାବନା ସବୁ
ପ୍ରତ୍ୟାନ୍ୱିତ ସମ୍ଭାବନା ମାତ୍ର
ଅପ୍ରକାଶ୍ୟ ଇଚ୍ଛାମାନ
ପ୍ରାତ୍ୟହିକତାରୁ ସାମୟିକ ଅବ୍ୟାହତି
ଧ୍ରୁବୀୟ ଆକାଂକ୍ଷାମାନ
ସ୍ୱୟଂକ୍ରିୟ ଆତ୍ମଉତ୍ତରଣ

ପ୍ରତ୍ୟେକଟି ମୁହୂର୍ତ୍ତ
ଗୋଟିଏ ଗୋଟିଏ ଅପୂର୍ବ ବିସ୍ମୟ
କୌତୂହଳର ସବୁଜ ସମ୍ଭାବନା ନେଇ
ଲତା ଭଳି ମାଡ଼ିଯାଏ ଆକାଶକୁ
ଆଖି ଭିତରୁ ଛିଟିକି ପଡ଼େ
ଦୂରାଗତ ସମୟର ପ୍ରତିବିମ୍ବ
ହାତ ଉପରେ ସଜ୍ଜିତ ହୋଇଯାଏ
ଅପାର୍ଥିବ କାୟାକଳ୍ପମାନ
ନୀଳବର୍ଣ୍ଣ ସଂକ୍ରମିତ କରିଯାଏ
କୋଠରୀର ସଂକୀର୍ଣ୍ଣ ଆୟତନକୁ
ଯଥାର୍ଥ ସବୁକୁ କ୍ରମାନ୍ୱୟ ଭାବେ
ସ୍ୱପ୍ନରେ ଆକ୍ରାନ୍ତ କରି

# ଯୋଗ ବିଯୋଗ

ମଝି ରାତିକୁ ଆଉ ମାତ୍ର ତିନିଟି ପାହାଚ
ଅଳ୍ପ କିଛି ଶବ୍ଦରେ ପ୍ରତୀକ୍ଷାର ଶେଷ
ସାମାନ୍ୟ ଦୀର୍ଘନିଃଶ୍ୱାସରେ ଖୋଲିଯିବ କବାଟ
ସଂକ୍ଷିପ୍ତ ସ୍ୱପ୍ନ ଶେଷରେ ରାଜିନାମା

ଶାସ୍ତ୍ରର ସୌଦାଗରମାନେ
ଯେଉଁ ନିୟମାବଳୀ ଲେଖି ଯାଇଥିଲେ
ଅବଲୀଳା କ୍ରମେ ସେ ସବୁକୁ ଲିଭାଇ ଦେଇ
ତମେ ଆସିବ ଏକ ଅଲୌକିକ ଦେହରେ ସମ୍ଭବି
ଅପମୃତ୍ୟୁର ଦେହଳୀ ଉପରେ ପାଦକୁ ସମନ୍ୱିତ କରି
ପ୍ରେତାତ୍ମାଙ୍କ ସ୍ୱର ସବୁକୁ ହାତମୁଠାରେ ସଜାଇ
ହସରେ ହିଂସ୍ରତାର ପଟାପଟା ଦାଗ ଲେଖି
ଏକମାତ୍ର ଦୃଷ୍ଟିପାତରେ
ଅନ୍ଧାରର ଦର୍ପଣକୁ ଖଣ୍ଡବିଖଣ୍ଡ କରିଦେଇ

ଦିକ୍‌ପାଳମାନେ ମୁହଁ ଫେରାଇ ନେବେ
ତାରାମାନଙ୍କର ଅଦମ୍ୟ ଚିତ୍କାର
ଝରଣାର ଉଦ୍‌ଗମରେ ମିଶିଯିବ
ଦେବଦାସୀର ଅକ୍ଷତ ସତୀତ୍ୱ
ଆଶ୍ରୟ ନେବ ଦେବତ୍ୱର ଅନ୍ତରାଳରେ
ଶ୍ରମଣମାନଙ୍କର ମନ୍ତ୍ରଧ୍ୱନି ବ୍ୟାହତ ରହିଯିବ
ବ୍ୟର୍ଥ ସ୍ଥପତିର ନିହାଣ ମୁନରେ

ତା ପରେ ମନ୍ଦିର ଉପରେ ବଜ୍ରପାତ ହେବ
ପାର୍ଶ୍ୱ ଦେବତାମାନେ ଯୁଦ୍ଧକ୍ଷେତ୍ରକୁ ଫେରିଯିବେ
ଝଡ଼ ଚାଲିଯିବ ଅରଣ୍ୟକୁ ଉଚ୍ଛନ୍ନ କରି
ଆକାଶ ପରିପୂର୍ଣ୍ଣ ହୋଇଯିବ
ଅଗଣିତ ଧୂମକେତୁମାନଙ୍କରେ
ମରୁଭୂମି ଗ୍ରାସ କରିଯିବ ସମଗ୍ର ଭୂଭାଗକୁ

ଅଭିଶାପର ଦିନସବୁ ଶାନ୍ତ ହୋଇଗଲେ
ଦୁଇ ସମାନ୍ତରାଳ ରେଖା ମଝିରେ
ଜୀବନକୁ ବାଣ୍ଟି ଦିଆଯିବ
ସାମାନ୍ୟ ଭଗ୍ନାଂଶମାନଙ୍କରେ

ଗାର୍ହସ୍ଥ୍ୟ ବାନପ୍ରସ୍ଥ ଧର୍ମ ଏବଂ ନିଷ୍ଠା
ତିତିକ୍ଷା କାମନା କ୍ଷୁଧା ଦୁଃଖ
ଭୟ କ୍ରୋଧ ଓ ସଂଶୟ
ଯାହାକୁ ନ୍ୟସ୍ତ କରିବାକୁ ହେବ ବାରମ୍ବାର
ଏକ ଉଦାସ ଚତୁରଙ୍ଗ ଖେଳର
ପ୍ରତ୍ୟେକଟି ନିଷ୍ଠୁର ନିକ୍ଷେପରେ
ନିଜ ଭିତରେ ନିଜକୁ ନିବଦ୍ଧ କରିଦେଇ
ସ୍ମୃତିର ରୋମନ୍ଥନରେ ବେଳ ଚାଲିଯିବ
କେବଳ ସ୍ୱଗତୋକ୍ତିମାନଙ୍କରେ
ସୀମିତ ରହିଯିବ କଥୋପକଥନ
ବାହାରକୁ ଚାଲିଯିବାର ଦ୍ୱାରମାନ
ସ୍ୱୟଂ ବନ୍ଦ ହୋଇଯିବେ

ସମସ୍ତ ସମନ୍ୱିତ ଓ ସୁନିୟନ୍ତ୍ରିତ
କୌଣସି ପ୍ରତିକ୍ରିୟା ନ ଥିବ
ତମର ମୁହଁର ଅପରିଚୟରେ
କୌଣସି ଘନିଷ୍ଠତା ନାହିଁ
ସବୁ ବିସ୍ମୟ ବିହୀନ
ବ୍ୟତୀତ ଦିନର ଅପବ୍ୟୟିତ ସମୟମାନ
ଆସନ୍ତା କାଲିର ଅପନ୍ତରାରେ ଘୂରି ବୁଲୁଥିବେ
ପବନ ଉଡ଼ାଇ ନେବ
ଝରକାରୁ ଅବଶିଷ୍ଟ ସାନ୍ତ୍ୱନାମାନ
ମେଘ ଛାଇଯିବ ଦିଗ୍‌ଭ୍ରାନ୍ତ ଶବ୍ଦ ସମୂହକୁ
ତା ପରେ ଆଉ ନିଜକୁ କହିବା ପାଇଁ କିଛି ନ ଥିବ
କେବଳ ଏକ ନିରୁତ୍ସାହ ପରିସମାପ୍ତି
ନିଃସ୍ୱପ୍ନ ରାତିର ଘନିଷ୍ଠତା ସବୁ
ସ୍ମୃତି ବାହାରକୁ ନିର୍ବାସିତ ହୋଇଯିବା ପରେ

# ଦୃଶ୍ୟବୋଧ

ସମୟ କେଉଁଠାକୁ ଚାଲିଯାଏ ନାହିଁ
କେବଳ ଆମେ ହିଁ ଚାଲିଯାଉ
ସମୟ ଖୋଲିଯାଏ ପରସ୍ତ ପରସ୍ତ ହୋଇ
ପାଦ ଅଧିକାର କରିନିଏ ରାସ୍ତାକୁ
ଆଖି ତୋଳିନିଏ ଦୃଶ୍ୟ ସମୂହ

ସକାଳର ଦୃଶ୍ୟ ସନ୍ଧ୍ୟାର ଦୃଶ୍ୟ
ରୂପ ବଦଳିଯାଏ ସକାଳରୁ ସଂଧ୍ୟା
ନିରୁପଦ୍ରବ ହସ ନିଷ୍ପାପ ଆଶ୍ୱାସନା
ପ୍ରତିମା ଓ ପ୍ରତିବିମ୍ବ ଆରୋହ ଅବରୋହ
ଆପାତ ଦାୟିତ୍ୱ ଅବଧାରିତ ସମ୍ଭାବନା
ଅପାଙ୍ଗ ଓ ଅଙ୍ଗୁଳିର ପ୍ରଗଲ୍‌ଭତା
ଅପ୍ରମତ୍ତ ମେଘ ଉତ୍ତାନ ପବନ
ଅର୍ଦ୍ଧରାତ୍ରିର ଆବେଶ ଓ ମଧ୍ୟାହ୍ନର ମୌନ

ଅପାର ଜିଜ୍ଞାସା ଓ କୌତୂହଳ ନେଇ
ଆଖି ଖୋଲିଯାଏ ଗର୍ଭର ଅନ୍ଧାରରୁ
ଅନ୍ଧକରି ଦେଉଥିବା ସୂର୍ଯ୍ୟର ଦ୍ୟୁତିକୁ
ଆରମ୍ଭ ବିନ୍ଦୁରୁ ରାସ୍ତା ଚାଲିଯାଏ
ଏକ ଅନିର୍ଦ୍ଦିଷ୍ଟ ଦୂରତ୍ୱକୁ
ସମୟକୁ ସୀମିତ କରି ହୁଏ ନାହିଁ
ସମୟ ଲଘିଯାଏ ପୂର୍ବ ଓ ପରକୁ

ଆଖି ଖୋଲିଯାଏ ସମୟ ସଞ୍ଚରିଯାଏ
ଦୂରତ୍ୱ ଲମ୍ବିଯାଏ ଆଗରୁ ଆଗକୁ
ଯେଉଁଠାରେ ଅତୀତ ଓ ଭବିଷ୍ୟତର

ଅନେକ ଅନେକ ଦୃଶ୍ୟ
ଏବଂ ଆଗରେ ଆହୁରି ରାସ୍ତା
ରାସ୍ତା ପରେ ରାସ୍ତା
ଦୃଶ୍ୟ ପରେ ଦୃଶ୍ୟ
କିନ୍ତୁ ପାଦ ବୁଝିପାରେ
କେବଳ ନିଜର ପଳାୟନକୁ
ଆଖି ଆଉ କିଛି ଦେଖେ ନାହିଁ
ନିଜର ଦେଖିବା ବ୍ୟତୀତ

## ଦୂରତ୍ୱ

ଟେବୁଲର ଏ ପାଖ ସେ ପାଖ
ଯେ ଯାହାର ନିର୍ଜନତା ନେଇ
ପୁରୁଣା ସମୟ ଆସି ପହଞ୍ଚେ
ମଝିରେ ଚା କପ୍‌କୁ ଆବୋରି

ଯାଯାବର ପକ୍ଷୀ ବସା ଭାଙ୍ଗି ଉଡ଼ିଯାଏ
ଅନ୍ୟ ଦିଗ୍‌ବଳୟକୁ
ସ୍ମୃତିର କୁହୁଡ଼ି ହଜିଯାଏ
ଆକାଶରେ ନିଜକୁ ଖୋଜି ଖୋଜି
ଶୋକକୁ ଆହୁରି ଘନିଷ୍ଠ କରିଦିଏ
ଗୋଟିଏ ମିଳନରୁ ଅନ୍ୟ ବିଚ୍ଛେଦର କ୍ରମ

ପାଦରୁ ପାଦ ଖୋଲିଗଲେ
ସମୁଦ୍ର ଅଧିକାର କରିନିଏ
ବାଲିଚରରେ ପୋତି ଦିଏ
ଛୋଟ ଛୋଟ ଅଭୀଷ୍ଟମାନଙ୍କୁ
ଲହରୀ ଉଡ଼ାଇ ନିଏ ପ୍ରତିଶ୍ରୁତି

ସମ୍ଭାବନା ଓ ଉତ୍ତରଦାୟିତ୍ୱ

ନୀଳ ରଙ୍ଗରେ ମିଶିଯାଏ
ଅନାମୟ ଆତ୍ମାର ଅକ୍ଷରେଖା
ଆଖି ଆଗରେ ସବୁ ଅଦେଖା ରହିଯାଏ
ଭୟଭୀତ ଶବ୍ଦ ଏକା ଏକା
ଅସହାୟ ଘୂରି ବୁଲୁଥାଏ

ଶୂନ୍ୟସ୍ଥାନ ପ୍ରକୃତିର ସ୍ୱୀକାର ନୁହେଁ
ସେ ତେଣୁ ଘେରାଇ ଯାଏ
ପ୍ରାଚୀର ଓ ଆବରଣ
ଦୃଷ୍ଟି ଆଗରେ ଅନ୍ଧକାର
ଶବ୍ଦ ଆଗରେ ପ୍ରତିରୋଧ
ସବୁ ବ୍ୟବଧାନ ଉପରେ ରଖିଯାଏ
ପ୍ରସ୍ତ ପ୍ରସ୍ତ ସମୟ

ସବୁ ଜଣାଥାଏ
ହାତ ବଢ଼ାଇଲେ ଅଭୀଷ୍ଟ ସିଦ୍ଧି
ଆଖି ଖୋଲିଲେ ଦୃଷ୍ଟି ଭେଟିବ
ଅପର ପାର୍ଶ୍ୱରେ ଆତୁର ଆଖିକୁ
ପାଦ ବାନ୍ଧିନେବ ପାଦକୁ
ଅତି ପ୍ରତ୍ୟୟର ସହିତ
ଶବ୍ଦ ଭେଟିବ ଶବ୍ଦକୁ
ଅପରିଚୟର ନିର୍ଜନ ଉପତ୍ୟକାରେ

କିନ୍ତୁ ଟେବୁଲର ଏ ପାଖ ସେ ପାଖ
ନିଜ ନିଜର ସଂପୂର୍ଣ୍ଣତାରେ
ଦୁଇ ସ୍ୱାୟତ୍ତ ବିଶ୍ୱମଣ୍ଡଳ
ଆକାଶ ସମୁଦ୍ର ଓ ଋତୁ ଚକ୍ର
ସମାନ ଭାବରେ ରହିଥାନ୍ତି

କିଛି ବି ସମ୍ଭବେ ନାହିଁ
ଶବ୍ଦ ନାହିଁ ସ୍ପର୍ଶ ନାହିଁ ଦୃଶ୍ୟ ନାହିଁ
ସବୁ ନିଶ୍ଚଳ ଓ ନିର୍ବିକଳ୍ପ

କେବଳ ଉପରକୁ ଉଠୁଥିବା ଧୂଆଁ
ବାରମ୍ବାର ଖିନଭିନ ହେଉଥାଏ
କୌଣସି ଦୂରାନ୍ତର ତାରକାରୁ
କେତେ କୋଟି ବର୍ଷ ତଳେ ବାହାରିଥିବା
ଆଲୁଅର ଧକ୍କାରେ

## ଲକ୍ଷ୍ୟସ୍ଥଳ

କେବଳ ସମୟ ହିଁ ବିତର୍କିତ
ରାସ୍ତା ସହଜ ଓ ସୁଦୂର ପ୍ରସାରୀ
ସମୟ ଯଦିଓ ଛନ୍ଦିଦିଏ
ବ୍ୟତୀତ ବର୍ତ୍ତମାନ ଓ ଆକାଶକୁ
ଧ୍ରୁବତାରା ଅବିଚଳିତ ରହିଥାଏ
ଭବିଷ୍ୟତ ଆଡ଼କୁ ଊର୍ଦ୍ଧ୍ୱମୁଖ ହୋଇ

ଏଥରକ ପାଦ ବଢ଼ାଅ
ବିଛଣା ଉପରୁ ଚଟାଣକୁ
ଅନୁଭବର ଅନ୍ଧାର କୋଠରୀ ଭିତରୁ
ଅଭିଜ୍ଞତାର କାନ୍ଥକୁ ପଛରେ ରଖି
ଭାବାତୀତ ଆକାଶ ତଳକୁ

ସାରା ରାସ୍ତା ସୂର୍ଯ୍ୟ
ଚକମକ ଖରାର ଉଷ୍ଣତାରେ
କାଳପୁରୁଷର ଛାଇ ଲିଭିଯାଏ
ଆଖିର ଆଗ୍ରହ ଲଘିଯାଏ

ଗୋଟିଏ ପରେ ଗୋଟିଏ ପ୍ରତିବନ୍ଧ
ଅନେକ କୋଠରୀର ଆଶ୍ଳେଷ
ଓ ଅନେକ ସ୍ମୃତିର ଅର୍ଗଳୀ
ପାଦ ଯାଇ ଛୁଏଁ
ଏପରି ଶେଷ ସୀମାନ୍ତ ସବୁ
ଯାହା ଅନ୍ୟ ଯାତ୍ରାର ଅୟମାରମ୍ଭ
ଯେଉଁଠାରେ ପହଞ୍ଚିବା ନାହିଁ
କେବଳ ଆଗକୁ ଯିବାର ଆଗ୍ରହ
ଜୟଲାଭ ନାହିଁ ପରାଭବ ନାହିଁ
କେବଳ ନୂଆ ନୂଆ ଯୁଦ୍ଧର ଘୋଷଣା

ଯିବାର ସଂଜ୍ଞା ହିଁ ଦୂରତ୍ୱ
ଯେଉଁଠାରୁ ଫେରିବାକୁ ହୁଏ
ଅନ୍ୟ ଏକ ଗନ୍ତବ୍ୟସ୍ଥଳକୁ
ଗୋଟିଏ ଆରମ୍ଭରୁ ଅନ୍ୟ ଏକ ଆରମ୍ଭକୁ
ଯେଉଁଠାରେ ପ୍ରତ୍ୟାବର୍ତ୍ତନ ହିଁ ଅଗ୍ରସର ହେବା

ଯେଉଁଠାରେ ରାସ୍ତା ସରେ ନାହିଁ
ଧ୍ରୁବତାରା ସମାନ ଦୂରତ୍ୱରେ ରହିଥାଏ
ସବୁ ଅର୍ଗଳୀ ଖୋଲିଯାଏ
ସବୁ କାନ୍ଥ ତଳକୁ ନଇଁଯାଏ
ପ୍ରତିଟି ଚାଲି ଯାଇଥିବା ଲୋକ ପାଇଁ
ଆଉ ଜଣେ ଆସି ପହଞ୍ଚେ

## ଉତ୍ତରାଧିକାର

ଗୋଟିଏ ଜନ୍ମ ଗୋଟିଏ ଜୀବନ
ଓ ଗୋଟିଏ ଦେହାନ୍ତ ଭିତରେ
ପରିପୂର୍ଣ୍ଣ ରହିଥାନ୍ତି
ପ୍ରତ୍ୟେକ ଜାତକର ନିଜସ୍ୱ
ଅସଂଖ୍ୟ ବିକଳ୍ପ ଓ ସମ୍ଭାବନା

କାଳର ଅଯୌକ୍ତିକ ଦାବୀମାନଙ୍କ ମଝିରେ
ସମସ୍ତ ଜଟିଳ ପ୍ରଶ୍ନମାନଙ୍କର ଉତ୍ତର
ଓ ସୃଷ୍ଟିର ସମସ୍ତ ମାୟା ଓ ଲୀଳାର
ସ୍ପଷ୍ଟୀକରଣ ସମ୍ଭବ
ଜନ୍ମ ଓ ମରଣର ଧାରଣା ବହିର୍ଭୂତ

ଜନ୍ମ ପୂର୍ବ ଓ ମରଣ ପର ସମୟ
ଏକତ୍ରିତ ହୋଇଯାନ୍ତି
ଏକ ଅବିଚ୍ଛିନ୍ନ ସ୍ରୋତରେ
ଯାହାର ବିସ୍ତୃତି ଭିତରେ
ଏକାଧିକ ଜୀବନ
ଏବଂ ବହୁବିଧ ମୃତ୍ୟୁ
ଜୀବନ ପରେ ଅନ୍ୟ ଜୀବନ
ଏବଂ ମୃତ୍ୟୁ ପରେ ଅନ୍ୟାନ୍ୟ ମୃତ୍ୟୁ
ଅନେକ ଲୋଭନୀୟ ମୃତ୍ୟୁ ପୂର୍ବରୁ
ଅନେକ ଆକାଂକ୍ଷିତ ଜୀବନ
ସୁସଜ୍ଜିତ ରହିଥାନ୍ତି
କେଉଁ ଏକ ଲୁପ୍ତ ସଭ୍ୟତାର
ଧ୍ୱଂସାବଶେଷ ତଳେ କିମ୍ବଦନ୍ତୀ ହୋଇ
ସ୍ମରଣର ସାନ୍ତ୍ୱନାରେ ସ୍ୱରଲିପି
ଶୂନ୍ୟଗର୍ଭ ଅନ୍ଧକାର ଭିତରେ
ବ୍ୟତୀତ ମୁହୂର୍ତ୍ତମାନଙ୍କର ରୂପ ନେଇ
ଏପରି ଅସଂଖ୍ୟ ଜୀବନ

ଯେଉଁମାନଙ୍କର କୌଣସି ବାସ୍ତବତା ନାହିଁ
ବଞ୍ଚିବାର ଅଦମ୍ୟ ଇଚ୍ଛାମାନଙ୍କଠାରୁ ପୃଥକ

ଜୀବନ ଓ ମୃତ୍ୟୁ ଲହରୀ ଭଳି ଆସନ୍ତି
ଦୁଃସ୍ୱପ୍ନର ସମୁଦ୍ର ଉପରେ
ସେମାନଙ୍କୁ ବାନ୍ଧି ରଖିବାକୁ ହୁଏ
ବିସ୍ତାରିତ ଆଖି ପିତୁଳାରେ
ମୃତ୍ୟୁ ଦୋଳାୟମାନ ହେଉଥାଏ
ଇନ୍ଦ୍ରଧନୁର ମଉଳି ଆସୁଥିବା ରଙ୍ଗରେ
ତାକୁ ଚିତ୍ରିତ କରିବାକୁ ହୁଏ
ଆଶାର ଶାଶ୍ୱତ ସମ୍ଭାରରେ
ଜୀବନ ଅସ୍ତ ଯାଏ
ବିମର୍ଷ ଭାଗ୍ୟର ଆକାଶରେ
ତାକୁ ପୁଣି ତୋଳି ଆଣିବାକୁ ହୁଏ
ହଠାତ ପ୍ରତୀୟମାନ ସକାଳମାନଙ୍କରେ

ପରସ୍ପରକୁ ଆଚ୍ଛାଦିତ କରି ରଖିଥିବା
ଜୀବନ ଓ ମୃତ୍ୟୁ
ଏବଂ ଅଗଣିତ ଜୀବନ
ଯାହାର କୌଣସି ସୀମାରେଖା ନାହିଁ
ଏକାଧାରରେ ଆକାଶ ସୂର୍ଯ୍ୟ ଓ ମେଘ
ସମୁଦ୍ର ଇନ୍ଦ୍ରଧନୁ ଓ ସୂର୍ଯ୍ୟ
ଏକ ସମୟରେ ମଧ୍ୟାହ୍ନ ମଧ୍ୟରାତ୍ରି
ଓ କଳ୍ପନା ବହିର୍ଭୂତ ଆକାର
ଯେଉଁଥିରୁ ମନୋନୀତ କରି ନେବାକୁ ହୁଏ
ସ୍ୱକୀୟ ଜୀବନମାନଙ୍କୁ
ସମସ୍ତ ରୂପ ସ୍ୱର ଓ ରଙ୍ଗ
ନିଜ ଭିତରେ ଆସ୍ୱାଦନ କରି
ନିଜକୁ ପାରଦର୍ଶୀ କରି ଦେଇ

ଅନେକ ମୃତ୍ୟୁ ଉପଭୋଗ କରିବା ପୂର୍ବରୁ
ଅନେକ ବଞ୍ଚିବାକୁ ବରଣ କରିବାକୁ ହୁଏ
ସମୟ ସାକାର ହୋଇ
ଆଗରେ ଆସି ଠିଆ ହୁଏ
କ୍ରମଶଃ ପ୍ରତୀତ ହୁଏ
ଅତୀତ ଓ ବର୍ତ୍ତମାନ

ସମୟାନ୍ତରର ଅବଲମ୍ବନ ନେଇ
ସ୍ୱୀକାର କରି ନେବାକୁ ହୁଏ
ମୃତ୍ୟୁରୁ ଅନ୍ୟ ମୃତ୍ୟୁ
ଏବଂ ଜୀବନରୁ ପୁନର୍ଜୀବନର ଦାବୀକୁ

## ସ୍ୱର୍ଗଦ୍ୱାର

ଏଠାରେ କେହି ଅଟକି ରହେ ନାହିଁ
ସମୁଦ୍ର ଓ ସମୟ ମଝିରେ
କେବଳ ସାମୟିକ ଅପେକ୍ଷାର
ଏ ହେଉଛି ଆଶ୍ରୟସ୍ଥଳ ମାତ୍ର

ଏଠାରେ ପୂର୍ବପୁରୁଷମାନେ
ହାତ ମୁଠାରେ ଧରି ରଖିଥାନ୍ତି
ପରକାଳର ଭବିଷ୍ୟଦ୍‌ବାଣୀ
ଭାଗ୍ୟ ଓ ପୁରୁଷକାର ମଝିରେ
ଝୁଲି ରହେ ଅନ୍ଧବିଶ୍ୱାସର ଶୂନ୍ୟସ୍ଥାନ
ଘନୀଭୂତ ହୋଇଥିବା ମନ୍ତ୍ରୋଚ୍ଚାରଣ

ଆକାଶରେ ଭାସୁଥାଏ
ଲିଭି ଆସୁଥିବା ଅଙ୍ଗାରମାନ
ବିକୀରଣ କରିଯାନ୍ତି
ଛୋଟ ଛୋଟ ନିଷ୍ପାପ ଅନ୍ଧାର

ଜୀବନ ଯଦିଓ ଏକ ପ୍ରତ୍ୟାବର୍ତ୍ତନର କ୍ରମ
ଏଠାରେ ପହଞ୍ଚିବା ପରେ
ପୁରାତନ ଅନ୍ଧାରକୁ ଫେରିଯିବା
ଆଉ ସମ୍ଭବ ନୁହେଁ
ତାକୁ ଅନ୍ୟ ଏକ ଅନ୍ଧକାର
ଆବୃତ କରି ସାରିଥିବ

ଅନ୍ଧାର ଭିତରେ ସମସ୍ତେ
ଅଚିହ୍ନା ହୋଇଯାନ୍ତି
ସମୟହୀନ ଦୃଷ୍ଟିପାତ
ସମସ୍ତଙ୍କୁ ଲିଭାଇ ଦିଏ ସ୍ମରଣରୁ
ଝାଉଁଗଛ ଉପରୁ ଓହ୍ଲାଇ ଆସେ
ଅଜଣା ଭୟର ପ୍ରେତାତ୍ମା
ସମୁଦ୍ରର ବିସ୍ତୃତିରେ ବିଲୀନ ହୋଇଯାଏ
ଐଶ୍ୱରିକ ନିସ୍ତବ୍ଧତା ସବୁ
ଭାରୀ ପାଦରେ ଚାଲିଯାନ୍ତି
ଅପ୍ରତ୍ୟାଶିତ ଅଭିବାଦନମାନ
ପ୍ରତିଟି ଅଙ୍ଗାରରେ ଗୋଟିଏ ଗୋଟିଏ
ଅସହାୟ ପାପକୁ ଛାଡ଼ିଦେଇ

ଶେଷ ଅଗ୍ନିକଣା ସବୁ
ନିର୍ବାପିତ ହୋଇଯିବା ପୂର୍ବରୁ
ଧାର୍ମିକ ଆକାଶ ଉପରୁ
ଆଶୀର୍ବାଦ ଭଳି ବର୍ଷିଯାଏ

ଶୀତଳ ହେଉ ନଥିବା ସ୍ଫୁଲିଙ୍ଗ ଉପରେ
ବିନ୍ଦୁ ବିନ୍ଦୁ ପ୍ରତ୍ୟାଶା
ଆଖିରେ ପ୍ରତିଫଳିତ ଆଲୁଅ ଭିତରେ
ଏକ ଅଶାନ୍ତ ନୈତିକତାର ଝଡ଼ ଚାଲିଯାଏ
ସମୁଦ୍ର ଗର୍ଜନ କରୁଥାଏ
ଉତ୍ତପ୍ତ ଧମନୀମାନଙ୍କ ଭିତରେ
ଘଣ୍ଟ ଧ୍ୱନି ସ୍ତବ୍ଧ କରିଦିଏ
ପବନର ଗୋପନୀୟ ଆତଙ୍କମାନଙ୍କୁ

ମନ୍ଦିର ଆଉ ଏଠାରୁ ଦୂର ନୁହେଁ
ରାସ୍ତା ସବୁ ସଙ୍କୁଚିତ ହୋଇଗଲେ
ଚିତା ପାଖରୁ ହିଁ
ପାହାଚ ଆରମ୍ଭ ହୋଇ ଯାଇଥାଏ
ଚିରନ୍ତନ ସମୁଦ୍ର ଉପରେ ଭାସୁଥାଏ
ଆବହମାନ କାଳର ଅବୟବ
ସଂଧ୍ୟାର ରୁଦ୍ଧଶ୍ୱାସ ମନ୍ତ୍ରପାଠ
ପହଞ୍ଚାଇ ଯାଏ
ମୁଠା ମୁଠା ଅନ୍ଧାର
ପଥରର ଖୋପମାନଙ୍କରୁ
ବାହାରି ଆସନ୍ତି କୁସଂସ୍କାରମାନ
ସ୍ତୋତ୍ରମାନ ଘୂରି ବୁଲୁଥାନ୍ତି
କିମ୍ବଦନ୍ତୀର ଅକ୍ଷରେଖା ଚାରିପାଖେ
ରତ୍ନ ସିଂହାସନ ତଳେ
ସଂଧ୍ୟା ଦୀପ ମ୍ରିୟମାଣ ଜଳୁଥାନ୍ତି
ଛୋଟ ଛୋଟ ଦୁଃଖ ଭଳି

ଅପେକ୍ଷା ଭିତରେ ହିଁ
ଚିତ୍ତାକର୍ଷକ ଭାଗ୍ୟ ଆସି ଚମକେ
କୌଣସି ଏକ ଗୋପନୀୟ ରାଜିନାମା
ମଣିଷକୁ ସମ୍ମିଳିତ କରିଦିଏ ସୃଷ୍ଟି ସହିତ

ପୃଥିବୀର ସମସ୍ତ ଗତିବିଧିକୁ
ତାର ପ୍ରତିଟି ପଦପାଦ ସହିତ
ସନ୍ତୁଳିତ କରିଦିଏ
ତୀର୍ଥ ଯାତ୍ରୀମାନଙ୍କୁ
ଅଚିହ୍ନିତ ସ୍ଥାନମାନଙ୍କୁ ଫେରାଇ ଦେଇ
ତାରାମାନଙ୍କ ସହିତ
ଅବଶିଷ୍ଟ ଜୀବନମାନଙ୍କୁ ଛନ୍ଦିଦେଇ

ଆଖି ଖୋଲିବା ମାତ୍ରେ ହିଁ
ସାନ୍ତ୍ୱନା ଓ ବୈଚିତ୍ର୍ୟରେ ପରିପୂର୍ଣ୍ଣ
ସମସ୍ତ ସ୍ୱପ୍ନ ପଶି ଆସନ୍ତି ଭିତରକୁ
ଛଳନାର ଆବଶ୍ୟକତା ନ ଥାଏ
ଏପରି ମୃତ୍ୟୁ ପ୍ରତୀୟମାନ ହୁଏ
ଯେଉଁଥିରେ ସମସ୍ତଙ୍କର ବିଶ୍ୱାସ ପ୍ରତିଫଳିତ
ନିଷ୍ପାପ ନିରୀହତା ଏବଂ ଅଭିଜ୍ଞତା ମଝିରେ
ଏପରି ଏକ ଆଶ୍ୱସ୍ତ ବର୍ତ୍ତମାନ
ଯେଉଁଠାରେ ଅତୀତ ଓ ଭବିଷ୍ୟତ
କେବେହେଲେ ପରସ୍ପରକୁ ଭେଟିବେ ନାହିଁ

## ଭବିଷ୍ୟତ

ଜୀବନର ଉପତ୍ୟକା ଉପରେ ଠିଆ ହୋଇ
ବ୍ୟତୀତ ବୃତ୍ତାନ୍ତମାନଙ୍କ ବିଶ୍ଳେଷଣ କଲେ
ସେଥିରେ କୌଣସି ନିଷ୍କର୍ଷ ନ ଥାଏ
ସବୁ କେବଳ ଏକ ଛାୟାହୀନତା
ପ୍ରଜ୍ୱଳିତ ମଧ୍ୟାହ୍ନ ଯେଉଁଥିରୁ

ସମସ୍ତ ରଙ୍ଗ ଶୋଷି ନେଇଥାଏ

ସମୟକୁ ଅତିକ୍ରମ କରି ଗଲାବେଳେ
ନୀତିବାକ୍ୟ ଓ ଉପଦେଶମାନ
ଛାଇ ଭଳି ଅନୁଧାବନ କରନ୍ତି
ପ୍ରତିଟି ପ୍ରାକୃତିକ ପଦକ୍ଷେପକୁ
ପରୀକ୍ଷା ନିରୀକ୍ଷା ଓ ସଂଶୟମାନଙ୍କରେ
ସନ୍ଦିଗ୍ଧ ରହିଯାଏ
ଆରୋହଣର ପ୍ରତ୍ୟେକ ପାହାଚ
ବ୍ୟତୀତ ରାତିର ଅନୁଶୋଚନା ଆସେ
ପ୍ରତିଟି ଆସନ୍ନ ସୂର୍ଯ୍ୟୋଦୟକୁ
ମ୍ଳାନ କରି ଦେବାର ସ୍ପର୍ଦ୍ଧା ନେଇ

ସେ ଭଳି ଘଟଣା ସବୁକୁ
ଆତ୍ମଗତ କରି ହୁଏ ନାହିଁ
ଯାହାର ପୂର୍ଣ୍ଣ ସ୍ୱରୂପ ବିକଶିତ ହେବ
କେଉଁ ଦୂରନ୍ତ ଆଗାମୀରେ
ଦିନଲିପିର ପୃଷ୍ଠାରେ
ମୁହୂର୍ତ୍ତମାନ ଅପରିଣତ ରହିଥିବେ
ଭବିଷ୍ୟତ ଆସି ବ୍ୟତୀତ ସମୟମାନଙ୍କୁ
ଏକ ନିର୍ଦ୍ଦିଷ୍ଟ କ୍ରମରେ
ସଜାଇ ଦେଇ ଯିବା ପର୍ଯ୍ୟନ୍ତ

କେବଳ ଭବିଷ୍ୟତ ହିଁ ରଙ୍ଗ ଦେଇଯିବ
ପ୍ରତିଟି ଧୂସର ଅନୁଭବରେ
କେବଳ ଭବିଷ୍ୟତ ପରିପୂର୍ଣ୍ଣ କରି ପାରିବ
ଶୂନ୍ୟଗର୍ଭ ଆଶ୍ୱାସନାମାନଙ୍କୁ
କେବଳ ଭବିଷ୍ୟତ ହିଁ ଜୀବନ୍ୟାସ ଦେଇ
ରକ୍ତମାଂସରେ ସାକାର କରିଦେବ
ସ୍ୱପ୍ନର ଅଶରୀରୀ ଆତ୍ମାମାନଙ୍କୁ

ସମୟର ଅଧିତ୍ୟକା ଉପରେ
ସିଂହାବଲୋକନ ନିରର୍ଥକ
ଭବିଷ୍ୟତ ଯୋଗଫଳ ମାତ୍ର ନୁହେଁ
ଅତୀତ ଓ ବର୍ତ୍ତମାନର
ଯେଉଁଠାରେ ଭବିଷ୍ୟତର ସମ୍ଭାବନା ନାହିଁ
ସେଠାରେ ଅତୀତ ଓ ବର୍ତ୍ତମାନ ବି ବ୍ୟର୍ଥ
ଜୀବନର ମଧ୍ୟଭାଗରେ
କୌଣସି ବ୍ୟତୀତ ଭବିଷ୍ୟତ ନ ଥାଏ
ସେଠାରେ କେବଳ ଆସନ୍ନ ଅତୀତ
ଓ ଭାବୀ ବର୍ତ୍ତମାନ

ଆତ୍ମ ନିରୀକ୍ଷଣ ଆଉ ସମ୍ଭବ ନୁହେଁ
କୌଣସି ସାଂପ୍ରତିକତାକୁ
ସ୍ୱୀକାର କରି ଲାଭ ନାହିଁ
କାହାରି କୌଣସି ଅସ୍ତିତ୍ୱ ନାହିଁ
ଆଗାମୀ ସମୟ ଆସି ବର୍ତ୍ତମାନକୁ
ଆବୃତ୍ତ କରିଦେବା ପର୍ଯ୍ୟନ୍ତ

## ସ୍ୱୀକାରୋକ୍ତି

ମୁଁ ଏଥରକ ସବୁ ମାନିନେବି
ମୋର ଶପଥବଦ୍ଧ ସତ୍ୟପାଠରେ
ତମର ସମସ୍ତ ଅଭିଯୋଗର
ପ୍ରତ୍ୟେକଟି ଅପରାଧ
ଯାହା କେବେ ସଂଘଟିତ ହୋଇ ନାହିଁ

ତମର ଅଭିବାଦନରେ
ମୁଁ ସଂବରଣ କରିନେବି
ଦିନକୁ ଭାରାକ୍ରାନ୍ତ କରି ଯାଉଥିବା
ମୋର ଆହ୍ଲାଦର ବିମର୍ଷ ମୁହୂର୍ତ୍ତମାନ
ଯାହା ବିଶ୍ୱାସର ବହିର୍ଭୂତ

ଏକ ଶବ୍ଦହୀନ ଚିତ୍କାରରେ
ମୁଁ ଫେରାଇ ଆଣିବି
ମୋର ସ୍ୱପ୍ନମୁଖୀ ଅନ୍ୱେଷଣମାନଙ୍କୁ
ଯେଉଁମାନେ ଲକ୍ଷ୍ୟଭ୍ରଷ୍ଟ ହୋଇଗଲେ
ଇତସ୍ତତଃ ହୋଇଯାଇଥିବା ଆକାରମାନଙ୍କରେ
ତମର ପ୍ରତିରୂପ ଖୋଜି ଖୋଜି

ପ୍ରତୀକ୍ଷା ହିଁ ସମୟ
ଏବଂ ସାକ୍ଷାତ ହିଁ ଶେଷ କଥା
ମୁଁ ନିରୁଦ୍ଦିଷ୍ଟ ହୋଇଯିବି
ଅଚିହ୍ନା ଲୋକମାନଙ୍କର
ଭୁଲି ଯାଇଥିବା ରାସ୍ତାମାନଙ୍କରେ
ଯେଉଁଠାରେ ତମର ଆବିର୍ଭାବ
ମୋର ପାପ ଓ ପୁଣ୍ୟ ମଝିରେ
ସୀମିତ ନ ଥିବ

## ଆଗନ୍ତୁକ

ଦୂର ପର୍ବତମାନଙ୍କ ଉପରେ
ବର୍ଷା ହଠାତ ବନ୍ଦ ହୋଇଯାଏ

ଅଙ୍କାବଙ୍କା ରାସ୍ତା ଦେଇ
ଅପରିଚିତ ଲୋକଟି
ଓହ୍ଲାଇ ଆସେ ଘର ପାଖକୁ
କୁହୁଡ଼ି ତଥାପି ଘୁଞ୍ଚି ନ ଥାଏ
କବାଟରେ କରାଘାତ ହୁଏ

ପାଦ ଶବ୍ଦକୁ ପରଖି
ଆଖି ମାପି ନିଏ ଦୂରତ୍ୱକୁ
ମନ ବିଶ୍ଳେଷଣ କରି ନିଏ
ଅଦୃଶ୍ୟ ମୁହଁର ରଙ୍ଗ ରୂପ
ଭୟ ଓ ଇଚ୍ଛାର ଯବକାଚ ଦେଇ

ମୁହଁ ଉପରେ ମୁହଁ ଭାସିଯାଏ
ଅପେକ୍ଷା କରୁଥିବା ଲୋକ
ଅପ୍ରତ୍ୟାଶିତ ଅତିଥି
ମନେ ପକାଇବାକୁ ଚାହୁଁଥିବା ପ୍ରିୟଜନ
ଶୃଙ୍ଗାର ରୁଦ୍ର ଓ ଭୟାନକ
ରସମାନଙ୍କରେ ଜର୍ଜରିତ ମୁହଁ
ଅଧୀରା ସାମାନ୍ୟା ପ୍ରଗଲ୍‌ଭା ଓ ଖଣ୍ଡିତା

ପୁଣି ସବୁ ଲିଭିଯାଏ
ପର୍ବତ ଅଦୃଶ୍ୟ ହୋଇଯାଏ
ମେଘକୁ ଚିରି ସୂର୍ଯ୍ୟ ଆସେ ନାହିଁ
ସବୁ ଆଲୋକ କ୍ଷଣିକ
କେବଳ ବିଜୁଳିର ଝଲକ ମାତ୍ର
କବାଟ ସେ ପାଖେ କେହି ନାହିଁ
ପହଞ୍ଚି ନଥିବା ଲୋକମାନଙ୍କର
ସ୍ୱପ୍ନ ଭାଙ୍ଗି ଯାଇଥାଏ
ବର୍ଷା ବର୍ଷା ଅପରାହ୍ନର

ମୁହଁ ଅନ୍ଧାରରେ

## ଚିତ୍ରପଟ

କଣ ଆଉ ରହିଯାଏ ଚାଲିଯିବା ପରେ
କିଛି ଶବ୍ଦ କିଛି ସ୍ୱର କିଛି ସ୍ପର୍ଶ
କିଛି ନିଃସଙ୍ଗ ସାର୍ବଜନିକତା
ଓ ମନ ଭିତରର ଶୂନ୍ୟତାରେ
ଅସ୍ତବ୍ୟସ୍ତ ହେଉଥିବା କେତୋଟି ମାତ୍ର
ସ୍ମୃତିସମ୍ବଳିତ ଆଲୋକଚିତ୍ର ବ୍ୟତୀତ

ତା ପରେ ମତେ ବ୍ୟତିବ୍ୟସ୍ତ କରି
ତମ ସହରର ଚିତ୍ରପଟ
ମୋର ଠିକଣା ଖୋଜି ଆସି ପହଞ୍ଚେ
(ତମର ସ୍ମୃତି ସବୁ ବି
ମତେ ଆସି ଅସ୍ଥିର କରନ୍ତି
ତମେ କଣ ସେ ସ୍ମୃତିମାନଙ୍କ ଉପରେ ବି
ମୋର ଠିକଣା ଲେଖିଥିଲ)

ମୁଁ ଆସି ଓହ୍ଲାଏ
ଏକ ରୂପକଥାର ନକ୍‌ସା ଉପରେ
ଯାହାର ତୃତୀୟ ଦିଗନ୍ତ ନାହିଁ
ଏବଂ ଯେଉଁଠାରେ କେବଳ
ସଂଶୟର ପରସ୍ପରକୁ ଛୁଉଁ ନଥିବା
ସରଳରେଖାମାନ

ମୁଁ ତମର ସହରର ଚିତ୍ରକୁ ଅନାଏ
ଏ ରାସ୍ତା କଣ ଅନ୍ତହୀନ
ନା ଏକ ଅନ୍ଧଗଳି
କାନ୍ଥମାନଙ୍କ ଆରପାଖେ
କିଏ ଅପେକ୍ଷମାଣ ରହିଛି
ଅଥବା ସବୁ କିଛି ଶୂନଶାନ
ରାସ୍ତା ଉପରର ଏକାକୀ ଶିଶୁଟି
ହଠାତ କଣ ଯାଇ ଉପନୀତ ହେବ
ଶୈଶବରୁ ଯୌବନରେ
ଏବଂ ତାର ଆଖି ଦୁଇଟି
ନୀଳବର୍ଣ୍ଣର ସ୍ୱପ୍ନରେ ଆକ୍ରାନ୍ତ ହୋଇଯିବ
ଏ ରାସ୍ତା ଉପରେ ଶୋଭଯାତ୍ରା ଯିବ
ନା ଶବ ଯାତ୍ରା
ନା ସବୁ କିଛି ଅଟକି ଯିବ
ଏକ ବିଲକ୍ଷଣ ଆକ୍ରୋଶରେ

ରାସ୍ତାର ନିର୍ଦ୍ଦିଷ୍ଟ କ୍ଷେତ୍ର ଉପରେ
ସଜାଗ ରହନ୍ତି ସମସ୍ତ ସଂଶୟ
ଦୃଷ୍ଟି ପ୍ରସାରିତ ହୋଇଯାଏ
ଚିତ୍ରବହିର୍ଭୂତ ଶେଷ ବିନ୍ଦୁ ପର୍ଯ୍ୟନ୍ତ
ସମାନ୍ତରାଳ ରେଖାମାନ
ମୌନ ଓ ଅପରିବର୍ତ୍ତିତ ରହିଥାନ୍ତି

କାହାରି ପାଖେ ଉତ୍ତର ନାହିଁ
ସବୁ କଥା ଜାଣେ
କିନ୍ତି ନିର୍ବାକ ରହିଥାଏ
କ୍ୟାମେରାର ନିର୍ବିକାର ଯବକାଚ
ଯାହା ସ୍ଥିର ଅବିଚଳିତ

ଏବଂ ସଂଶୟରହିତ

## ସମୁଦ୍ର ଯାତ୍ରା

ପ୍ରତ୍ୟେକଟି ସମୁଦ୍ର ଯାତ୍ରାର
ଆରମ୍ଭ ହୁଏ ଏଇ ପରି :
କର୍ଣ୍ଣଧାର ହତଚକିତ ଅନାଇ ରହିଥାଏ
ନୌକା ନିଜେ ନିଜେ ଭାସିଯାଏ
ସେ ଜାଣି ପାରେ ନାହିଁ
ତାର ନୌକା ପବନରେ ଉଡ଼ିଯାଏ
ଅଥବା ତାର ହାତର କିଞ୍ଚିତ
ପ୍ରତିକ୍ରିୟା ଥାଏ ନୌକାର ଭାସିବାରେ

ଆଖିରେ ଆଶ୍ରିତ ରହିଥାଏ
ଅନେକ ଦୂରନ୍ତ ଦ୍ୱୀପର ନିମନ୍ତ୍ରଣ
ସମୁଦ୍ରର ଶାନ୍ତ ଜଳରାଶି ଉପରେ
ଲକ୍ଷ୍ୟହୀନ ଭାବରେ ଭାସୁଥାଏ
ହତୋତ୍ସାହ ନିରୁପାୟ ସ୍ୱପ୍ନ
ଦିଗ ନିର୍ଣ୍ଣୟ କରିବା ପୂର୍ବରୁ
ପବନ ଉଡ଼ାଇ ନିଏ
ଜାହାଜ ଓ ଲକ୍ଷ୍ୟସ୍ଥଳମାନଙ୍କୁ

ହାତର ରେଖାକୁ ଅନାଇ
ନାବିକ ଖୋଜି ବୁଲୁଥାଏ
ଗୋଟିଏ ସମୁଦ୍ରରୁ ଆଉ ଏକ ସମୁଦ୍ର
ଜାହାଜର ପକ୍ଷୀ
ଯେଉଁମାନଙ୍କର ଦିଗ୍‌ବଳୟ ନାହିଁ
ଉଡ଼ିଯାନ୍ତି ଗୋଟିଏ ଜାହାଜରୁ

ଅନ୍ୟ ଜାହାଜର ଆଶ୍ରୟକୁ

ପ୍ରତ୍ୟେକ ଯାତ୍ରୀର ଏକ ନିଜସ୍ୱ ସମୁଦ୍ର
ଯେଉଁଠାରେ ସେ ଭାସେ
ମାନଚିତ୍ର ତିଆରି କରେ
ପୁଣି ସୂର୍ଯ୍ୟାସ୍ତ ଭିତରକୁ
ନୌକା ନେଇ ନିରୁଦ୍ଦିଷ୍ଟ ହୋଇଯାଏ
କିନ୍ତୁ ପୁଣି ଯେତେବେଳେ ସେ
ନୂଆ ସମୁଦ୍ରକୁ ସନ୍ଧାନ କରେ
ଅନ୍ୟ ନୌକା ଆସି
ପାଦ ତଳେ ଲାଗିଯାଏ

ପ୍ରତ୍ୟେକ ତଟଭୂମିର ଉଭୟ ପାର୍ଶ୍ୱରେ
ସ୍ଥଳ ଓ ଜଳରାଶିର ସମୁଦ୍ର
ପ୍ରତ୍ୟେକଟି ପୋତାଶ୍ରୟ
ଆରମ୍ଭ ଓ ପରିସମାପ୍ତି
ମାନଚିତ୍ରକୁ ଉପେକ୍ଷା କରି
ଜାହାଜ ଆସି ଲାଗିଯାଏ
ଘୁଞ୍ଚି ଯାଉଥିବା ପ୍ରତିଶ୍ରୁତିମାନଙ୍କର
ଦୋଦୁଲ୍ୟମାନ ବାଲିଚରରେ
ଖାଁ ଖାଁ ଆକାଶ ଧୂ ଧୂ ବାଲି
କେହି କୁଆଡେ ନ ଥାନ୍ତି
କେବଳ ସମୁଦ୍ରର ଅଶାନ୍ତ ଝଡ଼
ଚିତ୍କାର କରି ଡାକୁଥାଏ
ଫେରି ଆସ ସିନ୍‌ବାଦ

# ଭାସମାନ ଦିନ

ପାର୍କର ବେଞ୍ଚ ଉପରେ ବସି
ମୁଁ ସମ୍ବରଣ କରିନିଏ
ସକାଳର ଖରାରେ ଚକମକ
କୃଷ୍ଣଚୂଡ଼ାର ଆଗ୍ନେୟ ବିସ୍ଫୋରଣକୁ
ସାରାଦିନ ଚାହିଁ ରହିବାର ଇଚ୍ଛା

ପ୍ରଜାପତି ଯେତେବେଳେ ଡେଣାରୁ ଝାଡ଼ିଦିଏ
ଶେଷ ଫୁଲର ଆଶ୍ଳେଷ
ପ୍ରାଚୀର ପତ୍ରମାନଙ୍କୁ ପଢ଼ି ପଢ଼ି
ପକ୍ଷୀମାନେ ଉଡ଼ି ଚାଲିଯାନ୍ତି
ସାଧକର ସ୍ତୁତିପାଠ ବର୍ଷିଯାଏ
ବିନ୍ଦୁ ବିନ୍ଦୁ ଦୁଃସମ୍ବାଦ ଭଳି
ଭାସମାନ ଦିନମାନ
ଅସ୍ତବ୍ୟସ୍ତ କରି ଦିଅନ୍ତି
ଚେତନାର କେନ୍ଦ୍ରବିନ୍ଦୁମାନଙ୍କୁ

ସକାଳ ଖବରକାଗଜର
ମଉଳି ଯାଉଥିବା ପୃଷ୍ଠାମାନଙ୍କରେ
ନିଶ୍ଚିହ୍ନ ହୋଇଗଲେ
ଜୀବନର ପ୍ରିୟ ଦୁର୍ଘଟଣାମାନ
ମୁଁ ଛାଡ଼ି ଆସିଲି ମୋର
ପ୍ରତିଟି ପ୍ରେମର ପ୍ରତିଧ୍ୱନି
ସୂର୍ଯ୍ୟାସ୍ତର ନିଃଶବ୍ଦ ତୋରଣ ତଳେ
ଚାଲିଯାଉଥିବା ଲୋକମାନେ
ମୋର ସମୟ ସବୁକୁ ନେଇଗଲେ
ଏପରି ଅଟକି ଯାଇଥିବା ମୁହୂର୍ତ୍ତମାନ

ଯାହା ମୁଁ ସଞ୍ଚୟ କରି ରଖିଥିଲି
ମୋର ପ୍ରତିଟି ହରାଇ ଦେଇଥିବା
ପରିଚୟର ବିନିମୟରେ

କାହାନ୍ତି ଆଉ ମୋର ଅଧୈର୍ଯ୍ୟ ଅପେକ୍ଷାର
ନ ଦେଖିଥିବା ମୁହଁ ସବୁ
କେଉଁ ଅଜ୍ଞାତ ଆଖିମାନଙ୍କରେ
ଲୁକ୍କାୟିତ ମୋର ଇପ୍ସିତ ପ୍ରତିବିମ୍ବ
କେଉଁଠାରେ ମୋର ପ୍ରାଥମିକ ପରିଚୟର
ଅପୂର୍ବ ରୋମାଞ୍ଚ ସବୁ

ସକାଳ ମଉଳି ମଉଳି ଯାଏ
ପକ୍ଷୀ ଉଡ଼ିଯାନ୍ତି ସୂର୍ଯ୍ୟାସ୍ତର ଶୂନ୍ୟକୁ
ପତ୍ର ବିବର୍ଣ୍ଣ ହୋଇ ଝଡ଼ିପଡ଼େ
ଆଖିରୁ ଅପସରିଯାନ୍ତି
ଚାଲି ଯାଉଥିବା ପାଦ
ବଦଳି ଯାଉଥିବା ମୁହଁ
ଘୁଞ୍ଚି ଯାଉଥିବା ରାସ୍ତା

ମୁଁ ନିଜ ଭିତରକୁ ଅନାଏ
ମୋର ଗୋପନୀୟତମ ଇଚ୍ଛାମାନେ
ଯେଉଁଠାରେ ସ୍ଥିର ଓ ପ୍ରସ୍ତରୀଭୂତ
ଭାଙ୍ଗି ପଡୁଥିବା କୋଣାର୍କର
କୌଣସି କମନୀୟ ମୁଦ୍ରାରେ

# ସମୟ ଲିପି

ଦୃଶ୍ୟ ଶେଷରେ
ଆଖି ଯଦିଓ ନିଜର ବୋଧଶକ୍ତିକୁ
ପ୍ରତ୍ୟାହାର କରିନିଏ
ଆକାଶ ଅଦ୍ଭୁତ ଭାବରେ
ନୀଳ ରହିଥାଏ

କଥାବାର୍ତ୍ତା ଶେଷରେ
ବିଦାୟ ନେଲା ପରେ
ଦୀର୍ଘଶ୍ୱାସ ସବୁ
ସଜାଡ଼ି ହୋଇ ରହିଥାନ୍ତି
ନିଃଶବ୍ଦତାର ସ୍ୱରଲିପିମାନଙ୍କରେ

ଆଉ ଗୋଟିଏ ପ୍ରେମକୁ
ହରାଇ ଦେବା ପରେ
ରାସ୍ତା ଉପରକୁ ଓହ୍ଲାଇ ଆସିଲେ
ପତ୍ର ସବୁ ହଳଦିଆ ହୋଇ ଯାଇଥାନ୍ତି
କିନ୍ତୁ ଟାଉନହଲ ଘଣ୍ଟା ଉପରେ
ସୂର୍ଯ୍ୟ ଚମକୁଥାଏ

ପରିଚୟର ବନ୍ଧନ ସବୁ
ଯେତେବେଳେ ଶିଥିଳ ପଡ଼ିଯାଏ
ହାତରୁ ହାତ ଏବଂ
ଆଖିରୁ ଆଖି ପ୍ରତ୍ୟାହୃତ ହୋଇଯାଏ
ମୁହଁ ସବୁ ହଜିଯାନ୍ତି
କିନ୍ତୁ ଦିଗ୍‌ବଳୟ ନିର୍ଦ୍ଦିଷ୍ଟ ଆକାର ନେଇ
ପାଖକୁ ଘୁଞ୍ଚି ଆସେ

ବିବର୍ଣ୍ଣ ହୋଇଯାଏ ଘନିଷ୍ଠତା ସବୁ
ଋତୁ ବଦଳିଯାଏ
ସୂର୍ଯ୍ୟ ଚନ୍ଦ୍ର ଓ ଗ୍ରହ ନକ୍ଷତ୍ରମାନ
ଆହୁରି ଏକ ବିବର୍ତ୍ତନ
ସମାପନ କରି ନିଅନ୍ତି
ନଭ ମଣ୍ଡଳର ସାମାନ୍ୟ ବିଚଳନରେ
ଲିପିବଦ୍ଧ ହୋଇଯାଏ
ଏକ ନଗଣ୍ୟ ଶୂନ୍ୟ ବିନ୍ଦୁ

## ସ୍ଥିତପ୍ରଜ୍ଞ

ପ୍ରଜ୍ଞାର ସୀମାନ୍ତରେ ବସି
ସେ ବୁଝିବା ପାଇଁ ଚେଷ୍ଟା କରେ
ଯାହା ସବୁ ଅନୁଭବସିଦ୍ଧ ନୁହେଁ
ଇନ୍ଦ୍ରିୟମାନଙ୍କୁ ପ୍ରତ୍ୟାହାର କରି
ସେ ସଂଗ୍ରହ କରିନିଏ
ସ୍ୱୟଂଭୂ ସିଦ୍ଧାନ୍ତମାନଙ୍କୁ

ମନ୍ଦିରର ଅସରନ୍ତି ପାହାଚରେ
ଉପର ଓ ତଳକୁ ଯିବାର
ନିର୍ଦ୍ଧାରଣ କରିବା ଭିତରେ
ଦେବ ବିଗ୍ରହ ଚୋରି ଯାଏ
ସମୟକୁ ହିସାବ ମାଗିବା ବେଳେ
ଦିଗ୍‌ବଳୟ ପଛରେ
ଋତୁମାନେ ଲୁଚି ରହିଯାନ୍ତି
ନିୟମାନୁବର୍ତ୍ତିତାର ଜ୍ୟାମିତିରେ

ଲତାମାନେ ବନ୍ଦ କରିଦିଅନ୍ତି
ଅରଣ୍ୟର ରହସ୍ୟମୟ ରାସ୍ତାକୁ

ଶବ୍ଦଲିପିର ଶାସ୍ତ୍ରୀୟତାରେ
ପକ୍ଷୀର ସ୍ୱର ସ୍ତବ୍ଧ ରହିଯାଏ
ବ୍ୟବସ୍ଥିତ ଦିନମାନଙ୍କର
ମୌଳିକ ରଂଗବିନ୍ୟାସରେ
କିଂକର୍ତ୍ତବ୍ୟବିମୂଢ଼ ହୋଇଯାଏ
ଶୁଖିଲା ପତ୍ରର ଉଡ଼ନ୍ତା ବିସ୍ମୟ

ସଂଜର ଆଲୁଅ ଆସି
ମୁହଁକୁ ଚିତ୍ରିତ କରିଯାଏ
ବାସ୍ତବ ହଠାତ ସ୍ୱପ୍ନମୟ ହୁଏ
ଶୋଭାଯାତ୍ରା ଚାଲିଯାଏ
ବନ୍ଦ ଫାଟକ ଆଗରେ
ମୁଖା ପିନ୍ଧା ଦେବଦୂତମାନେ
ଶ୍ମଶାନର ରାସ୍ତାକୁ ଉଡ଼ିଯାନ୍ତି
ପାର୍କ ଆସି ବିଞ୍ଚି ହୋଇଯାଏ
ଅଙ୍କା ବଙ୍କା ରାସ୍ତା ଉପରେ
ଶୂନ୍ୟତାର କାନ୍ଥମାନଙ୍କ ଭିତରୁ
ଅଜ୍ଞାତ ଦିଗ୍‌ବଳୟମାନ ଆସି
ଚାରି ପାଖରେ ଖଞ୍ଜି ହୋଇଯାନ୍ତି

ପୁଣି ସୂର୍ଯ୍ୟ ଚାଲିଗଲେ
ମୁହଁ ସବୁ ମ୍ଳାନ ଓ ମଳିନ
ଅଥୟ ପବନ ସେଠାରେ
ଊର୍ଦ୍ଧ୍ୱମୁଖ ଏବଂ ଲକ୍ଷ୍ୟହୀନ
ପାଦ ସବୁ ବିଦାୟର ଭଂଗୀରେ
ଋତୁମାନେ ଅଳସ ଓ ଉଦାସୀନ

ଅବସ୍ଥାନର ଅଦ୍ଭୁତ କୋଣରୁ
କେବଳ ସିଂହାବଲୋକନ ସମ୍ଭବ
ପୂର୍ବପୁରୁଷମାନଙ୍କ ସ୍ମୃତି ଆଡ଼କୁ

ସେଠାରେ ସମୟ ଆଶା ଓ ଉତ୍ତେଜନାହୀନ
ଭବିଷ୍ୟତ ନଷ୍ଟଭ୍ରଷ୍ଟ ହୋଇଯାଏ
ପଶ୍ଚାତ୍ତାପମାନଙ୍କୁ ନେଇ
ସେ ପୁଣି ବନ୍ଦ ଅତୀତକୁ ଫେରିଯାଏ
ଏବଂ ନିଜକୁ ନିର୍ବାସିତ କରିଦିଏ
ନିଜ ଭିତରର ପୃଥିବୀକୁ
ଅବଶିଷ୍ଟ ଦିନ ସବୁକୁ ହାତ ମୁଠାରେ ଧରି
ଚିତାଗ୍ନି ଉପର ଦେଇ ସେ ଚାଲିଯାଏ
ବିଭିନ୍ନ ପୁନର୍ଜନ୍ମ ଭିତରକୁ

# ସମ୍ରାଟ

ଶେଷଥର ପାଇଁ ତମ ରାଜପ୍ରାସାଦର
ପରିକ୍ରମା କରିନିଅ ସମ୍ରାଟ
ଇତିହାସର ଏଇ ମଧ୍ୟାନ୍ତରରେ
ରାସ୍ତା ଉପରେ ଛିଡ଼ା ହୋଇଥିବା
ଅଶାନ୍ତ ଜନତାର ସମୟ
ତମକୁ ଗ୍ରାସ କରିନେବା ପୂର୍ବରୁ

ଏଥରକ ମନେ ପକାଇ ନିଅ
କେବେ ତମର ଅଭିଷେକ ଥିଲା
କେତେ ସମୟର ଥିଲା ଶାସନକାଳ ତମର
କେତେ ହତ୍ୟା ଓ ଲୁଣ୍ଠନ
କେତେ ରକ୍ତପାତ ଭିତରେ
ରାଜତିଳକରୁ ଅପମୃତ୍ୟୁ
ସିଂହାସନ ଓ ରାଣୀନଅରର ବ୍ୟବଧାନରେ

କଣ ଆଉ ଦେଖିବ ଏଠାରେ
ତମର ଭଣ୍ଡାର ତ ଖାଲି
ତମର ରାଜକୋଷକୁ ତମେ ନିଜେ ଲୁଟି ନେଲ
ତମର ପ୍ରମୋଦ ଉଦ୍ୟାନ
ଜଳିପୋଡ଼ି ଛାରଖାର
ସେଇ କୁମାରୀମାନଙ୍କର ଦୀର୍ଘଶ୍ୱାସରେ
ନିଜର ନପୁଂସକତାକୁ ଅପ୍ରମାଣ କରିବା ଚେଷ୍ଟାରେ
ତମେ ଯେଉଁମାନଙ୍କୁ ଅପହରଣ କରିଥିଲ
ପଂଜୁରୀ ଭିତରେ ତମ ପ୍ରିୟ ପକ୍ଷୀର ଶବ
ତମର ହାତର ସ୍ପର୍ଶରେ ଯେ ମରିଯାଇଥିଲା

ତମର ଅସ୍ତ୍ରାଗାରର ବର୍ଚ୍ଛା ସବୁକୁ ଦେଖ

ମନେ ଅଛି ଏସବୁ ଜଂଗଲର ଗଛ ଥିଲେ
ଚଟାଣରେ ଇତସ୍ତତଃ ପଡ଼ିଥିବା ପଶାକାଠି
ଏ ସବୁ ଶହୀଦମାନଙ୍କର ଭଙ୍ଗାହାଡ଼
ଥାକ ଉପରେ ହସୁଥିବା କରୋଟିକୁ ଦେଖ
ଏ ତମର ପ୍ରିୟ ବିଦୂଷକ ଥିଲା
ତମେ ଯାହାର ଶିରଚ୍ଛେଦର ଆଦେଶ ଦେଇଥିଲ

ଏଥରକ ଚାଲିଯାଅ ତମର
ଦରବାରରୁ ଅନ୍ତଃପୁର
ବର୍ଚ୍ଛାର ଜଂଗଲ ଅତିକ୍ରମ କରି
ଶହୀଦମାନଙ୍କ ରକ୍ତକୁ ଏଡ଼ାଇ
ଶିରସ୍ତ୍ରାଣ ଓ ଜୟମାଲ୍ୟର ଭସ୍ମ ଦେଇ
ପତାକା ଓ ରଣଭେରୀର ଧ୍ୱଂସାବଶେଷରେ

ରାଜଜ୍ୟୋତିଷର ଗଣନା ପ୍ରମାଦରେ
ତମର ଦିଗ୍‌ବିଜୟର ଆଶା
ଚୁରମାର ହୋଇଗଲା
ତମର ଅଶ୍ୱମେଧର ଘୋଡ଼ା
ଝୁଣ୍ଟିପଡ଼ି ମରିଗଲା
ତମ ନିଜ ସାମ୍ରାଜ୍ୟର
ବିବଦମାନ ସୀମାନ୍ତରେ

ତମେ ଅବୈଧ ଓ ଜାରଜମାନଙ୍କୁ ହତ୍ୟାକରି
ସିଂହାସନ ଆରୋହଣ କରିଥିଲ
କିନ୍ତୁ ତମର ବଂଶବୃକ୍ଷ ନିଶ୍ଚିହ୍ନ
କାରଣ ତମର ଏକମାତ୍ର ଉତ୍ତରାଧିକାରୀ
ଯେ ତମର ଦେହରକ୍ଷୀର ଔରସରୁ ଜନ୍ମ ନେଇଥିଲା
ତାକୁ ତମେ ହତ୍ୟା କରାଇଥିଲ

ତମର ଉଚ୍ଛିଷ୍ଟରେ ପରିପାଳିତ ଜୀବନୀକାର

ପକ୍ଷାଘାତଗ୍ରସ୍ତ ହୋଇଗଲା
ତମର ମନ୍ତ୍ରୀ ଓ ପାରିଷଦ ତମକୁ ଛାଡ଼ି
ନବ୍ୟ ସାମ୍ରାଜ୍ୟବାଦୀମାନଙ୍କର
ଉପନିବେଶ ସଂଧାନରେ ବାହାରିଗଲେ
ତମର ସୈନ୍ୟମାନେ ଆଶ୍ରୟ ନେଲେଣି
ଯୁଦ୍ଧଖୋରମାନଙ୍କର ଅସ୍ତ୍ରାଗାରରେ
ତମର ପାଟରାଣୀ ବର୍ତ୍ତମାନ
କୁଷ୍ଠରୋଗୀମାନଙ୍କର ବସ୍ତିରେ ଦେହଜୀବୀ

ଆଉ କି ଲାଭ ପଛକୁ ଅନାଇ ସମ୍ରାଟ
ଏଥରକ ଚାଲିଯାଅ
ତମେ ଓ ତମର ସାମ୍ରାଜ୍ୟ
ଚଳଚ୍ଚିତ୍ରରୁ ବିସ୍ମୃତ ହୋଇଯିବା ପୂର୍ବରୁ
ରାଣୀମହଲର ଚୋରାକବାଟ ଦେଇ
ଚାଲିଯାଅ ଇତିହାସର
ଅନ୍ଧଗଳି ଭିତରକୁ
ତମର ଜଂକଲଗା ମୁକୁଟକୁ
ଦ୍ୱାରପାଳର ଭିକ୍ଷାଥାଳ ଉପରେ ରଖିଦେଇ

# ମହାଭାରତ

ଛଦ୍ମବେଶ ନେଇ ସବୁଦିନ ପାଇଁ
ଅଜ୍ଞାତବାସରେ ରହି ହୁଏ ନାହିଁ
ପୁଣି ଫେରି ଆସିବାକୁ ହୁଏ
ନିଜ ନିଜର କର୍ମଭୂମିକୁ

ନିରପେକ୍ଷ ରହିବା ସମ୍ଭବ ନୁହେଁ

କାରଣ ଯୁଦ୍ଧ ଏଠାରେ ଅନିବାର୍ଯ୍ୟ
ଏବଂ ସମସ୍ତଙ୍କୁ ଏଥିରେ
ପକ୍ଷଭୁକ୍ତ ହେବାକୁ ହିଁ ପଡ଼ିବ

ଏଠାରେ ଜୀବନର ମହାକାବ୍ୟରେ
ସବୁ କିଛି ଲିପିବଦ୍ଧ
ସାମ୍ରାଜ୍ୟ ଏବଂ କ୍ଷମତା ପାଇଁ
ନିର୍ବାଚନର କପଟ ପାଶା
ଭୂସଂସ୍କାର ଆଇନରେ ଭୂମିହୀନ ପାଇଁ
ସୂଚ୍ୟଗ୍ର ପରିମିତ ମେଦିନୀ
ହରିଜନ ବସ୍ତିର ଜଉଘର
କ୍ଷେତ ଓ କାରଖାନାର ରଣାଙ୍ଗନ
ଅଭାବ ଓ ଦାରିଦ୍ର୍ୟର ବ୍ୟୂହ
ପ୍ରତିପକ୍ଷମାନଙ୍କର ଅବ୍ୟର୍ଥ ବ୍ରହ୍ମାସ୍ତ୍ର
ଏବଂ ନିମ୍ନତମ ଲୋକମାନଙ୍କର
ବିବସ୍ତ୍ର ଅସହାୟତା

କୌଣସି ନୈତିକତା ନାହିଁ
କୂଟନୀତିର ବିଚାର ବିନିମୟରେ
ବୃଦ୍ଧମାନେ ଯାଚନା କରି ନିଅନ୍ତି
ଯୌବନର ଉତ୍ତରାଧିକାର
ମାନସମ୍ମାନ ସମର୍ପିତ ହୋଇଯାଏ
ଅନୁଚିତ ପ୍ରତିଶ୍ରୁତି ପରିପୂରଣରେ
ସଭାଗୃହରେ ବଳାତ୍କାର ହୁଏ
ସାକ୍ଷୀ ଅନ୍ଧ ପାଲଟି ଯାଏ
ସତୀତ୍ୱ ବିଭାଜିତ ହୋଇଯାଏ
ଏଠାରେ କାମାନ୍ଧତା ସର୍ବସ୍ୱୀକୃତ
ନାରୀ କେବଳ ଏକ ଗର୍ଭାଶୟ
ଶଠତା ଦୈନନ୍ଦିନ ଘଟଣା

ଏବଂ ପରାକ୍ରମ ହିଁ ଅଧିକାର

ପ୍ରାତ୍ୟହିକ ଧର୍ମକ୍ଷେତ୍ରରେ
ସାଇରେନର ଶଂଖଧ୍ୱନି
ଯୁଦ୍ଧର ଆରମ୍ଭ ସୂଚାଇ ଦିଏ
ସୂର୍ଯ୍ୟାସ୍ତ ତାର ପରିସମାପ୍ତି ନୁହେଁ
ପୁଣି ରଣସଜ୍ଜାର ପ୍ରସ୍ତୁତି ମାତ୍ର
ଏ ଯୁଦ୍ଧର କୌଣସି ନୀତିନିୟମ ନାହିଁ
କେବଳ ହାରିଯିବା ହିଁ ଅଧର୍ମ

## କ୍ରାନ୍ତି ଆସୁଛି

ଗଣକମାନେ ଗ୍ରହ ନକ୍ଷତ୍ର ଦେଖି
ସମୟ ନିର୍ଦ୍ଧାରିତ କରିଦେଲେଣି
ଏବଂ ଗୁରୁଜନମାନଙ୍କର
ଆଶୀର୍ବାଦ ମିଳିସାରିଛି
କ୍ରାନ୍ତି ନିଶ୍ଚୟ ଆସିବ

ବିଧାନସଭାରେ
ଏ ସଂପର୍କୀୟ ପ୍ରସ୍ତାବ
ସର୍ବସମ୍ମତିକ୍ରମେ ପାରିତ ହୋଇସାରିଛି
ଏବଂ ଅନୁମତି ପତ୍ର
ମିଳିସାରିଲାଣି
ସରକାରୀ କାଗଜରେ
ବିଜ୍ଞପ୍ତି ବାହାରିଛି ଦେଖ
କ୍ରାନ୍ତି ଆସୁଛି

କ୍ରାନ୍ତି ଆସୁଛି

ନ୍ୟାୟାଧୀଶମାନେ
ସେମାନଙ୍କ କଲମର ଗୋଟିଏ ଗାରରେ
ଦାରିଦ୍ର୍ୟକୁ ନିର୍ବାସିତ କରିଦେଲେ
ଅର୍ଡ଼ିନାନ୍‌ସ ବଳରେ ଏଥରକ
ଦେଶର ଉତ୍ପାଦନକୁ
ତିନିଗୁଣ ବଢ଼ାଇ ଦିଆଯିବ
ନଈ ନାଳମାନଙ୍କରେ
ଦୁଧ ଓ ମହୁର ବନ୍ୟା ଆସିବ
ଅନ୍ତ୍ୟୋଦୟର ସଂଜ୍ଞା ବଦଳାଇ
ସବୁ ଲୋକ ସମାନ ହୋଇଯିବେ
କ୍ରାନ୍ତି ଆସିବ ହିଁ ଆସିବ
କ୍ରାନ୍ତି ଆସିବ ହିଁ ଆସିବ

ଏଥର ଆଉ ବିଳମ୍ବ ନାହିଁ
କ୍ରାନ୍ତି ଆସୁଛି ଦେଖ
କି ଅଦ୍ଭୁତ ଆଡମ୍ବର
ଓ ଜାକଜମକରେ
ଭିଖାରୀମାନଙ୍କର ପଟୁଆରକୁ ଟପି
ଜାଲ ଭୋଟ କାଗଜର ଥାକ ଉପରେ
ନିର୍ବାଚନ ବିଜୟର ଜଳନ୍ତା ଜୁଲୁସରେ
କ୍ରାନ୍ତି ଆସୁଛି
ହରିଜନ ବସ୍ତିରେ ନିଆଁ ଲଗାଇ
ଶୋଭାଯାତ୍ରାର ଫାଙ୍କା ସ୍ଲୋଗାନରେ
କ୍ରାନ୍ତି ଆସୁଛି ବୁଦ୍ଧିଜୀବୀ ସମ୍ମିଳନୀର
ବହୁମତ ପ୍ରସ୍ତାବରେ
କ୍ରାନ୍ତି ଆସୁଛି
କଳା ପଇସାର ଠନ୍‌ଠନ୍‌ରେ

ପଦ୍ମଭୁକ ସ୍ୱପ୍ନ ଓ ରୁମାନୀ ନିଶାରେ

କ୍ରାନ୍ତି ଆସୁଛି
ଦଲାଲମାନଙ୍କର ନିଲାମ ଡାକରେ
କ୍ରାନ୍ତି ଆସୁଛି
ଭଡ଼ାଟିଆ ଖବରକାଗଜର
ହଳଦିଆ ହେଡ୍‌ଲାଇନ୍‌ରେ

କ୍ରାନ୍ତି ପାଇଁ ରାସ୍ତାଘାଟରେ
ତୋରଣ ଓ ସାଜସଜ୍ଜା
ଶଂଖ ଓ ପୂଜାଥାଳି ନେଇ
ପୁରନାରୀମାନେ ଅପେକ୍ଷାରେ
ସ୍ୱପ୍ନାଦେଶ ଅନୁଯାୟୀ
କାର୍ଲମାର୍କ୍ସଙ୍କ ପାଇଁ
ନୂଆ ମନ୍ଦିର ତିଆରି ସରିଛି
ଓ ପୁରୋହିତ ନିଯୁକ୍ତ ହେଲେଣି
ଏଥରକ ଫୁଲଚନ୍ଦନ ଓ
କର୍ପୂରମାଳ ନେଇ ତିଆରି ରହ
କେହି ରୋକି ପାରିବେ ନହିଁ କ୍ରାନ୍ତିକୁ
କ୍ରାନ୍ତି ଆସୁଛି
କ୍ରାନ୍ତି ଆସୁଛି

# ଦେବୀ ଆଗମନ

ଏଥରକ ସେ ଯେତେବେଳେ ଆସିଲେ
କୌଣସି ତିଥି ନକ୍ଷତ୍ରର ହିସାବ ନଥିଲା
ନଥିଲା କୌଣସି ଶୁଭ ମୁହୂର୍ତ୍ତର ଗଣନା

ସାଜସଜ୍ଜାକୁ ଅପେକ୍ଷା ନ କରି
ପତ୍ର ଫୁଲ ପୂଜାମଣ୍ଡପ ଓ ମେଢ଼
ଜରି କାଗଜ ଓ ନିଅନ ଆଲୁଅ ବିନା
ଘଣ୍ଟଧ୍ୱନିକୁ ବେଖାତିର କରି
ସେ ଆସିଲେ ବିନା ପ୍ରସ୍ତୁତିରେ

ଚଣ୍ଡ ମୁଣ୍ଡ ଶୁମ୍ଭ ଓ ନିଶୁମ୍ଭ ନିଶ୍ଚିହ୍ନ
ଚଣ୍ଡୀ ଓ ଚାମୁଣ୍ଡାଙ୍କୁ ନେଇ
ରକ୍ତବୀର୍ଯ୍ୟକୁ ଆୟତ୍ତ କରିବା ପରେ
ଘୂର୍ଣ୍ଣିବାତ୍ୟା ବାଟ ଦେଖାଇ ଦେଲା
ଅଭ୍ରାନ୍ତ ପ୍ରଳୟ ଆଡ଼କୁ
ସିଂହ ଛୁଟିଗଲା ନିର୍ବିରୋଧ
ଦୁଇ ଶହ କିଲୋମିଟର ବେଗରେ

ମହାକାଳର କଳା ମେଘ ଭିତରୁ
ସେ ଓହ୍ଲାଇଲେ ପ୍ରିୟ ଭୂପୃଷ୍ଠକୁ
ହାତରେ ଖଡ୍‌ଗ ଓ ଖର୍ପର
ମୁଣ୍ଡମାଳ ମାଂସଖଣ୍ଡ ରକ୍ତପାତ୍ର
ଲୋଳଜିହ୍ୱା ତ୍ରିଶୂଳ ଓ ନାଗ
ବଜ୍ର ମୂଷଳ ଅଙ୍କୁଶ ଓ ଫାଶ
ଆଖିରେ ସଂହାର ନିଃଶ୍ୱାସରେ ଧ୍ୱଂସ
ବିନାଶର ଏକମାତ୍ର ଇଚ୍ଛା ନେଇ

ଭୂଗୋଳ ଛିନ୍‌ଛତ୍ର ହୋଇଗଲା

ଖିନଭିନ ହୋଇଗଲା ମାନଚିତ୍ର
ଜଳସ୍ଥଳ ଏକାକାର
ନୂଆ ନୂଆ ନଦୀ ନାଳ ଉପତ୍ୟକା
ଭୂଭାଗ ଓ ବାଲିଚର
ସ୍ଥିତି ସତ୍ତା ସବୁ ହଜିଗଲା
ଘୂର୍ଣ୍ଣାବର୍ତ୍ତର ଅନ୍ଧ ଆଖି ଭିତରେ

ସେ ନିଜକୁ ସଂସ୍ଥାପିତ କରିନେଲେ
ଦିଗନ୍ତ ପ୍ରସାରୀ ଜଳରାଶି ଭିତରେ
ହାହାକାରର ସ୍ତବ
ଦୀର୍ଘ ନିଃଶ୍ୱାସର ଆଳତି ଘଣ୍ଟା
ଓ ଆର୍ତ୍ତନାଦର ଅଘୋର ମନ୍ତ୍ରରେ

## ଭୁବନେଶ୍ୱର

କୌଣସି ଆବେଗ ନଥାଏ
କୌଣସି ଉଦ୍‌ବେଗ ନଥାଏ
ଇତିହାସ ପଛରୁ ସୂର୍ଯ୍ୟ ଉଠେ
ସଂପୂର୍ଣ୍ଣ ଉତ୍ତେଜନା ବିହୀନ
ଉଡ଼ାଜାହାଜ ପଡ଼ିଆ ପଛ ପାଖେ
ବିଲୁଆ ଭୁକୁଥାଏ
ରାଜଧାନୀର ସକାଳ ହୁଏ
ସାଇକେଲ ଘଣ୍ଟି
ଓ ମାଛ ଦୋକାନର ଭିଡ଼ରେ
ଅଫିସ ଫାଟକ ସବୁ ଖୋଲିଯାଏ

ମନ୍ଦିରର ଘଣ୍ଟ ଓ ଆଳତି ଧ୍ୱନିରେ

କଂକ୍ରିଟର ରାଜପଥ ଅଲଗା କରିଦିଏ
ନୂଆ ଓ ପୁରୁଣାର ସଂପର୍କ
ଟେଲିଫୋନର ତାର କାଟିଦିଏ
ଯକ୍ଷ ଓ ଶାଳଭଂଜିକାର କଥୋପକଥନ
ନିଅନ ଆଲୁଅ ଲିଭାଇ ଦିଏ
ପଥରର ଅନ୍ଧକାରାଚ୍ଛନ୍ନ ଆଶ୍ଚର୍ଯ୍ୟକୁ
ଖବରକାଗଜର ହେଡଲାଇନ
ଅର୍ଥହୀନ କରିଦିଏ
କିମ୍ବଦନ୍ତୀର କରୁଣତମ ରହସ୍ୟକୁ

ପହିଲା ତାରିଖର ପର୍ବ ସବୁ
ଅତି ଶୀଘ୍ର ଉଦ୍‌ଯାପିତ ହୋଇଯାନ୍ତି
ରାଜାମାନଙ୍କର ବଂଶାବଳୀ ସହିତ
ଯୋଡ଼ିଯାଏ ମନ୍ତ୍ରୀମଣ୍ଡଳର ବିବରଣୀ
କଳିଙ୍ଗ ଯୁଦ୍ଧର ସମତଳ କ୍ଷେତ୍ର ଉପରକୁ
ଓହ୍ଲାଇ ଆସନ୍ତି
ଦଳ ବଦଳର ସୈନିକମାନେ
ନିର୍ଣ୍ଣୟର ଅଜଣା ଦିନମାନଙ୍କରେ
ଯୋଦ୍ଧାମାନେ ଯାଇ ଆଶ୍ରୟ ନିଅନ୍ତି
ମ୍ୟୁଜିୟମର ଅଳିଆଗଦା ଭିତରେ

ସିନେମା ପୋଷ୍ଟର ତଳେ
ଗାଈ ଶୋଇ ରହି ପାକୁଳି କରେ
ପାନ ଦୋକାନ ଆଗରେ
ଦେଶର ଭବିଷ୍ୟତମାନେ ଠିଆ ହୋଇ
ଶିକ୍ଷାଞ୍ଚଳ ଆଡ଼କୁ ଅନାଇଥାନ୍ତି
ଅଶୋକ ଓ ଖାରବେଳ

ଆଉ ମନେ ପଡ଼ନ୍ତି ନାହିଁ
ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜର ଭିଡ଼ ଟପି
ଗାଡ଼ି ଯାଇ ଅଟକେ
ହୋଟେଲର ମୁଖଶାଳାରେ

ରିକ୍ସାର ଚକ ମାପିନିଏ
ସାମାଜିକ ଚେତନାର ଆରୋହ ଅବରୋହକୁ
ଭିଖାରୀମାନେ ବାହାରି ଆସନ୍ତି
ଐତିହାସିକ ଗୁମ୍ଫାମାନଙ୍କ ଭିତରୁ
ପ୍ରତ୍ନତାତ୍ତ୍ୱିକ ଧ୍ୱଂସସ୍ତୂପ ଉପରେ
ବ୍ୟାଙ୍କର ନକ୍‌ସା ତିଆରି ହୁଏ
ବିଦେଶୀ ପର୍ଯ୍ୟଟକର କ୍ୟାମେରାରେ
ବନ୍ଦ ହୋଇ ରହିଯାଏ
ଅଶୋକାଷ୍ଟମୀ ଓ ଶିବରାତ୍ରିର ତାତ୍ପର୍ଯ୍ୟ

ଫାଇଲ ଉପରେ ଧୂଳି ଜମୁଥାଏ
ମନ୍ଦିରର ଚୂଡ଼ା ସବୁ
ବିନା କାରଣରେ ଉପରକୁ ଅନାଇଥାନ୍ତି
ଉପର ବେଳାର ଉଡ଼ାଜାହାଜ ଉଡ଼ିଯାଏ
କାନ୍ଥରେ ଲେଖା ସ୍ଲୋଗାନରେ
ବିପ୍ଳବ ହେଉଥାଏ
ମୁହଁ ପୋତି ଚାଲିଯାନ୍ତି ଚୁପଚାପ
ଅଫିସରୁ ଫେରୁଥିବା ଲୋକମାନେ

# ଖାଲି ଘର

ମୁଁ ପୁଣି ଫେରି ଆସିଲି ମୋର
ଆତ୍ମଶାସ୍ତିର ପରୀକ୍ଷାଶାଳାକୁ
ମୋର ସମସ୍ତ ଆଚରଣର
ଏକାନ୍ତରେ ବିଶ୍ଳେଷଣ କରିବା ପାଇଁ
ମୁଁ ଏଭଳି ନିର୍ଜନତା ଚାହୁଁଥିଲି
କେହି କୁଆଡ଼େ ନ ଥିବେ
ସବୁ କିଛି ଗୁମସୁମ
ଦୁଇଜଣଙ୍କର ନୀରବ ରହିଥିବାରେ
ଥଣ୍ଡା ହୋଇ ଯାଇଥିବା ଚା କପ ଭଳି

କିନ୍ତୁ ଏକାନ୍ତ କେଉଁଠାରେ ନ ଥାଏ
ଅଭିଶପ୍ତ ନାବିକ ପାଇଁ
ସମୁଦ୍ର ଯାତ୍ରାର ଶେଷ ନାହିଁ
ଗୋଟିଏ କୋଠରୀରୁ
ଅନ୍ୟ ଏକ କୋଠରୀକୁ
କେଉଁଠାରେ ଆଶ୍ରୟର ଦ୍ୱୀପ ନାହିଁ
କିନ୍ତୁ ଆକାଶ ଯଦିଓ ଅନ୍ଧାର
ଏବଂ ତାରାମାନେ ଅସ୍ତମିତ
ଅନେକ ସମ୍ଭାବନାର ଉଷ୍ମତା ଥାଏ
ପରିତ୍ୟକ୍ତ ବିଛଣା ଉପରେ

ଛୁଇଁବା ବେଳେ ହିଁ
ସମସ୍ତେ ଅଦୃଶ୍ୟ ହୋଇଯାନ୍ତି
ଦିଗ୍‌ବଳୟରେ ଲୁପ୍ତ ହୁଏ ଉପନଗର
ଆଖି ଆଗରୁ ଅପସରିଯାନ୍ତି
ଦୂରରେ ନିଶ୍ଚିହ୍ନ ଆଲୋକମାଳା ଭଳି
ବିନ୍ଦୁରେ ନିହିତ ସମାନ୍ତରାଳ ରେଖା
କିନ୍ତୁ ଦୂରକୁ ଚାଲିଯିବା ବେଳେ

ଦୃଶ୍ୟ ସବୁ ପଛକୁ ଡାକି
ପୁଣି ବ୍ୟସ୍ତ କରନ୍ତି ଦେଖୁଥିବା ଆଖିକୁ
ଛଟପଟ ହେଉଥିବା ସମାଧାନ
ଅଙ୍ଗୁଳି ଦେଖାଏ ପ୍ରଶ୍ନ ଆଡ଼କୁ

ଏଠାରେ କୌଣସି ଶୂନ୍ୟସ୍ଥାନ ନାହିଁ
କିଛି ନୁହେଁ ସମ୍ଭାବନାରହିତ
କୋଠରୀ ଭିତରେ ମରୁଭୂମି
ଛାତରେ ବୁଣିଯାଉଛି ବୁଢ଼ିଆଣୀ ଜାଲ
ଅପନ୍ତରା ପାଲଟି ଯାଉଛି
ଝରକା ବାହାରର ଘାସପଡ଼ିଆ
ଘର ଭାଙ୍ଗି ପଡୁଛି ଧ୍ୱଂସସ୍ତୂପ ହୋଇ
ଖାଲି ଚଉକି ଉପରେ ଆଉଜି ପଡୁଛି
ମୋ ଦେହର ଅସ୍ଥି ଓ କଙ୍କାଳ
ଅଭାବ ଭର୍ତ୍ତି କରି ଯାଉଛି
ଇଚ୍ଛାର ନିଭୃତତମ ଅନ୍ତରାଳ

ଏଠାରେ ଘରଭର୍ତ୍ତି
ତମର ଫେରିବାର ଆଶ୍ୱାସନା
କାନ୍ଥରେ ସଜା ହୋଇ ରହିଛି
ତମର ପ୍ରତିଶ୍ରୁତିର ଭଙ୍ଗୁରତା
ମୋର ଇଚ୍ଛା ଶକ୍ତିରେ ସମ୍ବଳିତ
ତମକୁ ଫେରାଇ ଆଣିବାର ଅସାମର୍ଥ୍ୟ

ଶୂନ୍ୟତା ଏଠାରେ ସ୍ୱୟଂସଂପୂର୍ଣ୍ଣ
ଏବଂ ମୋର ନିଃସଙ୍ଗତାକୁ
କୋଳାହଳମୟ କରି ରଖୁଛି
ମୋର ବାରମ୍ବାର ଫେରିଆସିବାର
ଅର୍ଥହୀନ ବାଧ୍ୟବାଧକତା

# ପାହାଚ

ଏଇ ସାମାନ୍ୟ ଦୂରତ୍ୱ ମଝିରେ
କୌଣସି ଯାତ୍ରାର ଶୁଭାରମ୍ଭ
ଅଥବା ପହଞ୍ଚିବା ନାହିଁ
କେବଳ ଲକ୍ଷ୍ୟସ୍ଥଳର କିମ୍ବଦନ୍ତୀମାନଙ୍କରେ
କ୍ଷୟ ପାଇଯାଉଥିବା ପଥରର ଚଟାଣ
ଏବଂ ଗୋଟିଏ ପରେ ଗୋଟିଏ ପାଦ
ଯାହା ସୂଚାଇ ଦେଇଯାଏ
ଗମନରୁ ଆଗମନ
ପ୍ରସ୍ଥାନରୁ ମହାପ୍ରସ୍ଥାନକୁ
ଜଠରରୁ ସ୍ୱର୍ଗଦ୍ୱାର ଏବଂ
ପାଦପୀଠର ଉଚ୍ଛୃଙ୍ଖଳତାରୁ
ଶୀର୍ଷବିନ୍ଦୁର ସଂଯମକୁ

ଆବିଷ୍କାରକର ଦୀର୍ଘନିଶ୍ୱାସରେ
ହଳଦିଆ ପଡ଼ିଯାଏ
ମାନଚିତ୍ରର ଆସ୍ତିକତା
ଅବିଶ୍ୱାସର ଗୋଲକଧନ୍ଦାରେ ହଜିଯାଏ
କୃତନିଶ୍ଚୟ ତୀର୍ଥଯାତ୍ରୀ

ଅନୁଶୋଚନା ମ୍ଳାନ କରିଦିଏ
ପହଞ୍ଚିବାର ଉତ୍ସାହକୁ
ଏ ବା କେଉଁପରି ସ୍ୱର୍ଗ
ଯେଉଁଠାରେ କୌଣସି ପରିବର୍ତ୍ତନ ନାହିଁ
ଋତୁ ସବୁବେଳେ ବସନ୍ତ

ଏବଂ ଗଛର ଭାରାକ୍ରାନ୍ତ ଡାଳରୁ
ଫଳଟି ତଳେ ପଡ଼ିଯାଏ ନାହିଁ

ପାହାଚକୁ ଗଣି କିଛି ଲାଭ ନାହିଁ
ସେ ବାଇଶ ହେଉ ବା ବତିଶ
ସେ ସ୍ୱର୍ଗକୁ ହେଉ ବା ନାଗଲୋକକୁ
ଚଟାଣର ଶେଷ ପଥରଟି
ଚାଲିଥିବା ହେଉ ଅଥବା ପହଞ୍ଚିବା
ଅନ୍ଧାର ଘର ଅଥବା ଖୋଲା ଛାତ
ରାସ୍ତା ଚାଲିଯାଇଥାଉ
ଅନ୍ଧକୂପ ଅଥବା ଧ୍ରୁବତାରାକୁ
ଜୀବନର ସ୍ଥବିରତାକୁ
ଅଥବା କୁମାରୀ ମୃତ୍ୟୁକୁ

ଉପରୁ ତଳ ତଳୁ ଉପର
ଯାତ୍ରାର କ୍ଷୟବୃଦ୍ଧି ହେଉଥାଏ
ସୂର୍ଯ୍ୟମାନଙ୍କୁ ଅନାଇ ରାତି ବିତେ
ପାଦ ଆଗକୁ ବଢୁଥାଏ
ଯିବା ଆସିବାରେ କଟିଯାଏ ନାହିଁ
ବହୁବିଧ ଯାତ୍ରାର ପୁନରାବୃତ୍ତି
ଏ ପାଖ ସେ ପାଖ ଅନେକ ପାଦଚିହ୍ନ

ସବୁ ଦେଖିନିଏ ପାହାଚ
ଯାହା ସମାନ ନୁହେଁ
ସମତଳ ନୁହେଁ
ଯାହା ତଳ ଓ ଉପର
ଦୁଇ ପାଖରେ ନ ପହଞ୍ଚିବାର ଅତଳ
ପ୍ରସ୍ତରୀଭୂତ ଆକାଂକ୍ଷା
ଏବଂ ଅପ୍ରାପ୍ତିର ଅନ୍ତହୀନ ବିସ୍ତାର

# ପୁରୀ

ଏଠାରେ ସବୁ କିଛି
କିମ୍ବଦନ୍ତୀର ଆଶ୍ରିତ
ବାଲିତଳେ ପୋତା ରହିଥାଏ
ତ୍ରେତା ଓ ଦ୍ୱାପର
ମାଦଳା ପାଞ୍ଜିର ପୃଷ୍ଠା
ଜରାଜୀର୍ଣ୍ଣ ହେଉଥାଏ
ଇତିବୃତ୍ତର ଚରିତ୍ରମାନେ
କଳା ଧଳା ଘୋଡା ଚଢ଼ି ବାହାରିଯାନ୍ତି
ଲୋକଶ୍ରୁତି ଆଡ଼କୁ

ପାହାଚ ସବୁ ପରକାଳକୁ
ଚିନ୍ତାର ଶ୍ୱାସରୁଦ୍ଧ ହୋଇଯାଏ
ଗଳିର ସଂକୀର୍ଣ୍ଣତାରେ
କାନ୍ଥ ଚିତ୍ରରେ ବସନ୍ତ ଚମକୁଥାଏ
ଖରାରେ ତରଳିଯାଏ
ଭଜନର ଭଗ୍ନାବଶେଷ
ଜଳନ୍ତା ବାଲିରେ ଚକ ଚକ କରୁଥାଏ
ଭିଖାରୀର ଅଚଳନ୍ତି ପଇସା
ରଥଚକରେ ଖିନଭିନ ହୋଇଯାଏ
ଲୋକାରଣ୍ୟର ନିର୍ଜନତା

ସବୁ ଏକାକାର ହୋଇଯାଏ
ଦ୍ରଷ୍ଟା ଦୃଶ୍ୟ ଓ ଦର୍ଶନ
ସଂସ୍କାରର ଅଦୃଶ୍ୟ ହାତ

ନିଷ୍କାର କଳା କନା ବାନ୍ଧିଦିଏ
ଔଚିତ୍ୟ ଓ ତାର୍କିକତା ଆଖିରେ
ମୂର୍ତ୍ତିମାନଙ୍କ ଉପରେ
ଧୂଳି ହୋଇ ଜମୁଥାଏ
ଜଣାଣର ଜାଗରୁକ ସ୍ୱର
ଅନ୍ଧ ଆସି ହାତଯୋଡ଼ି ଠିଆ ହୁଏ
ଅରୁଣ ସ୍ତମ୍ଭ ଛାଇରେ

ଚେମେଣି ଉଡୁଥାଏ
ଭୋଗମଣ୍ଡପ ଛାତରେ
ଭକ୍ତ ବାଟ ଭୁଲି ଚାଲିଯାଏ
ଭିତର ବେଢ଼ାକୁ
ବିଗ୍ରହମାନେ ଅନାନ୍ତି ଅନ୍ଧାର ଭିତରୁ
ଆଉ ଗୋଟିଏ ଯୁଗ କଟିଯାଏ
ସକାଳଧୂପରୁ ବଡ଼ସିଂହାରରେ
ଇହର ସମୟ ବ୍ୟତୀତ ହେଉଥାଏ
ପୂର୍ବ ଓ ପରଜନ୍ମର ଚିନ୍ତାରେ
ରୂପ ଓ ଅରୂପର ଦ୍ୱନ୍ଦ୍ୱର
ଆପୋଷ ନିଷ୍ପତ୍ତି ହୋଇଯାଏ
ମୁକ୍ତି ମଣ୍ଡପର ଅନ୍ଧାର ମଞ୍ଚରେ
ଏଠାରେ ଏକ ନିଜସ୍ୱ ପୂର୍ଣ୍ଣତା
କବନ୍ଧର ପ୍ରସ୍ତରୀଭୂତ ଲାସ୍ୟ
ଏବଂ ଦୁଇଟି ବର୍ତ୍ତୁଳ ଆଖିର
ସ୍ୱୟଂସଂପୂର୍ଣ୍ଣ ଶରୀରରେ

ବଡ଼ଦାଣ୍ଡ ଉପରୁ ଛାଇ ଘୁଞ୍ଚିଯାଏ
ସ୍ୱର୍ଗଦ୍ୱାର ଆଡ଼କୁ
ଅନ୍ଧାର ଆସି ଓହ୍ଲାଏ

ଝାଉଁଗଛର ଗହଳ ଆର୍ତ୍ତନାଦରେ
ଦାରୁ ଭାସୁଥାଏ ପ୍ରଳୟର ପୟୋଧିରେ
ଲହରୀର ମୃଦୁ ଆଘାତ ଦେଇ
ସମୁଦ୍ର ଶୁଣାଇଯାଏ
ସଂଧ୍ୟାବେଳର ଅବିଚଳିତ ବେଳାଭୂମିକୁ
ଅନ୍ତିମ ସତ୍ୟର ସିଦ୍ଧାନ୍ତ ସବୁ

## କର୍ଫ୍ୟୁ

ଘର ସବୁ ଦୁଇ ଧାଡ଼ି ସଜା ହୋଇଥାନ୍ତି
କବରଖାନାର ସମାଧି ପଥର ଭଳି
ବତୀଖୁଣ୍ଟମାନେ ସାବଧାନ ରହନ୍ତି
ଯେପରିକି ସଂଗୀନ ହାତରେ ସୈନିକ
ନିଷେଧ ଆଦେଶ ଶୁଣାଇ ଯାଏ ସାଇରେନ
ବୁଟ ଜୋତା ମାଡ଼ି ଚାଲିଯାଏ
ଶୂନଶାନ ସହରର ଛାତି ଉପରେ

ଝରକା କବାଟ ସବୁ ବନ୍ଦ
ଓ ପବନରେ ଅସମ୍ଭବ ଗୁମସୁମ
ରଙ୍ଗ ମଉଳି ଯାଏ ଆକାଶର ସୀମାନ୍ତରେ
ଭୟର ସନସନୀ ମଧ୍ୟାହ୍ନରେ
ଖରାବେଳକୁ ଆଚ୍ଛନ୍ନ କରି ରଖେ
ଆତଙ୍କର ଚୁପ ଚୁପ ଆବାଜ

ଘଟଣାବିହୀନ ଦିନ ବଢୁଥାଏ
ଖବରକାଗଜର ଖାଲି ପୃଷ୍ଠାରେ
ମୃତକ ଉପରେ ରକ୍ତ ଶୁଖିଯାଏ

ବାରୁଦ ଗନ୍ଧ ଲିଭିଯାଏ ପବନରୁ
ଚିଲ ଚକ୍କର ଦେଉଥାଏ
ଆକାଶର ନିରାପଦ ଦୂରତ୍ୱରେ ଥାଇ
ଗଳି ରାସ୍ତାର ମଶାଣି ଭୂଇଁରେ
ଆବର୍ଜନାର ପାଉଁଶ ଓ ଅସ୍ଥି କଂକାଳ
ବୁଲା କୁକୁରମାନଙ୍କର ଦଳ ଆସି
ଅଧିକାର କରିନିଅନ୍ତି ସହରକୁ

ସହରର ମୃତ ଉପତ୍ୟକା ଉପରେ
ସୂର୍ଯ୍ୟ ଓହ୍ଲାଇଯାଏ ରକ୍ତାକ୍ତ ପାଦ ପକାଇ
ରୁଦ୍ଧ ଚିତ୍କାର ପ୍ରତିଧ୍ୱନି ହୋଇ
ଫେରିଯାଏ ନିୟନ୍ତ୍ରଣର କୋଠରୀକୁ
ଦୀର୍ଘଶ୍ୱାସର ବିବଶ ପ୍ରତିବାଦ
ଆକାଶରେ ଛିଟିକି ପଡ଼େ
ବିନ୍ଦୁ ବିନ୍ଦୁ ତାରାର ନିଷ୍ଫଳତା ହୋଇ
ଜହ୍ନ ଆଲୁଅର ପ୍ରତିବାଦକୁ ପୋଛିଦେଇ
ଟ୍ୟାଙ୍କ ଚାଲିଯାଏ ରାଜପଥ ଉପରେ

## ନବଗୁଂଜର

ଯେ ସମସ୍ତ ରୂପର ଊର୍ଦ୍ଧ୍ୱରେ
ତା ଦେହରେ ଚିତ୍ରକାର ଆଣି ଖଂଜିଦିଏ
କାହାର ମୁହଁ କାହାର ଦେହ
ଏବଂ କେଉଁ ଅଶରୀରୀ ରହସ୍ୟମାନ
ତୂଳିରୁ ବାହାରି ତଳେ ଆସି ଠିଆହୁଏ
କାହାର ଭାବନାତୀତ ଭ୍ରମ

ଆରଣ୍ୟକ ଆଲେଖ୍ୟ ହୋଇ

ପରୀକ୍ଷାର ଶେଷ ନାହିଁ
ଧ୍ୟାନରୁ ବାହାରି ଚିହ୍ନିବାକୁ ହୁଏ
କପଟ ବେଶର ଅନ୍ତରାଳରୁ
ଆଗନ୍ତୁକର ଯଥାର୍ଥ ବାସ୍ତବିକତା
କ୍ରମାଗତ ପରୀକ୍ଷାର ସଫଳତାରେ
ପରିହାର କରିବାକୁ ହୁଏ
ଅନ୍ୟ ଏକ ଅଜ୍ଞାତବାସର ଶାସ୍ତିକୁ
ସବ୍ୟସାଚୀ ଚାହିଁ ରହିଥାଏ
ପ୍ରାୟଶ୍ଚିତ୍ତର ସଂଯତ ସାଧନାରେ
ଶାପମୁକ୍ତିର ଶେଷ ପର୍ଯ୍ୟାୟକୁ

ନିର୍ବାସନର ଦିନମାନଙ୍କରେ
ଛଦ୍ମବେଶ ଅନାବିଷ୍କୃତ ରହିଥାଏ
କିନ୍ତୁ ସାଧକ ବର୍ତ୍ତମାନ ଅନାୟାସ ଚିହ୍ନିନିଏ
ଜାନ୍ତବ ବହିରାବଣ ତଳୁ
ବିରାଟ ରୂପର ଘଟାନ୍ତର
ସ୍ୱୀକାର କରିନିଏ
କିମ୍ଭୂତକିମାକାର କାୟାକଳ୍ପ
ଧନୁଶର ଖୋଲି ତଳେ ରଖିଦିଏ
ନତମସ୍ତକ ଅଭ୍ୟର୍ଥନା କରିନିଏ
ବହୁରୂପୀର ଦୈବୀ ବୈଚିତ୍ର୍ୟକୁ

ପରିଚୟର ଉପଲବ୍ଧିରେ
ଭାଙ୍ଗିଯାଏ ସାମୂହିକ ରୂପର ରହସ୍ୟ
ଅଙ୍ଗପ୍ରତ୍ୟଙ୍ଗ ଅସ୍ତବ୍ୟସ୍ତ ହେଉଥାନ୍ତି
ହିଂସ୍ରତାର ନିଷ୍ଫଳ ଆକ୍ରୋଶରେ
ଗୋଟିଏ ମାତ୍ର ଉଦ୍ୟତ ହାତ
ପଶୁତ୍ୱକୁ ବିବଶ କରିଦିଏ

ସବୁ କିଛି ଶାନ୍ତ ଓ ସମନ୍ୱିତ ହୋଇଯାଏ
ପଦ୍ମଫୁଲର କୋମଳ କରୁଣାରେ

## କଟକ

ସବୁ ମନେପଡ଼େ ଏଠାକୁ ଆସିଲେ
ସବୁ କିଛି ମନେପଡ଼େ
ନୋଟ ଖାତାରେ ପ୍ରେମ କବିତା
ଲେଖୁଥିବାର ଅଳସ ମୁହୂର୍ତ୍ତମାନ
ପକେଟ ଭର୍ତ୍ତି ବସନ୍ତ ପବନ
ଓ ଆକାଶକୁ ଚାହିଁ ହଜିଯିବାର ବେଳ
ଡାହାଣୀ ଖରାକୁ ହାତ ମୁଠାରେ ନେଇ
ଅନ୍ୟମାନଙ୍କୁ ସମର୍ପି ଦେବାର ଦିନ

ସମସ୍ତେ ମନେ ପଡ଼ନ୍ତି ଚିହ୍ନା ଚିହ୍ନା
ଅନେକ ଦିନ ତଳର ମୁହଁ ସବୁ
ଯେଉଁମାନେ ଅଟକିଗଲେ
ଚିତ୍ରିତ ଦିନମାନଙ୍କର ସମ୍ମୋହନରେ
ନଈକୂଳର ବେଞ୍ଚ ଉପରେ ବସି
ଇନ୍ଦ୍ରଧନୁକୁ ଦେଖୁ ଦେଖୁ
ଯେଉଁମାନେ ପଛରେ ରହିଗଲେ
ବାଲିଯାତ୍ରାର ଲୋକଗହଳିରେ
ରଂଗୀନ ରୁମାଲ ଉଡ଼ାଇବା ବେଳେ
ଯେଉଁମାନେ ହଜିଗଲେ
ଆଖିରେ ଆଖିଏ ଲୁହ ନେଇ
ସିନେମା ହଲରୁ ବାହାରିବାର

ଉଦାସ ମୁହୂର୍ତ୍ତମାନଙ୍କରେ

ଆଜି ଏଠାରେ ଆଗକୁ ଯିବାବେଳେ
ରିକ୍‌ସାରୁ ଉଡୁଥିବା ପଣତରେ
ବାନ୍ଧିହୋଇ ରହିଯାଏ
ପଛରେ ଛାଡ଼ି ଦେଇ ଆସିଥିବା
ରଙ୍ଗବେରଙ୍ଗ ଅନୁଭବ ସବୁ
ରାସ୍ତାକୁ ବନ୍ଦ କରିଦିଏ
ଲେଭେଲକ୍ରସିଂର ଫାଟକ
ଯାନବାହନର ଭିଡ଼ ଭିତରେ
ଗତିରୋଧ ହୋଇଯାଏ ଚେତନାର
ଆଖି ଅଟକିଯାଏ ରାସ୍ତାର
ବଦଳି ଯାଉଥିବା ଉପକୂଳରେ
ମନ ମାନିନିଏ ଚୁପଚାପ
ବୟସର ବାଧ୍ୟବାଧକତା

ସବୁ କିଛି ପରିଚିତ ଜଣାପଡ଼େ
ନଈବନ୍ଧକୁ ଟପି କେଉଁପରି
ଝରକା ଭିତରକୁ ସୂର୍ଯ୍ୟାଲୋକ ଆସେ
ପାଦ ଚିପି ଚିପି
ଭିଖାରୀ ରାସ୍ତା କରରେ ବସିଥାଏ
ଆକାଶରେ ମେଘର
ଛିଣ୍ଡାକନା ଆଡକୁ ଅନାଇ

କଟିଯାଇଥିବା ଗୁଡ଼ି ଆସି ଓହ୍ଲାଏ
ଭଙ୍ଗା ଛାତ ଉପରେ
ମନ୍ଦିରର ପାଦୁକା ବହିଆସି
ମିଶିଯାଏ ନର୍ଦ୍ଦମାର ସ୍ରୋତରେ

ଉଠା ଦୋକାନର ଭିଡ଼ ଭିତରେ
ନ୍ୟାୟ କିଣାବିକା ହୋଇଯାଏ
ବର୍ଷାରେ ଧୋଇଯାଏ
ଚଣ୍ଡୀ ମନ୍ଦିରର ପୂଜାପାଠ
କଲେଜ ଛକ ଚା ଦୋକାନରେ
ଆଲୋଚନା ହଠାତ ବନ୍ଦ ହୁଏ
ଖବରକାଗଜବାଲାର ଡାକକୁ ଲିଭାଇ
ପ୍ରଳୟର ଆତଙ୍କ ଆସେ
କାଠଯୋଡ଼ିର କୂଳ ଉଛୁଳାଇ

ହସପିଟାଲ ରାସ୍ତା ଛାଡ଼ି
ବାହାରକୁ ଯିବାବେଳେ
ଛକ ଉପରେ ପାଦ ଅଟକିଯାଏ
ଏଠାରୁ ସବୁ ରାସ୍ତା ବିସ୍ମୃତି ଆଡ଼କୁ
ବହାରକୁ ଯାଉଥିବା ଲୋକ
ଆଉ ପଛକୁ ଅନାଏ ନାହିଁ
ମହାନଦୀରୁ କିଛି ପାଣି ଉଠାଇ
ଆଂଜୁଳାରେ ନେଇ ପୂର୍ବପୁରୁଷଙ୍କୁ
ସମର୍ପଣ କରିଦିଏ

ଖରାଦିନ ଯାଇ କେତେବେଳେ ମିଶିଯାଏ
ଅଦିନ ବର୍ଷାର ଆର୍ଦ୍ର ଅନ୍ତରଙ୍ଗତାରେ
ବତୀଖୁଣ୍ଟର ବୟସ ବଢୁଥାଏ
ଭୁଲିଆସୁଥିବା ସ୍ମୃତି ସବୁ
ଏଇଭଳି ଲୁଚୁକାଳି ଖେଳୁଥାନ୍ତି
ଗଳିମାନଙ୍କର ଗୋଲକଧନ୍ଦାରେ
ଦୁଇ ନଈର ଆଶ୍ଳେଷ ଭିତରେ
ନିର୍ବିକାର ବସିରହିଥାଏ ସହର
ସଂସାର ଏକା ଭଳି ରହିଥାଏ

ଇତିହାସ ବଦଳି ବଦଳି ଯାଏ

# ନର୍ତ୍ତକୀ

ରଂଗମଂଚର ଅନ୍ଧାରରେ
ଏକ ସ୍ୱତନ୍ତ୍ର ବିଶ୍ୱବ୍ରହ୍ମାଣ୍ଡ
ଏକ ଅଶାନ୍ତ ନକ୍ଷତ୍ର ଭଳି
ତାକୁ ଆସି ଆୟତ୍ତ କରିଦିଏ
ତାର ଅଲୌକିକ ଆବିର୍ଭାବ
ସୌରମଣ୍ଡଳ ସ୍ତବ୍ଧ ରହିଥାଏ
ଆଲୋକର ଆଗ୍ନେୟ ବଳୟ ମଝିରେ
ସେ ସ୍ଫୁରିତ ହୋଇଯାଏ
ମୁହଁ ଉପରେ ବାରମ୍ବାର ବିସ୍ଫୋରିତ
ଉଲ୍‌କାର ଉଲ୍ଲାସ ନେଇ

ପ୍ରତ୍ୟେକ ଭାବଭଙ୍ଗୀ ଓ କଟାକ୍ଷରେ
ଗୋଟିଏ ଗୋଟିଏ ସ୍ୱତନ୍ତ୍ର ମନ୍ତ୍ର
ଶରୀରର ସାଙ୍କେତିକ ତତ୍ତ୍ୱମାନଙ୍କରେ
ଦେଶଦେଶାନ୍ତର ପାଇଁ ବ୍ୟକ୍ତିଗତ ବାର୍ତ୍ତା
ଅଂଗୁଳି ନିର୍ଦ୍ଦେଶ କରେ
ଏକ ଅନାବିଷ୍କୃତ ଅନ୍ତରୀକ୍ଷକୁ
ପାଦଚିହ୍ନର ଜ୍ୟାମିତିରେ
ନିର୍ଦ୍ଧାରିତ ହୋଇଯାଏ
ଦିଗ୍‌ବିଦିଗର ଭାରସାମ୍ୟ
ଆଖିର ଜିଜ୍ଞାସା ନେଇଯାଏ
ଅନୁପଲବ୍‌ଧ ଦିଗନ୍ତର ଅପର ପାର୍ଶ୍ୱକୁ

କୌଣସି ପ୍ରତିବନ୍ଧ ନାହିଁ
ସଂଗୀତର ଊର୍ଦ୍ଧ୍ୱମୁଖୀ ଅନନ୍ତ ବ୍ୟାପ୍ତିରେ
ନୂଆ ନୂଆ ନଭମଣ୍ଡଳ ଖୋଲିଯାଏ
ଘୁଙ୍ଗୁରର ଅର୍ଥଗର୍ଭ ଧ୍ୱନିରେ
ପଦପାତ କ୍ରମବିବର୍ଦ୍ଧିତ ହୋଇ
ସୂଚିତ କରିଦିଏ
ଜୀବନର ବୃହତ୍ତର ନିମିତ୍ତମାନଙ୍କୁ

ମଂଚ ଉତ୍‌ପ୍ଲାବିତ ହୋଇଯାଏ
କାଳାତୀତ ଅନ୍ତରଙ୍ଗତାରେ
ପ୍ରେକ୍ଷାଳୟର ଆନନ୍ଦ ମିଶିଯାଏ
ଆକାଶର ଆହ୍ଲାଦ ସହିତ
ଚେତନାର ଦୀପ୍ତ ଓ ନିର୍ଦ୍ଧାରିତ ମୁହୂର୍ତ୍ତରେ
ସେ ଫେରିଯାଏ ନେପଥ୍ୟକୁ
ଅନ୍ତରୀକ୍ଷର ଆଶ୍ଚର୍ଯ୍ୟ ଭିତରେ
ସାମୟିକ ଶୂନ୍ୟସ୍ଥାନଟିଏ ଛାଡ଼ିଦେଇ

# ମୃତ୍ୟୁବୋଧ

ମରିବା ଆଗରୁ କଣ ସବୁ ମନେପଡ଼େ
ଘରଦ୍ୱାର ପ୍ରିୟପରିଜନ ସୁଖଦୁଃଖ
ପିଲାଦିନର ଆଶ୍ଚର୍ଯ୍ୟରେ ମିଶାମିଶି ସକାଳ
ଦୁଃସାହସର କ୍ରମସଂକୁଚିତ ଅଗ୍ନିବଳୟରେ
ଖେଳୁଥିବା ନିଶ୍ଚିନ୍ତ ମଧ୍ୟାହ୍ନ
ଭୟ ଓ ଦୁଃଖର କୁହୁଡ଼ି ଭିତରେ

ଶୋଇ ଯାଇଥିବା ଦୁଃଖମୟ ରାତି
ଅଥବା ନଈର ଅପର୍ଯ୍ୟାପ୍ତ ଧାରାରେ ପ୍ରବାହିତ
ଆରମ୍ଭ ଓ ଶେଷ ନ ଥିବା ବିବର୍ଣ୍ଣ ସମୟ

କଣ ସବୁ ଭାବେ ମରିବାକୁ ଯାଉଥିବା ଲୋକ
ପୁରୁଣା ସ୍ମୃତିରେ ଉବୁଡୁବୁ
ଜହ୍ନକୁ ଛୁଇଁବାର ଅଦ୍ଭୁତ ଅନୁଭୂତି
ଝଡ଼ର ବେଗ ସହିତ ମିଶି ଯାଇଥିବା
ଭବିଷ୍ୟତର ବିମର୍ଷ ପରମାୟୁ
ପୃଥିବୀର ଅନାବିଷ୍କୃତ ମହାଦେଶ କଥା
ଇତିହାସର ଅପୂର୍ଣ୍ଣ ପ୍ରତିଶ୍ରୁତିମାନ
କଳ୍ପନାରେ ମଣ୍ଡିତ ନନ୍ଦନବନ
ବାରମ୍ବାର ଉଚ୍ଚାରିତ ଗୋପନୀୟ ମନ୍ତ୍ର

କାହା ମୁହଁ ଦେଖାଯାଏ ମରିଯିବା ବେଳେ
ରୂପକଥାର ପ୍ରଥମ ରାକ୍ଷସ
ଦେବ ଦେବୀ କିନ୍ନରୀ ଗନ୍ଧର୍ବ
ପୋଷାକ ମୁଖା ଛଦ୍ମବେଶର ଅନ୍ତରାଳରେ
ହସ କାନ୍ଦ କ୍ଷୋଭ ଗ୍ଲାନି ବିଶ୍ୱାସ ଘୃଣା ଅପ୍ରତ୍ୟୟ
ମେଘରେ କାନ୍ଥରେ ହ୍ରଦ ଉପରେ
ବଦଳି ଯାଉଥିବା ଚେହେରାମାନ
ଚିହ୍ନା ଅଚିହ୍ନା ଅଧାଚିହ୍ନା
ପରିଚୟ ଅପରିଚୟରେ ଦୋଦୁଲ୍ୟମାନ ମୁହଁ

ଅଥବା କିଛି ବି ନୁହେଁ
ଆକାଶ ଆକାଶ ନୁହେଁ ମେଘ ମେଘ ନୁହେଁ
ସକାଳ ଓ ସଂଜବେଳ ସବୁ ମିଛ
ସବୁ କେବଳ ଏକ ମୋହ ମାୟା ଶୂନ୍ୟ

ସ୍ମୃତିହୀନ ଓ ଭାବନାରହିତ ଅବସ୍ଥା
ସାଦୃଶ୍ୟ ନାହିଁ ସମୟ ନାହିଁ
ସବୁ କିଛି ଦୃଶ୍ୟାତୀତ
ଏକା ଏକା ସବୁ କିଛି ନିଜ ଭିତରେ
କିଛି ଦେଖା ଯାଏ ନାହିଁ
କିଛି ମନେ ପଡ଼େ ନାହିଁ
କେବଳ ଅନ୍ଧ କରି ଦେଉଥିବା
ଏକ ଆଲୁଅ ବ୍ୟତୀତ
ଯାହା ତିଆରି ହୋଇଥାଏ
ଅନେକ ଅନ୍ଧାରର ଉପାଦାନମାନଙ୍କରେ

## କାଳୀ

ଉପରକୁ ଉଠିଥିବା ପାଦ
ମହାକାଳ ଆଡ଼କୁ
ଆଖିର ଆଗ୍ନେୟ ଲକ୍ଷ୍ୟ ଥାଏ
ସର୍ବନାଶର ସୀମାନ୍ତରେ
ଉଦ୍ୟତ ହାତର କ୍ରୋଧିତ କଟାରୀରେ
କଟିଯାଏ ଭବିଷ୍ୟତର ଆଶ୍ରୟ ସବୁ
ବର୍ଚ୍ଛାର ନିମ୍ନମୁଖୀ ତୀବ୍ରତାରେ
ଛିନ୍ନ ଭିନ୍ନ ହୋଇଯାଏ
ଅକିଞ୍ଚନ ଭକ୍ତିର ଶେଷ ସମ୍ବଳ
ମୁଣ୍ଡମାଳରେ ରୌରବର ବିଭୀଷିକା
ମନ୍ଦାରରେ ରକ୍ତାକ୍ତ ସଂତ୍ରାସ
ଖଡ୍‌ଗରେ ଜଡ଼ିଯାଏ ତ୍ରାଣହୀନ ଅଭିଶାପ
ନାଗଫେଣୀର ନିରୁଦ୍ଧାର କଣ୍ଟାରେ
ବିନ୍ଧ ରହିଯାଏ ଶାନ୍ତି ଓ ସ୍ୱସ୍ତ୍ୟୟନ

ତାଙ୍କର ଆଗମନର ରାସ୍ତାରେ
ସବୁ ନଈ ନାଳ ଶୁଖିଗଲା
ଦିଗ୍‌ବିଦିଗରେ ମାଡ଼ିଗଲା ମଡ଼କ ଓ ମହାମାରୀ
ଗଳିତ ଆକାଶର ପରିତ୍ୟକ୍ତ କୋଣମାନଙ୍କରେ
ରଙ୍ଗ ସବୁ ନଷ୍ଟଭ୍ରଷ୍ଟ ହୋଇଗଲେ
ବନାଗ୍ନିରେ ପଶୁପକ୍ଷୀ ଜଳିଗଲେ
ହସକୁ ଆକ୍ରାନ୍ତ କରିନେଲା
ଦୟାମାୟାହୀନ ଦ୍ୱିପ୍ରହର
ଛାୟାମୂର୍ତ୍ତିଙ୍କ ଉତ୍ତାଳରେ
ଲୁଚିଗଲା ଛଟପଟ ସୂର୍ଯ୍ୟ
ଖଡ୍‌ଗ ଓ ଖର୍ପରର ରୋଷ
ନିଷ୍ପ୍ରଭ କରିଦେଲା ଆତଙ୍କର ଦିନମାନଙ୍କୁ
ଆବାହନର ନିର୍ମମ ମନ୍ତ୍ରରେ
ହଜିଗଲା ଅଭିଶପ୍ତମାନଙ୍କର ଅର୍ଚ୍ଚନା

ହାତ ଉଦ୍ୟତ ଏବଂ ପାଦ ଉପରକୁ
ଜିହ୍ୱାର ଜାନ୍ତବ ଆକ୍ରୋଶରେ ସର୍ବଭୁକ କ୍ଷୁଧା
ଖର୍ପରର ଶୂନ୍ୟଭେଦୀ କୋପଦୃଷ୍ଟି
ଜାଳିଦିଏ କରୁଣାର କଣିକାକୁ
ଆଶୀର୍ବାଦ ହଜିଯାଏ ଅଭିଶାପର ଆଙ୍ଗିକରେ
ଅମାବାସ୍ୟା ଅଧିକାର କରିନିଏ ଆହ୍ନିକକୁ
ଜହ୍ନ ଲିଭିଯାଏ ନିଜର ଅନ୍ଧାରରେ

ଏଥରକ କାଳରାତ୍ରିର ରାଜତ୍ୱ
ରକ୍ତରେ ଭାସୁଥାଏ ମନ୍ଦାର ଫୁଲ
ନାଗଫେଣୀରେ ଅଟକିଥାଏ ଆର୍ତ୍ତନାଦ
ଭକ୍ତମାନେ ଚାଲିଯାନ୍ତି ଆଜ୍ଞାବହ
ନିଜ ନିଜର ନିର୍ଦ୍ଧାରିତ ଯୂପକାଠ ଆଡକୁ

# ଇତିହାସ

ଏବେ ଆଉ କେହି ସାକ୍ଷୀ ନାହାନ୍ତି
କୃତିତ୍ୱମାନ ପ୍ରାସାଦ ଓ ଗୁମ୍ଫାରେ ବନ୍ଦ
ସଫଳତାର ସମସ୍ତ ପ୍ରମାଣ
ସ୍ମୃତିସ୍ତମ୍ଭ ଓ କାମଶାସ୍ତ୍ରରେ ଲିପିବଦ୍ଧ
ଅମରତ୍ୱ ଲାଭର ଇଚ୍ଛା ଅଶ୍ମୀଭୂତ
ପ୍ରଶସ୍ତି ଓ ଅନୁଶାସନର ଅଭିଲେଖରେ

ଏଠାରେ କୌଣସି ସତର୍କବାଣୀ ନାହିଁ
ନାହିଁ କୌଣସି ନୀତିଶିକ୍ଷା
ଆକସ୍ମିକତା ଏଠାରେ ସର୍ବସମ୍ମତ
ତର୍କସଂଗତି ଓ ସ୍ପଷ୍ଟୀକରଣର ଅଭାବ ନାହିଁ
ସମସ୍ତଙ୍କ ପାଇଁ ଏଠାରେ ସ୍ଥାନ ଖାଲି
ଅଜ୍ଞାତ ଅଧ୍ୟାୟମାନଙ୍କର ଅତଳ ଗହ୍ୱରରେ

ସଭାପଣ୍ଡିତଙ୍କ ସଫଳ ହାତରେ
ପରିଚ୍ଛେଦମାନ ସଂଶୋଧିତ ହୋଇଯାନ୍ତି
ମହାତ୍ମା ଓ ମହାରଥୀମାନେ
ଶୀର୍ଷକରୁ ଓହ୍ଲାଇ ଆସନ୍ତି
ପାଦଟୀକା ଓ ପରିଶିଷ୍ଟକୁ
ଘଟନାଚକ୍ରର ଅଦ୍ଭୁତ ଷଡ଼ଯନ୍ତ୍ର
ସମୟର ଅଳିଆ ଗଦାରୁ
ବିସ୍ମୃତ ଦୁରାତ୍ମାକୁ ଟୋଳି ନେଇ
ଫିଙ୍ଗିଦିଏ ସିଂହାସନ ଉପରକୁ

ସର୍ତ୍ତ ସନ୍ଧିପତ୍ର ସାଲିସର ଚିଠା
ଅନ୍ଧଗଳି ଚୋରାକବାଟ ମନ୍ତ୍ରଣାକକ୍ଷ
ତୀର କମାଣ ଓ ଉଦ୍‌ଜାନ ଭିତରେ
ରହିଥାନ୍ତି ଦେଶ କାଳ ପାତ୍ର
ଅଶ୍ୱମେଧ ଓ ଆଣବିକ ଯଜ୍ଞରେ
ସତ୍ତାର ସୀମାରେଖା ନିର୍ଣ୍ଣୀତ ହୋଇଯାଏ
ଉତ୍ତେଜନାର ଘେରିଥିବା ଛାଇ ତଳେ
ସଭ୍ୟତାର ବୟସ ବଢୁଥାଏ

ବାହାରେ ଛିଡ଼ା ହୋଇଥିବା ଲୋକମାନେ
ବିତୃଷ୍ଣାର ସହିତ ଅନାଇ ରହନ୍ତି
ସାର୍ଥକ ଘଟଣାବଳୀ ଆଡ଼କୁ
ସମର୍ଥ ଲୋକଙ୍କ ହାତରେ
ନୂଆ ନୂଆ ଅଧ୍ୟାୟ ଲେଖା ହୁଏ
ସବୁ ପୁଣି ସମର୍ପିତ ହୋଇଯାଏ
ସମୟର ସର୍ବଭୁକ କୀଟମାନଙ୍କ ପାଖରେ

ପ୍ରତିକୃତିମାନେ ଛଳନା କରନ୍ତି ମୌଳିକତାର
ବିଦୂଷକମାନେ ଗମ୍ଭୀର ହୋଇ
ନିଜର ପରିହାସକୁ ଦାର୍ଶନିକତା ଦିଅନ୍ତି

ସବୁ ଚାଲିଯାଏ ଜୀର୍ଣ୍ଣ ପୃଷ୍ଠା ଭିତରକୁ
ଭବିଷ୍ୟତର ଗବେଷକ ବସି ରହନ୍ତି
ଅନିର୍ଣ୍ଣୀତ ବର୍ଣ୍ଣମାଳାକୁ ହାତରେ ଧରି
ଘଟିଯାଇଥିବା ଦୁଃଖାନ୍ତ ବୃତ୍ତାନ୍ତମାନ
ପୁନଃ ସଂଘଟିତ ହୁଅନ୍ତି ପ୍ରହସନ ହୋଇ

# ଗାନ୍ଧୀ

ସତ୍ୟର ପରୀକ୍ଷା ନିରୀକ୍ଷାମାନ
ସ୍ଲୋଗାନ ପାଲଟି ଗଲା
ଜୀବନ ଦର୍ଶନ ଲାଖି ରହିଲା
ପ୍ରତିମାର ଅନ୍ଧ ଆଖିରେ
କୃତିତ୍ୱ ସଂଜ୍ଞାରେ ସୀମିତ ରହିଗଲା
ଆତ୍ମାକୁ ଅଧିକାର କରିନେଲା
ସୁବିଧାବାଦର ପଣ୍ୟ

ଧର୍ମର ସ୍ଥାପନା ପାଇଁ
ଯୁଦ୍ଧ ଘୋଷଣା କରାଗଲା
ଶାନ୍ତିରକ୍ଷା ପାଇଁ ଜାଳି ଦିଆଗଲା
ଦଳିତମାନଙ୍କର ବସ୍ତିକୁ
ସତ୍ୟର ପ୍ରମାଣ ଖୋଜା ହେଲା
କପଟଶାସ୍ତ୍ରର ଦ୍ୱାହି ଦେଇ
ଈଶ୍ୱରର ଲୋକମାନଙ୍କୁ
ବାସନ୍ଦ କରି ଦିଆହେଲା
ସବା ଶେଷ ଲୋକଟି ଘୁଞ୍ଚିଗଲା
ଆହୁରି ଅନେକ ପଛକୁ

ଆଉ କେହି ସତ୍ୟାନ୍ୱେଷୀ ନାହାନ୍ତି
କାହାରି ଚିନ୍ତା ନାହିଁ ମାଧ୍ୟମ ଲାଗି
ସମସ୍ତଙ୍କ ଆଖି ବର୍ତ୍ତମାନ
ଅଚଳନ୍ତି ପରିଣାମ ଉପରେ
ହାନିଲାଭର ରୋକଠୋକ ଚୋରାବଜାରରେ
ଖର୍ଚ୍ଚ ହୋଇଗଲା ସଚ୍ଚରିତ୍ରତାର ଶେଷ ପୁଞ୍ଜି
ସାମ୍ରାଜ୍ୟବାଦୀମାନେ ବାହାରିଗଲେ

ନୂଆ ଉପନିବେଶ ସଂଧାନରେ
ଯୁଦ୍ଧଖୋରମାନଙ୍କ ହାତରେ
ଶାନ୍ତିର ପୁରସ୍କାର ସମର୍ପିତ ହୋଇଗଲା

ପୁରୁଣା ଘଡ଼ି ଲଂଘିପାରେ ନାହିଁ
ଦାରିଦ୍ର୍ୟର ସୀମାରେଖାକୁ
ମୋଟା ଚଷମାର କାଚ ଭିତରୁ
ଆଉ ଦେଖାଯାଏ ନାହିଁ
ଅଖଣ୍ଡ କ୍ଷମତାର ଅଶ୍ଳୀଳତା
ଭରା ଦେଉଥିବା ଲାଠି ଦେଇ
ଅଟକାଇ ହୁଏ ନାହିଁ
ଚରମ ପନ୍ଥୀର ଉଗ୍ର ହିଂସ୍ରତାକୁ

ଘଣ୍ଟା ସବୁ ମୌନ ଓ ଅଚଳ
ପ୍ରାର୍ଥନାର ଧ୍ୱନିସବୁ ସ୍ତବ୍ଧ
ଇତିହାସ ଛୁଟି ନେଇଯାଏ
ଧର୍ମ ଫେରିଯାଏ ନିଜର ଲଜ୍ଜାକୁ
ପଥର ମୂର୍ତ୍ତି ପରିଭାଷାର ଶୃଙ୍ଖଳ
ଚଳଚ୍ଚିତ୍ର ଓ ଜୟନ୍ତୀ ସମାରୋହରୁ ବାହାରି
ସେ ପୁଣି ଚାଲିଯାଏ
ଚଞ୍ଚଳ ପାଦ ପକାଇ
ନୂଆ ନୂଆ ଆତତାୟୀମାନଙ୍କର
ଉଦ୍ୟତ ବନ୍ଧୁକ ଆଡ଼କୁ

# ଗୀତଗୋବିନ୍ଦ

ଏ ଏପରି ଏକ କୁଞ୍ଜବନ
ଯାହାର ପରିକଳ୍ପନା
ସ୍ତମ୍ଭନ ଆକର୍ଷଣ ଓ ବଶୀକରଣରେ

ଆବେଶ ଯାହାର ଚାରି ସୀମା
ଏବଂ ଇନ୍ଦ୍ରିୟ ଯାହାର ଆଶ୍ରୟ
ଏଠାରେ ପ୍ରବେଶ କଲେ ହିଁ
ଆକାଶ ଆଚ୍ଛନ୍ନ ହୋଇଯାଏ ଇଚ୍ଛାରେ
ଅନ୍ଧାର ଗାଢ଼ତର ହୋଇଯାଏ
ଦୁର୍ବିସହ ମନୋରଥ ଭଳି
ଜୀବନକାଳ ସମର୍ପିତ ହୋଇଯାଏ
କାହାର ଉଦାର ପାଦପଲ୍ଲବରେ

ଏଠାରେ ସବୁ କିଛି ଦେହମୟ
ରାତ୍ରିର ଉନ୍ନିଦ୍ର ପ୍ରହର କଟିଯାଏ
ଜଘନ ସ୍ତନ ଅଧର ଦେଇ
ପଲ୍ଲବ ଓ କିଶଳୟ ଶଯ୍ୟାରେ
ସକାଳ ଆସି ଓହ୍ଲାଏ
ଅସ୍ତବ୍ୟସ୍ତ ପକ୍ଷ୍ମ କବରୀ ଓ ଚୂର୍ଣ୍ଣ କୁନ୍ତଳରେ
ତା ପରେ ଅଭିମାନ ଓ କ୍ଷୋଭ
ପ୍ରଳାପ ସନ୍ତାପ ଗ୍ଲାନି ଓ ଦୀର୍ଘଶ୍ୱାସ

ହତଭାଗୀ ସଖୀ ବାର୍ତ୍ତା ନେଇ ଯାଉଥାଏ
ମୁଗ୍‌ଧରୁ ସ୍ନିଗ୍‌ଧ ଚତୁରରୁ ସାନନ୍ଦ
ଖଣ୍ଡିତାରୁ କଳହାନ୍ତରିତା ପାଖକୁ
କନ୍ଦର୍ପର ଶର ଖୋଜିନିଏ
ମାଧବୀ ନବମାଳିକା ଓ ଅଶୋକ ଭିତରୁ
ବିରହରେ ସମ୍ମିଳିତ ଦୁଇଟି ଅଧୀର ଦେହକୁ

ଅନ୍ଧାର ପୁଣି ଆସେ ଅନ୍ତର୍ଦାହ ଭଳି
କସ୍ତୁରୀ କୁଙ୍କୁମ ଚନ୍ଦନ ଓ ଅଞ୍ଜନ ବୋଳି
ଉତ୍ତରୀୟ ଉଡ଼ାଇ ଓ ମେଖଳା ନଚାଇ
କୁଣ୍ଡଳ ଓ ନୂପୁରର ସ୍ତିମିତ ସ୍ୱରରେ
ନିରଂକୁଶ ମନ ଅଟକି ରହିଯାଏ
ଚଞ୍ଚଳ ଚକିତ ବିହ୍ୱଳ ଓ ବ୍ୟାକୁଳ

ଲବଙ୍ଗ ପଳାଶ ତମାଳ ଓ ବକୁଳରେ
ଦେହ ଅଧିକାର କରିନିଏ ସମସ୍ତ ସମ୍ଭ୍ରମ
ଜୀବନ ଜଡ଼ି ରହିଯାଏ
ରୋମାଞ୍ଚ ବେପଥୁ ଶିହରଣ ଓ ମୂର୍ଚ୍ଛାରେ

ଶେଷରେ ସବୁ କିଛି ଅବସନ୍ନ
ଖିନ୍ନ ସ୍ୱେଦସିକ୍ତ ଓ ବିପର୍ଯ୍ୟସ୍ତ
ସୂର୍ଯ୍ୟ ସମନ୍ୱିତ କରିଦିଏ
ଇନ୍ଦ୍ରିୟ ଓ ମନ ଇହ ପର ଜନ୍ମ ଜନ୍ମାନ୍ତର
ସ୍ତନ ଉପରେ ପତ୍ରାବଳୀ ଆଙ୍କିଦିଏ ସକାଳ
ଦେହରେ ସଜାଇ ଦିଏ ବଳୟ କଙ୍କଣ ନୂପୁର
ଏଥର ଆଉ ଅଙ୍ଗ ନାହିଁ ଅନଙ୍ଗ ନାହିଁ
ପୂର୍ବରାଗ ନାହିଁ ପ୍ରେମ ନାହିଁ ବିରହ ନାହିଁ
କେବଳ ଏକ ଚିରନ୍ତନ ବଦଳୁଥିବା ଅନୁଭବ
ଏବଂ କବିତାର ରାଜତ୍ୱ
ଶବ୍ଦ ଓ ଛନ୍ଦର ସମାରୋହ
ରାଗ ଓ ତାଳର ଆଧିପତ୍ୟ

କୁଞ୍ଜବନର ସଙ୍ଗୀତମୟ ସାମ୍ରାଜ୍ୟରେ
ନିଜର ପ୍ରେରଣାର ଚକ୍ରବର୍ତ୍ତୀ ରହିଥାଏ କବି
ମନ ଯମୁନାରେ ବନ୍ୟା ଆଣିଦିଏ
କୋମଳ କାନ୍ତ ପଦାବଳୀ

## ଭୟ

ଭୟ ହେଉଛି ପ୍ରାଗୈତିହାସି ଅନ୍ଧାର
ସହରର ଗଳିକନ୍ଦିରେ ଛପି ରହିଥାଏ
ବ୍ରିଫ୍‌କେସ୍‌ରେ ପଚାଶ ହଜାର ଟଙ୍କା ଥିବାବେଳେ

ଭୟ ହେଉଛି କିଙ୍ଗକଙ୍ଗର ଦାୟାଦ
ଶୈଶବର ରୂପକଥାରୁ ବାହାରି ଆସି
ଛାତି ପିଟେ କଂକ୍ରିଟ ଜଙ୍ଗଲର ଛାତ ଉପରେ

ଭୟ ହେଉଛି ଟେଲିଫୋନର ଘଣ୍ଟି
ହୃତ୍‌ପିଣ୍ଡରେ ହାତୁଡ଼ି ପିଟି ଆସେ
ଅସମୟରେ ଉର୍ଦ୍ଧ୍ୱତନ ହାକିମଙ୍କ ସ୍ୱର ହୋଇ

ଭୟ ହେଉଛି ଅଧାରାତିର ଟେଲିଗ୍ରାମ
ବନ୍ଦ ଲଫାପା ଭିତରେ ଆସି ପହଞ୍ଚେ
ପ୍ରିୟଜନମାନେ ଦୂରରେ ରହିଥିବା ବେଳେ

ଭୟ ହେଉଛି ଶୂନଶାନ ଖରାବେଳେ
ଭାରୀ ବୁଟ ଜୋତାର ଶୃଙ୍ଖଳାବଦ୍ଧ ଶବ୍ଦ
କର୍ଫ୍ୟୁ ସମୟରେ ନପୁଂସକମାନଙ୍କ ଗଳିରେ

ଭୟ ଏମରଜେନ୍‌ସି ବେଳର ଚୁପଚୁପ କଥା
ଖାକି ପୋଷାକରେ ବେୟୋନେଟ ଧରି ମାଡ଼ିଯାଏ
ଛତ୍ରଭଙ୍ଗ ଦେଉଥିବା ଶୋଭାଯାତ୍ରା ଆଡ଼କୁ
ପ୍ରତିବାଦର ସ୍ଲୋଗାନ ବନ୍ଦ ହୋଇଗଲେ

ଭୟ ହେଉଛି ମଟର ସାଇକେଲର ଗର୍ଜନ
ମୁଖା ପିନ୍ଧି ଆସେ ମନ୍ଦିର ଭିତରୁ ବାହାରି
ହିଟ୍ ଲିଷ୍ଟରେ ନାଁ ଚଢ଼ି ସାରିବା ପରେ

ଭୟ ନିଜର କଳଙ୍କିତ ଅତୀତର ସାକ୍ଷୀ
ଅତର୍କିତ ଫେରି ଆସେ ମନର କଳାପାଣିରୁ
ପୁରୁଣା ପାପର ପ୍ରାୟଶ୍ଚିତ୍ତ ଖୋଜି

ଭୟ ହେଉଛି ମୃତ୍ୟୁର ହଠାତ ସମ୍ଭାବନା
ଦର୍ପଣ ଭିତରୁ ଆସେ ସମୟର ଶୂନ୍ୟ ହୋଇ
ଜରାର କୁଞ୍ଚିତ ରେଖା ମୁହଁ ଉପରେ ଟାଣି
ପ୍ରସାଧନର ଆସକ୍ତ ମୁହୂର୍ତ୍ତରେ

ଭୟ ହେଉଛି ସମ୍ବନ୍ଧର ସୂକ୍ଷ୍ମତା
ମନୋମାଳିନ୍ୟର ପ୍ରାତ୍ୟହିକତାରେ ଝୁଲୁଥାଏ
ଛିନ୍ନ ହୋଇଯିବାର ଚିରନ୍ତନ ଆଶଙ୍କା ନେଇ

# ଆହ୍ନିକ

ଦିନ ଏଇଭଳି ଆସେ ଓ ଚାଲିଯାଏ
ସହରର ଗଳିମାନଙ୍କ ଭିତରେ
ଦିନ ପରେ ଦିନ ମାସ ପରେ ମାସ
ଗୋଟିଏ ଋତୁରୁ ଅନ୍ୟ ଋତୁ
ସାମୂହିକ ରିକ୍ତତାମାନ ଦେଇ

ଭୁଲରେ ଜଳୁଥିବା ବତୀକୁ ନିଷ୍ପ୍ରଭ କରି
ସକାଳର ସୂର୍ଯ୍ୟ ଉଏଁ
ଉଠା ଚୁଲିର କୋଇଲା ଧୂଆଁରେ
ଖବରକାଗଜର ରକ୍ତାକ୍ତ ହେଡ୍‌ଲାଇନ ପଛରୁ
ଚା କପ ଉପରେ ଚମକ ଆଣିଦେଇ

ରାସ୍ତାର ପାଣିକଳ ପାଖରେ ଭିଡ଼ ଜମାଇ
ସକାଳ ଶୁଭେ ଦିନ ନ'ଟାର ସାଇରେନରେ
କଳକାରଖାନାରେ ମେସିନର ଆବାଜ ହୋଇ

ସକାଳ ଚଢ଼ିଯାଏ ଅଫିସ ବେଳର ଭିଡ଼ ବସ୍‌ରେ
ସକାଳ ଲମ୍ବିଯାଏ ରାଶନ ଦୋକାନ ଆଗରେ
ପୋଷ୍ଟର ଉପରେ ରଙ୍ଗ ବୋଳିଦେଇ
ଦିପହର ଆସି ଛାଇଙ୍କୁ ଅଟକାଏ
ଛକ ଉପରେ ଟ୍ରାଫିକ ପୋଲିସ ହୋଇ
ଖରାର ହତାଶାକୁ ଲୁଚାଇ ଦିଏ
କଳା ଚଷମାର କୃତ୍ରିମତା ଭିତରେ

ଖରାବେଳ ଖସିଯାଏ
ରିକ୍‌ସାବାଲା ପିଠିର ଝାଳ ହୋଇ
ଖରାବେଳ ଉଡ଼ିଯାଏ
ରାସ୍ତା ଉପର ଶୁଖିଲା ପତ୍ରରେ
ଖରାବେଳ ତରଳିଯାଏ ରାସ୍ତାର ପିଚୁରେ
ଖରାବେଳ ଲେଉଟି ଯାଏ
ଶୂନଶାନ ଗଳିର ଶୂନ୍ୟତା ହୋଇ

ଅପରାହ୍ନକୁ ଟିଫିନ ଡବାରେ ଧରି ଫେରେ
ଅଫିସ ଓ କାରଖାନା ଫେରନ୍ତା ଲୋକ
ସଞ୍ଜ ଓହ୍ଲାଏ ପାନ ଦୋକାନ ଆଗରେ
ସିନେମା ଘରେ ଝିଅଟି ଅପେକ୍ଷା କରୁଥାଏ
ଦିନର ଆଲୁଅ ଲିଭିଯାଏ
ବସ୍ତିର ମିଳିତ ଦୀର୍ଘଶ୍ୱାସରେ

ବତୀଖୁଣ୍ଟମାନେ ପୁନର୍ଜନ୍ମ ନିଅନ୍ତି
ଦିନ ଚାଲିଯାଏ ଖିନ୍ନ ଓ ବିରକ୍ତ
ଚୁପଚାପ ଅନ୍ଧାର ଭିତରକୁ
ରାତିର ପ୍ରଥମ ଟ୍ରେନ ଧରି

# ଭଗ୍ନାବଶେଷ

ଭାଙ୍ଗି ପଡୁଥିବା ଦୁର୍ଗର କାନ୍ଥ ସହିତ
କି ପ୍ରକାର ଆଳାପ କରାଯାଇପାରେ
କେଉଁ ମୃତ ଭାଷାକୁ ଆଶ୍ରୟ କରି
କେଉଁ ତଟସ୍ଥ ଦ୍ୱିଭାଷୀର ସହାୟତାରେ
ପୋତି ଯାଇଥିବା ଗଡ଼ଖାଇକୁ
କି ସ୍ପଷ୍ଟୀକରଣ ମାଗିହେବ
କେଉଁ କୂଟନୀତିର କିଭଳି କପଟ ଆଚରଣରେ
ସମର୍ଥନ ଖୋଜିବ କେଉଁଠାରେ
ପରସ୍ପର ଧକ୍କା ଖାଉଥିବା ଶ୍ରେଣୀସଂଘର୍ଷର
କେଉଁଭଳି ପଥର ଓ ଶଙ୍ଖମର୍ମରରେ

କେତେ ଶହ ବର୍ଷ ତଳେ କିଏ ଥିଲା ଏଠାରେ
ନୂଆ ମୁଦ୍ରା ସମ୍ବତ ଓ ସିଦ୍ଧାନ୍ତ ଚଳାଇ
କିଏ ଆସିଥିଲା ହାତୀ ଘୋଡ଼ା ଓ ଟ୍ୟାଙ୍କରେ ଚଢ଼ି
ଶିକୁଳିବନ୍ଧା କ୍ରୀତଦାସମାନଙ୍କର ପଲଟଣ ଧରି
କିଏ ନିଜର କ୍ଷମତାକୁ ସାବ୍ୟସ୍ତ କରିଦେଲା
ଫାଶିଖୁଣ୍ଟର ନିର୍ମମ ନିପୁଣତାରେ
କିଏ ଚାଲିଗଲା ଚୋରାକବାଟ ଦେଇ
ସ୍ତ୍ରୀଲୋକର ଛଦ୍ମବେଶ ପିନ୍ଧି
ଅଧାରାତିର ଆତତାୟୀଙ୍କୁ ଏଡ଼ାଇ

ଝଡ଼ିପଡୁଥିବା ଇଟାରେ କୌଣସି ପରାକ୍ରମ ନାହିଁ
ପଥରରୁ ଅଙ୍କୁରିଥିବା ଉଦ୍ଭିଦ ସବୁ ସମ୍ଭାବନାରହିତ
ଆଉ କୌଣସି ପ୍ରୟୋଜନରେ ଆସିବ ନାହିଁ
ଭଙ୍ଗା ଛାତ ଉପରେ ଖଞ୍ଜା କଳଙ୍କିଲଗା କମାଣ
ଲିଭି ଆସୁଥିବା ଅକ୍ଷରରେ ଲେଖା ତମ୍ବାପଟାର ପ୍ରଶସ୍ତି

କବାଟ ନଥିବା ବନ୍ଦୀଶାଳାର ଛିନ୍ନ ଶୃଙ୍ଖଳ
ସ୍ୱେଚ୍ଛାଚାରକୁ ସିଦ୍ଧ କରୁଥିବା ଶିଉଳିଲଗା ଶିଳାଲିପି

ଚିଲ ଉଡ଼ି ଚାଲିଯିବ
ରାଣୀହଂସପୁରର ଅତୃପ୍ତ ନିଶ୍ୱାସକୁ ନେଇ
ଘୋଡ଼ାଟାପୁ ହଜିଯିବ ଶୃଗାଳର ଶୀର୍ଣ୍ଣ ସ୍ୱରରେ
ରାଜପ୍ରାସାଦର କାନ୍ଥ ନଇଁଯିବ
ସମୟର ଶୋଭାଯାତ୍ରାକୁ ସ୍ୱାଗତ ଜଣାଇ
ଗଡ଼ ପରିଖାର ପଥର ଫାଟିଯିବ
ଦରବାରୀ ଅନ୍ୟାୟର ପ୍ରତିବାଦ କରି

ଆଉ କେହି ଲିପିବଦ୍ଧ କରିବ ନାହିଁ
ମାଟିରେ ପୋତି ହୋଇଯାଇଥିବା ସ୍ୱର୍ଣ୍ଣଯୁଗ
ଅରମା ବୁଦାରେ ଲୁଚିଥିବା ବିଶ୍ୱାସଘାତ
ଘାସରେ ଆଚ୍ଛାଦିତ ବିଜୟ ସମାରୋହ
ପଥର ଫାଟରେ ଅଟକିଥିବା ଯୁଦ୍ଧ ଘୋଷଣା
ବୁଢ଼ିଆଣୀ ଜାଲରୁ ଝୁଲୁଥିବା ବଂଶାବଳୀ

ଖଣ୍ଡ ଖଣ୍ଡ ବୃତ୍ତାନ୍ତ ଉପରେ ପାଦ ଦେଇ
ପିକନିକ କରିବାକୁ ଆସିଥିବା ଲୋକ ଅନାଇବ
ଭଙ୍ଗା କବାଟ ଦେଇ ଦୁର୍ଗ ଭିତରକୁ
ଅତୀତରୁ କିଛି ଉପଦେଶ ସନ୍ଧାନ କରି
ଉଦାସୀନ ଓ ବିରକ୍ତ ଖରାବେଳ
ବାରମ୍ବାର ପ୍ରତିଧ୍ୱନି ତୋଳୁଥିବ
କିମ୍ବଦନ୍ତୀର ତଥାପି ନିଦ ଭାଙ୍ଗିବ ନାହିଁ

# ପରବର୍ତ୍ତୀ କବିତା

ମୋର ପରବର୍ତ୍ତୀ କବିତା ଆସିବ
କ୍ଷମାଶୀଳ ସହାନୁଭୂତି ଭିତରୁ
ଦୁଇଟି ପ୍ରେମ ଓ ତିନୋଟି ବିଚ୍ଛେଦ ପରେ
ଦୀର୍ଘଶ୍ୱାସର ଅନୁତପ୍ତ ଆକାଶରୁ ଓହ୍ଲାଇବ
ପୂର୍ବରାଗର ସ୍ୱସ୍ତ୍ୟୟନ ହୋଇ

ମଉଳି ଯାଇଥିବା ସଂପର୍କର ପଶ୍ଚାତ୍ତାପରେ
ସେ ଆସିବ ଆତ୍ମୀୟତାର ହାତ ବଢ଼ାଇ
ବଦଳି ଯାଇଥିବା ପାରସ୍ପରିକତାକୁ ସଜାଡ଼ି
ସଂଶୟ ଓ ଅବିଶ୍ୱାସର ମଶାଣି ଉପରେ
ବୁଝାମଣାର ସମ୍ବେଦନଶୀଳ ଫୁଲ ଫୁଟାଇ

ବନ୍ଧ୍ୟା ଆକାଶର ବିରକ୍ତ ଅପରାହ୍ନରେ
ସେ ଆସିବ ସବୁଜ ସ୍ମୃତିର ସ୍ମାରକ ହୋଇ
ମନର ନିଭୃତତମ ଏକାନ୍ତରେ
ଗଭୀର ଅଚେତନମାନଙ୍କୁ ସାକାର କରି
ଭୁଲିଯାଇଥିବା ସଂଗୀତର ପ୍ରତିଧ୍ୱନି ତୋଳି

ସେ ଆସିବ ହତଭାଗ୍ୟ ଅଦୃଷ୍ଟକୁ ପଛରେ ରଖି
ମାଙ୍ଗଳିକର ପ୍ରଖର ପ୍ରତ୍ୟାଶା ହୋଇ
ଆଖି ଭିତରେ ଭବିଷ୍ୟତକୁ ବଶୀଭୂତ କରି
ହାତରେ ପ୍ରତ୍ୟୟର ନୂଆ ନୂଆ ଭାଗ୍ୟରେଖା ଲେଖି

ସେ ଆସିବ ଅକାଳର ଅଶାନ୍ତ ସ୍ଥିତିରେ
ହାହାକାରର ବିଷର୍ଣ୍ଣ ଅପନ୍ତରାକୁ ପାରି ହୋଇ
ଅନ୍ନଛତ୍ରମାନଙ୍କରେ ମୁଠା ମୁଠା ହସ ବାଣ୍ଟିଦେଇ
ମୃଗତୃଷ୍ଣାକୁ ବର୍ଷା ଜଳରେ ଆପ୍ଳୁବିତ କରି

ସେ ଆସିବ ସକାଳର ଶାସ୍ତ୍ରୀୟ ଶୁଚିରେ
ମୁହଁରେ ଶାନ୍ତିର ସ୍ତୋତ୍ର ଉଚ୍ଚାରଣ କରି
ମନ୍ଦିରର ଅନ୍ଧାରକୁ ସଂସ୍କାରରେ ଚମକାଇ
ମୃତ୍ୟୁଦୂତମାନଙ୍କ ହାତରୁ ମାରଣାସ୍ତ୍ର ଛଡାଇନେଇ

ସେ ଆସିବ ଜେଲ ପାଚେରୀର ଅବରୋଧକୁ ଭାଙ୍ଗି
ସ୍ୱେଚ୍ଛାଚାରୀ ଶାସନର ନିଷେଧାଜ୍ଞା ନ ମାନି
ହାତରେ ପ୍ରତିବାଦର ପତାକା ଧରି
ସେ ଚାଲିଯିବ କର୍ଫ୍ୟୁର ରାଜପଥ ଉପରେ
ଶୋଭାଯାତ୍ରା ଆଗରେ ସ୍ଲୋଗାନ ଦେଇ
ବ୍ୟାଗ ଭିତରୁ ଅଗ୍ନିଗର୍ଭ ଇସ୍ତାହାର ବାଣ୍ଟି

ଶାନ୍ତିର ପଦଯାତ୍ରାରେ ପାଦ ମିଳାଇ
ସେ ଆସିବ ଅସହିଷ୍ଣୁତାର ନୂଆଖାଲିରେ
ସାଂପ୍ରଦାୟିକ ଦଙ୍ଗା ମଝିରେ ରାମଧୁନ ଗାଇ
ସନ୍ତ୍ରାସବାଦୀର ବନ୍ଧୁକ ଆଡ଼କୁ ଛାତି ଦେଖାଇ

ମୋର ପରବର୍ତ୍ତୀ କବିତା ଆସିବ
ହାତରେ ଶାଣିତ ଶବ୍ଦମାଳାକୁ ସାଉଁଟି
ନିର୍ବିରୋଧ ନିଃଶଙ୍କ ସହଜ ଓ ସ୍ୱତଃସ୍ଫୂର୍ତ୍ତ
ମାତ୍ରା ଓ ଛନ୍ଦର ବନ୍ଧନକୁ ଏଡ଼ାଇ
ସାଦା କାଗଜର ସ୍ୱାୟତ୍ତ ସାମ୍ରାଜ୍ୟରେ
ବଞ୍ଚିବାର ଅଧିକାରମାନଙ୍କୁ ସ୍ୱତଃସିଦ୍ଧ କରି

# ଧର୍ମଯୁଦ୍ଧ

ମନ୍ଦିର ଠିଆ ରହିଥାଏ
ସ୍ୱର୍ଗ ଆଡ଼କୁ ମୁହଁ କରି
ପୂଜାପୀଠର ନିରାପଦ ଅନ୍ଧାରରେ
ଧର୍ମଯାଜକମାନେ ଷଡ଼ଯନ୍ତ୍ରରେ ବ୍ୟସ୍ତ
ମନ୍ତ୍ରପାଠରେ ଭାସିଆସେ ବିଦ୍ୱେଷର ବାର୍ତ୍ତା
ରଣସଜ୍ଜାର ପ୍ରସ୍ତୁତି ଚାଲିଥାଏ ଗର୍ଭଗୃହ ଭିତରେ
ଧ୍ୱଜାରୁ ଖସିପଡ଼େ କ୍ରୋଧ ଓ ଆକ୍ରୋଶ
ଧୂପ ଉଡ଼ାଇ ନିଏ ସଂଯମ ଓ ସହିଷ୍ଣୁତା
ଘଣ୍ଟ ସୂଚାଇଦିଏ ଯୁଦ୍ଧାରମ୍ଭର ସମୟ

ପବିତ୍ର ମଣ୍ଡପ ଉପରେ ବସି
ସଂପ୍ରଦାୟର ଶୀର୍ଷ ପୁରୋହିତମାନେ
ବ୍ୟୂହର କୁଟିଳ ବ୍ୟଞ୍ଜନା କରୁଥାନ୍ତି
ମୁହଁରେ ମନ୍ତ୍ରର ରଣସଙ୍ଗୀତ ନେଇ
ଧର୍ମ ସଂସ୍ଥାପନା ପାଇଁ ବାହାରି ଆସନ୍ତି
ଯୁଯୁତ୍ସୁ ବ୍ରତଚାରୀମାନେ
ଶାନ୍ତିବାଦୀକୁ ବିଧର୍ମୀ ଘୋଷିତ କରିଦିଏ
ଧର୍ମର ବଡ଼ପଣ୍ଡା

ଓଠରେ ସ୍ତୋତ୍ର ଓ ଯୁଦ୍ଧଘୋଷ
ହାତରେ ତ୍ରିଶୂଳ ଓ ବନ୍ଧୁକ
ତୁଳସୀ ଓ ବୁଲେଟର ମାଳା ପିନ୍ଧି
ଅନ୍ୟ ଧର୍ମୀମାନଙ୍କୁ ଖୋଜି ବାହାରନ୍ତି
ଧାର୍ମିକତାର ଅନ୍ଧ ଯୋଦ୍ଧାମାନେ
ବସ୍ତିମାନଙ୍କରେ ନିଆଁ ଜଳାଇ
ଶିଶୁମାନଙ୍କ ଛାତିକୁ ଛୁରୀରେ ଚିରି
ସ୍ତ୍ରୀମାନଙ୍କ ଉପରେ ବଳାତ୍କାର କରି
ପ୍ରବଚନମାନଙ୍କୁ ସାବ୍ୟସ୍ତ କରିବା ପାଇଁ

ଧର୍ମଯାଜକର ଆଖିରେ ଘୃଣା
ଛାତିରେ ହିଂସା ଓଠରେ ସ୍ପର୍ଦ୍ଧା
ଅଙ୍ଗୁଳି ନିର୍ଦ୍ଦେଶ କରେ ଅରାଜକତାକୁ
ଅନୁଚରମାନେ ଚାଲିଯାନ୍ତି ବିଦ୍ୱେଷର ଭଜନ ଗାଇ
ଧ୍ୱଂସର ଗଡ୍ଡ଼ଳିକା ପ୍ରବାହ ଆଡ଼କୁ

ରାତିର ଅଶୁଭ ଲଗ୍ନମାନଙ୍କରେ
ଲାଭ କ୍ଷତିର ହିସାବ କରନ୍ତି ବସି
ଧର୍ମର ଭଡ଼ାଟିଆ ଦଲାଲମାନେ
ନିଜନିଜର ଅନ୍ଧବିଶ୍ୱାସକୁ ଧରି
ଅଫିମ ନିଶାରେ ନିଶ୍ଚିନ୍ତ ଶୋଇଥାନ୍ତି
ବିଶ୍ୱସ୍ତ ଯଜମାନ ଓ ଭକ୍ତ
ଆଖିରେ ଧାର୍ମିକତାର କଳାକନା ବାନ୍ଧି
ଧ୍ୱଂସର ବୀଜ ବୁଣି ଚାଲିଯାନ୍ତି
ନିଜକୁ ଧର୍ମର ସଂସ୍ଥାପକ ବୋଲାଉଥିବା
ମଟରସାଇକେଲର ମୃତ୍ୟୁଦୂତମାନେ

# ନିଦ ନାହିଁ

ତାରାମାନେ ଚେତନାହତ ହୋଇଗଲେ ଆକାଶରେ
ମେଘର ସ୍ତୂପ ଉପରେ ଅନ୍ୟମନସ୍କ ବସିରହିଛି ଜହ୍ନ
ନଭୋମଣ୍ଡଳରେ ସମୟର ବ୍ୟାପକ ସ୍ତବ୍ଧତା
ସ୍ମୃତିର ଆଚ୍ଛାଦିତ ପଥକୁ ଆଲୋକିତ କରିଦେଇ
ଦୃଷ୍ଟି ବହିର୍ଭୂତ ହୋଇଗଲା ଅଧାରାତିର ଉଲ୍‌କା
ଏବଂ ଆଖିରେ ନିଦ ନାହିଁ

ସଂଗୀତ ସବୁ ବୁଣିହୋଇଗଲେ ରାସ୍ତାକଡ଼ରେ
ପକ୍ଷୀମାନେ ଚାଲିଗଲେ ନିଜର ନିସ୍ତବ୍‌ଧତା ଭିତରକୁ
ଭିଖାରୀ ଗୋଟାଇ ନେଲା ତାର ଛିଣ୍ଡାକନାର ପୃଥିବୀ
ପିଲାମାନେ ଉଡ଼ିଗଲେ ନାନାବାୟାର କୁହୁକ ଭିତରକୁ
ମନ୍ଦିରରେ ଘଣ୍ଟା ସବୁ ଜଡ଼ ଓ ନିଶ୍ଚଳ
ସବୁ ଧସି ପୋଡ଼ିଗଲା ଅନ୍ଧାରର ଝିଙ୍କାରୀ ସ୍ୱରରେ
ନିଦ ନାହିଁ ନିଦ ନାହିଁ ନିଦ ନାହିଁ

ଉପରୁ ଟୁପଟାପ ପଡୁଛି କେତେ ଦିନର ମୁହଁ
ଉଛୁଳି ଯାଉଛି ପିଲାଦିନର ସ୍ନେହସିକ୍ତ ନଈକୂଳ
ଭୁଲି ଯାଇଥିବା ଗୀତର ପଂକ୍ତି ଫେରିଆସେ
ନୂଆ ସ୍ୱରଲିପିରେ ନିଜକୁ ମଣ୍ଡିତ କରି
ନିଷିଦ୍ଧ ଫାଟକ ମେଲିଯାଏ
ନିଗୂଢ଼ ଅନ୍ଧାରର ଅନ୍ତଃପୁରକୁ
ଖୋଲିଯାଏ ରୂପକଥାର ସମୁଦ୍ର ଓ ସିନ୍ଦୁକ
ନିଦ ନାହିଁ ନିଦ ନାହିଁ

ନ କହିଥିବା କଥାସବୁ ମୁଖା ପିନ୍ଧି ଆସନ୍ତି
ଉଭା ହୁଏ ଅତୀତର ଅତିକାୟ ରାକ୍ଷସ
ସହରର ଅନ୍ଧଗଳିରେ ଅଦୃଶ୍ୟ ହାତର ଆତଙ୍କ
ଛାତିରେ ଛନକା ଦେଇଯାଏ ବନ୍ଦ ଘରର ଅଜ୍ଞାତ
ଶୋଭାଯାତ୍ରା କରିଯାନ୍ତି ଅସମାହିତ ପ୍ରହେଳିକାମାନ
ଭୁଲଭ୍ରାନ୍ତି ପଶ୍ଚାତ୍ତାପ ଘେରିଯାନ୍ତି ଅବଚେତନାକୁ
ଶୀତଳ ହୁଏ ରକ୍ତ ଶିଥିଳ ହୁଏ ହୃଦୟର ସ୍ପନ୍ଦନ
ନିଦ ନାହିଁ ନିଦ ନାହିଁ ନିଦ ନାହିଁ

ମନ୍ତ୍ର ଓ ସହସ୍ରନାମ ବୃଥା ଔଷଧ ନିଷ୍ଫଳ
ଋଗବେଦର ସ୍ତୋତ୍ର
ଗଡ୍‌ଡଳିକା ପ୍ରବାହର ପରିସଂଖ୍ୟାନ
ଏ ପାଖ ସେ ପାଖ ଛଟପଟ ଅତୀତ ଓ ଭବିଷ୍ୟତ

ରାତିର ଆତ୍ମାକୁ ଆପ୍ୟାୟନ
ଏବଂ ଅସନ୍ତୁଷ୍ଟ ଭାଗ୍ୟକୁ ଧିକ୍କାର
ଛାତି ଭିତରେ ସବୁ ଆସି ଜମାଟ ବାନ୍ଧେ
କିନ୍ତୁ ଆଖିରେ ନିଦ ନାହିଁ

ରହସ୍ୟ ଓ ବୟସର ରାତି ବଢୁଥାଏ
ନିଶ୍ୱାସ ଅସ୍ଥିର ଦେହମନ କ୍ଳାନ୍ତ ଓ ଉଦାସ
ସ୍ମୃତିର କୋଠରୀମାନ ଲୋକାରଣ୍ୟ
ଅନଧିକାର ପଶିଆସନ୍ତି ଅପ୍ରିୟ ଘଟଣାମାନ
ଖୋଜୁଥିବା ମୁହଁ ଓ ଅନୁଭବ ଅଦୃଶ୍ୟ
କାହାର ଅନୁପସ୍ଥିତି ସ୍ୱପ୍ନକୁ ନେଇଯାଏ ଆଖିରୁ
ଉଚ୍ଚାଟ ଅପେକ୍ଷାର ମୁହୂର୍ତ୍ତମାନଙ୍କରେ
ନିଦ ନାହିଁ ନିଦ ନାହିଁ

# ମହାନଦୀ

ନୀଳଲୋହିତର ତୃଷାର୍ତ୍ତ ଉପତ୍ୟକାରୁ
ସେ ଆସେ ସ୍ୱତଃସ୍ଫୂର୍ତ୍ତ ଆଶୀର୍ବାଦ ଭଳି
ଉପାଖ୍ୟାନ ଓ ପୁରାବୃତ୍ତି ତାର ସମ୍ବଳ
ସେ ଜନ୍ମନିଏ ଲୋକଶ୍ରୁତିରୁ
ଐତିହ୍ୟର ଅନ୍ଧାର ଭିତରୁ ବାହାରି ଚାଲିଯାଏ
ଗୋଟିଏ ବିସ୍ମୃତିରୁ ଅନ୍ୟ ଏକ କିମ୍ବଦନ୍ତୀକୁ
ଆର୍ଷବାଣୀକୁ ଅନୁସରଣ କରି

ନିଷ୍ପାପ ସ୍ୱାଭାବିକତା ଓ ଦୂରଦର୍ଶୀ ଅନୁଭବର

ଅଯାଚିତ ଦୂରତ୍ୱ ଭିତର ହଜିଯାଏ
ଓଁକାର ଓ ଉତ୍ତରାୟଣ
ପଛରେ ରହିଯାଏ ଅରଣ୍ୟ ଜନପଦ ଓ ପ୍ରାନ୍ତର
ଘଣ୍ଟଧ୍ୱନିର ସମ୍ମୋହିତ ମୁହୂର୍ତ୍ତରେ
ସେ ଓହ୍ଲାଇଯାଏ ଅପେକ୍ଷମାଣ ସମତଳତାକୁ
କେଉଁ ଶାପମୁକ୍ତିର ସନ୍ଧାନରେ
କେଉଁଆଡ଼େ ଯାଏ ସେ କେଉଁ ପରିସମାପ୍ତିକୁ
ଅଙ୍କା ବଙ୍କା ଆସକ୍ତି ନେଇ ହଜିଯାଏ
କେଉଁ ଆଖ୍ୟାନର କିଭଳି ସୂକ୍ତିରେ

ଦୁଃସ୍ୱପ୍ନକୁ ତରଳାଇ
ଋତୁମାନଙ୍କର ଉତ୍ତେଜନାରେ ଦୋଳି ଖେଳି
ଦୂରାନ୍ତରର ଏକାକୀ ଗୀତରେ ଭାସି
ଝିଂକାରୀର ସ୍ୱରକୁ ଝୁଣ୍ଟି
ଜନାରଣ୍ୟର କୋଳାହଳ ଦେଇ
ପଥର ଉପରେ ଉଛୁଳି
ସିକତାର ଶେଯରେ ଲୋଟି
ତାରା ଆଲୁଅର ସଙ୍କୁଚିତ ବୃତ୍ତ ଭିତରେ
ଲଙ୍ଘିଯାଏ ଘାଟ ଓ ପାହାଚ
ଦୁର୍ଗ ଓ ମନ୍ଦିରକୁ ପଛରେ ରଖି
ପର୍ବତକୁ ପ୍ରତିବନ୍ଧ କରିଦିଏ
ଚାରଣ ଭୂମିର ଶୀତଳ ଆଗ୍ରହରେ
ଜନବସତିର କଳୁଷତାକୁ ଧୋଇଦିଏ
ସ୍ୱସ୍ତ୍ୟୟନର ଶୁଦ୍ଧ ପୂତ ସହଜତାରେ

କେବେ ପୁଣି କେଉଁ ବିକ୍ଷିପ୍ତ କ୍ଷଣରେ
ତୋଳି ନିଏ ପ୍ରଳୟର ତରଳ ଆୟୁଧ
ସବୁ ନଷ୍ଟଭ୍ରଷ୍ଟ କରିଦିଏ ଦ୍ରବୀଭୂତ ଆକ୍ରୋଶରେ
ପୂର୍ବଜନମାନଙ୍କରେ କରୁଣା ଓ କୃତିତ୍ୱ
ସହର ଓ ସବୁଜତା ଜୀବନ ଓ ଜୟଗାନ

ପୁଣି ସମନ୍ୱିତ କରିନିଏ ନିଜକୁ
ଚିହ୍ନି ନିଏ ପାପ ପୁଣ୍ୟ ପ୍ରାୟଶ୍ଚିତ୍ତ
ଦୁଃଖ ଦୈନ୍ୟ ଦୟା ଓ ଦାୟାଧିକାର
ମୃତ୍ୟୁକୁ ଫେରାଇଦିଏ ତାର ଅନ୍ଧ ଆଶ୍ରୟକୁ
ପୁଣି ସବୁ ସନ୍ତୁଳିତ ହୋଇଯାଏ
ଧରିତ୍ରୀର ସବୁଜ ଆଗ୍ରହରେ

ବିଷାଦ ଓ ମୃତ୍ୟୁ ମଝିରେ
ପ୍ରତିଶ୍ରୁତି ଓ ପରିଣାମ ମଝିରେ
ସମ୍ଭାବନା ଓ ସାଫଲ୍ୟ ମଝିରେ
ବହିଯାଏ ଭାସିଯାଏ ମିଶିଯାଏ ହଜିଯାଏ
ନିରବଚ୍ଛିନ୍ନ ରହିଥାଏ
ସ୍ରୋତ ଜଳରାଶି ବନ୍ୟା ଓ ପ୍ରଳୟରୁ ଊର୍ଦ୍ଧ୍ୱ
ସୀମିତ ଅନୁଭବକୁ ନେଇ
ଏକାକାର କରିଦିଏ ସାର୍ବଜନୀନ ଅଭିଜ୍ଞାନ ସହିତ
ନୈର୍ବେକ୍ତିକ ଅବଚେତନାରୁ ଆସେ
ଏବଂ ଯାଇ ଲୀନ ହୋଇଯାଏ
ଜାତିର ସାର୍ବଭୌମ ଅନ୍ତଃକରଣରେ

# ହିରୋଶିମା

ସେ ଏକ ଅଦ୍ଭୁତ ସକାଳ ଥିଲା
କିଛି ଆଉ ଏକା ଭଳି ରହିଲା ନାହିଁ
ସେ ଦିନଟି ଉଦ୍ଭୁତ ହେବା ପରେ

କେଉଁ ସମ୍ଭାବନାର ବିଭାବ ଆକାଶରେ
ବୁଦ୍ଧିର ପ୍ରଚଣ୍ଡ ବିସ୍ଫୋରଣ
ନା ସଂସ୍କୃତିର ଜ୍ୱଳନ୍ତ ସ୍ୱାକ୍ଷର
ବିଦ୍‌ବତ୍ତାର ଆଲୋକ ପ୍ରଜ୍ଞାର ଉତ୍ତାପ
ନା ଅଗ୍ରଗତିର ଉଜ୍ଜ୍ୱଳ ଇସ୍ତାହାର

ଅଥବା ଏକ ନାରକୀୟ ଅଦୃଷ୍ଟ
ଯାହା ଭୂଭାଗକୁ ଛିନ୍ନଭିନ୍ନ କରିଦିଏ
ଦୂଷିତ କରିଯାଏ ଆସନ୍ତାକାଲି ସବୁକୁ
ଲିଭାଇ ଦିଏ ଜନ୍ମପତ୍ରର ଶୁଭ ଚିହ୍ନ
ମଣିଷର ଭାଗ୍ୟ ଶିଶୁମାନଙ୍କର ହସ
ଏବଂ ସମୟର ସମସ୍ତ କୃତିତ୍ୱ

ଏକ ଯାନ୍ତ୍ରିକ ଈଶ୍ୱର ଆସି
ଉଚ୍ଛେଦ କରିଯାଏ ସିଦ୍ଧି ଓ ସାମର୍ଥ୍ୟ
ଧ୍ୱଂସସ୍ତୂପ ତଳେ ସମର୍ପି ଦିଏ
ସମୃଦ୍ଧି ଓ ସଂପନ୍ନତା
ଶାପଗ୍ରସ୍ତ କରିଯାଏ ଭବିଷ୍ୟତର ଦାୟାଦମାନଙ୍କୁ
ବିହିତ କରିଦିଏ ଏକ ଆତ୍ମାହୀନ ପୃଥିବୀ
କ୍ଷମତା ଯେଉଁଠାରେ ସର୍ବଶକ୍ତିମାନ
ମଣିଷ ଯେଉଁଠାରେ କେବଳ
ପ୍ରୟୋଗଶାଳାର ପରିସଂଖ୍ୟା
ଏବଂ ଇତିହାସର ପାଦଟୀକା ମାତ୍ର

ଏଇ ଗୋଟିଏ ଦିନାନ୍ତରେ
ନିଶ୍ଚିହ୍ନ ଓ ନିଃଶେଷ ହୋଇଯାଏ
କେବଳ ଗୋଟିଏ ଜନପଦ ନୁହେଁ
ସମୟ ସହିତ ଗଢ଼ି ଉଠିଥିବା
ସମଗ୍ର ପୃଥିବୀ ଓ ମାନବତା

ଆଜିର ସଭ୍ୟତାର ବୟସ ମାତ୍ର ଚାଳିଶ ବର୍ଷ

# କଳାହାଣ୍ଡି

ମାନଚିତ୍ରକୁ ଏଥର ଅଲଗା ରଖିଦିଅ
ସେଠାକୁ ଯିବା ପାଇଁ ଆଉ
ହେଲିକପ୍ଟରର ପ୍ରୟୋଜନ ନାହିଁ
ଯେଉଁଠାରେ ଅନାହାର ସେଠାରେ ହିଁ କଳାହାଣ୍ଡି

ଇନ୍ଦ୍ର ସେଠାରୁ ମୁହଁ ବୁଲାଇ ନେଲେ
ଗଛରେ ଆଉ କଞ୍ଚା ପତ୍ର ରହିଲା ନାହିଁ
ସାରା ଗାଁ ଏବେ ମଶାଣି
ଫଟା ଭୂଇଁ ଓ ଶୁଖିଲା ନଈ ବାଲି
ଯୋଜନା ସବୁ ବିଫଳ ହୋଇଗଲେ
ଦାରିଦ୍ର୍ୟର ସୀମାରେଖା ଘୁଞ୍ଚି ଘୁଞ୍ଚି ଗଲା

ଯେଉଁଠାରେ ଦେଖ କଳାହାଣ୍ଡି
ପଞ୍ଜରା ହାଡ଼ରେ କୋଟରଗତ ଆଖିରେ
ଦେହ ଲୁଚୁ ନଥିବା ଛିଣ୍ଡା କନାରେ
ବନ୍ଧା ପଡ଼ିଥିବା କଂସାବାସନରେ
କୁଡ଼ିଆ ଘରର ଉଲୁରା ଛାତରେ
ଦୁଇଟି ମାଟିହାଣ୍ଡିର ସର୍ବସ୍ୱରେ

ସବୁଠାରେ କଳାହାଣ୍ଡି
ଅନ୍ନଛତ୍ରର କଙ୍କାଳ ମେଳାରେ
ପିଲା ନିଲାମ ହେଉଥିବା ହାଟ ବଜାରରେ
ବେଶ୍ୟାଳୟରେ ବିକ୍ରି ହୋଇଥିବା
କିଶୋରୀର ଦୀର୍ଘଶ୍ୱାସରେ
ଗାଁ ମାଟି ଛାଡ଼ି ଚାଲିଯାଉଥିବା
ଲୋକମାନଙ୍କର ନୀରବ ଅସହାୟତାରେ

ଆହୁରି ପାଖରେ କଳାହାଣ୍ଡିକୁ ଦେଖ
ମିଛ ବିବୃତିର ଶୂନ୍ୟଗର୍ଭ ଘୋଷଣାରେ
ଅବିଶ୍ୱସ୍ତ ବକ୍ତୃତାର କୁମ୍ଭୀର କାନ୍ଦଣାରେ
କମ୍ପ୍ୟୁଟର କାଗଜର ଅତିରଞ୍ଜିତ ପରିସଂଖ୍ୟାନରେ
ସମ୍ମିଳନୀର ପ୍ରବଞ୍ଚନାରେ ଶସ୍ତା ସହାନୁଭୂତିରେ
ଯୋଜନାର ଅର୍ଥହୀନ ଅନ୍ଧ ପ୍ରତିଶ୍ରୁତିରେ

କଳାହାଣ୍ଡି ଆମର ଅତି ନିକଟରେ
ଆତ୍ମାର ସାମୟିକ ତାଡନାରେ
ବିବେକର ଅକସ୍ମାତ ଦଂଶନରେ
ଅନ୍ତଃକରଣର କ୍ୱଚିତ ଅନୁଶୋଚନାରେ
ସୁଖନିଦ୍ରାର ଦୁଃସ୍ୱପ୍ନରେ
ରୋଗରେ ଭୋକରେ ଅସହାୟତାରେ
ରକ୍ତପାତର ଆସନ୍ନ ସମ୍ଭାବନାରେ

ଆମେ କିପରି ଚାଲି ଯାଇପାରିବା
ଏକବିଂଶ ଶତାବ୍ଦୀର ସମୃଦ୍ଧ ନିରାପତ୍ତାକୁ
କଳାହାଣ୍ଡିକୁ ପଛରେ ଛାଡ଼ି ଦେଇ

## ଗୋପବନ୍ଧୁ

ଛକ ଉପରେ ଏମିତି ଶୂନ୍ୟକୁ ଅନାଇ
କେତେ ସମୟ ଆଉ ଛିଡ଼ା ହୋଇ ରହିଥିବ
ଗୋପବନ୍ଧୁ
ଖରା ବର୍ଷା ଶୀତରେ
ବନ୍ୟାରେ ପ୍ରଳୟରେ ଦୁର୍ଭିକ୍ଷରେ ଦୁର୍ଦ୍ଦିନରେ
କେତେଦିନ ଆଉ ବନ୍ଦୀ ହୋଇ ରହିଥିବ
ଲୁହାବାଡ଼ ଭିତରେ
ଜୟନ୍ତୀରେ ଶ୍ରାଦ୍ଧବାର୍ଷିକୀରେ

ଦେହ ଉପରେ ଜମିଯାଉଥିବା ଧୂଳିରେ
ମଉଳିଯାଉଥିବା ଫୁଲମାଳରେ

ତମର ନୂଆ ବନ୍ଦୀଶାଳା ଭିତରୁ
ଗୋପବନ୍ଧୁ
ସ୍ୱଦେଶର ଚିନ୍ତା କର ଆଉ ଥରେ
ଯେତେ ନୂଆ ଗାଡ଼ ସବୁ
ତିଆରି ହେଲାଣି ସ୍ୱରାଜ ପଥରେ
କିଏ ତାକୁ ପୂରା କରିବ
ନିଜର ମାଂସ ହାଡ଼ ଦେଇ

ଆଜିର ଅନ୍ୟାୟ ଅତ୍ୟାଚାର ସବୁ
ଅତି ସତ୍ୟ ଅତି ସାଂଘାତିକ
କିଏ ତାକୁ ଦେଖିବ ଆଖିରେ ଲୁହ ନେଇ
କିଏ ପ୍ରତିବାଦ କରିବ ହାତମୁଠା ଉଠାଇ

ତମେ ସେଇଭଳି ଠିଆ ରହି ରହି
ଥକିଯିବ ଗୋପବନ୍ଧୁ
କେହି ତମ ପାଇଁ ଚଉକି ଆଣିଦେବେ ନାହିଁ
ସମସ୍ତେ ଏଠାରେ ନିଜ ନିଜ ଚଉକି ପାଇଁ ବ୍ୟସ୍ତ

ରାସ୍ତାରେ ଲୋକ ଚାଲି ଯାଉଛନ୍ତି ଦେଖ
ତମ ଆଡ଼କୁ ନ ଅନାଇ
ପକେଟରେ ରେଜା ପଇସାକୁ ସମ୍ଭାଳି
ଗିରି ଶିଖରକୁ କାହାରି ଲକ୍ଷ୍ୟ ନାହିଁ
ସମସ୍ତଙ୍କ ଆଖି ନିଜ ଉପରେ ନିବଦ୍ଧ

ସବୁ ନଷ୍ଟଭ୍ରଷ୍ଟ ହୋଇଗଲାଣି ଗୋପବନ୍ଧୁ
ତମର ତମାଳ ବକୁଳ ଛୁରୀଅନାର ଆଶ୍ରମ

ତମର ସଂଯମ ନିଷ୍ଠା ଶିକ୍ଷାଦୀକ୍ଷା ନୀତିନିୟମ
ଦେଶ ଭାସିଯାଉଛି ପ୍ରଳୟ ଆଡ଼କୁ
ସତ୍ୟ ବନ୍ଦୀ ହେଲାଣି
ଖବରକାଗଜର ହଳଦିଆ ପୃଷ୍ଠାରେ
ଆଦର୍ଶ ହଜିଗଲାଣି
ସ୍ତୂପୀକୃତ ଅପସଂସ୍କୃତି ତଳେ
ଜାତୀୟତା କବର ନେଲାଣି
ଜାତି ବର୍ଣ୍ଣ ଗୋଷ୍ଠୀର ସଂକୀର୍ଣ୍ଣ ସୀମାରେ

ଏକାକୀ ଠିଆ ରହି
କଣ କରିବ ଆଉ ଗୋପବନ୍ଧୁ
ଏଥରକ ଛକ ଉପରୁ ଓହ୍ଲାଇ ଆସି
ପୁଣି ଥରେ ଭାଙ୍ଗିପଡ଼
ଏ ଦେଶ ମାଟିରେ ମିଶିଯାଉ ତମର ଦେହ
ତମ ପିଠି ଉପରେ ଚାଲିଯାନ୍ତୁ ଦେଶବାସୀ
ତମର ଆଦର୍ଶର ସ୍ୱରାଜ୍ୟ ଆଡକୁ

# ଦୁଇ ପକ୍ଷୀ

– ୧ –

ଆବର୍ଜନାର ସ୍ତୂପ ଉପରେ ଠିଆ ହୋଇ
ସୂର୍ଯ୍ୟକୁ ଆକାଶର ଗହ୍ୱରରୁ
ଟୋଳିନେବାର ଛଳନା କରେ
ଏବଂ ସଗର୍ବ ସକାଳର ଘୋଷଣା ଜଣାଏ
କପଟ ଦମ୍ଭର କର୍କଶ କଣ୍ଠରେ

ତା ପରେ ସାରା ଦିନ

ଛାଇ ପଛେ ପଛେ ଧାଇଁ ବୁଲୁଥାଏ
ମୁଣ୍ଡରେ ଲାଲ ମୁକୁଟ
ଉପରକୁ ସ୍ପର୍ଦ୍ଧାର ମୁହଁ
ଏ ପାଖ ସେ ପାଖ ଦର୍ପର ସହିତ
ପଦଚାରଣା କରୁଥାଏ
ଯଦିଓ ତା ଆଡ଼କୁ କେହି ଅନାଏ ନାହିଁ

କେହି ଅନାଏ ନାହିଁ
କେହି ଶୁଣେ ନାହିଁ
ସୂର୍ଯ୍ୟ ନିଜର ପ୍ରଦକ୍ଷିଣା ଶେଷ କରେ
ଏଥରକ ସେ ସ୍ତୂପ ତଳେ ଶୋଇଯାଏ
ସନ୍ତୁଷ୍ଟ ଓ ପରିତୃପ୍ତ
ଅହଙ୍କାରକୁ ଡେଣା ତଳେ ଲୁଚାଇ ରଖେ
ପୁଣି ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ

– ୨ –

ସମସ୍ତଙ୍କୁ ନୀତିବାକ୍ୟ ଶୁଣାଉଥାଏ
ଜ୍ଞାନର ଆଲୋକ କଥା କହୁଥାଏ
କିନ୍ତୁ ନିଜେ ଆଲୁଅରେ ଧକ୍କା ଖାଇ
ପଳାଇଯାଏ ଅନ୍ଧାରର ଅଶୁଭ କୋଣକୁ

ଗହଳ ଗଛର ପତ୍ର ଆଢୁଆଳରେ
ଚୁପଚାପ ବସି ରହେ ସାରାଦିନ
ଆଖି ବୁଜି ଦାର୍ଶନିକତାର ଛଳନା କରେ
ନିଜର ଅନ୍ଧତ୍ୱକୁ ଲୁଚାଇବା ପାଇଁ

କୋଟର ଭିତର ଶୂନଶାନ
ଏପାଖେ ସେ ପାଖେ କେହି ନାହିଁ
ତଥାପି ଧ୍ୟାନମଗ୍ନ ଭଙ୍ଗୀରେ
ଆଗକୁ ଅନାଏ ବିଚକ୍ଷଣ ଦୃଷ୍ଟି ସଜାଇ
ସମସ୍ତଙ୍କୁ ଆଶ୍ୱାସନା ଦିଏ
ମୁହଁକୁ ବିଙ୍କୋଚିତ ଭାବେ ହଲାଇ

ଗଛ ଉପରୁ ଶେଷ ଆଲୁଅ ଲିଭିଗଲେ
ବିବର ଭିତରୁ ବାହାରିଆସେ
ନଖରେ ଉଖାରିନିଏ ସବୁ ଅନ୍ଧବିଶ୍ୱାସ
ଡାଳକୁ ଡାଳ ଉଡ଼ି ଉଡ଼ି
ତାକୁ ପୃଥିବୀ ଉପରେ ବିଞ୍ଚିଦିଏ
ମେଞ୍ଚା ମେଞ୍ଚା ଅନ୍ଧାର ସହିତ

## ହାତ ପାଖରେ

କବାଟ ଖୋଲିଲେ ପୃଥିବୀ
ସମୁଦ୍ର ପର୍ବତ ଅରଣ୍ୟ ସରୋବର
ଆଖି ଖୋଲିଲେ ଆକାଶ
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ନକ୍ଷତ୍ର
ପାଦ ପକାଇଲେ ସ୍ୱର୍ଗ
ଅମୃତ ଅପ୍ସରା ଓ ନନ୍ଦନକାନନ

ହାତ ବଢ଼ାଇଲେ ସୌହାର୍ଦ୍ଦ୍ୟ
ଗୋଟିଏ କଟାକ୍ଷରେ ପୂର୍ବରାଗ
ଗୋଟିଏ ପତ୍ରରେ ପ୍ରେମ

ସାମାନ୍ୟ ସ୍ପର୍ଶରେ ସମର୍ପଣ
ଆଖି ବୁଜିଲେ ହିଁ ସ୍ୱପ୍ନ
ଗୋଟିଏ ମନ୍ତ୍ରରେ ମୋକ୍ଷ
ଏକ ନିଶ୍ୱାସରେ ନିର୍ବାଣ

ପାପୁଲିରେ ଭବିତବ୍ୟ
ଅଙ୍ଗୁଷ୍ଠରେ ନିର୍ଦ୍ଧାରିତ
ରଙ୍ଗଭୂମିର ଜୀବନ ଓ ମୃତ୍ୟୁ
ହାତ ଦେଖାଇଲେ ରାସ୍ତା ବନ୍ଦ
ଆଖି ମିଟିକାରେ ଇନ୍ଦ୍ରଜାଲ ଛିନ୍ନ
ପଶାପାଲି ହାତରୁ ଖସିଲେ ମହାଭାରତ
ବୋତାମ ଟିପିଲେ ବିଶ୍ୱଯୁଦ୍ଧ

କାଗଜରେ ଗୋଟିଏ ଛକିରେ
ଗଣତନ୍ତ୍ରରୁ ଏକତନ୍ତ୍ର
ଦେଶର ଭାଗ୍ୟ ନିୟନ୍ତ୍ରଣ କରେ
ଗୋଟିଏ ହାତର ପ୍ରତୀକ
ଗୋଟିଏ ସନ୍ତକରେ ଆତ୍ମସମର୍ପଣ
ଏକକ ଅଣୁରେ ସାରା ସହର ନିଶ୍ଚିହ୍ନ

ମୁଠା ଭିତରେ ଭାଗ୍ୟ ଓ ଭବିତବ୍ୟ
ଆଖି ସୀମାନ୍ତରେ ଆକାଶ
ମା ହାତରେ ଶିଶୁର ହାତ
ବନ୍ଧୁକ ଉପରେ ଆତତାୟୀର ତର୍ଜନୀ
ସ୍ୱର୍ଗର ତଟସ୍ଥ ଜହ୍ନ
ଗୋଟିଏ ସମ୍ବୋଧନରେ ଆକାଶରୁ ଆସି
ଓହ୍ଲାଇବ କାହ୍ନୁର କୋମଳ ହାତରେ
ଅଥବା ଖସିପଡ଼ିବ ଖଣ୍ଡବିଖଣ୍ଡ ହୋଇ
ଆତଙ୍କବାଦୀର ଗୋଟିଏ ଗୁଳିରେ

# ବାଲିଆପାଳ

କାହାର ଖେଳ କାହାର କାଳ
ବାଲିଆପାଳ ବାଲିଆପାଳ

ବାଲିଆପାଳ ତୀର୍ଥସ୍ଥଳ
କୁରୁକ୍ଷେତ୍ର ନୁହେଁ ଧର୍ମକ୍ଷେତ୍ର
ଏହା ଭିତରକୁ ପଶିବା ଆଗରୁ
ପାଦରୁ ଜୋତା ଖୋଲି ରଖ
ଅସ୍ତ୍ରଶସ୍ତ୍ର ଅଲଗା କରିଦିଅ ହାତରୁ
ମଥା ନୁଆଁଇ ଆସ
ହାତ ଯୋଡ଼ି ଆସ
ଏଇ ପବିତ୍ର ପ୍ରାଙ୍ଗଣକୁ

ବାଲିଆପାଳ ସତ୍ୟର ପରୀକ୍ଷାଗାର
ଲୋକମତର ଘାଟି ନ୍ୟାୟର କଷଟି
ଅହିଂସାର ପ୍ରୟୋଗଶାଳା
ବାଲିଆପାଳ ଅନ୍ତିମ ସଂଘର୍ଷ
ଲୋକବଳ ଓ କ୍ଷମତାର
ବୈଧତା ଓ ନିରଙ୍କୁଶତାର
ବର୍ବରତା ଓ ମାନବିକତାର

ବାଲିଆପାଳ ଜାଣେ ନାହିଁ
ଆମେରିକା କେଉଁଠି ରୁଷିଆ କଣ
ହିରୋଶିମା କେଉଁଠି ପୋଖରାନ କଣ
ବାଲିଆପାଳ କେବଳ ଜାଣେ
ଭୋକ କଣ ଦୁଇ ମୁଠା କେତେ
ଏଠାର ଚାଷୀ ଖାଲି ଚିହ୍ନେ
ମେଘକୁ ବର୍ଷାକୁ ମାଟିର ଗନ୍ଧକୁ

ଗଛକୁ ଫସଲକୁ ମରୁଡ଼ିକୁ ପଙ୍ଗପାଳକୁ

ବାଲିଆପାଳ ଭବିଷ୍ୟତ କାଳ
ଚାଷୀ ଏଠାରେ ସାର୍ବଭୌମ ଅଧୀଶ୍ୱର
ଏଠାରେ ଅସ୍ତ୍ର ନାହିଁ ଶସ୍ତ୍ର ନାହିଁ
ସେନାବାହିନୀ ନାହିଁ ଶୀତଳ ଯୁଦ୍ଧ ନାହିଁ
ଏଠାରେ କେବଳ ମାଟି ପାଣି ଓ ଗଛଲତା
ଶସ୍ୟରେ ସବୁଜ ଧରିତ୍ରୀ
ଏବଂ ଅଦମ୍ୟ ମଣିଷର ସତ୍ତା

ଏଠାରେ ତମେ ଧାନଗଛ ଉପାଡ଼ିଦେଇ
ବନ୍ଧୁକ ପୋତି ଦେଇ ପାର
ସାର ବଦଳରେ ବାରୁଦ ବିଞ୍ଚି ଦିଅ
ପାଣି ବଦଳରେ ରକ୍ତ ସିଞ୍ଚି ଦିଅ
କିନ୍ତୁ ବାଲିଆପାଳର ମାଟିରୁ ଶେଷରେ
ଧାନ ହିଁ ଉପୁଜିବ କ୍ଷେପଣାସ୍ତ୍ର ନୁହେଁ

# ସ୍ଥିର ଚିତ୍ର

ଟେବୁଲ ଉପରେ ସବୁ ସଜାହୋଇ ରହିଥାଏ
ଯେପରି କବରସ୍ଥାନର ଧାଡ଼ି ଧାଡ଼ି ପଥର

ରଙ୍ଗୀନ ଶବ୍ଦମାନ ଅଭିଧାନ ଭିତରେ ବନ୍ଦ
ବର୍ଣ୍ଣାଳୀ ପ୍ରେମ ସବୁ କବିତା ବହିର ପୃଷ୍ଠାରେ
ଇନ୍ଦ୍ରଧନୁ ଖରା ଜଡ଼ୀଭୂତ ରହିଥାଏ
ପେପରୱେଟ ଭିତରେ ଫୁଲ ହୋଇ
କଲମ ମୁହଁ ପୋତି ପଡ଼ି ରହିଥାଏ
ରାସ୍ତାଧାରର ମୁମୂର୍ଷୁ ଭିକାରୀ ଭଳି
ଖାଲି ଚା କପ ସମବେଦନା ଜଣାଏ
ନିଷ୍ପାପ କାଗଜର ସଫେଦ ନିର୍ଲଜ୍ଜତାକୁ

ସଚିତ୍ର ଚିନ୍ତାମାନ ଘୂରି ବୁଲୁଥାନ୍ତି
ଟେବୁଲ ଉପରର ଆୟତାକାର ଶୂନ୍ୟତାରେ
ଅସ୍ୱଚ୍ଛ କାଚ ଉପରେ ଛଟପଟ ହୁଏ
ଆତ୍ମନିରୀକ୍ଷଣର ଧୂସର ପ୍ରତିବିମ୍ବ
ଆଖିର ଉଦ୍ୟତ ଦୃଷ୍ଟି ଫେରିଆସେ
ଖୋଜୁଥିବା କାହାକୁ ନ ପାଇ

ସମସ୍ତେ ସଜ୍ଜିତ ହୋଇ ରହିଥାନ୍ତି
ଯେ ଯାହାର ସ୍ଥାନ ଓ ସ୍ୱାଭିମାନରେ
ଫାଲ୍‌ଗୁନ ଫେରିଯାଏ ଝରକାରେ ଧକ୍କା ଖାଇ
ପର୍ଦା ଉହାଡ଼ରୁ ଛିଟିକି ଆସୁଥିବା
ସୂର୍ଯ୍ୟର ସାମାନ୍ୟ କିରଣ ସୂଚାଇ ଦିଏ
କାହାରି କୌଣସି ନିଜସ୍ୱ ରଙ୍ଗ ନାହିଁ

# ବସ୍ତି

ଶେଷରେ ସମସ୍ତେ ଆସି ପହଞ୍ଚନ୍ତି ଏଠାରେ
ସମୟ ଅସମୟ ବିନା ନିମନ୍ତ୍ରଣରେ

ଇତିହାସ ଦଳବଳ ନେଇ ପହଞ୍ଚେ
ବିଜୟସ୍ତମ୍ଭ ତୋଳି ଜୈତ୍ରପତାକା ଉଡାଇ
ଏଇ ନାମହୀନ ନଗଣ୍ୟ ବସ୍ତିରେ
ତୋରଣ ସଜାଡ଼ି ଜୟଯାତ୍ରାର ସମାରୋହରେ
ଇତିହାସ ଏଠାରେ ଆସି ମାଗେ ସ୍ୱାର୍ଥତ୍ୟାଗ
ବଳିଦାନ ଦାବି କରେ ରକ୍ତ ମାଗେ
ସଂଗ୍ରାମୀର ରକ୍ତ ବିପ୍ଳବୀର ରକ୍ତ
ନିର୍ଦ୍ଦୋଷର ରକ୍ତ ଶୋଷିତର ରକ୍ତ
ଇତିହାସ ମାଗେ ନତମସ୍ତକ ସମର୍ପଣ
ସ୍ୱୀକାର ବଶତା ଆନୁଗତ୍ୟ ନିଷ୍ଠା ପ୍ରଭୁଭକ୍ତି
ଇତିହାସ ଦେଇଯାଏ ଏମରଜେନ୍‌ସିର ଧମକ

ସଭ୍ୟତା ଆସି ପହଞ୍ଚେ ମୁହଁରେ ମୁଖା ପିନ୍ଧି
ହାତରେ ବନ୍ଧୁକ ଓ ବାଇବେଲ ଧରି
ପୁଞ୍ଜି ଲଗାଇ ଉପନିବେଶ ବସାଇ
ମହାନଗର ଗଢ଼ି ଶିଳ୍ପବିପ୍ଳବ ନେଇ
କଳ କାରଖାନାରେ ଧୂଆଁ ଉଡ଼ାଇ
ଲାଇବ୍ରେରୀ ଟାଉନହଲରେ ବକ୍ତୃତା ଦେଇ
ସଭ୍ୟତା ଏଠାରେ ବିକେ ହଳଦିଆ ଖବରକାଗଜ
ନକଲି ମାଲ ଚୋରା ମଦ ଅଶ୍ଳୀଳ ଚିତ୍ର
ସଭ୍ୟତା ଦେଇଯାଏ ମାଦକ ଓ ଯୌନ ରୋଗ
ସଭ୍ୟତା ମାଗେ ସହମତି ସମର୍ଥନ ଶ୍ରମଦାନ
ସଭ୍ୟତା ଦାବୀ କରେ ନିଶା ବଦଭ୍ୟାସ
ଅନ୍ଧ ଅନୁସରଣ ଓ ଆଦେଶ ପାଳନ

ଦାରିଦ୍ର୍ୟ ସୀମାରେଖାର ଅନ୍ତରାଳରେ
ହଜି ଯାଇଥିବା ଜନବସତିରେ ଆସି
ଗଣତନ୍ତ୍ର ଉଭା ହୁଏ ଜିପ ଚଢ଼ି ଝଣ୍ଡା ଉଡ଼ାଇ
ପୋଲିସ ବାହିନୀ ଓ ଜନତାର ପଟୁଆର ଧରି
ଗଣତନ୍ତ୍ର ଦାବୀ କରେ ଦସ୍ତଖତ ଟିପଚିହ୍ନ
ଲାଞ୍ଚମିଛ ହାତତାଳି ଟିକସ ଚାନ୍ଦା ଭୋଟ
ସାକ୍ଷୀ ସମର୍ଥକ ଗୁଣ୍ଡା ଭଡାଟିଆ ଭିଡ
ଫୁଲମାଳ ପୋଷ୍ଟର ସ୍ଲୋଗାନ ଜୟକାର ଜୁଲୁସ
ମଞ୍ଚ ମାଇକ ଡାକବାଜି ଶୋଭାଯାତ୍ରା ସମାବେଶ
ଗଣ ବିକ୍ଷୋଭ ଓ କୁଶପୁତ୍ତଳିକା

ଏଇ ଚୁପଚାପ ତ୍ରସ୍ତ ଭୀରୁ ନିରୀହ
କାହାର ଭଲମନ୍ଦରେ ନ ଥିବା ଗଳି ଭିତରକୁ
ଧର୍ମ ଆସେ ଝୁଣା ଧୂପ ସ୍ତବ ସ୍ତୋତ୍ର ମଝିରେ
କୀର୍ତ୍ତନ ଓ ପ୍ରାର୍ଥନା ଧ୍ୱନିରେ
ପୁରୋହିତ ଓ ମୁଅଜ୍ଜିନର ଡାକରେ
ମୁହଁରେ ଦାଢ଼ି ଲଗାଇ ପଗଡ଼ି ଓ ଟୋପି ପିନ୍ଧି
ଚିତାତିଳକ ଜଟାଜୂଟ ରୁଦ୍ରାକ୍ଷ ଓ ଗେରୁଆ ଚଢ଼ାଇ
ଏକ ଏବଂ ଅଦ୍ୱିତୀୟ ଈଶ୍ୱରଙ୍କ
ସର୍ବଶକ୍ତି ଓ ମହାନତାର ଜୟଗାନ କରି
ଧର୍ମ ଆସେ ଛୁରା ଲାଠି ହାତବୋମା ନିଆଁହୁଳା ଧରି
ଧର୍ମ ମାଗେ ମନ୍ଦିର ଓ ମସଜିଦର ଧ୍ୱଂସାବଶେଷ
ଗରିବର କୁଡ଼ିଆ ଭଙ୍ଗାକାନ୍ଥ ଉଜୁଡ଼ା ଛାତ
ଧର୍ମ ମାଗେ ବଳାତ୍କାର ଘରପୋଡ଼ି ରକ୍ତ
କାଫିରର ଫଟା ମୁଣ୍ଡ ବିଧର୍ମୀର ଅନ୍ତବୁଜୁଳା
ଧର୍ମ ଟାଣି ନେଇଯାଏ ଜୋର କରି
ସଧବା ହାତରୁ ଚୂଡ଼ି ଶିଶୁଠାରୁ ମା ବାପ
କୁମାରୀର ଇଜ୍ଜତ ଓ ଚୁଲି ଉପରୁ ଭାତହାଣ୍ଡି

ସେମାନେ ଆସନ୍ତି ଓ ଚାଲିଯାନ୍ତି
ପୁଣି ଥରେ ଫେରିବାର ଧମକ ଦେଇ
ଖବରକାଗଜର ହେଡ଼୍‌ଲାଇନ ବଦଳେ
ନୂଆ ଯୁଗର ଅଭିଷେକ ହୁଏ
ରାଜନୀତିର ବିକାକିଣା ବେପାରରେ
ଶାସନ ଚଡ଼ା ଦରରେ ନିଲାମ ହୋଇଯାଏ
ନିର୍ବାଚନ ସତ୍ତ୍ୱେ ପୂଜାପାଠ ପ୍ରାର୍ଥନା ସତ୍ତ୍ୱେ
ଦଙ୍ଗା କର୍ଫ୍ୟୁ ବକ୍ତୃତା ଓ ଇସ୍ତାହାର ସତ୍ତ୍ୱେ
ପଞ୍ଚବର୍ଷ ଯୋଜନା ଓ ମିଛ ପ୍ରତିଶ୍ରୁତି ସତ୍ତ୍ୱେ
ବସ୍ତି ତଥାପି ବଞ୍ଚି ରହିଥାଏ
ଗଳି ମୁଣ୍ଡରେ ନିଶ୍ଚିହ୍ନ ଖେଳୁଥିବା
ଏଇମାତ୍ର ଅନାଥ ହୋଇଥିବା ଶିଶୁଟି ଭଳି
ଯେ ଏ ପର୍ଯ୍ୟନ୍ତ ଧର୍ମ ଗଣତନ୍ତ୍ର ସଭ୍ୟତା
ଅଥବା ଇତିହାସ ଦ୍ୱାରା ସଂକ୍ରମିତ ହୋଇନାହିଁ

# ମନ୍ଦିର

ତପସ୍ୟାରତ ସନ୍ନ୍ୟାସୀ ଭଳି
ଆସନବଦ୍ଧ ରହିଥାଏ ମନ୍ଦିର
ସମୟର ସର୍ବଦର୍ଶୀ ଚନ୍ଦ୍ରାତପ ତଳେ

ପାର୍ଶ୍ୱ ଦେବତାମାନଙ୍କ ସହିତ
ପୁରୋହିତ ପରିହାସରତ
କୀର୍ତ୍ତିମୁଖର କାନ୍ଧ ଉପରେ ଥାଇ
ଉଭିଦ ଚାହିଁରହେ ନିସ୍ପୃହ ଭାବରେ

ସମବେତ ପ୍ରାର୍ଥନାର ସ୍ୱର
ଅସହାୟ ଶିଶୁଟି ଭଳି
ବାଟ ନ ପାଇ ଘୂରି ବୁଲୁଥାଏ
ପାହାଚରୁ ମଣ୍ଡପ ଚତ୍ୱରରୁ ବେଦୀ
ମନ୍ତ୍ରର ଅବଶ ପ୍ରତିଧ୍ୱନି
ସମସ୍ତ ଦିକ୍‌ପାଳମାନଙ୍କୁ ଛୁଇଁ
ଫେରିଆସି ଲାଖିଯାଏ
ମୂର୍ତ୍ତିହୀନ ବିରକ୍ତ ଖୋପମାନଙ୍କରେ

ଧୂପର ଧୂଆଁ ରୁନ୍ଧି ରହିଯାଏ
ପ୍ରାର୍ଥନା ଅଟକି ରହେ ପଥର କାନ୍ଥରେ
ସମୟମଳିନ ଚଟାଣକୁ
ପୂଜାଫୁଲ ଚମକାଇ ପାରେ ନାହିଁ
ନୈବେଦ୍ୟ କୋଣରୁ କୋଣକୁ ଘୂରିବୁଲେ
ଅସନ୍ତୁଷ୍ଟ ଆତ୍ମାର ଅନ୍ୱେଷଣରେ
ଜଣାଣ ଓଲଟି ଫେରି ଆସେ ଅନ୍ତଃସ୍ଥଳକୁ

ପ୍ରଜ୍ଞା ଓ ପ୍ରତ୍ୟୟ ବାହାରେ
ସଂଜଦୀପ ମିଞ୍ଜିମିଞ୍ଜି ଜଳୁଥାଏ
ହତୋତ୍ସାହ ମନୋରଥଟିଏ ଭଳି
ଗର୍ଭଗୃହର ଅସ୍ଥିର ଅନ୍ଧାରକୁ ନେଇ
ବିଗ୍ରହ ସନ୍ତୁଷ୍ଟ ଓ ସ୍ୱୟଂସିଦ୍ଧ ରହିଥାଏ
ନିଜର ଶିଳ୍ପଶାସ୍ତ୍ରର କଠୋର ପ୍ରାମାଣିକତାରେ

# କବିସମ୍ରାଟ

ତମେ କାହିଁକି ବନ୍ଦ ରହିଥାନ୍ତ
କେଉଁ ଅକିଞ୍ଚିତକର ରାଜ୍ୟର ଚୌହଦିରେ
ତମର ନ୍ୟାଯ୍ୟ ପ୍ରାପ୍ୟ ଥିଲା
ଏକ ଅପାର ଅକ୍ଷରମାଳାର ଭୂଖଣ୍ଡ
ଯାହାର ଭିତ୍ତି ଓ ବିସ୍ତାର
ଅନ୍ତର୍ଲିପି ବହିର୍ଲିପି ସିଂହାବଲୋକନ
ବକ୍ରୋକ୍ତି ଓ ବିରୋଧାଭାସରେ
ଯାହାର ସୀମା ସରହଦ
ସରୋଷ୍ଠ ନିରୋଷ୍ଠ ବନା ଅବନା
ଅନୁପ୍ରାସ ଯମକ ଓ ରୂପକ
ତମର ଅଭିଷେକ ବିଧିନିର୍ଦ୍ଦିଷ୍ଟ ଥିଲା
ସାର୍ବଭୌମ ଶବ୍ଦର ସାମ୍ରାଜ୍ୟରେ
ବର୍ଣ୍ଣମାଳା ଯେଉଁଠାରେ ସର୍ବଶକ୍ତିମାନ
ଏବଂ ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣ ପରମ ବ୍ରହ୍ମ

ଏପରି ଏକ ଅଲୌକିକ ପୃଥିବୀ ଯେଉଁଠାରେ
ଅକ୍ଷର ଓ ଶବ୍ଦ ବାହାରେ କିଛି ନାହିଁ
ଜୀବନ ଯେଉଁଠାରେ ଛାନ୍ଦରେ ବିଭକ୍ତ
ଅନୁଚିନ୍ତାମାନ ଲିପିବଦ୍ଧ ଚିତ୍ରକାବ୍ୟ ବନ୍ଧରେ
ଦିନଚର୍ଯ୍ୟା ଆୟୋଜିତ ରାଗରାଗିଣୀରେ
ଆବେଶ ଓ ଅନୁଭୂତିମାନ ଅଳଙ୍କାରବଦ୍ଧ
ମନୋଭାବ ସମନ୍ୱିତ ଚଉତିଶା ଓ ପୋଇରେ

ଦେହ ଓ ବିଦେହର ଅଦ୍ଭୁତ ଦେଶରେ
କେଳିସଦନ କେନ୍ଦ୍ରସ୍ଥଳ ଶଯ୍ୟା ହିଁ ସଂସାର
ଜାନୁ ଓ ଜଘନର ପ୍ରଭୁତ୍ୱ ସେଠାରେ
ଅଧର ଓ ରୋମାବଳୀର ଆଧିପତ୍ୟ

ସଂଳାପର ଉତ୍କର୍ଷ ଇଷିକାରରେ
କରଜ ସବୁବେଳେ ଖୋଜିନିଏ ଉରଜକୁ
କଥା ବଦଳରେ ଫୁଲ ଫିଙ୍ଗିଦିଏ ଚତୁରୀ
ଦିନ ସରିଯାଏ ଚାଟୁକାରୀତାରେ
ଚଉଷଠି କଳାରେ ରାତି ପାହିଯାଏ

ସେଠାରେ ଫୁଲମାନେ ଫୁଟନ୍ତି କେବଳ
ଅଙ୍ଗପ୍ରତ୍ୟଙ୍ଗର ଉପମା ହେବା ପାଇଁ
ପଶୁପକ୍ଷୀମାନେ ପ୍ରଣୟର ଆଙ୍ଗିକ
ପ୍ରକୃତି ପ୍ରକଟ ହୁଏ ଶୃଙ୍ଗାରର ରୂପକ ହୋଇ
ଋତୁମାନେ କେବଳ ବ୍ୟତୀତ ରାତିର ସ୍ମାରକ
ବିରହକୁ ତୀବ୍ରତର କରିବା ସମୟର ଏକମାତ୍ର ଦାୟିତ୍ୱ

କାବ୍ୟର ଏଭଳି ଅଲୌକିକ ସାମ୍ରାଜ୍ୟରେ
ରକ୍ତମାଂସ ହିଁ ଐଶ୍ୱରିକତା ଶରୀର ହିଁ ଧର୍ମ
ଅଙ୍ଗ ହିଁ ଅନଙ୍ଗ ଦେହ ହିଁ ଦେବତା
ବକ୍ଷୋଜ ହିଁ ବିରୂପାକ୍ଷ ବିପରୀତ ହିଁ ମୋକ୍ଷ
ସୁରତି ହିଁ ସାରତତ୍ତ୍ୱ ବନ୍ଧ ହିଁ କୈବଲ୍ୟ

ତମେ ତେଣୁ କବିତାକୁ
ପ୍ରତ୍ୟାହାର କରିନେଲ ସ୍ୱର୍ଗଲୋକରୁ
ଛାନ୍ଦକୁ ଛଡ଼ାଇ ନେଲ ଧର୍ମର ନିଗ୍ରହରୁ
ଦେବତାମାନଙ୍କୁ ନିର୍ବାସିତ କରିଦେଲ ଇନ୍ଦ୍ରଲୋକକୁ

ଏଥର ଆଉ କେହି ପ୍ରତିଦ୍ୱନ୍ଦ୍ୱୀ ନାହାନ୍ତି
ତମେ ହିଁ ଏକଛତ୍ର ସମ୍ରାଟ
ତମର ହିଁ ସାର୍ବଭୌମ ରାଜତ୍ୱ

## ଏପ୍ରିଲ

ପୃଥିବୀ ଧୀରସ୍ଥିର ରହି
ଆକାଶର ଚମତ୍କାରକୁ ଦେଖୁଥାଏ
ଶପଥବଦ୍ଧ ସାକ୍ଷୀ ଭଳି
ଅସମୟ ମେଘ ରଙ୍ଗ ବଦଳୁଥାଏ
ସମୟ ଉତୁରି ଆସେ
ଅନ୍ତର୍ଜ୍ୱାଳାର ଗହ୍ୱର ଭିତରୁ

ଘାସରେ କମ୍ପନ ପତ୍ରରେ ମର୍ମର
ଗଛ ଆତ୍ମୀୟତାର ହାତ ବଢ଼ାଏ
ନିଜକୁ ମୋହମାୟାରୁ ମୁକ୍ତ କରି
ରାସ୍ତା ଖୋଲି ରଖିଦିଏ ନିଜକୁ
ପୁରୁଣା ପାପୀର ସ୍ୱୀକାରୋକ୍ତି ଭଳି
ଯାତ୍ରାର କୌଣସି ନିର୍ଘଣ୍ଟ ନ ଥାଇ
ନିରୁଦ୍ଦେଶ ଚିନ୍ତାର ରେଳଗାଡ଼ି ଚାଲିଯାଏ
ମନସ୍ତାପର ଖୋଲା ପଡ଼ିଆ ଉପରେ

ଆଉ କାହାରି ସହିତ
ସନ୍ଧି ସ୍ୱାକ୍ଷରର ସମ୍ଭାବନା ନାହିଁ
ଏଥରକ ନିର୍ବାସନର ବେଳ
ନିଜ ଭିତରେ ନିଜେ ଆତ୍ମକେନ୍ଦ୍ରିକ ହୋଇ
ବନ୍ଦ ଘରେ ବସି ରହିଥିବାର ସମୟ

ପବନରେ ଲହରୀରେ ମେଘରେ ସ୍ୱପ୍ନରେ
କ୍ରମାନ୍ୱୟ ବିକ୍ଷିପ୍ତ ହୋଇଯାଏ
ନିଜକୁ ପ୍ରକୃତିସ୍ଥ ରଖିବାର ସବୁ ସଂକଳ୍ପ
ନିର୍ଦ୍ଦୟ ଖରାବେଳ ବୁଝିପାରେ
ସେଠାରେ ଆଉ କିଛି ସମ୍ଭବ ନୁହେଁ
ମାଟି ପାଣି ଆକାଶ ଓ ଚେତନା ବ୍ୟତୀତ

ହଠାତ ପବନ ଆସି ଝରକା ଖୋଲିଦିଏ
ସତେ ଯେପରି ଅତୀତକୁ ଉଙ୍କିମାରି
କିଛି ନୈତିକ ତାତ୍ପର୍ଯ୍ୟ ସଂଗ୍ରହ କରିହେବ

## ପ୍ରତ୍ନତତ୍ତ୍ୱ

ଇତିହାସକୁ ସାଙ୍ଗରେ ନେଇ
ଗବେଷକ ଆସି ଠିଆହୁଏ
ସମୟର ଧୂ ଧୂ ବିସ୍ତୀର୍ଣ୍ଣତା ଉପରେ
ଭଗ୍ନାବଶେଷ ଭିତରୁ ଖୋଜି ବୁଲେ
ଅତୀତର ପ୍ରମାଣପତ୍ର ସବୁ
ମାଟି ତଳେ ଲୁକ୍କାୟିତ ମନ୍ଦିରର ଚୂଡ଼ା
ପଥର ହାତରୁ ଖସି ପଡ଼ିଥିବା ସ୍ତବକ
ସ୍ୱପ୍ନରେ ଆଜ୍ଞା ହୋଇଥିବା ଅଭିଯାନ
ନିଦ୍ରିତର ମୁଣ୍ଡ ଉପରେ ସାପଫଣା
କଳାଘୋଡ଼ା ଧଳାଘୋଡାର ଟାପୁ ଚିହ୍ନ
ନଈ ବାଲିରେ ବନ୍ଦ ନୂପୁର
ମାଛ ପେଟର କଣ୍ଟ ମୁଦି
ପ୍ରବାସୀକୁ ଚିହ୍ନଟ କରିବାର ସ୍ମାରକ

ଚାରିଆଡ଼କୁ ଅନାଇ ସମସ୍ତଙ୍କୁ ପଚାରେ
କେବେ କେଉଁଠି କିଏ କାହାର
ଅଭିଷେକ ରାଜତ୍ୱ ଯୁଦ୍ଧ ଅଶ୍ୱମେଧ
ସନନ୍ଦ ବଂଶାବଳୀ ଅଧାଦେଶ

କେହି ଜବାବ ଦିଏ ନାହିଁ
କୌଣସି ନିଷ୍କର୍ଷ ବାହାରେ ନାହିଁ

ପ୍ରଶ୍ନ ସବୁ ଘୂରି ବୁଲୁଥାନ୍ତି
ଯୁଦ୍ଧରୁ ପଳାତକ ସୈନିକ ଭଳି
ନିଛାଟରୁ ନିଛାଟ ଖୋଲା ଅପନ୍ତରାରେ

ସେ ପ୍ରଶ୍ନର ପୁନରାବୃତ୍ତି କଲେ
ଗୁମ୍ଫାରୁ କୋଟରରୁ ଦିଗ୍‌ବଳୟ କୋଣରୁ
ଅଗଣିତ ସାଧାରଣ ମଣିଷଙ୍କ
ଅତୃପ୍ତ ଆତ୍ମାର ଅଟ୍ଟହାସ
ବିକଟାଳ ଶବ୍ଦ କରି ବାହାରି ଆସେ
ଧକ୍କା ଖାଏ ପଥରରେ ପତ୍ରରେ ଶୂନ୍ୟରେ

ତା'ର ପ୍ରତିଧ୍ୱନି ବୁଲି ବୁଲି ଫେରିଆସେ
ଆକାଶକୁ କହେ ମୁହଁ ବୁଲାଇ ନିଅ
ପର୍ବତକୁ କହେ ଶୋଇଯାଅ
ଜଙ୍ଗଲକୁ କହେ ଆଖି ବନ୍ଦ କର
ଇତିହାସକୁ କହେ ଚୁପ୍ ରହ ମିଥ୍ୟାବାଦୀ

# ମେଘ

କୌଣସି ମେଘ କାହାରି ଭଳି ନୁହେଁ
ସୂର୍ଯ୍ୟ ସହିତ ରଙ୍ଗ ବଦଳାଏ
ଭାଙ୍ଗେ ଯୋଡ଼ି ହୁଏ
ଅଲଗା ହୁଏ ମିଶେ ନୂଆ ରୂପ ନିଏ
ଅନନ୍ତରେ ଭାସୁଥାଏ ସମୟ ଅସମୟ
ଶୂନ୍ୟରେ ସ୍ଥିତି ଓ ପୁଷ୍ଟି
ଆକସ୍ମିକତାରେ ଜନ୍ମ ମୃତ୍ୟୁ ପୁନର୍ଜନ୍ମ

କାହାକୁ କଣ ଦେଇ ପାରିବ
ନିଜସ୍ୱ ସ୍ଥିତିହୀନ ଯାଯାବର ମେଘ
କି ସାନ୍ତ୍ୱନା ପହଞ୍ଚାଇ ପାରିବ
ଫଟା ମାଟିର ଅଗଣିତ ତୃଷାର୍ତ୍ତ ଆଖିକୁ
କି ଉପଶମ ଆଣିବ ମୃଗତୃଷ୍ଣାର ବାଲିରେ
କି ସମ୍ବେଦନା ଦେବ ନିର୍ଜଳା ହତୋତ୍ସାହକୁ
କିପରି ଧରି ରଖିପାରିବ
କେଉଁ ଆଶ୍ୱାସନା ଦେଇ
ଦୀର୍ଘଶ୍ୱାସରେ ଖଣ୍ଡବିଖଣ୍ଡ
ଖସିପଡୁଥିବା ଅନନ୍ତ ଶୂନ୍ୟକୁ

ଆଉଥରେ ଆକାଶକୁ ଅନାଇଲେ
ହଠାତ ସବୁ ସଂଶୟ କଟିଯାଏ
ଅଭୟ ଆଶୀର୍ବାଦରେ ଭର୍ତ୍ତିହୁଏ ଶୂନ୍ୟସ୍ଥାନ ସବୁ
ମେଘ ଦେଖାଦିଏ ନିଜକୁ ସଜାଡ଼ି
ଆକାଙ୍କ୍ଷିତ ରୂପ ଓ ଆକାର ନେଇ
ଆଷାଢ଼ର ପ୍ରଥମ ସନ୍ଦେଶ ଶୁଣାଇ
ଖରାର ଦର୍ପଣ ଉପରେ ଛାଇ ପକାଏ
ହା ହତୋଽସ୍ମିର ଜ୍ୱାଳା ଉପରକୁ ଫିଙ୍ଗିଦିଏ
କିମ୍ବଦନ୍ତୀର କରୁଣାମୟ ସୂକ୍ତିମାଳା

ମେଘ ଆଣିଦିଏ ବିସ୍ମୟର ସମ୍ମୋହନ
ମନଗହନର ଶୁଖିଲା ଶାଖାପ୍ରଶାଖାରେ
ପ୍ରତ୍ୟାଶାର ସଜଫୁଲ ଖଞ୍ଜି ଦିଏ
ଗ୍ରୀଷ୍ମର ଅରଣ୍ୟରେ ସଜାଇଯାଏ ମର୍ମର
ଝରଣାର କଲ୍ଲୋଳରେ ଦେଇଯାଏ ମହ୍ଲାର
ସବୁଜ ଶୋଭାଯାତ୍ରା ନେଇ ଚାଲିଯାଏ ଇନ୍ଦ୍ରଧନୁ ଉପରେ

ମେଘ ଆଣେ ଅନ୍ତରଙ୍ଗ ସ୍ୱପ୍ନର ସମାଚାର

ମେଘ ଆଣେ ବିନ୍ଦୁ ବିନ୍ଦୁ ସୁଖଦ ସନ୍ଦେଶ
ସୁଜଳା ସୁଫଳା ଶ୍ୟାମଳତା ଭିଜାମାଟିର ଗନ୍ଧ
ଓଠ ହାତ ଦେହର ସାଦର ସ୍ମରଣ
ଆତ୍ମାକୁ ଆଉଁଶି ଦିଏ ଶୀତଳ ପବନରେ
ପ୍ରଥମ ବିନ୍ଦୁ ପୃଥିବୀ ଉପରେ ପଡ଼ିବା ପୂର୍ବରୁ
ମନ ଭିତରେ ସଂଚାରିଯାଏ ସ୍ମୃତିର ଭଗ୍ନାଂଶ
ମେଘ ଭଳି ଯାହାର କୌଣସି ରୂପବର୍ଣ୍ଣ ଲକ୍ଷ୍ୟ ନାହିଁ
କେବଳ ଏକ ଆକର୍ଷକ ବିଷାଦର ଆର୍ଦ୍ରତା
ଯାହା ସିକ୍ତ କରିଯାଏ ଅନ୍ତଃସ୍ଥଳର ବାଲିଚରମାନଙ୍କୁ

## ବେଗ ହିଁ ଆବେଗ

ସ୍ୱପ୍ନ ଆଉ ମନର ବିହ୍ୱଳ ପ୍ରକ୍ରିୟା ନୁହେଁ
ଏବେ ଗୋଟିଏ ବଟିକାରେ ନିଦ
ସାମାନ୍ୟ ଆଘ୍ରାଣରେ ମାୟାପୁରୀ ପର୍ଯ୍ୟଟନ

ଆମୋଦ ଆଉ ସମୟସାପେକ୍ଷ ନୁହେଁ
ସୁଇଚ ଛୁଇଁଲେ ମନୋରଞ୍ଜନ
ମାତ୍ର ଏକୋଇଶ ଇଞ୍ଚ ଭିତରେ
କଳା ଓ ସଂସ୍କୃତିର ଦୁର୍ବାର ଗତି
ପ୍ରତି ସେକେଣ୍ଡ ଚବିଶଟି ଛବିରେ

ସମ୍ପର୍କ ପାଇଁ ସାନ୍ନିଧ୍ୟ ଦରକାର ନୁହେଁ
ହାତ ଓ ଆଖିର ଯୋଗାଯୋଗ ଅନାବଶ୍ୟକ
ଭାଷା ଓ ବର୍ଣ୍ଣମାଳା ନିଷ୍ପ୍ରୟୋଜନ
ଟେଲିଫୋନର ଅଶରୀରୀ ତିନି ମିନିଟ ହିଁ ଯଥେଷ୍ଟ

ପୂଜାପାଠ ଆବାହନ ମାତ୍ରାତିରିକ୍ତ
ଦେବତାମାନେ ସମସ୍ତେ ହାତ ପାଖରେ
ଦିଆସିଲି ଜଳାଇଲେ ଅଗ୍ନି
ଟ୍ୟାପ ଖୋଲିଲେ ବରୁଣ
ବିଜୁଳି ବଲ୍‌ବ ଭିତରେ ସୂର୍ଯ୍ୟ
ଟେବୁଲ ପଙ୍ଖାରେ ମାରୁତ
ରକେଟ ଚଢ଼ିଲେ ଚନ୍ଦ୍ର ଓ ମଙ୍ଗଳ

ଜୀବନ ସତ୍ୱର ଓ ଦ୍ରୁତଗାମୀ
ଶବ୍ଦଠାରୁ ଅତୀବ ତୀବ୍ର
କ୍ଷେପଣାସ୍ତ୍ରରୁ ଆହୁରି କ୍ଷିପ୍ର
ମୃତ୍ୟୁ ସୁଲଭ ଓ ସନ୍ନିକଟ
ହଠାତ ହୃତ୍‌ସ୍ପନ୍ଦନ ବନ୍ଦ ହେବା
ଏବଂ ସନ୍ତ୍ରାସବାଦୀର ଅବ୍ୟର୍ଥ ଗୁଳି ଭଳି

# ପିକନିକ

କାର୍ଯ୍ୟବ୍ୟସ୍ତ ମୁହୂର୍ତ୍ତ ସବୁ
କୋଡ଼ିଏ କିଲୋମିଟର ପଛରେ
ଦେଢ଼ଘଣ୍ଟା ଦୂରରେ
ଦିନପଞ୍ଜିକାର ସମୟ ନିର୍ଘଣ୍ଟ
ଘର ରହିଲାଣି ତିନିଟି ସ୍ୱପ୍ନର ଅନ୍ତରାଳରେ
ବର୍ତ୍ତମାନ ଏଭଳି ଆଶ୍ରୟର ଅନ୍ୱେଷଣ
ଯାହା ଅତୀତରୁ ସଂପୂର୍ଣ୍ଣ ବିଚ୍ଛିନ୍ନ

ନିର୍ଜନତାକୁ ସମର୍ପିତ ଏପରି ସ୍ଥାନ
ଯେଉଁଠାରେ ପାଦତଳେ ଘାସର ଚଟାଣ
ଉପରକୁ ଅନାଇଲେ ଆକାଶର ଛାତ
ଚାରିପାଖେ ଗଛର ପାଚେରୀ
ଯେଉଁଠାରେ ପଶୁପକ୍ଷୀଙ୍କ ବ୍ୟତୀତ
ଚଲାବାଟରେ ଆଉ କୌଣସି ଟ୍ରାଫିକ ନାହିଁ

ପର୍ବତର କୌଣସି ତତ୍ପରତା ନାହିଁ
କୌଣସି ବ୍ୟସ୍ତତା ନାହିଁ ପତ୍ରର ଝଡ଼ି ପଡ଼ିବାରେ
ସୂର୍ଯ୍ୟ ସହିତ କୌଣସି ବିରୋଧ ନାହିଁ
ଦିଗ୍‌ବଳୟ ସୀମାନ୍ତରେ ମଳିନ ଜହ୍ନର
କୌଣସି ଜଟିଳତା ନାହିଁ
ଝରଣାର ଅଳସ ପ୍ରବାହ
ଅଥବା ପଶୁର ମନ୍ଥର ରୋମନ୍ଥନରେ
ଆଲୁଅ ପ୍ରଗଲ୍‌ଭ ନୁହେଁ ଏଠାରେ
ଆକାଶ ଧୀର ସ୍ଥିର ଓ ଉଦାର
ଏଠାରେ କେହି କାହାରି ଅପେକ୍ଷାରେ ନାହିଁ

ଏଥରକ ଭୁଲିଯାଅ ହିସାବନିକାଶ
ଖବର କାଗଜର ମର୍ମନ୍ତୁଦ ହେଡଲାଇନ
ଅସମ୍ପନ୍ନ ଦାୟିତ୍ୱର ଦାବି
ନିର୍ଦ୍ଦିଷ୍ଟ ସମୟର ନିର୍ଦ୍ଧାରିତ ସାକ୍ଷାତ୍‌କାର
ଋଣ ପରିଶୋଧର ବିଳମ୍ବିତ କିସ୍ତି
ଜବାବ ଅପେକ୍ଷାରେ ଜରାଜୀର୍ଣ୍ଣ ଚିଠି
ଉପଯୋଗର ଅପେକ୍ଷମାଣ ସଂକୁଚିତ ସମୟକୁ

ସବୁ ଖୋଲି ରଖିଦିଅ
ପାଦରୁ ଜୋତା ଦେହରୁ ଜାମା ଆଖିରୁ କଳା ଚଷମା
ମନ ଭିତରୁ ସବୁ ଖେଦ କ୍ଷୋଭ ଓ ଗ୍ଲାନି
ଫ୍ଲାସ୍କରୁ ଅଜାଡ଼ି ଦିଅ ଈର୍ଷା ଓ ବିଦ୍ୱେଷକୁ

ସହଚରମାନଙ୍କୁ ମଗ୍ନ ରହିବାକୁ ଦିଅ
ନିଜ ନିଜ ସ୍ୱପ୍ନର ବୁଢ଼ିଆଣୀ ଜାଲରେ
ପକ୍ଷୀର ଡେଣାରେ ଉଡ଼ିଯାଉ ସମସ୍ତ ଜଞ୍ଜାଳ
ତାସ ମୁଠାରେ ବାଣ୍ଟି ହୋଇଯାଉ ସ୍ୱଜନତା

ଆଖି ପିଛୁଳାକେ ଶେଷ ହୋଇଯିବ ସବୁ
ଖରାର ଶେଷ କିରଣ ଆସି
ହାତଘଡ଼ିର ମୁହଁ ଉପରେ ଲିଭିଯିବ
କପ୍‌ର ଶେଷ ଢୋକ ଚା'ର ସ୍ୱାଦ
ମନ ଭିତରକୁ ଅନାୟାସ ଫେରାଇ ଆଣିବ
କୌଣସି ବିସ୍ମୃତ ହତୋତ୍ସାହ ସକାଳକୁ
ଟ୍ରାଞ୍ଜିଷ୍ଟରର ପୁରୁଣା ଗୀତ ମନେପକାଇ ଦେବ
ଅତୀତର ତିକ୍ତ ମଧୁର ତିନୋଟି ଘଣ୍ଟା
ଘାସ ଉପରୁ ଚାଦର ଉଠାଇ ନେଲେ
ଛିଣ୍ଡା କାଗଜରୁ ଛିଟିକି ପଡ଼ିବ ଲୋମହର୍ଷ ଶୀର୍ଷକ
ଗଛ ପତ୍ରରୁ ଉଙ୍କିମାରିବ ପ୍ରଭୁର କ୍ରୋଧିତ ମୁହଁ
ଚାରିପାଖରୁ ଘେରି ଆସିବେ ଦାବିଦାରମାନେ

ଏଥରକ ମାପଚୁପ ସମୟର ପରିସମାପ୍ତି
କାର୍ଯ୍ୟନିର୍ଘଣ୍ଟ ଉପରେ ଛକଚିହ୍ନ ଦେଇଦିଅ
ବାରବୁଲା ସୁଖର ଟୁକୁଡ଼ା ସବୁକୁ
ଫିଙ୍ଗିଦିଅ ବୁଦା ଜଙ୍ଗଲ ଭିତରକୁ
ଅବାଧ୍ୟ ସ୍ୱପ୍ନମାନଙ୍କୁ ବନ୍ଦ କରିନିଅ ଟିଫିନ ଡବାରେ
ଜୋତାର ଫିତା ବାନ୍ଧିଦିଅ
ଉଡୁଥିବା ବାଳକୁ ସଜାଡ଼ି ନିଅ ସତର୍କ ରହ
ଆଗାମୀ କାର୍ଯ୍ୟକ୍ରମକୁ ଆଉ ମାତ୍ର ଦେଢ଼ଘଣ୍ଟା

## ଲୋକଟି

କାହାର କିଛି ଶୁଣେ ନାହିଁ
କାହାକୁ କିଛି କହେ ନାହିଁ

କାହାରି ଭଲ ମନ୍ଦରେ ନ ଥାଏ
ଭିଡ ବାହାରେ ରହି
ଚୁପଚାପ ରାସ୍ତା ପାରି ହୋଇଯାଏ
ନିରୀହ ସାଧାରଣ ଲୋକଟି

କେବେ ହେଲେ ଜୁଲୁସ୍‌ରେ ନ ଥିଲା
କେବେ ହେଲେ ସ୍ଲୋଗାନ ଦେଇ ନ ଥିଲା
କେବେ କିଛି ବିରୋଧ କରି ନଥିଲା
ସମାଜର ପରିଧି ଉପରେ ରହି
ଭାବିଥିଲା ଏଇପରି ଜୀବନ ବିତାଇ ଦେବ
ସୀମାବର୍ତ୍ତି ସାଧାରଣ ସାର୍ବଜନିକ

ସେ କଥା କିନ୍ତୁ ସମ୍ଭବ ହେଲା ନାହିଁ
ଶୋଭାଯାତ୍ରା ବାହାରେ ଥିଲେ ବି
ତା ଉପରେ ପୋଲିସର ଲାଠି ପଡ଼ିଲା
ପ୍ରତିଟି ଅଫିସରେ ତାଙ୍କୁ ଲାଞ୍ଚ ମାଗିଲେ

ବସ୍ ଟ୍ରେନ୍‌ରେ ତାକୁ ଜାଗା ମିଳିଲା ନାହିଁ
ସେ କ୍ୟୁ ଶେଷରେ ପହଞ୍ଚିବା ବେଳକୁ
ରାଶନ ଦୋକାନର ଜିନିଷ ଉଭେଇଗଲା
ତାର ଘରୁ ଚୋରି ହୋଇଯିବା ପରେ
ଥାନାରେ ରିପୋର୍ଟ ନେବାକୁ ମନା କଲେ
ଭୁଲ ବିଲ୍‌ର ପଇସା ନ ଦେବାରୁ
ତା ଘରୁ ପାଣି ବିଜୁଳି କଟିଗଲା
ତାର ଝିଅ ଭଉଣୀଙ୍କୁ ହଇରାଣ କରୁଥିବା ଟୋକା
ତାରି ଘରକୁ ଆସି ତାକୁ ଧମକାଇ ଚାଲିଗଲେ

ଶେଷରେ ଯେତେବେଳେ ସେ ବୁଝିଲା
ନିଷ୍କ୍ରିୟତା ଏକ ପାପ ଯାହା ପ୍ରାୟଶ୍ଚିତ୍ତ ଚାହେଁ

ସେ ସ୍ୱାଧିକାର ମାଗିବାର ନିଷ୍ପତ୍ତି ନେଲା
ରାସ୍ତା ଉପରକୁ ଯେତେବେଳେ ସେ
ପ୍ରତିବାଦର ପ୍ରଥମ ପାଦ ପକାଇଲା
ରାସ୍ତାର ଭୁଲ ଦିଗରୁ ଆସୁଥିବା
ମ୍ୟୁନିସିପାଲିଟିର ଆବର୍ଜନା ଗାଡ଼ି ତଳେ
ଚାପା ପଡ଼ି ମରିଗଲା ବିଚରା ଲୋକଟି
ପୃଥିବୀ ଓ ନିଜ ସହିତ ନିଜର
ପ୍ରଥମ କଠୋର ମୁକାବିଲା କରିବା ପୂର୍ବରୁ

## କୋଣାର୍କ

ଏଠାରେ ପର୍ଯ୍ୟଟକ ହିଁ ସମ୍ରାଟ
ଗାଇଡ ଏଠାରେ ଇତିହାସକାର
ପ୍ରତ୍ନତାତ୍ତ୍ୱିକମାନେ ଏଠାରେ ସ୍ଥପତି
ଆଲବମରେ ନିର୍ଦ୍ଧାରିତ ଶିଳ୍ପଶାସ୍ତ୍ର
କାରିଗରୀ ସବୁ କ୍ୟାମେରାରେ ନିହିତ

ପ୍ରାଚୀନ ଗୌରବ ପଡ଼ି ରହିଥାଏ
ଖାଲି ବସ୍ ଭିତରେ ବିନା ଜଗୁଆଳ
ପୋଷ୍ଟକାର୍ଡରେ ବିକ୍ରିହୁଏ ଚାରୁକଳା
ଐତିହ୍ୟ ଝୁଲୁଥାଏ ରାସ୍ତା ପାଖ ଦୋକାନରେ
ପରମ୍ପରା ପୋତି ହୋଇଯାଏ
ପିକନିକର ବାଲିମିଶା ଆବର୍ଜନାରେ

ପବନର ଈର୍ଷାନ୍ୱିତ ଆକ୍ରୋଶରେ
ସ୍ଥାପତ୍ୟ ଖଣ୍ଡିତ ହୋଇଯାଏ

ଯେପରି ଶାମ୍ବର ଅଭିଶପ୍ତ ଦେହ
ଉପରୁ ପଥର ଖସିପଡ଼େ
ସ୍ୱାଭିମାନର ଅସହିଷ୍ଣୁ ଦାବିର ଦାୟରେ
ସମୁଦ୍ରକୁ ଡେଇଁପଡୁଥିବା ବାଳକ ଭଳି
ପାନ୍ଥଶାଳାମାନ ଚତ୍ୱରକୁ ଘେରିଯାନ୍ତି
କଳାପାହାଡ଼ର ପଲଟଣ ହୋଇ

ବାରବର୍ଷର ତପସ୍ୟା ବ୍ୟର୍ଥ ଯାଏ
ବୁଦା ଜଙ୍ଗଲରେ ହଜିଯାଏ ବଂଶାବଳୀ
କିମ୍ବଦନ୍ତୀ ଜାହାଜମାନଙ୍କୁ ଡାକେ
ସମୁଦ୍ର ଭିତରୁ ବାହାରି ସାକ୍ଷ୍ୟ ଦେବା ପାଇଁ
ଧୂ ଧୂ ବାଲିରେ ତାର ଜବାବ ନ ଥାଏ
ଝାଉଁଗଛ ବିଦ୍ରୂପର ସର୍ବାଙ୍ଗ ହସ ହସେ

ଶେଷ ବସ୍ ଚାଲିଯିବା ପରେ
ପୁଣି ସମୟର ରାଜତ୍ୱ ଆରମ୍ଭ ହୁଏ
କୋଣାର୍କ ମୁଣ୍ଡ ଟେକି ଠିଆ ହୁଏ
ଉତ୍ତୁଙ୍ଗ କଳାର ଦିବ୍ୟ ହିମାଚଳ ଭଳି
ନିଜର କୃଷ୍ଣବର୍ଣ୍ଣ ଭବ୍ୟତାରେ
ଆକାଶକୁ ସ୍ପର୍ଦ୍ଧା କରି
ଭୂଭାଗକୁ ପାଦ ତଳେ ରଖି

ଆଉ ସବୁ ଶବ୍ଦ ଲିଭିଯାଏ
ସମୟର ସହର୍ଷ ହ୍ରେଷାରେ
ଚକ ତଳେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଏ
ସାମାନ୍ୟ ସଫଳତା ଓ ତୁଚ୍ଛ କୃତିତ୍ୱ
ପୁଣି ଏକ ସାଧାରଣ ସକାଳ ପର୍ଯ୍ୟନ୍ତ
ଶାଶ୍ୱତ ଶିଳ୍ପର ସମଗ୍ର ସତ୍ତାକୁ
ଅଲୌକିକ ସାରଥି ଉଡ଼ାଇ ନିଏ

ମହାକାଳର ଦୈବୀ ଅନ୍ତରୀକ୍ଷକୁ

## ମଧ୍ୟାହ୍ନ

ଆକାଶର ଜଳନ୍ତା ଭାରସାମ୍ୟରେ
ସୂର୍ଯ୍ୟ କୁଣ୍ଠିତ ରହିଥାଏ
ପ୍ରତ୍ୟୟର ଅଗ୍ନିପରୀକ୍ଷା ହୋଇ
ପକ୍ଷୀ ପ୍ରତ୍ୟାହାର କରିନିଏ
ତାର ଅଭିଯୋଗୀ ଡେଣାକୁ
ଛାଇ ସ୍ୱସ୍ତିର ନିଶ୍ୱାସ ନିଏ
ଆକ୍ରୋଶର ଛିନ୍ନ ପତ୍ର ଖସିପଡ଼େ
ଅସଂଲଗ୍ନ ସ୍ଥିତିର ଭଗ୍ନାବଶେଷ ଉପରେ
ଭୟଭୀତ ଲୋକଟି ଘୁଞ୍ଚି ଚାଲିଯାଏ
କ୍ରୋଧରେ ଝଲକୁଥିବା ରାସ୍ତା ଉପରୁ

ଅନାୟାସ କାହା ମୁହଁ ମନେପଡ଼େ
ପୁରୁଣା ପାପର ସ୍ମାରକ ଭଳି
ନିଜର ଗତିପଥ ଭୁଲିଯାଇ
ସ୍ୱପ୍ନ ଭିତରକୁ ଉଙ୍କିମାରେ ଭବିଷ୍ୟତ
ଝରକା ସବୁ ବନ୍ଦ କରିଦେଇ
ନିଜ ଭିତରକୁ ଫେରି ଚାଲିଯାଏ
ନିତିଦିନର ଘରମୁହାଁ ପଳାତକ

ବାହାରେ ମୃଗତୃଷ୍ଣା ଚମକୁଥାଏ
ନଷ୍ଟ ଜୀବନର ନୀତିଶିକ୍ଷା ଭଳି
ଗ୍ରୀଷ୍ମର ନିଷ୍ଠୁର ପବନ ଆସି
ପରିଣାମକୁ ଧକ୍କା ଦେଇ ଫେରାଇଦିଏ
ପଶ୍ଚାତାପର ସୁଷୁପ୍ତ କୋଣମାନଙ୍କୁ

# ଐତିହ୍ୟର ଦେଶ

କାହିଁ କେତେ ପଛରେ ରହିଗଲା ସ୍ୱର୍ଣ୍ଣଯୁଗ
ବର୍ତ୍ତମାନ ଏଠାରେ ଯେଉଁ ଆଡକୁ ଅନାଅ
ନଈମାନଙ୍କରେ ଦୁର୍ଭାଗ୍ୟର କରାଳ କାହାଣୀ
ଅରଣ୍ୟ ଓ ପର୍ବତରେ ଆଦିବାସର ଜୀବନ ସଂଗ୍ରାମ
ମାଟିରେ ଅକାଳ ପବନରେ ହା ହତୋଽସ୍ମି
ବାଲିଚର ମାଡ଼ିଯାଏ ଗଙ୍ଗାରୁ ଗୋଦାବରୀ ପର୍ଯ୍ୟନ୍ତ

ବୀରମାନଙ୍କର ବଂଶଧର ଭୋକ ଉପାସରେ ଛଟପଟ
ବଞ୍ଚିବାର ଯୁଦ୍ଧ ହୁଏ ଶୁଖିଲା ଧାନ କ୍ଷେତରେ
ବନ୍ୟାରେ ଉଜୁଡ଼ିଯାଏ ମନ୍ଦିରମାଳିନୀ ସ୍ମୃତିସବୁ
ଆଗାମୀର ଦାୟାଦମାନେ ହତୋତ୍ସାହ ରହିଥାନ୍ତି
ଶାଗୁଣା ଝୁମ୍ପିନିଏ ପତିତପାବନ ପତାକାକୁ

ସବୁ ଦାମ୍ଭିକତା କିମ୍ବଦନ୍ତୀ ତଳେ ପୋତା
ମନ୍ଦିରର ଗର୍ଭଗୃହରେ ଅବରୁଦ୍ଧ ଆତ୍ମପ୍ରତ୍ୟୟ
ସମୃଦ୍ଧିମାନ ମୁମୂର୍ଷୁ ଜନଶ୍ରୁତିର ଅନ୍ତରାଳରେ
ତମ୍ବାପଟାରେ ମଳିନ ହେଉଥାଏ ସ୍ୱାଭିମାନ
ଶିଳାଲେଖରେ ଲିଭିଲିଭିଯାଏ ସାହସିକତା

ଭଙ୍ଗାରୁଜା ବର୍ତ୍ତମାନ ଉପରେ ଠିଆହେଲେ
କୌଣସି ବିଶ୍ୱାସ କୌଣସି ପ୍ରତ୍ୟାଶା
ଆସେ ନାହିଁ ନିରୁତ୍ସାହ ମନ ଭିତରକୁ
ଆଗକୁ ଅନାଇଲେ ଦେଖାଯାଏ ଆଉ କିଛି ନୁହେଁ
କେବଳ ଭାଙ୍ଗିପଡୁଥିବା ଭବିତବ୍ୟର ଶିଖର

ସମୟର ଫିଙ୍ଗିଯାଇଥିବା ଉଚ୍ଛିଷ୍ଟ ସବୁ
ମନ୍ଦିର ଓ ଗଡ଼ ପ୍ରାସାଦ ଓ ସାମ୍ରାଜ୍ୟର ଭିତ୍ତି
ସ୍ମୃତିସ୍ତମ୍ଭ ତମ୍ବାପଟା ତାଳପତ୍ର ଶିଳାଲିପି

ସମୟର ସ୍ରୋତରେ ଭାସି ଆସି ଅସହାୟ
ଅଟକି ରହିଥାଏ ବର୍ତ୍ତମାନର ନଗଣ୍ୟ କୋଣରେ
ଆଶା ଓ ଆଶ୍ୱାସନା ପାଇଁ ଯେଉଁଠାରୁ
ବାରମ୍ବାର ଫେରିଯିବାକୁ ହୁଏ ଇତିହାସର
ଆଲୋକିତ ଓ ମନ୍ତ୍ରମୁଗ୍ଧ ପଶ୍ଚାଦ୍‌ଭାଗକୁ

## ଘାସ ଫୁଲ

ଆକାଶରେ ସିନ୍ଦୂର ବିଞ୍ଚିଯିବା ଆଗରୁ
କାକର ଆଉଁଶି ଯାଏ ମାଟିକୁ
ଟୋପା ଟୋପା କୋମଳ ଆର୍ଦ୍ରତାରେ
ଘାସ ଫୁଲ ବୁଝିପାରେ
କରୁଣାସିକ୍ତ ଅନ୍ଧାରର ଆତ୍ମୀୟତା

ପ୍ରଥମ ବର୍ଷା ହଠାତ ଆସି
ପୃଥିବୀ ଉପରେ ଧାଇଁଯାଏ
କୁନି କୁନି ପାଦ ପକାଇ
ଘାସ ଫୁଲ ଜାଣିପାରେ
କିଏ ତାକୁ ଟାଣି ନେଉଛି
କେଉଁ ଉଦାର ଅଦୃଷ୍ଟ ଆଡ଼କୁ

ଡାହାଣିଆ ଖରା ଆସି ଖସିପଡ଼େ
ଛାଇ ଛାଇ ପତ୍ରଙ୍କ କୋଳରେ

କଅଁଳ କିରଣରେ ଚଢ଼ି
ପ୍ରଜାପତି ତଳକୁ ଓହ୍ଲାଏ
ଘାସଫୁଲ ଅନୁଭବ କରିନିଏ
ଅନ୍ତରଙ୍ଗ ଆଲୁଅର ଉଷ୍ମା

ଘାସ ଫୁଲ ବୁଝେ ନାହିଁ ସୌରଜଗତକୁ
ସୃଷ୍ଟିକୁ ପ୍ରଦକ୍ଷିଣକୁ ଅୟନାନ୍ତକୁ
ଘାସଫୁଲ କେବଳ ବୁଝେ
ଲାଲ ଟୁକଟୁକ ସାଧବ ପୋକର ସ୍ପର୍ଦ୍ଧାକୁ
ପ୍ରଜାପତି ଡେଣାରୁ ଖସିପଡୁଥିବା ଜ୍ୟୋତିକୁ
ମଉଳି ପଡୁଥିବା ପତ୍ରର ଶେଷ ବିଳାପକୁ

ମାଟିକୁ ଛୁଇଁ ଉପରକୁ ଅନାଏ
ଘାସଫୁଲ ଅପେକ୍ଷାରେ ରହିଥାଏ
କେତେବେଳେ ତାରାଙ୍କର ଜାଲ ଭିତରୁ
ଆକାଶ ତା ଉପରେ ଆଣି ଅଜାଡ଼ି ଦେବ
ଗଛପତ୍ର ଖରା ବର୍ଷା ଅନ୍ଧାର ଆଲୁଅରୁ
ସାଦରେ ସଂଗ୍ରହ କରି ଆଣିଥିବା
ସାର୍ବଜନୀନ ସ୍ନେହର କେତୋଟି ଶିଶିରବିନ୍ଦୁ

## ଗାଁ ମଶାଣି

ଦିନବେଳେ ଖାଁ ଖାଁ ପଡ଼ିଆ
କାଉର ଥଣ୍ଟ ନାହିଁ କୋଇଲିର ବେଣ୍ଟ ନାହିଁ
ବାଦୁଡ଼ି ଜପ କରୁଥାଏ ଝଙ୍କା ବରଗଛରେ
ଖଣ୍ଡିଆଭୂତ ଧାଇଁ ଧାଇଁ ବୁଲୁଥାଏ

ଖରାନାଚ ଭିତରକୁ ପଶିପାରେ ନାହିଁ

ଅନ୍ଧାର ହେଲେ ସବୁ ଦୃଶ୍ୟ ହୁଅନ୍ତି
ଚଳପ୍ରଚଳ ହେଉଥିବା ପ୍ରେତଯୋନି
ଜନଶ୍ରୁତିର ଜୀବନ୍ତ ଚରିତ୍ରମାନ
ଜୁଳୁଜୁଳିଆ ପୋକ ଆସି ଲୁଚକାଳି ଖେଳେ
ଅତୃପ୍ତ ଆତ୍ମାମାନଙ୍କ ସହିତ
ଭୂତମାନେ ସହର ବସାଇ ଦିଅନ୍ତି
ଭଙ୍ଗା ହାଣ୍ଡି କୋକେଇ ବାଉଁଶର
ରୂପକଥାର ନୀତିଶିକ୍ଷା ସୀମାରେ

ପାଖ ଗାଁ ଯେତେବେଳେ ମରି ପଡ଼ିଥାଏ
ମଶାଣିରେ ଜୀବନ ଆସେ
ପେଚା କୁହାଟ ଛାଡ଼େ ଡାହୁକ ବାହୁନେ
ହୁଁ ହାଁ ତାଳ ଦିଏ ଡାଆଣୀର ଚାପା କାନ୍ଦରେ
ଚିରଗୁଣୀ ନିଆଁ ଜଳାଏ
ଖପୁରୀ ଭିତରୁ ସାପ ବାହାରି ଆସେ
ପଡ଼ିଆ ସାରା ଫେରଣ୍ଡାର ଡାକ ପଇଁତରା ମାରେ

କର୍ମଫଳର ଗଦା ଗଦା ପାଉଁଶ ଭିତରେ
ପ୍ରାୟଶ୍ଚିତ୍ତର ଦିକି ଦିକି ନିଆଁ ଜଳୁଥାଏ
ଲିଭିଲା ଜୁଇ ପାଖରେ ଆଉ କେହି ନାହାନ୍ତି
ମଡ଼ାଚଣ୍ଡିଆମାନେ ଭୟରେ ପଳାଇ ଗଲେଣି
ପାହାନ୍ତା ପହରରେ ସବୁ ଚୁପଚାପ
କୌଣସି ତର୍କ ସଂଗତି ନାହିଁ ଯୌକ୍ତିକତା ନାହିଁ
କେବଳ ଅନ୍ଧବିଶ୍ୱାସ ଓ ଆତଙ୍କର ରାଜତ୍ୱ
ଭୟମିଶା ସକାଳର ଥଣ୍ଡା ପବନ
ଭାସିଯାଏ ଶୋଇପଡ଼ିଥିବା ଗାଁ ଆଡ଼େ
ଦୁଃସ୍ୱପ୍ନ ହୋଇ ପଶିଯାଏ ନିଷ୍ପାପ ନିଦ ଭିତରେ

# ସାଇରେନ

କର୍ଫ୍ୟୁର ସହରରେ
ହଠାତ ଆରମ୍ଭ ହୁଏ
ଯାଇ ତୀର ଭଳି ଭେଦ କରେ
ହସପିଟାଲର କାନ୍ଥ ସ୍କୁଲଘରର କଳାପଟା
ପାର୍କର ସବୁଜିମା ମନ୍ଦିରର ନୈଷ୍ଠିକତା
ସାଧାରଣ ମଣିଷର ଅନ୍ତରାତ୍ମାକୁ

କୌଣସି ପ୍ରତିବନ୍ଧ ନାହିଁ
ତୀକ୍ଷ୍ଣ ଧାର ବିଦ୍ଧ କରିଯାଏ
ପରିବାରର ଦୈନନ୍ଦିନ ଆହ୍ନିକ
ସହରର ନିରୀହ ନିର୍ଘଣ୍ଟ
ଲଙ୍ଘିଯାଏ ଜୀବନର ନିୟମିତ ପରିସର
ଭାଙ୍ଗିଦିଏ ଦିନଚର୍ଯ୍ୟାର ସରଳ ଗତିକୁ

ମନ ଭିତରେ ଶଙ୍କା ବୁଣିଦିଏ
କାନ୍ଧ ଉପରେ ବସେ ଭାର ହୋଇ
ପାଦରେ ଶିକୁଳି ବାନ୍ଧିଦିଏ
ଜିଭରେ ପ୍ରତିରୋଧ ଲଗାଏ
ଉପରକୁ ଉଠିଥିବା ହାତମୁଠାକୁ ବନ୍ଦ କରେ

ସାଇରେନ ଗର୍ଜେ ରଡ଼ି ଛାଡ଼େ
ହୁଙ୍କାରେ ଚିତ୍କାର କରେ
ଭୟଭୀତ ଆତଙ୍କିତ କରେ
ସଞ୍ଚରିଯାଏ ଗଳିରୁ ଗଳିକୁ

ଭୁଲରେ ଘରୁ ବାହାରି ଆସଥିବା ପିଲାଟି
ରାସ୍ତା ଉପରେ ତାଳିମାରି ହସେ
ସାଇରେନ ହଠାତ ବନ୍ଦ ହୋଇଯାଏ
ହୁଙ୍କାରେ ଚିତ୍କାର କରେ
ଭୟଭୀତ ଆତଙ୍କିତ କରେ
ସଞ୍ଚରିଯାଏ ଗଳିରୁ ଗଳିକୁ

ଭୁଲରେ ଘରୁ ବାହାରି ଆସଥିବା ପିଲାଟି
ରାସ୍ତା ଉପରେ ତାଳିମାରି ହସେ
ସାଇରେନ ହଠାତ ବନ୍ଦ ହୋଇଯାଏ
ନିଜର କ୍ଲୀବତ୍ୱ ଓ ପାପବୋଧରେ ମୁହ୍ୟମାନ
ଫାଶୀ ଆସାମୀର ଶେଷ ଦୀର୍ଘଶ୍ୱାସ ଭଳି

## ପରକୀୟା

ଏଠାରେ କୌଣସି ସ୍ୱତଃସିଦ୍ଧ ସତ୍ୟ ନାହିଁ
ସବୁବେଳେ ଦ୍ୱିଧା ଓ ସଂଶୟ
ଅନ୍ଧାର ଯମୁନାର ଜଳଧାରା ଭଳି
କେଉଁ ଛନ୍ଦ ନେଇ ଆସେ ଯାଏ
କଣ ବୁଝେ କଣ ଭାବେ କଣ ଚାହେଁ
ପ୍ରଶ୍ନ କଲେ ହଁ ନାହିଁ କିଛି କୁହେ ନାହିଁ
ଚୁପଚାପ ନିଜର ପ୍ରବାହରେ ବ୍ୟସ୍ତ ରହିଥାଏ

ଆଉ ପଛକୁ ଫେରି ହୁଏ ନାହିଁ
ଘର ବାହାରକୁ ପାଦ ବଢ଼ାଇଲେ
ପଛର କବାଟ ସବୁ ବନ୍ଦ

ଆଗରେ ଯଦିଓ କିଛି ବି ନଥାଏ
ନା ରାସ୍ତା ନା ଅତୀତ ନା ଭବିଷ୍ୟତ
କେବଳ ବର୍ତ୍ତମାନର ରୋମାଞ୍ଚିତ ଯନ୍ତ୍ରଣା

କୌଣସି ଆଉ ଇଚ୍ଛା ନଥାଏ
କିଛି ବି ପ୍ରତ୍ୟାଶା ନ ରଖି
ନିଜକୁ ଉତ୍ସର୍ଗ କରିଦେବା ବ୍ୟତୀତ
କାହାରି ଆଉ କୌଣସି ସଂଗତି ନାହିଁ
ଇଚ୍ଛା ନାହିଁ ଅନିଚ୍ଛା ନାହିଁ ପୂର୍ବାପର ନାହିଁ
ସବୁ ଯାଇ କେନ୍ଦ୍ରିତ ହୋଇଥାଏ
ମନର ଅନ୍ତରତମ ଅଭ୍ୟନ୍ତରରେ

ପାପ ନାହିଁ ପୁଣ୍ୟ ନାହିଁ
ପାଇବାରେ ଅନ୍ତିମ ଆନନ୍ଦ ନାହିଁ
ପାଇବା ପରେ ଆହୁରି ପାଇବାର ଇଚ୍ଛା
ନ ପାଇବାରେ ଶେଷ ନିରାଶା ନାହିଁ
କେବଳ ପୁଣି ନ ପାଇବାର ଭୟ
ପ୍ରସ୍ଥାନ ନାହିଁ ଆଗମନ ନାହିଁ
କେବଳ ଏକ ଚଳମାନ ସ୍ଥିତି
ମୃତ୍ୟୁ ନାହିଁ ଜୀବନ ନାହିଁ
କେବଳ ଏକ ଅଥର୍ବ ଅଗ୍ରଗମନ

କେବଳ ଏକ ସମ୍ମୋହିତ ଉପତ୍ୟକା ଉପରେ
ପୁଲକିତ ପ୍ରତୀକ୍ଷାରେ ରହିଥିବା
ଯୁଗପତ୍ ଆହ୍ଲାଦ ଓ ବିଷାଦ ନେଇ
ନଦୀର ସ୍ରୋତ ଭଳି ବଂଶୀଧ୍ୱନି ଭଳି
ପ୍ରତିଫଳ ନାହିଁ ପରିଣାମ ନାହିଁ
ତଥାପି ଜୀବନର ଶୂନ୍ୟସ୍ଥାନ ସବୁ
ପ୍ରତିନିୟତ ପରିପୂର୍ଣ୍ଣ ହେଉଥାଏ

ମନକୁ ଅଥୟ କରୁଥିବା ସ୍ୱପ୍ନ ସ୍ମୃତି
ସମ୍ଭାବନା ଆଶା ବିଶ୍ୱାସ ଉତ୍ତେଜନା ଭଳି
ଇନ୍ଦ୍ରିୟାତୀତ ଅବାସ୍ତବ ଚେତନାମାନଙ୍କରେ

## ଖରାଦିନ

ମେ ମାସର ମୌନ ସହର
ଚାରିଆଡ଼ ଶୂନଶାନ ତାଲା ବନ୍ଦ
ଝାଞ୍ଜି ଉଙ୍କିମାରି ଡାକେ ପ୍ରତ୍ୟେକ ଫାଙ୍କରେ
କେହି କିନ୍ତୁ କବାଟ ଖୋଲେ ନାହିଁ

ଧୂଳି ଧୂସରିତ ଉପସଂହାର
ଛାଇଯାଏ ଅନ୍ୟ ସବୁ ରଙ୍ଗକୁ
ଘଣ୍ଟିର ବେସୁରା ଧ୍ୱନି ରୁଦ୍ଧ ହୁଏ
ଧୂଆଁରେ ଲୁଚିଯାଇଥିବା ଛାତରେ
କାଉ ଧଇଁସଇଁ ଉଡ଼ିଆସି ବସେ
ମୁମୂର୍ଷୁ କୁକୁରର କ୍ଷୟିଷ୍ଣୁ ଛାଇରେ
ମରୀଚିକା ଏକୁଟିଆ ଉକୁଟୁଥାଏ
ନିଛାଟିଆ ଛକର ଶେଷ ସୀମାନ୍ତରେ

ଆକାଶ ଥମ ଥମ ପବନ ଗୁମ
ଟେଲିଫୋନ ତାର ଚୁପଚାପ
ଶବ୍ଦ ସବୁ ଓଠରେ ଶୁଖି ଯାଇଥାନ୍ତି
ଖଣ୍ଡିଆ ଭୂତରେ ଚଢ଼ି ଉଡ଼ି ବୁଲୁଥାଏ
ଖାଁ ଖାଁ ଖାଲି ଖରାବେଳ
ବିଜୁଳି ହଠାତ୍ ବନ୍ଦ ହୋଇଯାଏ

ରୋକଠୋକ ନିର୍ଜଳା ନିର୍ଣ୍ଣୟରେ
ଡାକବାଲା ପତ୍ର ସବୁକୁ ଫିଙ୍ଗିଦିଏ
ବିରକ୍ତିରେ ଧୂଳିଝଡ଼ ଭିତରକୁ

ଲୁ ଆସେ ଯାଏ ଏକା ଏକା
ରାସ୍ତାର ଏ ପାଖରୁ ସେ ପାଖକୁ
ଚୁପ ଚୁପ ଶୋଷିନିଏ କଥାବାର୍ତ୍ତା ଚଳାଚଳ
କୋଳାହଳ କାର୍ଯ୍ୟନିର୍ଘଣ୍ଟକୁ
ଲୋକବାକ କେହି କୁଆଡ଼େ ନାହାନ୍ତି
ପବନ ପୁନଃ ପୁନଃ ଶୁଣାଇଯାଏ
ତାର କଣ୍ଠାଗ୍ରତ ଶେଷ କଥାକୁ
ସବୁ କିଛି ଧୂଳିରେ ପୋତି ହେଉଥାଏ
ରାସ୍ତା ଦି ପାଖର ପରସ୍ପର ସମ୍ପର୍କର ପ୍ରଚେଷ୍ଟା
ତରଳିଯାଏ ଟକମକ ଆଉଟା ପିଚୁରେ

# ଚା କପ୍

କେଟଲିରେ ପାଣି ଫୁଟେ
ଉତ୍ତେଜିତ ରକ୍ତ ଭଳି
ତାର ସ୍ଫୁରଣ ଚମକାଇ ଯାଏ
ପ୍ରତୀକ୍ଷାର ପୂର୍ବାଶାକୁ
ଅନାଗତ ସକାଳମାନଙ୍କ ପାଇଁ

ପୂର୍ବପୁରୁଷମାନଙ୍କ ପାପରେ ଜର୍ଜରିତ
ପତ୍ର ନିଜକୁ ସମର୍ପଣ କରିଦିଏ
ଅନୁଭବର ଉପକୂଳରେ ନ୍ୟସ୍ତ

ଜନ୍ମାନ୍ତରର ଦାବି ପାଖରେ

ମଧୁରତା ମିଶିଯାଏ
ତୀବ୍ର ଉଷ୍ଣତା ସହିତ
ଅଭିଯୋଗର ପ୍ରମାଣପତ୍ର ଖୋଜି
ପ୍ରତିବାଦର ବର୍ଣ୍ଣମାଳା ସନ୍ଧାନ କରି

ଚାମଚ ଏକାକୀ ପ୍ରହରୀ ଭଳି
ଏପାଖ ସେ ପାଖେ ଖୋଜି ବୁଲୁଥାଏ
ଇତିବୃତ୍ତର ଅନ୍ଧ ଉପତ୍ୟକାରେ
ପଳାତକ ଅନ୍ତର୍ଦୃଷ୍ଟିମାନଙ୍କୁ

ଊର୍ଦ୍ଧ୍ୱମୁଖୀ ଧୂଆଁର କୁଣ୍ଡଳୀ
ବାରମ୍ବାର ସ୍ମରଣ କରାଏ
କାହିଁ କେଉଁ ଦୂର ଦେଶରୁ ଆସି
ଅନାତ୍ମୀୟ ଚା ବଗିଚାରେ
କ୍ରୀତଦାସୀ ଭଳି କାମ କରୁଥିବା
ଝିଅଟିର ଅସରନ୍ତି ବ୍ୟଥାକୁ
କପ୍‌ର ନିବନ୍ଧ ଭିତରେ ଯାହା
ସଞ୍ଚିତ ସନ୍ତୁଳିତ ଏବଂ ସତତ ଅନୁଭୂତ

# ହସପିଟାଲ

ଆଉ ପୃଥିବୀକୁ ଜିଣିନେବାର ଦମ୍ଭ ନାହିଁ
ଆଖି ଖୋଲିଲେ ଦେଖାଯାଏ
କେବଳ ନିର୍ଲିପ୍ତ ଛାତର ଧୂସରତା
ମଉଳାଫୁଲ ଓ ବାସି ସମୟର ଗନ୍ଧ
ଜରିଯାଏ ସମଗ୍ର ଅତୀତ ଭିତରକୁ

## ଏକ ନିଶ୍ଚେତକ ସିଂହାବଲୋକନରେ

ସମସ୍ତେ ନିଶ୍ଚଳ ପଡ଼ି ଆସନ୍ତି
କ୍ରମାଗତ ନ ପାଇବାର ନୈରାଶ୍ୟରେ
ଧମନୀରେ ଧାଉଁଥିବା ଅପହଞ୍ଚ ଆୟାସ
ରକ୍ତରେ ଛଟପଟ ଛୋଟ ଛୋଟ ଇଚ୍ଛା
ସ୍ନାୟୁରେ ଅବଶ ଅସମ୍ପୂର୍ଣ୍ଣ ଦୁରାଶା
ନିଶ୍ୱାସରେ କଷ୍ଟ ପାଉଥିବା ବୁଝାମଣା
ଗଳାରେ ଅଟକି ରହିଥିବା ଅନ୍ତର୍ଦ୍ୱନ୍ଦ୍ୱ

ଆଉ କେହି ଅଂଶୀଦାର ନାହିଁ ଭାଗ୍ୟରେ
ଦେହ ଉପରେ ନର୍ସର ହାତ ଅନୁଭୂତ ହୁଏ ନାହିଁ
ସମସ୍ତେ ବୀଜାଣୁମୁକ୍ତ ହୋଇ ଘୁଞ୍ଚିଯାନ୍ତି ପାଖରୁ
ଖାଲି ଶିଶି ବୋତଲର ବଳକା ସଦିଚ୍ଛା
ପ୍ରେସ୍କ୍ରିପଶନ କାଗଜର ମପାଚୁପା ଆୟୁ
ସାଲାଇନ ପାଣିରେ ଟୋପା ଟୋପା ସଂଜୀବନୀ
ଅକ୍ସିଜେନ୍ ସିଲିଣ୍ଡରରେ ବନ୍ଦ ଭବିତବ୍ୟ

ବାରଣ୍ଡାରେ ପଦଚାରଣା କରୁଥାଏ ଡାକ୍ତର
ଶେଷ ନିର୍ଣ୍ଣାୟକର ନିଷ୍ପକ୍ଷ ଭୂମିକାରେ
ପବନ ଆସି ଦେହକୁ ଥରାଇ ଦିଏ
ବିଞ୍ଚିଦିଏ ପରମ କରୁଣାରେ ଭରପୂର କରି
ଶାନ୍ତି ଓ ଶୀତଳତାର ଅନ୍ତିମ ଅଭୟ

ଅଧୋଗତିଶୀଳ ଦେହ ଆଉ କୌଣସି
ମହତ୍ତର କାରଣ ଖୋଜି ପାଏ ନାହିଁ
ନିଶ୍ୱାସକୁ ଟାଣି ଓଟାରି ଜୀବନକୁ
ଆଉ କେତୋଟି ନିଃସାର ମୁହୂର୍ତ୍ତ ପର୍ଯ୍ୟନ୍ତ
ବଢ଼ାଇ ନେବାର ଜାନ୍ତବ ଇଚ୍ଛା ବ୍ୟତୀତ

## କଲ୍ଲୁରୀବେଷ୍ଟ

ମତେ ଏମିତି ଯାହା କାଗଜ ଦିଅ
ଯାହା ଉପରେ ମୁଁ
ନାନାବାୟା ଗୀତ ଲେଖିବି

ମତେ ଏମିତି କଲମ ଦିଅ
ଯେଉଁଥିରେ ସାଦା କାଗଜ ଉପରେ
ମୁଁ ନାନାବାୟା ଗୀତ ଲେଖିବି

ମତେ ଏମିତି ହାତ ଦିଅ
ଯେ ମୋର ହାତକୁ ଚଳାଇବ
ଯାହା କଲମକୁ ଧରିବ
ଯେଉଁଥିରେ ସାଦା କାଗଜ ଉପରେ
ମୁଁ ନାନାବାୟା ଗୀତ ଲେଖିବି

ମତେ ଏମିତି ମନ ଦିଅ
ଯେ ମୋର ହାତକୁ ଚଳାଇବ
ଯାହା କଲମକୁ ଧରିବ
ଯେଉଁଥିରେ ସାଦା କାଗଜ ଉପରେ
ମୁଁ ନାନା ବାୟା ଗୀତ ଲେଖିବି

ମତେ ଏମିତି ସ୍ୱପ୍ନ ଦିଅ
ଯାହା ମୋର ମନକୁ ଆନ୍ଦୋଳିତ କରିବ
ଯେ ମୋର ହାତକୁ ଚଳାଇବ

ଯାହା କଲମକୁ ଧରିବ
ଯେଉଁଥିରେ ସାଦା କାଗଜ ଉପରେ
ମୁଁ ନାନାବାୟା ଗୀତ ଲେଖିବି

ଏଥରକ ମତେ ଏମିତି
ଚେତନାର ନିଷ୍ପାପ ଅନୁସ୍ମୃତି ଦିଅ
ଯେ ମୋର ସ୍ୱପ୍ନରେ ଆସିବ
ଯାହା ମୋର ମନକୁ ଆନ୍ଦୋଳିତ କରିବ
ଯେ ମୋର ହାତକୁ ଚଳାଇବ
ଯାହା କଲମକୁ ଧରିବ
ଯେଉଁଥିରେ ସାଦା କାଗଜ ଉପରେ
ମୁଁ ନାନାବାୟା ଗୀତ ଲେଖିବି

# ରବିବାର

ବାହାରେ ଅଦୃଷ୍ଟର ଚକମକ କୋଳାହଳ
ଭିତରେ ଶ୍ମଶାନର ଥମଥମ ନିସ୍ତବ୍ଧତା
ରବିବାର ଘର ଭିତରକୁ ପଶି ଆସେ
ଉଦ୍ଧତ ମୁହଁକୁ ଉପରକୁ ଉଠାଇ

ରବିବାର ଜଳେ ଲିଭେ
ପ୍ରସାରିତ ସଙ୍କୁଚିତ ହୁଏ
ହସେ କାନ୍ଦେ ଏକା ଏକା ବସିଥାଏ
ଶ୍ଳଥ ଓ ସତ୍ୱର ହୁଏ
ଚୁପ ରହେ ବିସ୍ଫୋରିତ ହୁଏ

ସପ୍ତାହାନ୍ତ ସକାଳ ବେଳା
ରବିବାର ଜମିଯାଏ
ଗଦା ଗଦା ଖବରକାଗଜ ପୃଷ୍ଠାରେ
ଅମୀମାଂସିତ ଚିନ୍ତାର ଭାର ହୋଇ
ରବିବାର ମିଳାଇ ଯାଏ
ବିଳମ୍ବିତ ଚା କପ ଭିତରେ
ଉଚ୍ଚାଟର ଅନ୍ତିମ ନିର୍ଯାସ ହୋଇ
ରବିବାର ଉଡ଼ିଯାଏ ଖରାବେଳେ
ଶବ୍ଦର ଛଟପଟ ଡେଣାରେ ଚଢ଼ି
ନୀଳ ନିଃଶବ୍ଦର ଅନ୍ତସ୍ଥଳକୁ

ରବିବାର ଭାଙ୍ଗିଯାଏ ମନୋରଥର ବିଫଳତାରେ
ରବିବାର ମଉଳିଯାଏ
ବିଗତ ସୁଖର ହାଲୁକା ସ୍ମରଣରେ
କାନ୍ଥରୁ ଖସିପଡ଼େ ପୁରୁଣା ପୋଷ୍ଟର ଭଳି
ଲିଭିଯାଏ ସନ୍ଧ୍ୟାଦୀପର ନିଷ୍ପ୍ରଭତାରେ
ରବିବାର ସରିଯାଏ ଆରମ୍ଭ ହେବା ଆଗରୁ
ରବିବାର ଚାଲିଯାଏ ଅନ୍ୟ ରବିବାର ଭିତରକୁ

ରବିବାର ଆଣିଦିଏ ଅତଳ ଆଶ୍ୱାସନା
ସ୍ୱପ୍ନ ଦେଖାଏ ବର୍ଷର ପ୍ରତିଟି ଦିନ ରବିବାର
କାନରେ ଆସି କହିଦିଏ
ସମୟ କାଟିବାର ଗୋପନୀୟ ମନ୍ତ୍ରଟି
ଗଭୀର ଧ୍ୟାନରେ ବସି
ମହାକାଳର ଦୋଳାରେ
ରବିବାର ଝୁଲୁଥାଏ ଝୁଲୁଥାଏ

# ସମୁଦ୍ର କୂଳ

ସବୁ ରାସ୍ତା ଉଭେଇଯାଏ ସମୁଦ୍ର ବାଲିରେ
ଲହରୀ ଲିଭାଇ ଦିଏ ସବୁ ଚିହ୍ନ
କୌଣସି ପ୍ରୟୋଜନରେ ଆସେ ନାହିଁ
ପିଲାଦିନର ନକ୍ସା ଓ ମାନଚିତ୍ର
ଅଚିହ୍ନା ନାଉରୀ ଯେତେବେଳେ
ନୌକା ନେଇ ଚାଲିଯାଏ ଅଜଣା ସୂର୍ଯ୍ୟୋଦୟକୁ

ଇତସ୍ତତଃ ପଡ଼ିଥିବା ଶାମୁକାରେ ଭାଗ୍ୟ ନାହିଁ
ଗର୍ବ ସବୁ ଚୂରମାର ଉଡୁଥିବା ଶୁଖିଲା ପତ୍ରରେ
ଝାଉଁଗଛରେ କେବଳ ମେଞ୍ଚା ମେଞ୍ଚା ହାହାକାର
ବାଲିକୁଦ ବସିଥାନ୍ତି ଦାୟାଗତ ଦୁଃଖକୁ ଆବୋରି
ସମୁଦ୍ର ଫୁତ୍କାର କରେ ଫେରାଇ ଦିଏ ନିମନ୍ତ୍ରଣ
ଭୁଲି ଯାଇଥିବା କଥନିକା ସବୁକୁ ଆଣି
ଉପରକୁ ଫିଙ୍ଗିଦିଏ ଆବର୍ଜନା ସହିତ

ଆଖିର ଜଳାତଙ୍କ ଆକାଂକ୍ଷା ଯାଇ
ମଝି ସମୁଦ୍ରରୁ ଲକ୍ଷ୍ୟଭ୍ରଷ୍ଟ ଫେରିଆସେ
ନୀଳ ଏକାନ୍ତରୁ ଭାସି ଆସେ ବିପନ୍ନ ସ୍ୱର
ଭୟ ଏବଂ ରୋମାଞ୍ଚରେ ଭରପୂର
ଲବଣାକ୍ତ ପବନରେ କିଛି ବର କିଛି ଅଭିଶାପ
ଜଳକଣା ଭେଦିଯାଏ ମନର ନିଭୃତ
ସିକ୍ତ କରିଦିଏ ସମସ୍ତ ସ୍ମିତ ସ୍ମରଣକୁ

ସ୍ତୂପ ଉପରେ ବସି କଳନା କଲାବେଳେ

ମେଘ ଛାଇଯାଏ ବିଚାରକର କୋପଦୃଷ୍ଟି ଭଳି
ଭଙ୍ଗା କାଠିକୁଟା ହାତରେ ସଜାଡ଼ି
ଦେଶାନ୍ତର ଯାତ୍ରା କଥା ଭାବିଲେ
ଦୁଇ ବିନ୍ଦୁ ବର୍ଷା ଆସି ସଚେତନ କରିଦିଏ
ଦ୍ୱୀପାନ୍ତରିତ ଆତ୍ମାର ସଜଳ ଅବସ୍ଥିତିକୁ

ଯଦି ମନେହୁଏ ସମୟ ଅଟକିଗଲା
ଆହୁରି କାନ ପାଖକୁ ନେଇ ଶୁଣିଲେ
ଘଡ଼ି ଠିକ ଚାଲିଥାଏ ଟିକ ଟିକ
ସମୁଦ୍ର ଗର୍ଜୁଥାଏ
ଆକାଶ ଆଁ କରି ଚିତ୍କାର କରୁଥାଏ
ଲହରୀ ଭାଙ୍ଗୁଥାଏ ଆସୁଥାଏ ଯାଉଥାଏ
ଏକାନ୍ତରୁ ଏକାନ୍ତ ଅନାଗତରୁ ଅନାଗତ

# ଜୁନ ଅନୁଚିନ୍ତା

– ୧ –

ଜଳକଣା ହାତରେ ଧରା ଦିଏ ନାହିଁ
ମେଘ ରୂପ ବଦଳାଇ ଚାଲିଯାଏ
ଏ କଥା କଣ କେବେ ସମ୍ଭବ
ସୂର୍ଯ୍ୟକୁ ଧରିଆଣି ଫିଙ୍ଗି ଦେବା
ସମୁଦ୍ରର ଅନନ୍ତ ମଝିକୁ

-୨-

ଅପେକ୍ଷାର ଝଲମଲ ଅପନ୍ତରା ଡେଇଁ
ମୃଗତୃଷ୍ଣା ଚମକୁଥାଏ ଲକ୍ଷ୍ୟସ୍ଥଳରେ
ସନ୍ଧାନୀ ଆଖି ଉଡ଼ିଯାଏ ଅଭୀଷ୍ଟ ଆଡ଼କୁ
ଯାଇ ଧକ୍କା ଖାଏ ପ୍ରତିବିମ୍ବିତ ବିଭ୍ରମରେ
ଯେଉଁଠାରେ ପାଣିର ନାମମାତ୍ର ନାହିଁ
ପକ୍ଷୀ ଉବୁଡୁବୁ ହେଉଥାଏ ନିଜର ରକ୍ତରେ

-୩-

ପୃଥିବୀ ଉଚ୍ଚାଟ ରହିଥାଏ
ମେଘର ପ୍ରତିଟି ଘଟାନ୍ତରରେ
ବସି କଳନା କରୁଥାଏ
ବର୍ଷାର ଆସନ୍ନ ସମ୍ଭାବନାକୁ
ଏକଥା କିନ୍ତୁ ଘାସଫୁଲଟିକୁ
ସବୁବେଳେ ଜଣା ଥିଲା

-୪-

ରାତି ସବୁଠାରୁ ବେଶି ବିପଜ୍ଜନକ
ବହୁବିଧ ହତୋତ୍ସାହୀ ଉପଲବ୍‌ଧି ଆଣିଦିଏ
ବିଭିନ୍ନ ଭୟଙ୍କରୀ ପ୍ରହରରେ
ଅନାୟାସ ସିଦ୍ଧ କରିଯାଏ
ଦେହଠାରୁ ମଧୁର ଯନ୍ତ୍ରଣା
ଯନ୍ତ୍ରଣାରୁ ସହଜ ମୃତ୍ୟୁ
ପ୍ରତ୍ୟୁଷ ତଥାପି ଆଣି ସଜାଇ ଦେଇ ଯାଏ
କେଜାଣି କାହିଁକି
ସୂକ୍ଷ୍ମାତିସୂକ୍ଷ୍ମ ଜିଜୀବିଷାମାନଙ୍କୁ
ସକାଳର ଖୋଲା ଝରକାବନ୍ଧରେ

-୫-

ସମୟ ସହିତ ବାଜି ରଖି
ତମର ଗଣନା ଭିତରୁ
ଭାଗ୍ୟକୁ ବିତାଡ଼ିତ କରିଦିଅ
ତା ନ ହେଲେ ଦେଖିବ
ତମର ଜୀବନକାଳ ସମ୍ପୂର୍ଣ୍ଣ ହୋଇଯିବ
ତମେ କେଉଁଭଳି ମୃତ୍ୟୁ ସମ୍ବରଣ କରିବ
ସେଇ ଗୋଟିଏ ମାତ୍ର ଚିନ୍ତାରେ

-୬-
ତମେ ବ୍ୟସ୍ତ ରହିଥାଅ
ଦୂରକୁ ଦେଖିବ ନା ପାଖକୁ
କାଲି ନା ଆଜି ନା କାଲି
ବ୍ୟତୀତ ଉପସ୍ଥିତ ନା ଭବିତବ୍ୟ
ସବୁ କିନ୍ତୁ ନିରର୍ଥକ
ସମୟ ବାହାରେ ଛିଡ଼ା ହେଲେ ଦେଖିବ
କାହା ସହିତ କାହାରି ବିରୋଧ ନାହିଁ
ଯାହା ନିତ୍ୟ ବର୍ତ୍ତମାନ
ତାହା ହିଁ ଚିରନ୍ତନ ଭବିଷ୍ୟତ

# ଷ୍ଟେସନ

ଭିତରକୁ ପଶିଲେ ଏକ ଅନ୍ୟ ସଂସାର
ଏଠାରେ ଅବସ୍ଥିତିର ଏକମାତ୍ର ନିୟାମକ
ପ୍ଲାଟଫର୍ମ ଟିକେଟ୍‌ର କାଗଜ ଟୁକୁଡ଼ା
ସ୍ୱତ୍ୱର ସ୍ୱାକ୍ଷର ବହନ କରେ
କାନ୍ଥରେ ଝୁଲୁଥିବା ସ୍ଥାନସଂରକ୍ଷଣ ତାଲିକା
ଏଠାରେ ଗତିବିଧି ନିୟନ୍ତ୍ରିତ ହୁଏ
ସମୟ ନିର୍ଘଣ୍ଟର ହଳଦିଆ ପୃଷ୍ଠାରେ

ଅପେକ୍ଷମାଣ ଗୃହସ୍ଥର କଣ୍ଠାଗତ ବିରକ୍ତିକୁ
ସହଜରେ ନିଜ ଭିତରକୁ ନେଇଯାଏ
ବିନା ବରାଦରେ କୋଇଲା ଚୁଲିରେ ସିଝୁଥିବା
ଚା କେଟଲିର ଦାର୍ଶନିକ ଧୂଆଁ
ବିଦାୟୀ ଆଖିର ତପ୍ତ ଅସ୍ଥିରତାକୁ
ସାମୟିକ ଅନ୍ତରାଳରେ ଭାଙ୍ଗିଦିଏ
ପ୍ରସ୍ଥାନର ସନ୍ତ୍ରାସକାରୀ ଘଣ୍ଟା ଧ୍ୱନି
ଯିବା ଆସିବାର ବିବ୍ରତ ବିଶୃଙ୍ଖଳାକୁ
ସମାନ୍ତରାଳ ଲୁହା ଧାରଣାରେ ସଜାଡ଼ି ଦିଏ
ପହଞ୍ଚିବାର ଦ୍ୱିଧାଗ୍ରସ୍ତ ଆଗ୍ରହ

କୁଲି ଆଗେ ଆଗେ ଚାଲୁଥାଏ
ସୁଟକେସରେ ସଯତ୍ନସଜଡା ଭାଗ୍ୟକୁ ଧରି
ପକେଟରେ ଟିକେଟକୁ ଆଉ ଥରେ ଛୁଇଁ
ଯାତ୍ରୀ କଳିନିଏ ନିଜର ଭବିଷ୍ୟତକୁ
ଡେରିରେ ଆସି ପହଞ୍ଚିଥିବା ଲୋକଟି
ଶେଷ ପାହାଚ ଉପରେ ଥାଇ ଦେଖେ
ଟ୍ରେନ ଆସି ଅଟକେ ନିର୍ଲିପ୍ତ ଭାବରେ
ସବୁ ମୁହଁ ସବୁ ସାଧାରଣ କୋଳାହଳ
ପୋଛି ହୋଇଯାଏ ହଠାତ୍
ସାରା ପ୍ଲାଟଫର୍ମ ଜଡ଼ ହୋଇଯାଏ
ଏକ ଅମୂର୍ତ୍ତ ଏକାଗ୍ରତାରେ

## ଝଡ଼

ଝଡ଼ ଆସିଲା ଅପ୍ରତ୍ୟାଶିତ ମୁହୂର୍ତ୍ତରେ

ରାତିର ଅନ୍ଧାର କ୍ରୋଧରୁ ବାହାରି
ଆକାଶର ଉତ୍ତୁଙ୍ଗ ଧୃଷ୍ଟତାରେ ଧକ୍କା ଖାଇ
ଅଯାଚିତ ଦୁଃଖ ଭଳି ଅଲୋଡ଼ା ଲାଞ୍ଛନା ଭଳି
ଛାତ ଉଲୁରାଇ କାନ୍ଥକୁ ଥରାଇ
ଗଛ ଡାଳରେ ପାଦ ଦେଇ ଝଡ ଆସିଲା
ଅରାଜକତାର ନିରଙ୍କୁଶ ପ୍ରତ୍ୟାବର୍ତ୍ତନରେ

ଝଡ଼ ଆସିଲା ଓ ଚାଲିଗଲା
ଇତିହାସର ଅନାମଧେୟ ଲୁଣ୍ଠନକାରୀ ଭଳି
ଦୈବୀ ଅଭିଶାପର ସ୍ୱାକ୍ଷର ବହନ କରି
ଜନ୍ମନେବା ଆଗରୁ କଲମରୁ ଲିଭିଯାଉଥିବା
କବିତାର କମନୀୟ ପଂକ୍ତି ଭଳି
ମନ ଭିତରର କନ୍ଦି ବିକନ୍ଦିକୁ
ଅନ୍ଧକାର କରି ଦେଉଥିବା
ନିଆଁର କ୍ଷଣଭଙ୍ଗୁର ଛାଇ ଭଳି

ଝଡ଼ ପରେ ଘର ମୁଣ୍ଡଟେକି ଠିଆହେଲା
ଆଉଜି ପଡ଼ିଥିବା କାନ୍ଥର ସ୍ପଷ୍ଟ ପ୍ରାକ୍‌କଥନରେ
ଖସି ପଡ଼ିଥିବା ଛାତର ଉଗ୍ର ଉତ୍ସୁକତାରେ
ପୁଣି ନିଜର ସ୍ଥିତିକୁ ଘୋଷଣା କଲା
ଅତ୍ୟାଚାରରେ ଭାଙ୍ଗି ନ ଯାଇଥିବା
ଅଦମ୍ୟ ମଣିଷର ସ୍ମୃତିସ୍ତମ୍ଭ ଭଳି
ଯାହାର ବିଧ୍ୱସ୍ତ ଅକ୍ଷରମାଳାରେ
କୌଣସି କ୍ଷୋଭ ଦୁଃଖ ଅନୁତାପ ନାହିଁ
ଅଛି ଏକ ଦୀପ୍ତିମାନ ଅତୀତର ଗର୍ବ
ଏବଂ ପାଣି ପବନ ଉପାଦାନମାନଙ୍କ ମଝିରେ
ଅଭିଜ୍ଞତା ଓ ଇତିହାସର ସାକ୍ଷ୍ୟ ବହନ କରି
ଠିଆ ହୋଇଥିବାର ଅଭିମାନ ଓ ଦମ୍ଭ

# କଳିଙ୍ଗ

ଧଉଳିର ଉପତ୍ୟକାରେ
ଭଙ୍ଗା ପଥର ଉପର ଦେଇ
ଘୋଡ଼ାରେ ଚଢ଼ି ପଳାଇଯାଏ ସକାଳ
କାଳର ଅଦୃଶ୍ୟ ହାତ
ଆକାଶ ଉପରେ ଲିପିବଦ୍ଧ କରିଯାଏ
ଇତିହାସର ବିଡ଼ମ୍ବନା ସବୁ

ଅବବାହିକାରେ ଜମି ରହିଥାଏ
କିମ୍ବଦନ୍ତୀର ପ୍ରସ୍ତ ପରେ ପ୍ରସ୍ତ
ଲିଭି ଅସୁଥିବା ଶିଳାଲିପି
ବ୍ୟର୍ଥ ପୁନରାବୃତ୍ତି କରୁଥାଏ
ବିଜୟର ସନ୍ଦିଗ୍ଧ ସ୍ପର୍ଦ୍ଧାକୁ
ଲାଲ ମାଟି ଯୋଡ଼ିଦିଏ ସମ୍ବତରୁ ସମ୍ବତ
ବଂଶାନୁକ୍ରମକୁ ଏକତ୍ରିତ କରେ ଧାନକ୍ଷେତ

ଶେଷ ଶଙ୍ଖଧ୍ୱନିର ପ୍ରତିଶବ୍ଦ ଲିଭିଗଲେ
ଅନୁଚ୍ଚ ପାହାଡ଼ର ଶୀର୍ଷ
କ୍ଷୟକ୍ଷତିର ହିସାବ ଉପରେ ପୂର୍ଣ୍ଣଚ୍ଛେଦ ଟାଣିଦିଏ
ଘାସଫୁଲ ମୁଣ୍ଡ ଉଠାଏ ଜୈତ୍ର ପତାକା ଭଳି
ରକ୍ତ ଭଳି ସଂଚରିଯାଏ ଦୟା ନଦୀର ପାଣି
ସାକ୍ଷୀ ହୋଇ ଉଭା ହୋଇଥିବା ଗଛ ସବୁ
ପୂର୍ବାଶା ଆଡ଼କୁ ଇଙ୍ଗିତ କରନ୍ତି
ନୂଆ ଶାଖାପ୍ରଶାଖାର ହାତ ବଢ଼ାଇ

କେହି ଜିତେ ନାହିଁ କେହି ହାରେ ନାହିଁ
ସ୍ୱକାଳ ହେଲେ ଉତ୍ତରଜୀବୀମାନେ

ବାହାରି ପଡ଼ନ୍ତି ନିଜ ନିଜର
ଜୀବିକାର ପ୍ରାତ୍ୟହିକ ସମରାଙ୍ଗନକୁ
କଳିଙ୍ଗ ପଛରେ ରହିଯାଏ
ଦେହକୁ ଭିକ୍ଷୁର ପୋଷାକରେ ଢାଙ୍କି
ଅଶୋକ ଚାଲିଯାଏ ନିଜର ନିର୍ବାଣକୁ

## ପିଲାଦିନ

ଘର ସବୁ ହାତ ଧରାଧରି ହୋଇ
ଧାଡ଼ି ବାନ୍ଧି ଠିଆ ହୋଇଥିଲେ
ଡାହାଣିଆ ଖରା ଆସି
ମେଘ ସହିତ ଲୁଚୁକାଳି ଖେଳୁଥିଲା
ଖଣ୍ଡିଆ ଭୂତ ଯାଇ ଲାଗିଗଲା
କଇଆଁ ଗଛ ଡାଳରେ
ଡାମରା କାଉ ଶୂନ ନେଇ ଉଡ଼ି ଚାଲିଗଲା

ଖରା ହେଉଛି ବର୍ଷା ହେଉଛି ବେଳରେ
ପଣକିଆ ଡାକ ହଜିଗଲା
ଚାଟଶାଳୀର ଟୁପୁର ଟାପୁରରେ
ନାନାବାୟା ଗୀତର ଶେଷ ଲହରୀରେ
ଗେଣ୍ଡାଳିଆ ପର ଝାଡ଼ି ଉଡ଼ିଗଲା
ଅରଣା ମଇଁଷି ଧସି ପଶି ଆସିଲା
ବର୍ଣ୍ଣବୋଧ ପୃଷ୍ଠା ଭିତରକୁ
ଜଳଛବି ଉପରକୁ ମାଛରଙ୍କା ଝାମ୍ପଦେଲା
ସିଲଟ ପଟା ଉପରେ
ଜହ୍ନିଫୁଲ ଠୋ ଠା ଫୁଟିଲା

ଇଟିକିଲି ମିଟିକିଲି କାଇଁଚସବୁ
ବସ୍ତାନି ଭିତରୁ ଫୁଟି ଖସି ପଡ଼ିଲେ
ଅଙ୍କା ବଙ୍କା ଶଗଡ଼ ଗୁଳାରେ
ମାମୁଘର କାଗଜ ଡଙ୍ଗା ବୁଡ଼ିଗଲା
ଚକାଚକା ଭଉଁରୀ ଭିତରେ
ଗୁଣ୍ଡୁଚିମୂଷା କାଟିନେଲା ଗୁଡ଼ିର ସୂତାକୁ

ତାଳଗଛ ଲମ୍ବା ଲମ୍ବା ହାତ ବଢ଼ାଇ
ଛୁଇଁ ଦେଲା ପ୍ରଥମ ତାରାକୁ
ବାଦୁଡ଼ି ଡେଣାରେ ଚଢ଼ି
ମୁହଁ ସଞ୍ଜ ଆକାଶରୁ ଓହ୍ଲାଇଲା
ଝିଣ୍ଟିକା ଗୋଡରୁ ଛିଟିକି ପଡ଼ିଲେ
ମେଞ୍ଚା ମେଞ୍ଚା ଜୁଳୁଜୁଳିଆ ପୋକ
ବିଲୁଆ ନନାର ହୁକା ହଜିଗଲା
ବେଙ୍ଗୁଲୀ ନାନୀ ରଡ଼ି ଛାଡ଼ି କାନ୍ଦିଲା
ଅଝଟ ଛୁଆ ଅଳି କଲା
ଜହ୍ନମାମୁକୁ ଆଣି ଗୁହାଳରେ ବାନ୍ଧିବାକୁ

ସରଗଶଶି ଧରା ଦେଲା ନାହିଁ
ଆସି ଖସି ପଡ଼ିଲା ନାହିଁ କାହ୍ନୁ ହାତରେ
ଜହ୍ନରୁ ଠେକୁଆ ଡେଇଁ ଚାଲିଗଲା
କଇଁଛ ସାଙ୍ଗରେ ଦୌଡ଼ିବା ପାଇଁ
କାନ୍ଦ କାନ୍ଦ ପିଲାଦିନ ରୁଷି ଚାଲିଗଲା
ଅଗନାଅଗନି ବନସ୍ତ ଭିତରକୁ
ଘୁଞ୍ଚିଯାଉଥିବା ପଦ୍ମଫୁଲର ପୋଖରୀରେ
ପିଲାଦିନ ବୁଡ଼ିଗଲା ଅଣନିଶ୍ୱାସୀ ହୋଇ
ପିଲାଦିନ ବାଟ ଭୁଲିଗଲା
ଅନାବନା କୋଳିବଣ ଭିତରେ
ଧୂଳିଆ ଭୂତରେ ହଜିଗଲା

ଡାଆଣୀ ଆଲୁଅରେ ଜଳିଗଲା
ପ୍ରଜାପତି ଡେଣାରେ ଉଡ଼ିଗଲା
ପିଲାଦିନ ଚାଲିଗଲା ଅବୋଧ ନିଷ୍ପାପ
ଗୋହିରି ରାସ୍ତାରେ ଶଗଡ଼ ଚଢ଼ି
ଅଜଣା ରାଇଜର ଅଫେରନ୍ତା ଗାଁକୁ

# କାଲିରାତି

କାଲିରାତି ମୁଁ ଦେଖିଲି ଅନ୍ଧାରକୁ
ନ ଖାଇ ଶୋଇ ପଡ଼ିଥିବା ଶିଶୁର ମୁହଁରେ
ପରସ୍ପର ଅଜଣା ହୋଇଯାଇଥିବା
ମୁହାଁମୁହିଁ ଠିଆ ହୋଇଥିବା ଝରକାରେ
ମୁଁ ଦେଖିଲି ଅନ୍ଧାରକୁ
ଅନ୍ଧ ହୋଇ ଲକ୍ଷ୍ୟଭ୍ରଷ୍ଟ ଉଡୁଥିବା
ନିଶାଚର ପକ୍ଷୀର ନିଷ୍ପ୍ରଭ ଆଖିରେ
ବିଦାୟ ନେଇ ଚାଲିଯାଇଥିବା ହାତର
ମୃତ୍ୟୁ ଭଳି ଶୀତଳ ସ୍ପର୍ଶରେ
ଅପରିଚିତ ଦେହର ଗୋପନୀୟ ଖୋପମାନଙ୍କରେ

କାଲି ରାତି ମୁଁ ଭେଟିଲି ନିସ୍ତବ୍‌ଧତାକୁ
କର୍ଫ୍ୟୁ ଲାଗିଥିବା ସହର ବସ୍ତିରୁ
ପୋଲିସ ଜିପ୍ ଚାଲିଯିବା ପରେ
ନିସ୍ତେଜ ବତୀଖୁଣ୍ଟର ନିର୍ଜୀବ ଦୀର୍ଘଶ୍ୱାସରେ
ମାଇଲ ମାଇଲ ନିର୍ଜନ ରାସ୍ତାର ବିକଳ ବିଳାପରେ
ଝଡ଼ ପରେ ସମୁଦ୍ରରେ ଲହରୀର ମୌନ
ଏବଂ ପୃଥିବୀର ଥମଥମ ରୁଦ୍ଧ ଆବେଗରେ

କାଲି ରାତି ମୁଁ ଚିହ୍ନିଲି ଦୁଃଖକୁ ଭୟକୁ
ନିର୍ବାନ୍ଧବ ସହରର ନିରାଶ୍ରୟ ଗଳି କନ୍ଦିରେ
ଶତଛିନ୍ନ ଦୁର୍ଗତିର ଅକିଞ୍ଚନ ଅସହାୟତାରେ
ଭାଗ୍ୟକୁ ସାକ୍ଷୀ ରଖି ଶୋଇଥିବା ଅନ୍ଧ ବିଶ୍ୱାସରେ
ପଶ୍ଚାତ୍ତାପ ସୀମାନ୍ତରେ ପାପର ଘେରରେ
ନ୍ୟୂନତାକୁ ଆବୋରି ରଖିଥିବା ଖେଦ ଓ କ୍ଷୋଭରେ

କାଲି ରାତି ମୁଁ ବୁଝିଲି ଅବାସ୍ତବତାକୁ
ଯାହା ଚେତନାରୁ ଅବଚେତନାକୁ ଘୂରିବୁଲି
ଦେହକୁ କରି ଦେଉଥିଲା ମନରୁ ପୃଥକ
ନିଦରେ ଦେଖାଉଥିଲା ଇନ୍ଦ୍ରଜାଲ
ଶୁଣାଉଥିଲା ପରୀକଥା ନାନା ବାୟା ଗୀତ
ମିଛ ପ୍ରବୋଧନା ଦେଉଥିଲା କୃତ୍ରିମ ଉପସଂହାରରେ

କାଲି ରାତି ମୁଁ ଦେଖିଲି ଉଦୟ ସୂର୍ଯ୍ୟକୁ
ଜାଜ୍ୱଲ୍ୟମାନ ପୋଷାକ ପିନ୍ଧି ମୋ ଆଗକୁ ଆସି
ମୁଠା ମୁଠା ସମ୍ଭାବନା ଓ ପ୍ରତିଶ୍ରୁତିର କିରଣ
ମୋର ସ୍ୱପ୍ନ ଭିତରକୁ ଫିଙ୍ଗି ଦେଇ
ଲମ୍ଫ ଦେଇ ଚାଲିଗଲା ସମ୍ମୋହିତ ଆକାଶ ଶୀର୍ଷକୁ

## ବଡ଼ଦାଣ୍ଡରେ ଭିଖାରୀ

ରାସ୍ତାର ଗୋଟିଏ ପ୍ରାନ୍ତରୁ
ରାସ୍ତାର ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ
ତାର ରୋଗ ଶୋକର ସମସ୍ତ ପୃଥିବୀ

ଭଙ୍ଗା କାନ୍ଥର କ୍ରମ ସଙ୍କୁଚିତ ଛାଇ
ନର୍ଦ୍ଦମା ଓ ବୁଲା କୁକୁର
ତାର ସୁଖ ସ୍ୱପ୍ନର ସମସ୍ତ ଘର ସଂସାର
ଛିଣ୍ଡା କନାରେ ବନ୍ଧା ତାର ନିରାପତ୍ତା
କଣା ଆଲୁମିନିୟମ ଥାଳିରେ ବର୍ତ୍ତମାନ
ଖୋଲା ଟିଣ ଡବାରେ ଅସମ୍ଭାବିତ ଭାଗ୍ୟ

ନୀଳଚକ୍ରକୁ ତାର ଆଖି ପାଏ ନାହିଁ
ସିଂହଦ୍ୱାର ତାର ପହୁଞ୍ଚ ବାହାରେ
ରଥର ଚକ ତାକୁ ଆଡ଼େଇ ଦେଇଯାଏ
ଧୂପର ଧୂଆଁରେ ତାର ପେଟ ପୂରେ ନାହିଁ
ବିଗ୍ରହ ତରଳେ ନାହିଁ ତାର ଦୀର୍ଘ ନିଶ୍ୱାସରେ

ତଥାପି ସେ କୃତଜ୍ଞତା ଜଣାଏ
ନିଜର ଅଯାଚିତ ଜୀବନ ପାଇଁ
ବଞ୍ଚି ରହିଥିବା ହିଁ ତାର କୃତକର୍ମର ଫଳ
ପ୍ରତିଟି ପେଟ ପୂରିବା ଏକ ଦିବ୍ୟ ଆନନ୍ଦ
ପ୍ରତିଥର ରୋଗରେ ନ ମରିବା ଏକ ପୁନର୍ଜନ୍ମ
ପ୍ରତ୍ୟେକଟି ନୂଆ ଦିନ ଗୋଟିଏ ଅଲୌକିକ ଚମତ୍କାର

ସାରାଦିନର ନିର୍ଜଳା ଉପବାସ ପରେ
ସେ ଜାଣେ ତାର ଜଣାଣ ଅଶୁଣା ଯିବ ନାହିଁ
ସନ୍ଧ୍ୟାର ଆରତି ପରେ
ଈଶ୍ୱର ଗାଡ଼ିରୁ ଓହ୍ଲାଇବେ
ଏବଂ ପକେଟରୁ କିଛି ରେଜା ପଇସା ଆଣି
ବରଦାନ କରିବା ମୁଦ୍ରାରେ ଫିଙ୍ଗିଦେବେ
ତାର କୃତକୃତ୍ୟ ଟିଣ ଡବା ଭିତରକୁ

# ବର୍ଷା ରାତି

ଆଖିରେ କଳା ମେଘ
ମୁହଁରେ ଥମଥମ ଆକାଶ
ସେଇ ଅପ୍ରତ୍ୟାଶିତ କଥାଟିକୁ
ସଙ୍କେତରେ ଜଣାଇ ଦେଲେ
ବର୍ଷା ଆସିବ ଭୀରୁ ପଦପାତରେ
ଚୁପଚାପ ଧୀର ଓ ସନ୍ତର୍ପିତ
ଆଖିରେ ଚମକ ଓଠରେ ହସ
ମନ ଭିତରେ ଅଦମ୍ୟ ଆଗ୍ରହ ହୋଇ

ନୀରବତା ଯେତେବେଳେ ଭାର ହୋଇ
ଜମି ରହିଥିବ ପରସ୍ପର ଉପରେ
ଅନ୍ଧାରକୁ ହାତରେ ଛୁଇଁଲେ
ବର୍ଷା ଆସିବ ପାଦରେ ଘୁଙ୍ଗୁର ପିନ୍ଧି
ଶବ୍ଦ ହୋଇ ସ୍ୱର ହୋଇ ପ୍ରତିଧ୍ୱନି ହୋଇ
ସାନ୍ନିଧର ଅସମ୍ଭବ ଇଚ୍ଛା ହୋଇ

ଦ୍ୱିଧା ଓ କାତରତା ଭାଙ୍ଗି ଦେଇ
ଶେଷରେ ସେଇ ମନ୍ତ୍ରଟି ଉଚ୍ଚାରଣ କଲେ
ବର୍ଷା ଆସିବ ବର୍ଚ୍ଛା ଧରି
ସଙ୍କୋଚର ପ୍ରତିବନ୍ଧ ଭାଙ୍ଗି
ବଜ୍ରର ନିର୍ଘୋଷରେ
ମେଦିନୀ କମ୍ପାଇ
ଦେହର ସୀମାନ୍ତରେ
ପ୍ରଳୟର ସଂକଳ୍ପ ହୋଇ

# ଶେଷ ଅଙ୍କ

ବିଦୂଷକର ଆଉ କୌଣସି ଭୂମିକା ନାହିଁ
ନାୟକର ବୀରୋଚିତ ସଂଳାପ ଶେଷ
ଖଳନାୟକ ନିହତ ହେଲାଣି
ମୁଦି ଓ ରୁମାଲର ରହସ୍ୟ ସମାହିତ
ଏଥରକ କେବଳ ଯବନିକାର ଅପେକ୍ଷା

ପର୍ଦ୍ଦା ପଛରେ ମୁର୍ଦ୍ଦାର ଉଠି ବସିଲେ
ତରବାରିରୁ ରକ୍ତ ପୋଛି ଦିଆଗଲାଣି
ପାର୍ଶ୍ୱନାୟକମାନେ ଲିଭାଇ ଦେଲେଣି
ନିଜ ନିଜ ମୁହଁରୁ ରଙ୍ଗ ଓ ଦୁଃଖର ଅଭିବ୍ୟକ୍ତି
ନେପଥ୍ୟରେ ଅବଶିଷ୍ଟ ଚରିତ୍ରମାନେ
ଦେହରୁ ଜରି ପୋଷାକ ଓହ୍ଲାଇବାରେ ବ୍ୟସ୍ତ

ଦର୍ଶକ ହାତ ଘଡ଼ିକୁ ଅନାଏ
ପଟ ପରିବର୍ତ୍ତନ ପୂର୍ବରୁ
ନିଜକୁ ମୁକ୍ତ କରିନିଏ
ମାୟାଜାଲର ମନୋରମ ବନ୍ଧନରୁ
କେତେ ସମୟ ଆଉ ଶରଣ ନେଇ ହେବ
ରୂପକଥାର ବନ୍ଦିଶାଳାରେ

ପୃଥିବୀରୁ ବଞ୍ଚିବା ପାଇଁ
ଯେଉଁପରି ଆଗ୍ରହର ସହିତ
ପଳାଇ ଆସିଥିଲା ପ୍ରେକ୍ଷାଳୟକୁ
ଶେଷ ପର୍ଦ୍ଦା ପଡ଼ିବା ପୂର୍ବରୁ ହିଁ

ସେତିକି ତତ୍ପରତାର ସହ
ବାସ୍ତବତାକୁ ଫେରିଯାଏ ଦର୍ଶକ
ସ୍ୱପ୍ନରୁ ନିସ୍ତାର ପାଇଁ

# ଦୂର ପର୍ବତ

ପଥର ନୁହେଁ ଜଙ୍ଗଲ ନୁହେଁ
ଅନାବନା ଗଛଲତା ନୁହେଁ
ଅଙ୍କାବଙ୍କା ରାସ୍ତା ନୁହେଁ
ମନ ଭିତରେ ଆରଣ୍ୟକ ସମ୍ଭାବନା ନୁହେଁ

ପର୍ବତ ହେଉଛି ହିମାନୀ ଓ ହିମାଚଳ
ଦିଗନ୍ତର ଅନ୍ୟ ପାର୍ଶ୍ୱ ଦୂରଦୂରାନ୍ତର
ସୂର୍ଯ୍ୟ ଏବଂ ଜ୍ଞାନୋଦୟ ମେଘ ଓ ରହସ୍ୟ
ଆଶ୍ରମ ଓ ବାନପ୍ରସ୍ଥ ତପସ୍ୟା ଓ ଧ୍ରୁବ
ସ୍ୱର୍ଗ ଯକ୍ଷ ମେଘଦୂତ ଅରୁନ୍ଧତୀ
ଋଷି ଓ ହିମପ୍ରବାହ ତୁଷାରମାନବ

ପର୍ବତ ହେଉଛି ସର୍ବସତ୍ତାରୂଢ଼
ମୁଣ୍ଡ ଟେକି ଠିଆ ହୁଏ
ପିନ୍ଧିନିଏ ଅରଣ୍ୟର ଜଟାଜୁଟ
ଆକାଶର ଔଦ୍ଧତ୍ୟକୁ ଭାଙ୍ଗିଦିଏ
ମେଘକୁ ଉଖାରି ଦିଏ ଶିଖରରେ
ସୂର୍ଯ୍ୟକୁ ଡାକରା ଦିଏ ଧବଳ ଅହଂକାରରେ
ସଂସାରରୁ ସଂପୂର୍ଣ୍ଣ ବିମୁକ୍ତ
ଉଚ୍ଚାକାଂକ୍ଷାର ଉଚ୍ଚତମ ଶୀର୍ଷରେ

ଚେତନାର ଚରମତମ ବିନ୍ଦୁ
କଳ୍ପନା ଓ ମୂଳତତ୍ତ୍ୱ ଦେଇ ଖୋଦିତ
ଯାହା ପରେ ଆଉ କୌଣସି ତଥ୍ୟ ନାହିଁ

ଯାହାର ରୂପକଥା ଗୁମ୍ଫାମାନଙ୍କରେ
ଜନ୍ମର ରହସ୍ୟ ସବୁ ବନ୍ଦଥାଏ
ପୃଥିବୀର ସାମାନ୍ୟ ଲୋକଟି
ତାକୁ ବୁଝିବାକୁ ଚେଷ୍ଟା କରୁଥାଏ
ବନ୍ଦ ପଥର କବାଟ ଆଗରେ
ନିଜର ସାରା ଜୀବନ କଟାଇ ଦିଏ
ଉନ୍ମୋଚନର ଅନଭ୍ୟସ୍ତ ମନ୍ତ୍ରଟିକୁ
ଉଚ୍ଚାରଣ କରିବାର ବ୍ୟର୍ଥ ପ୍ରଚେଷ୍ଟାରେ

## ଦଙ୍ଗା

ବିଭିନ୍ନ ଈଶ୍ୱରମାନେ ଆସି
ମୁହାଁମୁହିଁ ଠିଆ ହୋଇଗଲେ
ନିରୀହ ବସ୍ତିର ଛାତି ଉପରେ
ନିଜ ନିଜ ଭକ୍ତଙ୍କର ଫୌଜ ଧରି
ଅସହିଷ୍ଣୁତା ଅସ୍ତ୍ର ପାଲଟିଗଲା
ହାତରେ ଶକ୍ତି ଦେଲା କ୍ରୋଧ
ଘୃଣା ଟାଣିନେଲା ଆଗକୁ
ନିରୀହତାର ସରଳ ମୂଲ୍ୟବୋଧକୁ
ଶାସ୍ତ୍ରର ରୂଢ଼ିବାଦ ଲୋପ କରିଦେଲା

ତା ପରେ ଆରଣ୍ୟକ ହିଂସାର ରାଜତ୍ୱ
ରକ୍ତର ନୈବେଦ୍ୟ
କଟା ମୁଣ୍ଡର ଅର୍ଘ୍ୟ
ପୋଡ଼ିଯାଉଥିବା ଘରର ଧୂପ
ଏବଂ ଆର୍ତ୍ତନାଦର ସମବେତ ପ୍ରାର୍ଥନା

କର୍ଫ୍ୟୁ ଜାରି ହେବା ପରେ
ଈଶ୍ୱରମାନେ ଫେରିଗଲେ
ନିଜ ନିଜର ନିର୍ଦ୍ଧାରିତ ସ୍ୱର୍ଗକୁ
ଆମ୍ବୁଲାନ୍ସ ଆସି ଆହତମାନଙ୍କୁ
ହସପିଟାଲ୍ ନେଇଗଲା
ପୋଲିସ୍‌ଗାଡ଼ି ମଲାଲୋକଙ୍କୁ ନେଇଗଲା
ଶବ ବ୍ୟବଚ୍ଛେଦାଗାରକୁ
କାନ୍ଦ ସ୍ୱର ଓ ସାଇରେନ ମିଶିଗଲା
ଘରପୋଡ଼ିର ଧୂଆଁ ଓ ବାରୁଦ ଗନ୍ଧରେ

ନର୍ଦ୍ଦମାରେ ପଡ଼ିଥିବା ଶବଟିକୁ
କେହି ଦେଖି ପାରିଲେ ନାହିଁ
ଅଜଣା ଲୋକଟି ଆସିଥିଲା ଭିଖ ମାଗିବା ପାଇଁ
ତାର ଧର୍ମ କଣ କେହି ଜାଣନ୍ତି ନାହିଁ
ସେ ବର୍ତ୍ତମାନ ଶାସ୍ତ୍ର ଓ ଧର୍ମର ଊର୍ଦ୍ଧ୍ୱରେ
କିନ୍ତୁ ତାର ଆଖିର ମୃତ ପିତୁଳା
ଏ ପର୍ଯ୍ୟନ୍ତ କ୍ଷମାହୀନ ଅନାଇ ରହିଛି
ପଶ୍ଚାତ୍ତାପହୀନ ସ୍ୱର୍ଗ ଆଡ଼କୁ

# ପ୍ରତ୍ୟାଗମନ

ଅନେକ ଦିନ ପରେ ଘର
ଖାଁ ଖାଁ ଖୋଲା ପଡ଼ିଆ ଉପରେ
କେଉଁଠି ଆଉ କିଛି ନାହିଁ
କେହି କୁଆଡ଼େ ନାହାନ୍ତି
ସନ୍ତର୍ପଣର ସହିତ ଭିତରକୁ ପଶେ ଗୃହସ୍ଥ
ଭଙ୍ଗା କବାଟକୁ ଆଡ଼େଇ
ହାତରେ କଳଙ୍କି ଲଗା ଚାବିକାଠି ଧରି

ପଛରେ ରହିଗଲାଣି
ଉଦୁଉଦିଆ ଦି ପହରର ବସ୍
ଧୂଳି ରାସ୍ତା ଓ ବୁଦା ଜଙ୍ଗଲ ଆଗରେ
ଘର ଠିଆ ହୋଇ ରହିଛି
ଭଙ୍ଗାରୁଜା ବୟସକୁ ସମ୍ଭାଳି
ମୁହଁ ପୋତି ଭାବୁଛି କିପରି
ଦେଖୁ ଦେଖୁ ଉଜୁଡ଼ିଗଲା ଅଧା କାନ୍ଥ
କିଳିଣି ଖୋଲିଗଲା ଚଟାଣ ଭାଙ୍ଗିଗଲା
ଫଟୋ ଖସିପଡ଼ିଲା କାନ୍ଥ କଣ୍ଟାରୁ
ବୁଢ଼ିଆଣୀ ଆସି ଜାଲ ଟାଣିଦେଲା
ଛାତରୁ ଭଙ୍ଗା ଟେବୁଲ ଉପରକୁ
ଫାଟରେ ଗଛ ଉଠିଲା ଉଇ ଲାଗିଲେ ଥାକରେ
ବର୍ଷା ଘେରାଇ ଦେଲା ଚାରିପାଖେ ଅରମା
ଖରା ଆସି ଖାଇଗଲା ଆଖପାଖକୁ

ଲୋକଟି ଖୋଜୁଛି ପିଲାଦିନର ଖେଳନା
ପୁରୁଣା ଚିଠି କେଉଁଠି ଥିଲା ମନେ ନାହିଁ
ସ୍ମୃତି ଉପରେ ପ୍ରସ୍ତ ପରେ ପ୍ରସ୍ତ ଅଳନ୍ଧୁ
ଝୋଟି ଉପରେ ସାପକାତି

ରଙ୍ଗମଉଳା ଫଟୋରେ ବୟସର ଦାଗ
ଭଙ୍ଗା ଦର୍ପଣରେ ସବୁ କିଛି ଖଣ୍ଡବିଖଣ୍ଡ

ବାହାରେ ଘେରି ଆସୁଥିବା ମେଘକୁ ଅନାଇ
ଲୋକଟି ଭାବୁଛି ଫେରିଯିବା ବସ୍‌ର ସମୟ
ହାତରେ ଭଙ୍ଗା ଇଟା ଓ ଭୁଲା ଘଟଣାମାନ ଧରି
ବୁଝୁଛି ଆଉ ସଜାଡ଼ି ହେବ ନାହିଁ
ଉଜୁଡ଼ା ଅବସ୍ଥିତିର ଶେଷାବଶେଷକୁ
ବର୍ଷାରେ ଆଖି ଓଦା ମନ ଭିତରେ ସବୁ ଝାପ୍‌ସା
କିଛି ଆଉ ମନକୁ ଆସୁ ନାହିଁ
କେବଳ କଣା ଛାତରୁ ଟୋପା ଟୋପା ପାଣି ପଡ଼ି
ବିମନସ୍କ ବାଲଟି ଭର୍ତ୍ତି ହେଉଛି

# ବର୍ଷା ପରେ

ମେଘ କାନ୍ଦି କାନ୍ଦି ଚାଲିଗଲା
ଦଳ ଦଳ ଦିଗ୍‌ଭ୍ରାନ୍ତ ପକ୍ଷୀଙ୍କ ସହିତ
ଶୁଖିଲା ମାଟି ଉପରେ ଛଟପଟ ହେଉଥିବା
ବିନ୍ଦୁ ବିନ୍ଦୁ ବର୍ଷା ନିଶ୍ଚିହ୍ନ ହୋଇଗଲେ
ମନ୍ଦିରର ଶେଷ ଘଣ୍ଟିର ପ୍ରତିଧ୍ୱନି ଭଳି
ଗଛମାନେ ମୁହଁପୋତି ଠିଆ ହେଲେ
ମାଟି ଉପରେ ପ୍ରଥମ ବର୍ଷାର ମାଦକ ଗନ୍ଧ
ବିଷଣ୍ଣତା ଭଳି ଛାଇଗଲା ଘାସ ପଡ଼ିଆକୁ
ଅପରାହ୍‌ଣ ଏଥରକ ଉଦାସ ଓ ଏକାନ୍ତ

ଏଇଭଳି ସର୍ବଂସହା ସମୟରେ

ପୃଥିବୀ ପୁଣି ସମ୍ଭାଳିନିଏ ନିଜକୁ
ଚୁକ୍ତି କରିନିଏ ଋତୁଚକ୍ର ସହିତ
ଚମ୍ପା ରଙ୍ଗର ଖରା ଆସି ଚହଟିଯାଏ
ମେଘମୁକ୍ତ ସୂର୍ଯ୍ୟର ହସ ହସ ମୁହଁ ଚମକେ
ପାଣିର ଛୋଟ ଛୋଟ ହ୍ରଦର ଦର୍ପଣରେ
ବୁଢ଼ା ବୁଢ଼ା ଜଙ୍ଗଲର ଝଲମଲ ସବୁଜ ଉପରେ
ପ୍ରଜାପତି ଆଣି ସଜାଇ ଦିଅନ୍ତି ଛୋଟ ଛୋଟ ଇନ୍ଦ୍ରଧନୁ

ଆକାଶ କିନ୍ତୁ ଏ ସବୁକୁ ନ ଅନାଇ
ଏକାଗ୍ରଚିତ୍ତ ହୋଇ ଅପଲକ ଦେଖୁଥାଏ
ଗୋଟିଏ ବିଳମ୍ବିତ ବର୍ଷା ବିନ୍ଦୁ
ପତ୍ରର ଶିରାପ୍ରଶିରା ଦେଇ ଓହ୍ଲାଇ ଆସେ
ଏବଂ ପତ୍ରର ନଇଁ ପଡ଼ିଥିବା ଶୀର୍ଷରେ
ମୁହୂର୍ତ୍ତକ ପାଇଁ କିପରି ଇତସ୍ତତଃ ରହେ
ମାଟି ଉପରକୁ ଡେଇଁ ପଡ଼ିବା ପୂର୍ବରୁ

## କଫି ହାଉସ୍

ଠିକ୍ ସମୟରେ ଆସି ପହଞ୍ଚନ୍ତି ସେମାନେ
ଦିନାନ୍ତର ଅବଶତାକୁ ସାଙ୍ଗରେ ଧରି
ଦିନଟି ସହିତ ଚୁକ୍ତି କରି ନିଅନ୍ତି
ନିଜ ନିଜର ପ୍ରିୟ ଚଉକିକୁ ଖୋଜି ନେଇ

ପିଆଲାର ରୁଣୁଝୁଣୁ ସମନ୍ୱିତ କରିଦିଏ
ସେମାନଙ୍କର ବୌଦ୍ଧିକ ଯୁକ୍ତିତର୍କକୁ
ଚାମଚରେ ଗୋଳିଯାଏ ସାଂଖ୍ୟ ଓ ମୀମାଂସା
ଥାଳିଆ ମାନିନିଏ ଓଜସ୍ୱୀ ଘୋଷଣାକୁ
ପାନୀୟ ମିଶାଇଦିଏ ସ୍ୱପ୍ନ ଓ ସୀମାନ୍ତ
କୁଣ୍ଡଳୀକୃତ ଧୂଆଁ ସବୁ ଆତ୍ମସ୍ଥ କରିନିଏ

କୋଳାହଳର ଏକ ମାର୍ମିକ ଅଭିବ୍ୟକ୍ତିରେ

ପୋଡ଼ା ଡ଼ିଆସିଲ କାଠିରେ ଅଗ୍ନିଗର୍ଭ କ୍ରାନ୍ତି ହୁଏ
ବାଳ ସାଉଁଳାରେ ଖସିପଡ଼େ ରାଜମୁକୁଟ
ସତ୍ତା ମିଶିଯାଏ ଚଟାଣରେ ପାଉଁଶ ସହିତ
ଦୀର୍ଘଶ୍ୱାସରେ ତିଆରି ହୁଏ ମହାକାବ୍ୟର ଭୂମିକା
ଅଙ୍ଗୁଳି ନିର୍ଦ୍ଦେଶରେ ଖୋଲିଯାଏ ସମସ୍ତ ଅର୍ଗଳୀ
ଚଷମାର ଉଦାସ କାଚକୁ ପୋଛି ନେଲେ
ଆଉ କୌଣସି ସମସ୍ୟା ବାକି ରହେ ନାହିଁ

ରାସ୍ତା ଆରପାଖ ଘରେ ପ୍ରବଣ ଝିଅଟି
ଶେଷ ଥର ଝରକାର ପର୍ଦ୍ଦା ଟାଣିଦିଏ
କଫି ରଙ୍ଗର ମୁହଁଅନ୍ଧାର ଆସି
ଥଣ୍ଡା ପିଆଲାର ଶୂନ୍ୟକୁ ଭରିଦିଏ
ବୁଦ୍ଧିଜୀବୀ ଦାର୍ଶନିକ ବିଦ୍ରୋହୀ ଓ କବି
ନିଜେ ନିଜେ ସନ୍ତୁଷ୍ଟ ଓ ସାଫଲ୍ୟମଣ୍ଡିତ
ଫେରିଯାନ୍ତି ଆପଣାର ସଂକୀର୍ଣ୍ଣ ଗଳିମାନ ଦେଇ
ନିଜ ନିଜ ଇତର ଜୀବନର ସାମାନ୍ୟତାକୁ

# କବିତାର ଜନ୍ମ

ଶବ୍ଦଟି ମନର ନିଭୃତତମ କୋଣ ଭିତରୁ
ସନ୍ତର୍ପଣରେ ବାହାରକୁ ବାହାରିଲା
କଲମ ମୁନରେ ପାଦ ଦେଇ ଓହ୍ଲାଇଲା
ସମ୍ବେଦନଶୀଳ କାଗଜ ଉପରକୁ
ସଂକଳ୍ପ ଓ ସଂଭବନ ମଝିର
ସୂକ୍ଷ୍ମ ଦୂରତ୍ୱକୁ ଅନାୟାସ ଉଲ୍ଲଂଘନ କରି

ସେ ଆଉ ଗୋଟିଏ ଶବ୍ଦକୁ ଡାକିଲା
ପ୍ରତିଟି ଶବ୍ଦ ଡାକି ଆଣିଲା
ପୁଣି ଅନ୍ୟ ଏକ ଶବ୍ଦକୁ
କାଗଜ ଉପରେ ଶବ୍ଦମାନେ ଆସି
ପଂକ୍ତିବଦ୍ଧ ଛିଡ଼ା ହେଲେ
କାନ୍ଧରେ କାନ୍ଧ ମିଳାଇ ହାତରେ ହାତକୁ ଧରି
ନିଜ ନିଜର ସ୍ୱତନ୍ତ୍ର ଜନ୍ମ ଓ ତାତ୍ପର୍ଯ୍ୟର
ଅଧିକାର ସବୁକୁ ପଛରେ ରଖିଦେଇ

ଏଥରକ ପ୍ରତ୍ୟେକ ଶବ୍ଦ ଏଠାରେ
ଅନ୍ୟ ଶବ୍ଦମାନଙ୍କ ପାଖରେ ସମର୍ପିତ
କାହାରି ଆଉ କୌଣସି ପୂର୍ବାପର ନାହିଁ
ଶବ୍ଦମାନେ ବାଣ୍ଟିନେଲେ ନିଜ ନିଜ ଭିତରେ
ନିଜର ବିଭିନ୍ନ ଜନ୍ମର ସୁଖଦୁଃଖମାନଙ୍କୁ
ଶବ୍ଦମାନେ ପରସ୍ପରକୁ ଟାଣିନେଲେ
ଏକ ସହଜ ସ୍ୱଚ୍ଛନ୍ଦ ପରିସମାପ୍ତି ଆଡକୁ

ଶବ୍ଦାକୀର୍ଣ୍ଣ କାଗଜ ଉପରେ ବର୍ତ୍ତମାନ
ପଂକ୍ତିମାନେ ଅସ୍ଥିର ଅପେକ୍ଷାରେ
କେତେବେଳେ କାହାର ସମ୍ବେଦନଶୀଳ ଆଖି
ଅପ୍ରତ୍ୟାଶିତ ଆସି ଆବିଷ୍କାର କରିବ
ସେମାନଙ୍କ ବିନ୍ୟାସର ଅପୂର୍ବ ବ୍ୟଞ୍ଜନା
ଯାହା ନିଜକୁ ବାରମ୍ବାର ସଜାଇ ଯାଉଥିବ
ନୂଆ ନୂଆ ବିଲକ୍ଷଣ ବିସ୍ମୟରେ

# ପ୍ରସ୍ତୁତି

ତାଙ୍କ ସହିତ ମୋର ଭେଟ ହେବ
ତାହାରି ପ୍ରସ୍ତୁତିରେ ମୁଁ ଜନ୍ମ ନେଲି
ଶୈଶବ ଯୌବନ ଅତିକ୍ରମ କଲି
ସାଙ୍ଗସାଥୀ ପ୍ରିୟ ପରିଜନ ଘର ସଂସାର
ଜୀବିକା ଓ ଦାୟିତ୍ୱ ନିର୍ବାହ କଲି
ହସକାନ୍ଦ ରୋଗଶୋକ ଦେଶବିଦେଶ ଦେଇ
ବୟସ୍କ ହେଲି ଅଭିଜ୍ଞତା ଆହରଣ କଲି
ପୁଣି କେଉଁ ଅଜ୍ଞାତ ଅଭୀଷ୍ଟର ସନ୍ଧାନରେ
ଲକ୍ଷ୍ୟଭ୍ରଷ୍ଟ ରାସ୍ତା ରାସ୍ତା ବୁଲିଲି
ଏବଂ ପରିଶେଷରେ ବାଟ ଭାଙ୍ଗି ଦିନେ
ସଂଗ୍ରହାଳୟ ଭିତରକୁ ପାଦ ବଢ଼ାଇଲି
ଯେଉଁଠାରେ ମୋର ତାଙ୍କ ସହିତ ଭେଟ ହେଲା

କିନ୍ତୁ ଏ ସବୁର ଅନେକ ପୂର୍ବରୁ
ଯେତେବେଳେ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡରେ
କେଉଁଠାରେ କିଛି ବି ନଥିଲା
ଏକ ପ୍ରଚଣ୍ଡ ବିସ୍ଫୋଟରେ
ପୃଥିବୀର ଉତ୍ପତ୍ତି ହେଲା
ସୃଷ୍ଟିର ବିବର୍ତ୍ତନ କ୍ରମରେ
ଜୀବନ ସଞ୍ଚାର ହେଲା ମଣିଷ ଜନ୍ମ ନେଲା
ସାମ୍ରାଜ୍ୟ ଯୁଦ୍ଧ ଅକାଳ ମହାମାରୀ
ଏବଂ ଅନ୍ଧ ଯୁଗମାନଙ୍କ ଦେଇ
ସଭ୍ୟତା ଓ ସଂସ୍କୃତି ଆସିଲା
ଜନପଦ ଓ ସହର ବସିଲା
ସର୍ଜନା ହେଲା କଳା ଓ ବିଜ୍ଞାନ
ଶିଳ୍ପ ଓ ସ୍ଥାପତ୍ୟ ସାହିତ୍ୟ ଓ ସଙ୍ଗୀତ
ଗଢ଼ା ହେଲା ମନ୍ଦିର ଗୀର୍ଜାଘର
ସଭାଗୃହ ପାଠାଗାର

ଏବଂ ସଂଗ୍ରହାଳୟ

ତାଙ୍କ ସହିତ ମୋର ଭେଟ ହେବ
ସବୁ କେବଳ ତାହାରି ପ୍ରସ୍ତୁତିରେ

## ସକାଳ

ରାତି ଶେଷର ଘଣ୍ଟା ବାଜେ
ଏବଂ ସମୟର କାନ୍ଥରୁ
ମୁହୂର୍ତ୍ତଟିଏ ଭାଙ୍ଗି ଖସି ପଡ଼େ

ଝରକାରେ ପର୍ଦ୍ଦା ଟାଣି ଦେଲେ
ଦୁଃସ୍ୱପ୍ନ ଉଡ଼ି ପଳାଇଯାଏ
ଆଲୁଅ ପଶିଆସେ ଭିତରକୁ
ପବନର ଡେଣାରେ ଚଢ଼ି

କଳରୁ ପଡୁଥିବା ଟୋପା ଟୋପା ପାଣିରେ
କୌଣସି ସନ୍ଦେଶ ନ ଥାଏ
ତଥାପି ଦର୍ପଣ ତାର ଦିନପଞ୍ଜିକାରେ
ବହୁବିଧ ଘଟନା ଲିପିବଦ୍ଧ କରିଦିଏ

## ଭଙ୍ଗା ମନ୍ଦିର

ଏକ ପ୍ରାଗୈତିହାସିକ ଜୀବ ଭଳି
ସକାଳ ହେଲେ ନିଦରୁ ଉଠେ
ଭଙ୍ଗାମନ୍ଦିରର ଖଣ୍ଡ ମଣ୍ଡଳ
ସୂର୍ଯ୍ୟ ନିହାଣ ଚଳାଇଯାଏ ପଥର ଉପରେ
ଏଥରକ ଦୃଶ୍ୟ ହୁଅନ୍ତି
ରହସ୍ୟର ଛାଇଛାଇ ଖରା ଭିତରେ
ମିଥୁନ ମକର ଯକ୍ଷ ଯୋଗିନୀ
ଦ୍ୱାରପାଳ ବେତାଳ ଓ କୀର୍ତ୍ତିମୁଖ

କବନ୍ଧ ସୈନିକ ହାତ ରଖେ ତରବାରୀ ଉପରେ
ଆବକ୍ଷ ନାୟିକା ଆଖି ଖୋଲେ ସ୍ତନର ସ୍ପର୍ଦ୍ଧାରେ
ଭଙ୍ଗା ପଥର ଖଣ୍ଡ ଛଳନା କରନ୍ତି
ସତର୍କ ମୁଦ୍ରାରେ ବସିଥିବା ଗଜସିଂହର

ଗଛ ଲତାର ନିବୁଜ ଆର ପାଖେ
ଜୀବନ ଯାତ୍ରାର ଅମାୟିକ ହଲଚଲ
ଦୂରାନ୍ତରୁ ଭାସି ଭାସି ଆସେ
ଆଦି ଅତୀତକୁ ଭେଦ କରି ବହି ଆସୁଥିବା
ପ୍ରାଚୀନ ନଈର କୁଶଳ ସ୍ୱସ୍ତ୍ୟୟନ
ସ୍ମରଣର ଚକ୍ରବାଳରୁ ଉଡ଼ି ଆସୁଥିବା
ପକ୍ଷୀଙ୍କର ସହଜ ସମ୍ଭାଷଣ
ପୂର୍ବଜନ୍ମକୁ ରୋମନ୍ଥନ କରୁଥିବା
ଲୋକମାନଙ୍କର ଉତ୍ତେଜିତ ଚର୍ବିତଚର୍ବଣ
ସମସ୍ତଙ୍କୁ ଆନମନା କରିଦିଏ
ପଥର ଖୋପରୁ ବାହାରି ଆସୁଥିବା ଦୀର୍ଘଶ୍ୱାସ

ଭଙ୍ଗାମନ୍ଦିର ପାଇଁ କେହି ନାହାନ୍ତି ଏଠାରେ
ଶିଳ୍ପଶାସ୍ତ୍ରର ଜାଗରୁକ ନିୟମମାନଙ୍କ ବ୍ୟତୀତ
ତା ପାଇଁ ଏଠାରେ ସମୟ କେବଳ
ଇତିହାସର ନିଜକୁ ଆବିଷ୍କାର କରିବାର ଚେଷ୍ଟା
ଏବଂ ଈଶ୍ୱର ଏକ ବିଫଳ ପ୍ରୟାସ
ନିଜର ଦେବତ୍ୱକୁ ପ୍ରସ୍ତରୀଭୂତ କରିବାର

ମନ୍ଦିର ନିଜର ଲୁଚକାଳିରେ ବ୍ୟସ୍ତ ରହିଥାଏ
ଖରାବେଳ ମେଘ ପବନ ସହିତ
ରୂପ ବଦଳାଏ ଛଳ କରେ ଛଳନା କରେ
ପଡ଼ିରହି ସ୍ୱପ୍ନ ଦେଖେ ଉଠିବସି ଧ୍ୟାନମଗ୍ନ ହୁଏ
କେହି କେବେ ଅକସ୍ମାତ ବାଟଭୁଲି ପହଞ୍ଚିଲେ

ତାକୁ ପାଖରେ ବସାଇ ମନ୍ତ୍ର ଦିଏ ଭଙ୍ଗାମନ୍ଦିର
ବୁଝାଇ ଦିଏ ଶବ୍ଦର ମାହାତ୍ମ୍ୟ ଶୂନ୍ୟର ମହିମା
ସାମ୍ରାଜ୍ୟର ସ୍ୱଳ୍ପତା ଇତିହାସର ଅର୍ବାଚୀନତା
ଜୀବନ କିପରି ନିରବଧି ଓ କଳା କ୍ଷଣଭଙ୍ଗୁର

ଏବଂ ପୁଣି କେଉଁ ଚପଳ ମୁହୂର୍ତ୍ତରେ
ଜଗୁଆଳ ପିଲାଟିର ଛେଳିମାନଙ୍କୁ ନେଇଯାଇ
ସେ ଲୁଚାଇଦିଏ ଭଙ୍ଗା ପଥରର ଗୋଠ ଭିତରେ

# ଶରଣାର୍ଥୀ

ମୋର କୌଣସି ଘର ନାହିଁ ଠିକଣା ନାହିଁ
ମୋର ଜୀବନଯାତ୍ରାର ପ୍ରତିଟି ପର୍ବ
ତମର ଅଜ୍ଞାତ ମହାଦେଶରେ ରିକ୍ତ ସ୍ଥାନ ଖୋଜି
ଆଶ୍ରୟ ମାଗିବାର ଏକ ଅବିରାମ କ୍ରମ
ଯାହା ମୋର ଅସ୍ତିତ୍ୱକୁ ଖଣ୍ଡ ଖଣ୍ଡ କରି
ବାରମ୍ବାର ଫିଙ୍ଗିଦିଏ ମୋର ବୟସ୍କ ହେବାର
ପ୍ରତ୍ୟେକଟି ଅସଂଗତି ଭିତରକୁ

ମୁଁ ତମର ବାଳରେ ଆଶ୍ରୟ ନେଇଥିବା ବେଳେ
ରାତି ଆସି ସେଥିରେ ଜଡ଼ି ଯିବାର ଦେଖିଛି
ଉଦାସ ହତୋତ୍ସାହର ନିରନ୍ଧ୍ର ଅନ୍ଧାରକୁ
ତାରାରେ ତାରାରେ ଭର୍ତ୍ତି କରିଦେଇ

ତମର ଆଖିର ଅନ୍ତରାଳରେ ରହି
ସ୍ୱପ୍ନକୁ ସେଠାରେ ଦେଖିଛି ଅନାୟାସ ଭାସିଯିବାର

ସମ୍ଭାବନାର ସୁଦୂର ସୀମାନ୍ତ ଆଡ଼କୁ
ଅପ୍ରାପ୍ତିର ଭୟଙ୍କର ଲହରୀରେ ସାନ୍ତ୍ୱନା ବୁଣି ଦେଇ

ତମର ଓଠର ଅବଲମ୍ବନ ହୋଇ
ମୁଁ ସେଥିରେ ଶୁଣିଛି ବୈଦିକ ଋଚାମାନଙ୍କୁ
ସାବଲୀଳ ସ୍ଫୁରିତ ହେଉଥିବା
ବର୍ଣ୍ଣମାଳାର ମୃତ ଅବୟବରେ ପ୍ରାଣ ସଂଚାର କରି

ତମର ଛାତିର ଦୁର୍ଜ୍ଜେୟ ଦୁର୍ଗ ଭିତରୁ
ମୁଁ ଦେଖିଛି ଇତିହାସର ଅପୂର୍ବ ବିଡ଼ମ୍ବନାମାନ
ଜୀର୍ଣ୍ଣ ସମୟର ଅନାବାଦୀ ଧ୍ୱଂସାବଶେଷରେ
ପ୍ରତିଶ୍ରୁତିର ପତ୍ରପୁଷ୍ପ ହୋଇ ସବୁଜତା ଆଣିବାର

ତମର ଉରୁର ଉର୍ବର ଉପକୂଳରେ
ମୁଁ ଦେଖିଛି ସୃଷ୍ଟିର ପ୍ରାଚୀନତମ ତାରାମଣ୍ଡଳ
ଭବିଷ୍ୟତର ଅନ୍ତରୀକ୍ଷକୁ ନିକ୍ଷେପ କରୁଥିବା
ନୂଆ ନୂଆ ସ୍ୱୟଂସଂପୂର୍ଣ୍ଣ ବିଶ୍ୱବ୍ରହ୍ମାଣ୍ଡ
ନିଜର ସୃଜନଶକ୍ତିର ପ୍ରଚଣ୍ଡ ଅହଂକାରରେ

ମୁଁ ଦେଖିଛି ତମର ପାଦ ତଳେ ଆଶ୍ରିତ
ପୂର୍ବଜନ୍ମର ଶୋକରେ ଧ୍ୱସ୍ତବିଧ୍ୱସ୍ତ ଶତାବ୍ଦୀ
ଏବଂ ଅତୀତର ନାଭିର ଉତୁରି ଆସୁଥିବା
ତାର ବିଭାଜିତ ଅଣୁ ପରମାଣୁମାନ
ତମର ପ୍ରତିଟି ରକ୍ତ କଣିକାରେ ଆଶ୍ରୟ ଖୋଜୁଥିବା

## କବି

କବି ବି ବିଚିତ୍ର ଜୀବ
ଜନ୍ମଦିନମାନଙ୍କରେ ଦେଇଆସେ
ସଜଫୁଲର ସ୍ତବକ ବଦଳରେ
ସେ ଦିନ ସକାଳେ ଲେଖିଥିବା କବିତାର ଭେଟ

ନିଜର ଗନ୍ତବ୍ୟସ୍ଥଳକୁ ଯାଉ ଯାଉ
ଅଜଣା ଷ୍ଟେସନରେ ଓହ୍ଲାଇ ପଡ଼େ କବି
ସମୟର ଛକ ଉପରେ ଅନ୍ୟମନସ୍କ ଛିଡ଼ା ହୋଇ
ଅତୀତର ଟ୍ରାଫିକ ଆଡ଼କୁ ଅନାଇ ରହିଥାଏ

କବିକୁ ଭଲଭାବେ ଜଣାଥାଏ ଯେ
ପ୍ରତ୍ୟେକଟି ପ୍ରେମ ଅନ୍ୟ ଏକ ମୃତ୍ୟୁ
ତଥାପି ବାରମ୍ବାର ଭଲ ପାଇ ଛଟପଟ ହୁଏ
ଏବଂ ବିଭିନ୍ନ ପ୍ରକାରର ମରଣକୁ
ଆଗ୍ରହରେ ଆଦରି ନିଏ କବି

ସନ୍ତ୍ରାସବାଦୀ ଆଗକୁ ଆସି କହେ
ଦୁଇ ମିନିଟରେ ସଠିକ ଜବାବ ନ ଦେଲେ
ଭୟାବହ ମୃତ୍ୟୁ ସୁନିଶ୍ଚିତ
କବି କିନ୍ତୁ ନିଜ ନାଁ ବଦଳରେ
ତାକୁ ଆବୃତ୍ତି କରି ଶୁଣାଇ ଦିଏ
ନିଜ କବିତାର ଅସଂଲଗ୍ନ ଦୁଇଟି ପଂକ୍ତି

କବିର ଘରସଂସାର ବି ଥାଏ
ବଜାର ସଉଦା କରିବାକୁ ଯାଇ
ସେ ଦୋକାନୀ ସହିତ ଦରଦାମ କଷେ
କମା ପୂର୍ଣ୍ଣଚ୍ଛେଦ ବନ୍ଧନୀ ଓ ବିସ୍ମୟ ଚିହ୍ନର
ପରିଭାଷାର ଅମୁହାଁ ଦେଉଳ ଆଗରେ
ସେ ଜିଭ କାଟି ପଡ଼ିରହେ ଦୀର୍ଘକାଳ
ଗୋଟିଏ ଉପଯୁକ୍ତ ରୂପକର ବରଦାନ ମାଗି

ଅଧାରାତିରେ ହଠାତ ନିଦରୁ ଉଢ଼ିପଡ଼େ
ସ୍ୱପ୍ନରେ ସେ ଯେଉଁ ଶବ୍ଦମାନଙ୍କୁ ଦେଖିଥିଲା
ସେମାନଙ୍କ ମୁହଁ ମନେ ପକାଇବାକୁ ଚେଷ୍ଟା କରେ
ସେଇଥିରେ ହିଁ କବିର ଜୀବନକାଳ ବିତିଯାଏ

## ବସ୍ ଷ୍ଟାଣ୍ଡ

ବସ୍‌ମାନେ ଏଠାରେ ମୁହାଁମୁହିଁ ହୁଅନ୍ତି
ଜୀବନର ଉତ୍ତୀର୍ଣ୍ଣ ସନ୍ଧ୍ୟାରେ
ପ୍ରତିଦିନ ଭେଟୁଥିବା ପୁରୁଣା ବନ୍ଧୁ ଭଳି

ଏଠାରେ ଏକ ସମ୍ମିଳିତ ବିଶୃଙ୍ଖଳା
ପ୍ରସ୍ଥାନ ଆଗମନ ଅପେକ୍ଷା ଓ ଖିନ୍ନତାର
ଆନନ୍ଦ ଉତ୍ତେଜନା ବିରକ୍ତି ଓ ଶୂନ୍ୟତାର
କ୍ଷଣିକ ସମ୍ବନ୍ଧର ଅଶ୍ଳୀଳ ଇତରତାର

ଶସ୍ତା ସାମଗ୍ରୀର ଉଠାଦୋକାନରେ
ଦୋକାନୀମାନେ ବସିଥାନ୍ତି ଜଣେ ଜଣେ ବୁଦ୍ଧ ଭଳି
ଗ୍ରାହକମାନେ ମାଗନ୍ତି ବଳକା ସମୟ ବିନିମୟରେ
ଥାକରେ ନଥିବା ଅଦରକାରୀ ଜିନିଷ
ନ କିଣୁଥିବା ସାମୟିକ ପତ୍ରିକାର ପୃଷ୍ଠାରେ
ପାରମ୍ପରିକ ଅକ୍ଷର ମନମାରି ପଡ଼ି ରହିଥାନ୍ତି
ଦୁଃସାହସୀ ପାଠକର ଆଖି ଖୋଜି ନିଏ
ସେଥିରୁ ରୋମାଞ୍ଚକର ଉଦ୍ଧୃତିସବୁ

ଅଦରକାରୀ ସଂପତ୍ତିର ସଯତ୍ନ ପୁଟୁଳା
ପୋଷା କୁକୁର ଭଳି ଶୋଇଥାନ୍ତି
ମାଲିକର ଶ୍ୟେନ ଦୃଷ୍ଟିରେ ବନ୍ଧା ହୋଇ
ଅଧା ରାସ୍ତାର ଅଦୂରଦର୍ଶୀ ଯାତ୍ରୀ
ଟିକେଟର ଟୁକୁଡ଼ାକୁ ମୁଠାଇ ଧରେ
ପରଲୋକକୁ ଯିବାର ଛାଡ଼ପତ୍ର ଭଳି

ଖବରକାଗଜର ଶୀର୍ଷକରେ ସାମୟିକ ସତ୍ୟ
ଫେରିବାଲାର ପସରାରେ କାମଚଳା ପାଥେୟ
ପ୍ରତୀକ୍ଷା ଏଠାରେ ଇତିହାସର ଅଂଶ ନୁହେଁ
ପ୍ରସ୍ଥାନରୁ ଆଗମନର ସାମାନ୍ୟ କଳ୍ପନା ଜଳ୍ପନା
ଓ ସମୟରୁ ଧାର ଆଣିଥିବା କାକୁତିମିନତି

କୋଳାହଳର କୌଣସି ବିରତି ନାହିଁ
ଗାଁରୁ ଆସିଥିବା ହତଚକିତ ସ୍ତ୍ରୀ ଲୋକଟି
ଓଢ଼ଣାକୁ ଆଉ ଟିକିଏ ଟାଣି ଦେଇ
କର୍ମଫଳର ଅନ୍ଧାର ପାଇଁ ପ୍ରସ୍ତୁତ ହୋଇଯାଏ
ରାତିର ବସ୍ ଚାଲେ ଆଲୁଅ ଛାଡ଼ି ଅଦୃଷ୍ଟ ଆଡ଼କୁ
ଛୋଟ ଛୋଟ ଉତ୍ତେଜନାକୁ ଛାତିରେ ସମ୍ଭାଳି
ସକାଳକୁ ଭାସି ଯାଉଥିବା ନିତି ଦିନର ଜହ୍ନ ଭଳି

## ସହଯାତ୍ରୀ

ମୁଁ କହିଲି ତମ ପାଇଁ ମୁଁ ଟ୍ରେନକୁ ଅଟକାଇ ଦେବି
ତମେ ଯେପରି ଚିଲିକାର ଚାରୁ ଚିତ୍ରପଟ ଦେଖି ପାରିବ

ତମେ କହିଲ ଆଜିକାଲି ଆଉ ଅନୁପ୍ରାସର ପ୍ରଚଳନ ନାହିଁ
ଏବଂ ବାଷ୍ପୀୟ ଶକଟ ବି ବର୍ତ୍ତମାନ ଅଛି ମଧ୍ଯ ଭାରତରେ

ମୁଁ କହିଲି ହାତରେ ବନ୍ଧୁକ ଧରିଥିବା ଲୋକଟିକୁ ଦେଖ
ନକ୍‌ସାଲବାଡ଼ିରୁ ଆସି ସେ ମାଗୁଛି ତାର ସ୍ୱାଧିକାର
ଅନିଚ୍ଛାକୃତ ଅଳଙ୍କାର ପାଇଁ କ୍ଷମା ମାଗି ତମେ କହିଲ
ଲୋକଟି ମାତ୍ର ଖଂଜଣି ବଜାଉଥିବା ଖଂଜ ଭିଖାରୀଟିଏ

ମୁଁ ହାତ ବଢ଼ାଇ ଦେଖାଇ ଦେଲି ଦେବଦୂତକୁ
ଯେ ସ୍ୱର୍ଗରୁ ଓହ୍ଲାଇ ସର୍ବସାଧାରଣରେ ବାଣ୍ଟି ଦେଉଥିଲା
ଅସରନ୍ତି ନାହିଁ ନ ଥିବା ସ୍ୱପ୍ନର ଶତଦଳ ସବୁ
ତମେ ସହାନୁଭୂତିରେ ଛୁଇଁଦେଲ ବୁଲାବିକାଳୀ ପିଲାଟିକୁ
ଯେ ତାର ମୁଣ୍ଡ ଉପରର ପସରାଟିକୁ ସମ୍ଭାଳି ପାରୁନାହିଁ

ମୁଁ କହିଲି ଶୁଣ କିପରି ଅତୀତକୁ ବିମନ୍ଥନ କରି
ଭାସି ଆସୁଛି ସମୟାତୀତ ସଂଗୀତର ଅମିୟ ଲହରୀ
ଆମର ସମଗ୍ର ସତ୍ତାକୁ ବିପର୍ଯ୍ୟସ୍ତ କରିଦେବା ପାଇଁ
ତମେ ହାରମୋନିଅମ ଧରି ପୁରୁଣା ଫିଲ୍ମଗୀତ ଗାଉଥିବା
ଅସ୍ଥିସାର ସ୍ତ୍ରୀ ଲୋକଟିର ହାତରେ ପଇସା ରଖିଦେଲ

ମୁଁ କହିଲି ତମେ ଯଦି ମତେ ଆଦୌ ବିଶ୍ୱାସ ନ କର
ମୁଁ ଏଥରକ ଚୁପ ରହିବି ତମେ ଯେଉଁଠାକୁ ଇଚ୍ଛା ଯାଅ
ଏବଂ ତମେ ସତକୁ ସତ ଉଠି ଚାଲିଗଲ ମୋ ପାଖରୁ
ପୂରାପୂରି ଦୁଇ ହଜାର ଅସମ୍ଭବ କିଲୋମିଟର ଦୂରକୁ
ଯେଉଁଠାରେ କାଲି ରାତି ତମ ପାଖରୁ ବିଦାୟ ନେଇ
ଟ୍ରେନରେ ବସି ମୁଁ ବର୍ତ୍ତମାନ ଚାଲି ଯାଉଥିଲି
ଅଜଣା ଷ୍ଟେସନ ଓ ଅପରୂପ ଦୃଶ୍ୟାବଳୀ ଦେଇ
ମୋର ଅର୍ଦ୍ଧ ଉପଲବ୍‌ଧିର ଅପୂର୍ଣ୍ଣତାମାନଙ୍କ ଆଡ଼କୁ

# ଖରାବେଳେ ଏକା

ମୁଁ ସତର୍କତାର ସହିତ କବାଟ ବନ୍ଦ କରେ
କିନ୍ତୁ ସ୍ୱପ୍ନ ସେତେବେଳକୁ କେଜାଣି କେମିତି
ମୋ ଅଜାଣତରେ ଉଡ଼ି ଚାଲିଯାଇଥାଏ

ଘର ଭିତରେ କେହି କୁଆଡ଼େ ନାହିଁ
ବିଛଣା ଥକି ଯାଇ ଶୋଇ ପଡ଼ିଥାଏ
ଟେଲିଫୋନ ନିଜ ସହିତ କଥା କହୁଥାଏ
ଘଣ୍ଟା ସମୟ ଗଣିବାରେ ବ୍ୟସ୍ତ ଥାଏ
ରେଡ଼ିଓ ତନ୍ମୟ ହୋଇ ଶୁଣୁଥାଏ ନିଜର ଗୀତକୁ
କେବଳ ମୁଠାଏ ଦିଗ୍‌ଭ୍ରାନ୍ତ ସୂର୍ଯ୍ୟ କିରଣ
ଧରାପଡ଼ି ଛଟପଟ ହେଉଥାନ୍ତି
ଏକାନ୍ତର ଝଲମଲ ବୁଢ଼ିଆରୀ ଜାଲରେ

କେହି ଆସେ ନାହିଁ କିଛି ବି ଘଟେ ନାହିଁ
ବାହାରେ ଝରକାବନ୍ଧରେ ବାରବୁଲା ପକ୍ଷୀ
ବସା ବାନ୍ଧିବାର କୌଣସି ବି ଉଦ୍ଦେଶ୍ୟ ନ ଥାଇ
ସେଠାରେ ଆଣି କୁଟାକାଠି ଜମା କରେ
କବାଟ ତଳେ ପୋଷ୍ଟମ୍ୟାନ ଫିଙ୍ଗିଯାଏ
ଅନାତ୍ମୀୟ ବର୍ଣ୍ଣମାଳାର ଭଗ୍ନାଂଶମାନ
ଚଟାଣ ସେଥିରୁ ଉତ୍ତାପ ଖୋଜି ନିରାଶ ହୁଏ
ହାତ ଅନାୟାସ ଯେଉଁ ବହିଟି ଉଠାଇ ନିଏ
ତାର ପୃଷ୍ଠାରେ କୌଣସି ନିମନ୍ତ୍ରଣ ନ ଥାଏ

ମନେ ପକାଇବାକୁ ଚାହୁଁଥିବା ମୁହଁ ବଦଳରେ
ଅନ୍ତରାତ୍ମାକୁ ଘେରିଯାନ୍ତି ପ୍ରାୟଶ୍ଚିତ୍ତର ଦେବଦେବୀ

କବାଟରେ କରାଘାତର ଭ୍ରାନ୍ତି ହୁଏ
ବାହାରେ କିନ୍ତୁ କେହି କୁଆଡ଼େ ଦେଖାଯାଏ ନାହିଁ
ଯଦିଓ ସେଠାରେ ପ୍ରାଚୀନ ପଶ୍ଚାତ୍ତାପଟିଏ
କାହିଁ କେତେବେଳୁ ମନମାରି ଠିଆ ହୋଇଥାଏ

## ସଚରାଚର

ମୋର ସାମାନ୍ୟ ପୃଥିବୀଟି ବର୍ତ୍ତମାନ
ଆବଦ୍ଧ ତମ ଘରର ଚୌହଦୀରେ
ସେଠାରେ ପ୍ରବେଶ ନିଷେଧର ନୋଟିସ
ତଥାପି ମୋ ଜୀବନ ସେହିଠାରେ ବନ୍ଧା ରହି
ସେ ଘରଟି ଚାରିପାଖେ ଘୂରି ବୁଲୁଥାଏ

ମୋର ଜ୍ଞାତ ଓ ଅଜ୍ଞାତସାରରେ
ଯେଉଁଠାରୁ ବାହାରିଲେ ହିଁ ମୁଁ ପହଞ୍ଚିଯାଏ
ବାରମ୍ବାର ତମର ଘରର ସୀମାନ୍ତରେ
ଯେପରି ସୃଷ୍ଟିର ସମସ୍ତ ରାସ୍ତା ଲମ୍ବି ଯାଇଛନ୍ତି
ଏଇ ଗୋଟିଏ ମାତ୍ର ଲକ୍ଷ୍ୟସ୍ଥଳ ଆଡ଼କୁ

ସହଜରେ ଚିହ୍ନି ହୁଏ ଘରଟିକୁ
ଦି ପହରେ ଶୀତ ଆସି ଶୋଇଥାଏ
ସେ ଘର ପାଖର ଘାସ ପଡ଼ିଆରେ
ପରିଚ୍ଛନ୍ନ ଦିନଟି ଖରାରେ ଶୁଖୁଥାଏ
ତମ ଦେହର ପରିତ୍ୟକ୍ତ ଶାଢ଼ୀ ଭଳି
ତମର ପୋଷା ମେଘମାନେ
ଉଡ଼ି ବୁଲୁଥାନ୍ତି ତାର ଛାତ ଉପରେ

ରାତିର ରହସ୍ୟ ଘରକୁ ଢାଙ୍କି ରହିଥାଏ
ନିବିଡ଼ ଛମଛମ ବରଫ ଭଳି
ତମ ଝରକାର କାଚ ଓ ପର୍ଦା ଦେଇ
ଯେଉଁ ଅଲୌକିକ ଆଲୁଅ ଦେଖାଯାଏ
ମୁଁ ଜାଣିପାରେ ସେଇଟି ଚନ୍ଦ୍ର
ଏବଂ ମୁଁ ଠିକ ଜାଣେ ଯେ
ତମେ ଅନ୍ୟ ଝରକାଟି ଖୋଲିଲେ
ତା ଭିତରୁ ସୂର୍ଯ୍ୟ ଚମକି ଉଠିବ

ବାହାରେ ଥାଇ ମୁଁ ସ୍ମରଣ କରେ ତମକୁ
ମୋର କଳ୍ପନାର ଚତୁର୍ଥ ବିସ୍ତାରରେ
ମୋର ଧ୍ୟାନ ଯାଇ ଭ୍ରଷ୍ଟ ହୁଏ
ତମର ଆଲୁଳାୟିତ ବିଛଣା ଉପରେ
ସେ ସ୍ମୃତିର ତରଳ ଅନୁଭବ ସବୁ
ଉଛୁଳି ଯାଆନ୍ତି ସମସ୍ତ ଇନ୍ଦ୍ରିୟ ଦେଇ
ଏକ ଲବଣାକ୍ତ ସ୍ୱାଦ ମତେ ଆଚ୍ଛନ୍ନ କରେ
ସ୍ୱପ୍ନ ପାଲଟି ଯାଇଥିବା ମୋର ଚୈତନ୍ୟ
ହରାଇଦିଏ ନିଜର ସମସ୍ତ ଯୌକ୍ତିକତା
ମୋର ମନେ ପଡ଼େ ଆତପ୍ତ ବାଲିର ସ୍ତୂପ
ନିଦାଘରେ ମିଶୁଥିବା ଦେହର ଉତ୍ତାପ
ମରୁଭୂମି ଉପରେ ଚାଲି ଯାଇଥିବା ଝଡ଼
ମୁଁ ପୁଣି ଦେଖେ ଶିଥିଳ ଶାଢ଼ୀର ସମୁଦ୍ର
ଲୋଟୁଥାଏ ତମ ଦେହର ଅସମ ତଟରେ

ମୁଁ ଦେଖିପାରେ ତମକୁ
ମୋର ସମସ୍ତ ଅବସ୍ଥା ଓ ବିକାର ଦେଇ
ତମେ ମୋର ଜୀବନର ସମୁଦାୟ ଯୋଗଫଳ
ଆଦି ମଧ୍ୟ ଅନ୍ତ ତ୍ରିକାଳ ଓ ଚତୁଃସୀମା
ପଞ୍ଚଭୂତ ଷଡଋତୁ ସପ୍ତଲୋକ
ଦଶ ଦଶା ଓ ଚତୁର୍ଦ୍ଦଶ ଭୁବନ

ତମର ଘରଟି ହିଁ ମୋର ସମସ୍ତ ସ୍ଥାବର ଅସ୍ଥାବର
ଏବଂ ମୋର ଅନିବାର୍ଯ୍ୟ ଅଦୃଷ୍ଟ
ଏକ ଅଭିଶପ୍ତ ଆତ୍ମା ଭଳି ତା ଚାରିପାଖେ
ବଞ୍ଚିଥିବା ଅବଧି ପରିକ୍ରମା କରୁଥିବା

## ବୁଢ଼ାଲୋକ

ବୁଢ଼ାଲୋକ ପଡ଼ିଥାଏ ବିଛଣା ଉପରେ
ତା'ର ପୁରୁଣା ପରିତ୍ୟକ୍ତ ଛିଣ୍ଡା କମିଜଟି ଭଳି
ଅଦରକାରୀ ଅଲୋଡ଼ା ଏବଂ ସଂପୂର୍ଣ୍ଣ ଲଜ୍ଜାକର

ବୁଢ଼ାଲୋକ ଆଉଜି ବସିଥାଏ ଦାଣ୍ଡ ବାରଣ୍ଡାରେ
ଖରାପ ହୋଇ ଯାଇଥିବା କାନ୍ଥ ଘଣ୍ଟାଟିଏ ଭଳି
ଧୈର୍ଯ୍ୟଶୀଳ କିନ୍ତୁ ଅନିୟତ ଏବଂ ସମୟ ବିବର୍ଜିତ
ଯାହାର ମୁହଁରେ କୌଣସି ସନ୍ଦେଶ ନାହିଁ

ବୁଢ଼ାଲୋକ ଶୋଇପଡ଼େ ଡାକ୍ତରଖାନାରେ
ନିଜକୁ ନିଜ ଭିତରେ ସଙ୍କୁଚିତ କରି
ପ୍ରୟୋଜନରୁ ବେଶି ଦିନ ବଞ୍ଚିଥିବାର ଲଜ୍ଜା
ଏବଂ ଧିକ୍କାରରେ ଅପଦସ୍ଥ ଅପ୍ରସ୍ତୁତ ହୋଇ

କେହି ଆଉ ଆସନ୍ତି ନାହିଁ ତା ପାଖକୁ
ଜୀବନର କିଛି ଅସଂଲଗ୍ନ ବୃତ୍ତାନ୍ତ ବ୍ୟତୀତ
ତାକୁ ହିଁ ରୋମନ୍ଥନ କରୁଥାଏ ବୁଢ଼ା ଲୋକ
ଘଟଣା କାଳ ବିବରଣ ଓ କ୍ରମ ନିରପେକ୍ଷ

ବୁଢ଼ାଲୋକ ହଜିଯାଏ ନିଜର ସ୍ମୃତିଭ୍ରଂଶରେ

ଭୁଲିଯାଏ ଆୟୁଷର ସବୁ ଗଣିତ
ସମୟକୁ ପୂରାପୂରି ପାଶୋରି ଦିଏ ମନ
ଆଖିର ଅସ୍ୱଚ୍ଛ ଝିଲିମିଲି ପର୍ଦା ଆଗରେ
ଦିନ ଆସେ ଯାଏ ଅମୂର୍ତ୍ତ ଚଳଚ୍ଚିତ୍ର ହୋଇ

ଅତୀତର ଚାରଣଭୂମିରେ ଜୀର୍ଣ୍ଣ ଯନ୍ତ୍ରଣା ଭଳି
ଚିନ୍ତାର ସବୁ ଖିଅ ହଜାଇଦିଏ ବୁଢ଼ାଲୋକ
କୌଣସି ବରାଭୟର ମୁହଁ ମନେ ପଡ଼େ ନାହିଁ
କେହି ଉତ୍ତର ଦିଅନ୍ତି ନାହିଁ ବିକଳ ଆବାହନର
କେବଳ ହସକାନ୍ଦର ସ୍ମୃତି ସମ୍ବଳିତ ଏକ ଗୋପନ ବ୍ୟଥା
ସମସ୍ତ ସ୍ନାୟୁ ଶିରା ଉପଶିରା ଦେଇ ଛାତିରେ ପହଞ୍ଚେ
ବୁଢ଼ାଲୋକ ତାକୁ ହିଁ ସମ୍ବଳ କରି ବଞ୍ଚି ରହିଥାଏ
ତାର ଗୋଟିଏ ଆୟାସସାଧ୍ୟ ନିଶ୍ୱାସରୁ
ଅନ୍ୟ ଏକ ଦୀର୍ଘଶ୍ୱାସର ନିଷ୍କରୁଣ ଅବଧି ପର୍ଯ୍ୟନ୍ତ

## ଆନୁକୂଲ୍ୟ

ଲମ୍ପଟ ସମ୍ରାଟଙ୍କର ଅହଙ୍କାରକୁ
ଶିଳ୍ପୀମାନେ ପଥରରେ ଖୋଳି
ଖଞ୍ଜିଦେଲେ ମନ୍ଦିରର କାନ୍ଥମାନଙ୍କରେ

କବିମାନେ ନିଜର ଆୟାସରଚିତ
ସୁକୁମାର ଖଣ୍ଡକାବ୍ୟମାନଙ୍କୁ
ଭଣତି କରିଦେଲେ ରାଜନ୍ୟମାନଙ୍କ ନାଁରେ

ନର୍ତ୍ତକୀମାନେ ଦେବଦାସୀ ହୋଇ
ଚାଲିଗଲେ ମନ୍ଦିର ମଠାଧୀଶ

ଏବଂ ରାଜାଙ୍କ ଅନ୍ତଃପୁରକୁ

ରାଜସଭାର ଚତୁର ବିନୋଦନ ପାଇଁ
ନଟ ଓ ପଦ୍ୟକାର ପାରିଷଦ ହୋଇ ରହିଲେ

ଐତିହାସିକମାନେ ବିରୁଦାବଳୀ
ଏବଂ ପଣ୍ଡିତମାନେ ପ୍ରଶସ୍ତି ଲେଖିବାରେ
ନିଜକୁ ମନପ୍ରାଣ ଉତ୍ସର୍ଗ କରିଦେଲେ

ଯେତେବେଳେ ଆଉ ଚକ୍ରବର୍ତ୍ତୀ
ରାଜା ଓ ଜମିଦାର ରହିଲେ ନାହିଁ
ଜାଗିର ଭତ୍ତା ଓ ପାରିତୋଷିକ ଉଠିଗଲା
ରାଜଗୁରୁ ଓ ବିଦୂଷକ ଖୋଜାପଡ଼ିଲେ ନାହିଁ
କବି ଓ କଳାକାରମାନେ ବାହାରିଲେ
ନୂଆ ଦରବାର ଓ ପୃଷ୍ଠପୋଷକ ସଂଧାନରେ

ସହଜରେ ସେମାନଙ୍କ ପ୍ରତିପାଳନର
ସମସ୍ତ ଦାୟିତ୍ୱ ନେଇଗଲେ ଅର୍ବାଚୀନ ପ୍ରଭୁମାନେ
ସାହିତ୍ୟ ଓ କଳାକୁ ଦତ୍ତକ କରିନେଲେ
ସୌଦାଗର ବେପାରୀ ଓ ଶିଳ୍ପପତି
ପୁରସ୍କାର କଳାସମାରୋହ ଖଂଜିଦେଲେ
ତମାଖୁ ଓ ବିସ୍ଫୋରକ ଉତ୍ପାଦନକାରୀ
ସଂସ୍କୃତି ପୁଣି ଫେରିଗଲା ଧୂଆଁ ବାଣକୁ

ପ୍ରତିଷ୍ଠାନ ଅସ୍ୱୀକୃତ କଳାକାରମାନେ
ଏ ବ୍ୟବସ୍ଥାର କଠୋର ପ୍ରତିବାଦ କରି
କଳା ଓ ସର୍ଜନାତ୍ମକ ସ୍ୱାଧୀନତା ଉପରେ
ସରକାରୀ ସେମିନାରରେ ପ୍ରସ୍ତାବମାନ ଲେଖିଲେ
ଏବଂ ତାକୁ ସତ୍ତାରୂଢ଼ମାନଙ୍କ ପାଖକୁ ପଠାଇ ଦେଇ
ସନ୍ତୋଷର ନିଶ୍ୱାସ ନେଲେ

## ଆଜି ଦିନ

ତମେ ମୋର ସକାଳର ସ୍ୱପ୍ନରେ
ଅଳ୍ପକ୍ଷଣ ଆସି ଚାଲି ଯାଇଥିଲ ବୋଲି
ମୁଁ ପୂରା ଦିନଟିକୁ ତମକୁ ଉତ୍ସର୍ଗ କରିଦେଲି
ସେଥିପାଇଁ ଆଜି ସକାଳର ଖବରକାଗଜରେ
ଆଉ କୌଣସି ବିଶେଷ ଖବର ନ ଥିବ
କେବଳ ତମର ମୁହଁ ଉଙ୍କି ମାରୁଥିବ
ପୃଷ୍ଠା ପୃଷ୍ଠା ବ୍ୟାପି କାଗଜର ପ୍ରତ୍ୟେକଟି ସ୍ତମ୍ଭରେ

ମୋର ଟେଲିଫୋନ ସବୁ ତମ ପାଖରୁ
ମୋ ପାଇଁ ଡାକବାଲା ଆଣିଥିବା ସବୁ ଚିଠି ତମର
ମୋ ଘର ପାଖେ ପ୍ରତ୍ୟେକଟି ଟ୍ୟାକ୍‌ସିରୁ ଓହ୍ଲାଇବ ତମେ
କବାଟରେ ପ୍ରତିଟି ଆଘାତ ଥିବ ତମରି ହାତର

ଆଜି ଯଦି ଅକସ୍ମାତ ପ୍ରଳୟ ହୋଇଯାଏ
ପୃଥିବୀ ବିଧ୍ୱସ୍ତ ହୁଏ ମଣିଷ ଜାତି ଲୋପ ପାଇଯାଏ
ଏବଂ ମଣିଷର କିଛି ସ୍ୱପ୍ନ ହିଁ ବାକି ରହେ
କେବଳ ତମେ ହିଁ ଆସିବ ସାକାର ହୋଇ
ସେଇ ଅବଶିଷ୍ଟ ସ୍ୱପ୍ନମାନଙ୍କରେ

## ଝିଅଟିର ଦୁଃଖ

ଦୁଃଖ ସବୁବେଳେ ରହିଥାଏ
ଝିଅଟିର ପାଖେ ପାଖେ
ବାପ ମା'ଙ୍କର ଅଯଥା ଉଦ୍‌ବେଗ ଭଳି

ପ୍ରଥମ ପ୍ରେମର ମାଦକ ରୋମାଞ୍ଚ ଭଳି
ଦୁଃଖ ପାଖେ ପାଖେ ରହିଥାଏ
ଅଥଚ ଝିଅଟି ସୁନ୍ଦର ସୁନ୍ଦର ସ୍ୱପ୍ନ ଦେଖେ
ଦୁଃଖର କୋଠରୀ ଭିତରେ ବସି ବସି
କଣ ବା ସେ କରି ପାରେ ଆଉ
ନିଜର ମନକୁ ନେଇ ଖେଳିବା ବ୍ୟତୀତ

ଝିଅଟି ଯାଇ ରନ୍ଧାଘରେ ଝାଳରେ ତିନ୍ତେ
ରୋଗୀର ଶେଯ ପାଖରେ ଅନିଦ୍ରା ରହେ
ଅଫିସରେ କାମ କରୁ କରୁ ଭାଗ୍ୟକୁ ନିନ୍ଦେ
ସ୍କୁଲ ଘରେ କଳାପଟାକୁ ଲୁହରେ ପୋଛିଦିଏ
ଦୀର୍ଘଶ୍ୱାସରେ ହାଲୁକା କରିବାକୁ ଚେଷ୍ଟା କରେ
ସାରା ଦିନର କାମର ବୋଝକୁ
ପୁଣି ଘରକୁ ଫେରିଲା ବେଳେ
ଅଧା ବାଟରେ ରାସ୍ତାରୁ ଗୋଟାଇ ନିଏ
ଦୁଃଖକୁ ନିଜର ଛିଣ୍ଡା ଚପଲ ସହିତ

ଝିଅଟି ସ୍ୱପ୍ନ ଦେଖେ ଏବଂ ମନକୁ ବୁଝାଏ
ଦୁଃଖକୁ ଦୂରେଇବାକୁ ଚେଷ୍ଟା କରେ
ଅଧାପଢ଼ା ଉପନ୍ୟାସ ପୃଷ୍ଠାରେ ରଖିଦିଏ ଦୁଃଖକୁ
ଟାଇପରାଇଟରରେ ଛାଡ଼ିଆସେ ଦୁଃଖର ବର୍ଣ୍ଣମାଳା
ଅଫିସ ଡ୍ରୟରରେ ଚାବି ଦେଇ ବନ୍ଦ କରିଦିଏ
ସ୍କୁଲ ଝରକା ବାହାରକୁ ଫିଙ୍ଗିଦିଏ
ଘୁଙ୍ଗୁର ସହିତ ପାଦରୁ ଓହ୍ଲାଇ ଦିଏ
ରୋଷାଇ ଘରେ ଡେକଚିରେ ଢାଙ୍କି ରଖେ
କିନ୍ତୁ ରାତିରେ ବିଛଣାକୁ ଆସିବା ବେଳକୁ
ଦୁଃଖ ଆଗରୁ ସେଠାରେ ତା ପାଇଁ ଜଗି ରହିଥାଏ

ଉପନ୍ୟାସର ଲୋକଟି ଆସେ ନାହିଁ
ଯେଉଁ ଅଯାଚିତ ଆଗନ୍ତୁକ ଆସି ପହଞ୍ଚେ

ତାକୁ ହିଁ ଶେଷରେ ସ୍ୱୀକାର କରିନିଏ ଝିଅଟି
ଚାଲିଯାଏ ଅଜଣା ଲୋକଟିର ଘର କାମକୁ
ରନ୍ଧାଘରକୁ ବିଛଣାକୁ ରୋଗଶେଯକୁ
ପୁଣି ସେଠାରେ ଦିନ ଶେଷରେ
ଟେବୁଲ ଉପରେ ମଥାକୁ ରଖିଦିଏ ନୈବେଦ୍ୟ ଭଳି
ସ୍ୱପ୍ନ ଦେଖେ ଦିନ ଗଣେ ଝିଅଟି
ଏବଂ ସମସ୍ତଙ୍କ ଦୁଃଖକୁ ଲୁହରେ ମିଶାଇ
ଏକାଠି କରିନିଏ ନିଜର ଦୁଃଖ ସହିତ

## ଶୀତଦିନ

ଅତି କଷ୍ଟରେ ସୂର୍ଯ୍ୟ ବାହାରକୁ ବାହାରେ
କୋଇଲା ଧୂଆଁର କମ୍ବଳ ଘୋଡ଼େଇ ହୋଇ
ଅନିଶ୍ଚିତ ଖରା ନରମ ନରମ ପାଦ ପକାଏ
କାକରରେ ଥରୁଥିବା ରାସ୍ତା ଉପରକୁ

ସମସ୍ତେ ଘୁଞ୍ଚିଆସନ୍ତି ପରସ୍ପର ପାଖକୁ
ଚକ୍ରବାଳ ଆସି ପହଞ୍ଚେ ଝରକା ପାଖରେ
ହାତ ଖୋଜିନିଏ ଛାତିର ଆଶ୍ରୟ
ଦୂରାନ୍ତର ସ୍ୱପ୍ନ ଲାଖିଯାଏ ଆଖି ସୀମାନ୍ତରେ

ସଂକୁଚିତ ହୋଇ ଯାଉଥିବା ଦିନଟିର
ହରିଣ ଛାଲ ଭଳି ବିଷଣ୍ଣତା ଉପରେ
ସମୟ ଛଟପଟ ଛଟପଟ ହେଉଥାଏ
ଏକ ଅସନ୍ତୁଷ୍ଟ ଆତ୍ମା ଭଳି
ଅସଂପୂର୍ଣ୍ଣ ରହିଯିବାର ଆଶଙ୍କାରେ

ସ୍ୱରବର୍ଣ୍ଣମାନେ ସ୍ତବ୍ଧ ହୋଇଯାନ୍ତି
ବିବର୍ଣ୍ଣ ଆକାଶର ହତୋତ୍ସାହକୁ ଦେଖି
ଫୁଲମାନଙ୍କ ମୁହଁର ଆରକ୍ତ ହସକୁ
ମ୍ଳାନ କରିଦିଏ ମେଘର ଶୀତଳ ଦୃଷ୍ଟିପାତ

ବିମନସ୍କ ସୂର୍ଯ୍ୟ ଯାଇ ପଶିଯାଏ
ଅନ୍ଧାରର ଅବିଶ୍ୱାସୀ ବିଛଣା ଭିତରେ
ଶ୍ୱେତବର୍ଣ୍ଣ ପବନ ଆସି ଘେରିଯାଏ
ଛୋଟ ଛୋଟ ଆଲୁଅର ସଂକୀର୍ଣ୍ଣ ବୃତ୍ତକୁ
ଅବସନ୍ନ ଦିନଟି ଜାକିଜୁକି ଶୋଇପଡ଼େ
ଥଣ୍ଡାରେ ଜମି ଯାଉଥିବା ଫୁଟପାଥ ଉପରେ

# ଶିଷ୍ଟାଚାର

ଅଭିଧାନରେ ଅନେକ ପର୍ଯ୍ୟାୟବାଚୀ ଶବ୍ଦ ଅଛି
ପ୍ଲବଗ କପି ଶାଖାମୃଗ ବନୌକା ଇତ୍ୟାଦି
କିନ୍ତୁ ଏ ସବୁ କବିତାରେ ବ୍ୟବହାରସାପେକ୍ଷ ନୁହନ୍ତି

ଅତିଶୟୋକ୍ତି ପାଇଁ କବିମାନେ ଯେତିକି ବିଦିତ
ସେତିକି ପ୍ରସିଦ୍ଧ କୀଟାଣୁମୁକ୍ତ ଭାଷା ପାଇଁ
ସାଧାରଣ ଦେହର ଚିତ୍ରଣ ପାଇଁ
ସେମାନେ ସେଥିପାଇଁ ବ୍ୟବହାର କରନ୍ତି
ଆକାଶ ସମୁଦ୍ର ସରୋବର ମରୁଭୂମି
ପର୍ବତ ଉପତ୍ୟକା ଓ ଅରଣ୍ୟର ଚିତ୍ରକଳ୍ପ
ଏକ ସହଜ ସ୍ୱଚ୍ଛନ୍ଦ ଅନୁଭୂତିର ବର୍ଣ୍ଣନାରେ
ଖୋଜିଥାନ୍ତି ଜ୍ୱାଳାମୁଖୀ ବିସ୍ଫୋରଣ ଉଲ୍‌କାପାତ

ବୋମାବର୍ଷୀ ବିମାନର ଅଟ୍ଟହାସ୍ୟ ଇତ୍ୟାଦି

କବିମାନେ ସ୍ୱଭାବତଃ ବିନୟୀ ଭଦ୍ର ମିଷ୍ଟଭାଷୀ
ମଧ୍ୟ ଭୀରୁ ଭୟାଳୁ କୁଟିଳ ଓ ଛଳନାପୂର୍ଣ୍ଣ
ଏକା ଥିଲାବେଳେ ମୁଁ ତତେ ଡାକେ ମାଙ୍କଡ଼ୀ ବୋଲି
କିନ୍ତୁ ଅନ୍ୟମାନଙ୍କ ଆଗରେ ବିଶେଷରେ କବିତାରେ
ତମକୁ ଦେବୀ ବୋଲି ସମ୍ବୋଧନ କରିବାକୁ ହୁଏ

# ପୁରୁଣା ବଜାର

ଦୁଇ ପାଖର ଘର ସବୁ ଇତସ୍ତତଃ
ଭୁଲି ଯାଇଥିବା ଥାକରେ ଅଲୋଡ଼ା ଜିନିଷ ଭଳି
ରାସ୍ତାରେ ଉଡୁଥାଏ ପ୍ରାଚୀନ ମନସ୍ତାପର ଧୂଳି
ତାରରେ ଝୁଲୁଥାଏ ମଲାପକ୍ଷୀ ଭଳି ଛିଣ୍ଡା ଗୁଡ଼ି
ପୁରୁଣା କ୍ୟାଲେଣ୍ଡରର କାନ୍ଥମାନେ ଦୋଦୋପାଞ୍ଚ
କବାଟ ଫାଙ୍କରୁ ଉଙ୍କିମାରେ ଜରାଜୀର୍ଣ୍ଣ ବଂଶାବଳୀ

ଚାବି ଦିଆଯାଇଥିବା ଖେଳନାର ଲୋକମାନେ
ଯା ଆସ ହେଉଥାନ୍ତି ସକାଳର ଗଳି ଦେଇ
ଚଞ୍ଚଳ ଅଥଚ ଉଦ୍‌ବେଗରହିତ
ସ୍ତ୍ରୀ ଲୋକମାନେ ମୁଣ୍ଡରେ ଓଢ଼ଣା ଟାଣି
ସନ୍ତର୍ପଣରେ ବାଟ କାଟି ଚାଲିଯାନ୍ତି
ଛୋଟ ଛୋଟ ଜନରବଟିମାନ ଭଳି
ସୂର୍ଯ୍ୟ ବିରକ୍ତ ହୋଇ ଫିଙ୍ଗିଦିଏ
ସେମାନଙ୍କର ପାଣ୍ଡୁର ପ୍ରତିଚ୍ଛାୟାମାନଙ୍କୁ
ରାସ୍ତା କରର ନିଶ୍ଚଳ ନର୍ଦ୍ଦମା ଭିତରକୁ
ଦୋକାନରେ ପସରାମେଲା ପଡ଼ିଥାଏ
କେହି ଚାହୁଁ ନଥିବା ଜିନିଷସବୁ

ହାନିଲାଭ ବହୁକାଳରୁ ଛଟପଟ ହୋଇ
ପଥର ବାନ୍ଧି ଯାଇଥାନ୍ତି ଦୋକାନୀର ଆଖିରେ
ତରାଜୁରେ ଦୋଳା ଖାଉଥାଏ ଦୁଇଟି ନଗଣ୍ୟତା
ଗୋଦାମ ଘରେ ବନ୍ଧା ପଡ଼ିଥାଏ ସର୍ବସ୍ୱ
ମୂଷା ସେଥିରୁ ଚେନା ଚେନା କାଟିନିଏ
ଅସମ୍ଭାବ୍ୟ ଭବିଷ୍ୟତର ସ୍ଥାବରାସ୍ଥାବର

ଖରାବେଳେ କୁକୁର ଭଳି ଧକାଉଥାଏ ସଡ଼କ
ମୃତ୍ୟୁଲୋକର ଭାରସାମ୍ୟକୁ ଭାଙ୍ଗି
ଛୋଟ ପିଲାଟି ହାତରୁ ରଙ୍ଗୀନ ବଲ ଗଡ଼ିଯାଇ
କେବେ କେମିତି ମୁହୂର୍ତ୍ତେ ମାତ୍ର ପାଇଁ
ଅଟକିଯାଏ ଜନସ୍ରୋତର ଅକିଞ୍ଚନତାରେ
ପୁଣି ଜୀବନର ଉପାଦାନ ସବୁ ଫେରିଯାନ୍ତି
ନିଜ ନିଜର ପୂର୍ବ ନିର୍ଦ୍ଧାରିତ ଖୋପ ଭିତରକୁ

ପୁରୁଣା ଗଳିର ପୁରୁଣା ଲୋକମାନେ
ପୁନଃପୌନିକ ଗତିବିଧିର ନିଶ୍ଚଳତାରେ
ପୁଣି ଯାଇ ସ୍ଥିର ଓ ସାବଧାନ ହୋଇଯାନ୍ତି
ରଙ୍ଗ ଉଡ଼ି ଯାଇଥିବା ଫଟୋଗ୍ରାଫ୍‌ର
ଧାଡ଼ି ଧାଡ଼ି ଖଞ୍ଜା ହୋଇ ରହିଥିବା
ଶୂନ୍ୟଦୃଷ୍ଟି ଚରିତ୍ରମାନଙ୍କ ଭଳି

ରାତି ଆସେ ବିରକ୍ତ ଓ ନିର୍ମୋହ
କୋଠା ଉପରୁ ସଂକୀର୍ଣ୍ଣ ପାହାଚ ଦେଇ
ଗଳିର ମିଞ୍ଜି ମିଞ୍ଜି ଅନ୍ଧାରକୁ ଓହ୍ଲାଉଥିବା
ଝିଅଟିର ଅଭିବ୍ୟକ୍ତିହୀନ ଆଖି ପଲକରେ

# ବର୍ଣ୍ଣବୋଧ

ଅକ୍ଷରମାନଙ୍କୁ ନେଇ ସଂସାର କରିବା କଷ୍ଟ
କବି କିନ୍ତୁ ଏ କଥା ଜମା ବୁଝେ ନାହିଁ

କେବେ ଦିନେ ଶବ୍ଦମାନେ ସହଜ ଥିଲେ
ବୋଲ ମାନୁଥିଲେ ଡାକିଲେ ପାଖକୁ ଆସୁଥିଲେ
ଅକ୍ଷରଙ୍କୁ ସଜାଇ ଯେଉଁଭଳି ଆଦେଶ ଦେଲେ
ସେମାନେ ସେଇଭଳି ତାର ବ୍ୟାଖ୍ୟା କରୁଥିଲେ

ଆଉ କିନ୍ତୁ ସ୍ୱରମାନେ ଅଚିରେ ଆଜ୍ଞାବହ ନୁହନ୍ତି
ଇତ୍ୟବସରେ ଈଶ୍ୱରତ୍ୱ ଦାବୀ କରି
ସେମାନେ ଉକ୍ତି ପ୍ରତ୍ୟୁକ୍ତିର ଉର୍ଦ୍ଧ୍ୱରେ ଋଦ୍ଧିମାନ
ଏକଦା ଐତିହ୍ୟର ଓଜସ୍ୱୀ ଔଦ୍ଧତ୍ୟରେ

କବି ଖୋଜି ବୁଲୁଥାଏ ମନପ୍ରାଣ ଦେଇ
କ ଘରେ କିନ୍ତୁ ସଠିକ ଶବ୍ଦ ପାଇବା କଠିନ
କାରଣ କାଉ ନେଇଗଲା କଜଳପାତି
ଖ ର ଖବର ନାହିଁ ଫ ହେଲାଣି ଫେରାର
ଚନ୍ଦ୍ରରୁ ଚ କୁ ନେଇ ଚକୁଆ ଚାଲିଗଲା
ମଲାମାଛି ବି ମ କହିବାକୁ ମନା କରିଦେଲା

କବି ବସିଥାଏ ଚଉତିଶାର କକ୍ଷକୁ ଆବୋରି
ଟେବୁଲ ଉପରେ ମାଳମାଳ ଅଭିଧାନକୁ ସଜାଇ
ସ୍ୱର ଓ ବ୍ୟଞ୍ଜନ ତାକୁ ଧରା ଦିଅନ୍ତି ନାହିଁ
ବର୍ଣ୍ଣମାଳା ତା ସହିତ ଲୁଚୁକାଳି ଖେଳେ
ବ୍ୟସ୍ତ ହୋଇ କବି ବର୍ଗରୁ ବର୍ଗକୁ ଖୋଜୁଥାଏ
ତାକୁ ଉପହାସ କଲା ଭଳି

କ ଚାଲିଯାଏ କଟକ ନ ହେଲେ କଦମ୍ବ ବନକୁ
ଅରଟ ଉପରେ ଚଢ଼ି ଆତ ଖାଇ ଖାଇ

## ଉଡ଼ାଜାହାଜ ଉପରୁ

ଉଡ଼ାଜାହାଜ ଉପରୁ ତଳକୁ ଅନାଇଲେ
ମାଟି ଦିଶେ ନାହିଁ କାଦୁଅ ଦିଶେ ନାହିଁ

ଭଙ୍ଗା ଘରର ଉଜୁଡ଼ା ଛାତ ଦିଶେ ନାହିଁ
ନଷ୍ଟ ହୋଇଥିବା ଫସଲ ଗୋରୁଗାଈଙ୍କ ଶବ
ଛୋଟ ଛୋଟ ମଣିଷଟିମାନେ
କେହି ହେଲେ ଦେଖାଯାନ୍ତି ନାହିଁ
ସେଠାରୁ କେବଳ ଦେଖାଯାଏ
କମଳା ରଙ୍ଗର ଖରା ଇନ୍ଦ୍ରଧନୁ ରଙ୍ଗର ମେଘ
ଏବଂ ସୁଦୂରକୁ ଲମ୍ବି ଯାଇଥିବା
ଏକ ଗୋଲାପୀ ଆଶ୍ୱସ୍ତ ଭବିଷ୍ୟତ

ଉଡ଼ାଜାହାଜର ନିବୁଜ କାଚ ଦେଇ
ଆର୍ତ୍ତନାଦ ହାହାକାର ବିଳାପ ଦୀର୍ଘଶ୍ୱାସ
ଏ ସବୁ କିଛି ଶୁଣାଯାଏ ନାହିଁ
ଏଠାରେ ଦୁଃଖ ନାହିଁ ଶୋକ ନାହିଁ ଦୈନ୍ୟ ନାହିଁ
ରୋଗ ଅନାହାର ମଡ଼କ ମୃତ୍ୟୁ ନାହିଁ
ଯାହା କିଛି ଦୂଷିତ କୁତ୍ସିତ ଆବର୍ଜନାମୟ
ସବୁ ଏଠାରୁ ଦୃଷ୍ଟିର ଅତଳ

ଉଡ଼ାଜାହାଜ ଏକ ଶୋକହୀନ ସ୍ୱର୍ଗ

ଯାହା ଉପରୁ କେବଳ ଦେଖିହୁଏ
ନିଜର କ୍ଷମତା ଦମ୍ଭ ଅହଂକାର
କେବଳ ଉପଲବ୍‌ଧି କରିହୁଏ
ନିଜର ସନ୍ତୋଷ ସୁଖ ସ୍ୱାଚ୍ଛନ୍ଦ୍ୟ
ଓ ସଯତ୍ନରେ ସଜାଡ଼ି ନେଇଥିବା ସ୍ୱୟଂକୁ
ନିଜକୁ ମନେହୁଏ ସଂପୂର୍ଣ୍ଣ ଈଶ୍ୱର
କାହା ପ୍ରତି କୌଣସି ଦାୟିତ୍ୱର ଊର୍ଦ୍ଧ୍ୱରେ

ଉଡ଼ାଜାହାଜ ଉପରୁ ବନ୍ୟାଞ୍ଚଳ ଦିଶେ
ଏକ ଅମୂର୍ତ୍ତ ଚିତ୍ର ଭଳି ସୁନ୍ଦର
ଯାହାକୁ ସୁନେଲି ଫ୍ରେମ୍‌ରେ ବାନ୍ଧି
ଟାଙ୍ଗି ଦିଆଯାଇପାରେ
ଅନୁତାପହୀନ ଆତ୍ମାର କାନ୍ଥରେ

## ଆଉ ଥରେ

ତମେ ଯେତେବେଳେ ଜନଗହଳିରେ
ମୋ ଆଡ଼କୁ ନିଜସ୍ୱ ଆଖିରେ ଅନାଇବ
ଏକାନ୍ତରେ ଥିଲାବେଳେ ତମେ ମତେ
ଘନିଷ୍ଠତାର ଯେଉଁ ଚରମ ପ୍ରମାଣ ଦେଇଥିଲ
ମୁଁ ଜାଣିବି ତା ମୋର କଳ୍ପନା ନ ଥିଲା

ତମେ ଅଙ୍ଗୁଳିରେ ଥରେ ଛୁଇଁଦେଲେ
ମୁଁ ଜାଣେ ମୁଁ ଅମର ହୋଇଯିବି ନାହିଁ
କିନ୍ତୁ ମୋର ମୃତ୍ୟୁର ଭୟସବୁ ଚାଲିଯିବ

ତମ ପାଇଁ ମୁଁ ଯେଉଁସବୁ କବିତା ଲେଖିଥିଲି
ତାକୁ ଅନାସକ୍ତିର ସହିତ ପଢ଼ିବା ବେଳେ
ତମେ ଯଦି ଆଖି ଉପରୁ ମୁହୂର୍ତ୍ତକ ପାଇଁ
ତମର ପ୍ରସିଦ୍ଧ ଭ୍ରୂକୁଟିକୁ ଲିଭାଇ ଦିଅ
ମୁଁ ପରବର୍ତ୍ତୀ କବିତା ଲେଖିବାର ସ୍ପର୍ଦ୍ଧା କରିବି

ତମେ ଯଦି ଆଉଥରେ ମତେ
ଏକାନ୍ତରେ ଭେଟିବାର ପ୍ରତିଶ୍ରୁତି ଦିଅ
ମୁଁ ଅନାୟାସ ଫେରିଯିବି ଆଉଥରେ
ମୋର ବିଲକ୍ଷଣ କଳ୍ପନାମାନଙ୍କର ଘନିଷ୍ଠତାକୁ

## ଯୁଦ୍ଧ ଖବର

ଆମେ ନିଜକୁ ସାନ୍ତ୍ୱନା ଦେଉ ଯେ
ଯାହା ସବୁ ଘଟୁଛି ତା ବର୍ତ୍ତମାନ ନୁହେଁ
କେଉଁ ଅଜଣା ସମୟର ଅତୀତ
ଏବଂ ଏଇଟି ଆମର ପୃଥିବୀ ନୁହେଁ
ଅନ୍ୟ କେଉଁ ଅଭିଶପ୍ତ ଉପଗ୍ରହ
ଯାହା ସହିତ ଆମର କୌଣସି ସଂପର୍କ ନାହିଁ

ଏ ଅନ୍ୟ ଏକ ଲୋମହର୍ଷକ ଚଳଚ୍ଚିତ୍ର
ଯାହାର ବହୁବର୍ଣ୍ଣ ଅଗ୍ନିକ୍ରୀଡ଼ାର ଫୁଲଝରି
ଅବସର ବିନୋଦନ ପାଇଁ ଦେଖା ଯାଇପାରେ
ବସିବା ଘରର ଆରାମରେ ଟେଲିଭିଜନ ପର୍ଦ୍ଦାରେ
ଅଥବା ଏକ ସ୍ୱାଭାବିକ ହିଂସାକାଣ୍ଡର ବିବରଣୀ
ଯାହାକୁ ପ୍ରତିଦିନ ସକାଳେ ପଢ଼ା ଯାଇଥାଏ
ନିର୍ବିକାର ସାହିତ୍ୟିକଙ୍କର ଉଦାସୀନ ଆଖିରେ

ଅଶ୍ମୀଭୂତ ଚେତନାର ବଙ୍କର୍ ଭିତରେ
ନିରପେକ୍ଷ ଆତ୍ମସନ୍ତୋଷର ଆଶ୍ରୟରେ ରହି
ଆମେ ସପ୍ତାହାନ୍ତ ସାମରିକ ସମୀକ୍ଷା କରୁ
ସିଗାରେଟ ଝୁଲରେ ଜଳିଯାଏ ତୈଳଖଣି
ଧୂଆଁରେ ଉଡ଼ିଯାନ୍ତି ବୋମାବର୍ଷୀ ବାୟୁଯାନ
ଚା କପ୍‌ରେ ବୁଡ଼ି ହଜିଯାଏ ବୁଡ଼ାଜାହାଜ
ବିସ୍କୁଟ ଭଳି ଭାଙ୍ଗିଯାଏ ଟ୍ୟାଙ୍କ ଓ ବିମାନ
ଖାଲି ପ୍ଲେଟ ସହିତ ଆମେ ଘୁଞ୍ଚାଇ ରଖିଦେଉ
ଯୁଦ୍ଧର ସମସ୍ତ କଠୋର ଭୟାନକତାକୁ

ତଥାପି ଯଦି ମନର ପ୍ରାୟାବଚେତନାରେ
କିଛି ଯୁଦ୍ଧକାତର ଭୟାର୍ତ୍ତ ମୁହଁର ଚିତ୍ର
ଧସି ପଶି ଆସନ୍ତି ଭାରସାମ୍ୟକୁ ଭାଙ୍ଗିଦେଇ
ଖବର କାଗଜର ଜଡ଼ ଓ ଶୀତଳ ପୃଷ୍ଠା ଭିତରେ
ଆମେ ପୋତି ଦେଉ ଆମର ନିର୍ଲଜ ମୁହଁକୁ

## ସ୍ୱାଗତଂ

ତମେ ଆସିବ ବୋଲି ଜାଣି
ବସନ୍ତ ଋତୁ ନିର୍ଦ୍ଧାରିତ ସମୟ ଆଗରୁ ଆସି
ମୋ ଘର ଚାରିପାଖରେ ଡେରା ପକାଇଥିଲା
ପକ୍ଷୀମାନେ ପତ୍ରମାନଙ୍କ ସହିତ ମିଶି
ଆବାହନ ସଂଗୀତର ଅଭ୍ୟାସ କରୁଥିଲେ

କବାଟକୁ ଖୋଲା ରଖି ପବନ ନିଜେ
ପର୍ଦାକୁ ଦି ପାଖକୁ ଆଢ଼େଇ ଧରିଥିଲା
ଗଛମାନେ ଫୁଲତୋଡା ହାତରେ ଧରି
ଛିଡ଼ା ହୋଇଥିଲେ ଫାଟକ ପାଖରେ

ତମେ ଆସିବ ବୋଲି
ମୁଁ ସକାଳକୁ ଶୀଘ୍ର ଛୁଟି ଦେଇ ଦେଇଥିଲି
ଟେଲିଫୋନ ଓ ଡାକବାଲାଙ୍କୁ ମନା କରିଥିଲି
ସେ ଦିନ ମୋ ଘରକୁ ଆସିବା ପାଇଁ
ବନ୍ଧୁମାନଙ୍କୁ କହିଥିଲି ମୁଁ ବିଦେଶ ଯାଉଛି

ମଧ୍ୟାହ୍ନର ଘଣ୍ଟା ତମେ ଆସିବ ବୋଲି
ହାତ ଯୋଡ଼ି ଠିଆ ହୋଇ ରହିଥିଲା
ମୁଁ ସମୟକୁ କହିଥିଲି ଅଟକି ରହିବା ପାଇଁ

# ଅଧାରାତିରେ

ଗଛ ଲତାମାନେ ଅନେକ ବେଳୁ
ସେମାନଙ୍କ କାନ୍ଦ ବନ୍ଦ କରି ଦେଇଥାନ୍ତି
ଜହ୍ନ ଆଲୁଅ ଆଉ ଚେଷ୍ଟା କରେ ନାହିଁ
ଝରକା ଡେଇଁ ଘର ଭିତରେ ପଶିବାକୁ
ଚୁପଚାପ ଯାଇ ଶୋଇପଡେ ଛାତ ଉପରେ
ବତୀମାନେ ପରିଶ୍ରାନ୍ତ ଓ ନିଷ୍ପ୍ରଭ ହୋଇ
ଯାଇ ଢଳିପଡ଼ନ୍ତି ଅନ୍ଧାର ଆଡ଼କୁ
ସାରା ଘର ନିଦ ଅନ୍ଧାରରେ ଓଦା ସରସର
ଦୁଃସ୍ୱପ୍ନ ଦେଖି ବିରାଡ଼ି ଚମକି ଉଠିବସେ

କାନ୍ଥଘଡ଼ିର କ୍ରମାଗତ ଘଣ୍ଟି ଶବ୍ଦରେ
ସମସ୍ତେ ଓହ୍ଲାଇ ଆସନ୍ତି ତରବର ହୋଇ
ବସିବା ଘରର ଚଟାଣ ଉପରକୁ
ଫଟୋଗ୍ରାଫ ଫ୍ରେମ ଭିତରୁ ଲୋକ
ଥାକରେ ସଜା ହୋଇ ରହିଥିବା ଖେଳନା
ଏବଂ ମ୍ୟାଗାଜିନ ପୃଷ୍ଠାର ଚିତ୍ରମାନେ
ଟେଲିଫୋନର ନିଃଶବ୍ଦ ନିୟନ୍ତ୍ରଣରେ ରହି
ସେମାନେ ପରସ୍ପରକୁ ଛୁଅନ୍ତି

କୋଳାକୋଳି ସୁଖଦୁଃଖ ହୁଅନ୍ତି
ହାତକୁ ହାତ ଧରି ନାଚନ୍ତି ଖେଳନ୍ତି
ପୁଣି ଯେତେବେଳେ ଘଣ୍ଟାର ହାତ
କାନ୍ଥ ଉପରେ ହଠାତ୍ ଆସି ଘଣ୍ଟା ପିଟେ
ସମସ୍ତେ ବ୍ୟସ୍ତ ହୋଇ
ନିଜ ନିଜ ଜାଗାକୁ ଫେରିଯାନ୍ତି
ବିରାଡ଼ିର ବିସ୍ଫାରିତ ଆଖି ଡୋଳାରେ
ବିସ୍ମୟର ଆଲୋକ ବିନ୍ଦୁଟିଏ ଛାଡ଼ି ଦେଇ

ଚଉକିଦାରର ହୁଇସିଲ ସାନ୍ଦ୍ର ଶୂନ୍ୟକୁ ଭେଦି
ବିଛଣାର ନିଭୃତରେ ଆସି ପଶିଯାଏ
ସେଥିରେ କୌଣସି ରହସ୍ୟ ଉନ୍ମୋଚିତ ହୁଏ ନାହିଁ
ବିରାଡ଼ି ଆଖି ବୁଜି ପୁଣି ଶୋଇଯାଏ
ଭୟମିଶା ନିଜ ଭିତରେ ନିଜକୁ ଜାକିଜୁକି

## ଆଲବମ

ତମେ ବ୍ୟାଙ୍କ ଝରକା ପାଖରେ ଠିଆ

ତମ ହାତରେ ଟଙ୍କା ଭଙ୍ଗାଇବାର ଚେକ୍
ତମର ଅପେକ୍ଷାର ସମୟ ଭିତରେ
କବାଟ ଝରକା ଟେବୁଲ ଚଉକି କାଉଣ୍ଟର
ସମସ୍ତେ ମିଶି ନିଷ୍ପତ୍ତି ନେଉଛନ୍ତି
ଚେକ୍ ବିନିମୟରେ ସେମାନେ ଯାଇ
ପୁଣି ଜଙ୍ଗଲର ଗଛ ହୋଇଯିବେ
ଏ ଗୋଟିଏ ଦୃଶ୍ୟ

ତମ ହାତରେ ଟେଲିଫୋନ
ତମର ତର୍ଜନୀ ଡାଏଲ ଉପରେ
କିନ୍ତୁ ତମେ କାହାରିକୁ ପାଉ ନାହଁ
କାରଣ ଏ ଭିତରେ ଖବର ହୋଇଯାଇଛି
ତାର ବେତାର ଉପଗ୍ରହ ଦେଇ
ଯେ ତମେ କଥା କହିବାକୁ ଚାହୁଁଛ
ଏବଂ ପୃଥିବୀର ପ୍ରତିଟି ଟେଲିଫୋନ
ତମର ସ୍ୱର ଶୁଣିବାପାଇଁ ବ୍ୟାକୁଳ
ଏ ଅନ୍ୟ ଏକ ଦୃଶ୍ୟ

ଦୃଶ୍ୟାନ୍ତରରେ ତମେ ବସି ରହିଛି
ଟେବୁଲ ଉପରେ ଖାଲି କାଗଜ ଧରି
ତମର ହାତ ଅଟକି ଯାଇଛି
ଗୋଟିଏ ଧାଡ଼ି ଲେଖି ସାରିବା ପରେ
ତାର କାରଣ ତମର କଲମ ଭିତରେ
ବର୍ଣ୍ଣମାଳାର ଅକ୍ଷର ଓ ମାତ୍ରା ସବୁ
ନିଜ ନିଜ ଭିତରେ ପ୍ରତିଦ୍ୱନ୍ଦ୍ୱିତା କରୁଛନ୍ତି
କିଏ ଆଗେ କାଗଜ ଉପରେ ଓହ୍ଲାଇ
ତମର ବିସ୍ମିତ ମୁହଁକୁ ପ୍ରଥମେ ଦେଖିବ

ଅନ୍ୟ ଦୃଶ୍ୟ ମନକୁ ଆସିବା ଆଗରୁ
ମୁଁ ଆଲବମକୁ ବନ୍ଦ କରିଦିଏ

କାରଣ ମୋର ଆଶଙ୍କା ହୁଏ
ନିଜର ମୌଳିକ ଉତ୍ସ ଖୋଜି ଖୋଜି
ଦୃଶ୍ୟମାନେ ଉଡ଼ି ଚାଲିଯିବେ ମୋ ପାଖରୁ
ତମର ସ୍ମରଣ ବିହୀନ ବର୍ତ୍ତମାନକୁ
ଯାହା ମୋର ସଂପୂର୍ଣ୍ଣ ଦୃଷ୍ଟି ଅଗୋଚର

# ଏ କଥା ବିହିତ

ଏ କଥା ବିହିତ ଯେ
ଏକଛତ୍ର ଶାସକଙ୍କ ହାତରେ
ସାମ୍ରାଜ୍ୟ ଓ କ୍ରୀତଦାସ ରହିବେ

ଧନୀକମାନଙ୍କ ହାତରେ
କ୍ଷମତା ଓ ପ୍ରତିପତ୍ତି ରହିବ

ଭଣ୍ଡ ସନ୍ନ୍ୟାସୀମାନଙ୍କ ପାଖରେ
ଶିଷ୍ୟ ଓ ଅନୁଚର ରହିବେ

ସର୍ବସାଧାରଣଙ୍କ ପାଖରେ
ଦାରିଦ୍ର୍ୟ ଓ ଦୁଃଖ ରହିବ

ଭାଗ୍ୟବାଦୀମାନଙ୍କ ପାଖରେ
କର୍ମଫଳର ବିଡ଼ମ୍ବନା ରହିବ

ଏବଂ
ସମୟ ହାତରେ ରହିବ
ଇତିହାସର ଶେଷ ସତ୍ୟ ସବୁ

# ଆରଣ୍ୟକ

ଖରାବେଳେ ସୂର୍ଯ୍ୟ ଖୁନ ହୋଇଗଲା
ଆତତାୟୀମାନେ ଖଣ୍ଡବିଖଣ୍ଡ କରି ତାକୁ
ଫିଙ୍ଗି ଦେଲେ ନର୍ଦ୍ଦମାର ଅନ୍ଧାରକୁ
ଶ୍ୱାପଦମାନେ ଅଧିକାର କରିନେଲେ ସହର
ଲକ୍ଷ ଲକ୍ଷ ନଖ ଦନ୍ତ ପଂଝା ନେଇ
ଝଡ଼ ଆସି ଝୁଣିନେଲା ପୃଥିବୀକୁ
ଶାଗୁଣାମାନେ ଥଣ୍ଟରେ ଖୁମ୍ପି ଖୁମ୍ପି
ଖିନଭିନ କରିଦେଲେ ମଲା ଦିନଟିକୁ

ବନାଗ୍ନି ଲାଗିଗଲା ଏ ପାଖରୁ ସେ ପାଖ
ପକ୍ଷୀମାନେ ଛିଟିକି ପଡ଼ିଲେ ସ୍ଫୁଲିଙ୍ଗ ଭଳି
ନିଆଁର ଘେରରେ ବନ୍ଦ ରହିଗଲେ
ନିରୀହ ଅସହାୟ ପ୍ରାଣୀମାନେ
ଧରାବନ୍ଧା ହେଡ଼ଲାଇନରେ ହଜିଗଲା
ଆହୁରି ଶହେଟି ହତ୍ୟାର ଖବର
ଅକ୍ଷରମାନେ ଯାଇ ଭୟରେ ଲୁଚିଗଲେ
ପ୍ରାଚୀର ପତ୍ରର ରକ୍ତାକ୍ତ ପୃଷ୍ଠାରେ
ଛୋଟ ଛୋଟ କାଗଜର ଟୁକୁଡ଼ା ହୋଇ
ଇତିହାସ ନିଜକୁ ଛିନଛତ୍ର କରି ଉଡ଼ାଇ ଦେଲା

ବଜ୍ର ଭଳି ଆସିଲା ଗୁଳିର ଆବାଜ
ଆକାଶ ଚିରିଗଲା ଦି ଭାଗ ହୋଇ
ଆନନ୍ଦବିଭୋର ଜୀବନର କଳରୋଳ

ପାଲଟି ଗଲା କୁଢ଼ କୁଢ଼ ପାଉଁଶ ଅଂଗାର
ଗଳିରୁ ଗଳିକୁ ଗ୍ରାସ କରି ନେଲା ସନ୍ତ୍ରାସ
ପ୍ରାଗୈତିହାସିକ ଜନ୍ତୁମାନେ ମାଡ଼ି ଚାଲିଗଲେ
ଜଳନ୍ତା ବସ୍ତିର ଛାତି ଉପର ଦେଇ

## ସ୍ୱତଃସିଦ୍ଧ

ମୁଁ ସାନ୍ତ୍ୱନା ନିଏ ଗୋଟିଏ ବିଶ୍ୱାସରୁ
ଅନ୍ୟ ଏକ ସଂଶୟ ପର୍ଯ୍ୟନ୍ତ
ମୁଁ ବଞ୍ଚେ ତମର ଗୋଟିଏ ପ୍ରତିଶ୍ରୁତିରୁ
ଅନ୍ୟ ଏକ ପ୍ରତ୍ୟାହାର ଯାଏ

ମୁଁ ହତାଶ ହୋଇ ବସି ରହିଥାଏ
ଯଦିଓ ତମେ ମତେ ଆଶା ଦେଇଥିଲ
ନିର୍ଜନ ଦ୍ୱୀପ ଓ ଜହ୍ନ ରାତିର
ପୁଣି କେବେ ସନ୍ତୁଷ୍ଟ ରହିଥାଏ
ଯଦିଓ ତମର ଦି ଧାଡ଼ିର ଚିଠିରେ
କୌଣସି ବି ଅଙ୍ଗୀକାର ନ ଥିଲା

ମୋର କୋଠରୀ ହିଁ ନିର୍ଜନ ଦ୍ୱୀପ
ତମେ ଯେତେବେଳେ ଖରାବେଳେ ଆସି
ଆଖି ବୁଜି ଲିଭାଇ ଦିଅ ବାହାରର ପୃଥିବୀକୁ
ପୁଣି ତମେ ନିଜକୁ ଖୋଲି ରଖି ଦେଲେ
ପ୍ରତ୍ୟୟର ସୀମାନ୍ତରେ ସୂର୍ଯ୍ୟ ଅସ୍ତ ଯାଏ
ଏବଂ ରାତି ଓହ୍ଲାଇ ଆସେ ଜହ୍ନକୁ ନେଇ

ତମେ ତମର ସମସ୍ତ ପ୍ରତିଶ୍ରୁତି ଭୁଲି ଯାଇ

ମତେ ମିଥ୍ୟାବାଦୀ ବୋଲି ପ୍ରମାଣ କରିଦିଅ
ମତେ ଧରାଶାୟୀ କରି ମୋର ଦେହାରୂଢ଼ ହୋଇ
ତମେ ସିଦ୍ଧ କରିଦିଅ ମୋର ଲମ୍ପଟତା

ମୁଁ ସବୁ ପାଇ ଯାଏ ପୁଣି ସବୁ ହରାଇ ଦିଏ
ତଥାପି ମୁଁ ନିଃସନ୍ଦେହ ରହିଥାଏ
କାଲି ପୁଣି ତମେ ଆସିବ ଆସିବ ନାହିଁ
କିନ୍ତୁ ମୁଁ ନିଷ୍ଠାର ସହିତ ତମ ଅପେକ୍ଷାରେ ରହିଥିବି

ମୁଁ ଏଥରକ ଏଇ ସତ୍ୟଟି ଉପଲବ୍ଧି କରେ
ଯଦିଓ ତା କୌଣସି ପ୍ରମାଣସାପେକ୍ଷ ନ ଥିଲା
ତମେ ହେଉଛ ତମେ ମୁଁ ହେଉଛି ମୁଁ
କୋଠରୀ କୋଠରୀ ଜହ୍ନରାତି ଜହ୍ନରାତି
ମୋର କେବେ ହେଲେ ମୁକ୍ତି ନାହିଁ ତମଠାରୁ
ସାକ୍ଷାତରେ ହେଉ ବା ସ୍ମରଣରେ
ବିଚ୍ଛେଦରେ ହେଉ ବା ବିସ୍ମୃତିରେ
ଏବଂ ମୋ ଜୀବନର ସର୍ବଶ୍ରେଷ୍ଠ ସଫଳତା
ତମର ହଁ ନାହିଁର ସୂକ୍ଷ୍ମ ବ୍ୟବଧାନ ଭିତରେ
ମୋର ଅନିବାର୍ଯ୍ୟ ବଞ୍ଚି ରହିବାର ସାମର୍ଥ୍ୟ

## ଐତିହାସିକ ସତ୍ୟ

ଇତିହାସ ଆଉ କିଛି ନୁହେଁ ପ୍ରଳାପ ମାତ୍ର
ଐତିହାସିକ ସତ୍ୟ ବୋଲି କିଛି ନାହିଁ
ଜୋର ଯାହାର ମୂଳକ ସହିତ ଇତିହାସ ବି ତାର
ଅପଦାର୍ଥ ପଥର ଉପରେ ଯାହା ନାଁ ଖୋଳିଦିଅ
ଅକ୍ଷର ଲିଭିବା ଯାଏ ସ୍ୱତ୍ୱ ଓ ଅଧିକାର ତାରି

ଇତିହାସ ଏକ ଆବହମାନର ଫସିଲ

ଯାହାର ଉପାଦାନ ଅପନ୍ତରାରେ ପଡ଼ିଥିବା
ଭଙ୍ଗା ତଲୁଆର ଜୀର୍ଣ୍ଣ ଖପୁରୀ ବିଦୀର୍ଣ୍ଣ ମୂର୍ତ୍ତି
ଅପଠିତ ଅକ୍ଷରମାଳା ଅନିର୍ଣ୍ଣୀତ ତମ୍ବାପଟା
ଓ ଅଭିଲେଖାଗାର ଧୂଳିରେ ବିଲୁଣ୍ଠିତ କାଗଜ ଟୁକୁଡ଼ା
ଯାହାକୁ ଯେତେବେଳେ ଯେଉଁଭଳି ଇଚ୍ଛା
ସେହିଭଳି ବ୍ୟାଖ୍ୟା ଓ ବ୍ୟବହାର କରାଯାଇ ପାରେ

ଇତିହାସକୁ ତଳୁ ଉଠାଇ ନିଆଯାଇପାରେ
ଶାଣିତ ତରବାରୀ ମୁନରେ ରାଜମୁକୁଟ ଭଳି
ଇତିହାସ ବିକ୍ରି ହୋଇଯାଏ ନିଲାମ ଡାକରେ
ବେଶୀ ଟଙ୍କା ଗଣି ଦେଉଥିବା ବେପାରୀ ହାତକୁ
ଜନାରଣ୍ୟରେ ଜଳିଯାଏ କୁଶପୁତ୍ତଳିକା ହୋଇ
ସମର୍ପିତ ହୋଇଯାଏ ପୁରୋହିତର ସ୍ୱାହାରେ
ସ୍ୱାର୍ଥ ସାଧନର ହବନରେ ହଜିଯାଏ ଇତିହାସ

ଇତିହାସରେ କୌଣସି ଚରମ ସତ୍ୟାସତ୍ୟ ନାହିଁ
ବହୁରୂପୀ ଭଳି ରୂପ ଓ ରଙ୍ଗ ବଦଳାଉଥାଏ
ସବୁ କିଛି ସିଦ୍ଧ ଓ ସାବ୍ୟସ୍ତ କରାଯାଇ ପାରେ
ଜାଲ ପ୍ରମାଣ ମିଛ ଦସ୍ତାବିଜ ସାଙ୍କେତିକ ଚିହ୍ନ
ଓ ପକ୍ଷପାତୀ ଗବେଷଣାର ଛନ୍ଦ କପଟରେ
ପଥର ମୂର୍ତ୍ତି ପ୍ରମାଣିତ ହୁଏ ପାଳଭୂତ ବୋଲି
ମସଜିଦ ପାଲଟିଯାଏ ମନ୍ଦିର ପାଲଟି ଯାଏ ସ୍ତୂପ
ଯେ ନାୟକ ସେ ବିଦୂଷକ ସେ ହିଁ ଖଳନାୟକ

ଇତିହାସର କୌଣସି ସତ୍ୟ କୌଣସି ସ୍ୱରୂପ ନାହିଁ
ସାହସ କରି ଯଦି ଇତିହାସ ମୁହଁରୁ ଖୋଲିନିଅ
ଗୋଟିଏ ପରେ ଗୋଟିଏ କରି ସବୁଯାକ ମିଛ
ତା ତଳେ ଆହୁରି ଗୋଟିଏ ମୁଖା ହିଁ ରହିଥିବ

# କାଉଁରୀ କାଠି

ଛୁଟି ଦିନର ଉଦ୍ଧତ ଚପଳତାରେ
ପିଲାଟି ସମୁଦ୍ର କୂଳକୁ ଯିବା ବାଟରେ
ତଳେ ପଡ଼ିଥିବା କାଠିଟିକୁ ଗୋଟାଇ ନେଲା
ପ୍ରଜାପତିର ଉଡ଼ନ୍ତା ବିସ୍ମୟକୁ ନେଇ
ନିଜର ବିପର୍ଯ୍ୟସ୍ତ ବାଳରେ ଖୋଷି ଦେଲା
ହାତରେ ସାଉଁଟି ନେଲା ଶାମୁକାର ବନ୍ଦ ସ୍ୱପ୍ନକୁ
ଖରାରେ ଉଡ଼ି ସେ ପହଞ୍ଚିଲା ସମୁଦ୍ର କୂଳରେ

ବାଲି ଉପରେ ବସି ସେ ପ୍ରଥମେ
ନିଜ ପାଇଁ ଛୋଟ ଘରଟିଏ ତିଆରି କଲା
କାଠିଟିକୁ ପ୍ରତ୍ୟୟର ସହିତ ହାତରେ ଧରି
ସେ ରଙ୍ଗ ବେରଙ୍ଗ ପଥରଖଣ୍ଡକୁ ବାଣ୍ଟିଦେଲା
ଛୋଟ ଛୋଟ ସ୍ତୂପଙ୍କ ଭିତରେ
ତା ପରେ ବିନ୍ଦୁ ବିନ୍ଦୁ ଖରା ନେଇ
ବିଞ୍ଚିଦେଲା ଆଖି ପାଉଥିବା ବାଲି ସାରା
ପକ୍ଷୀମାନଙ୍କୁ ଉପରକୁ ଉଡ଼ାଇ ଦେଲା
ପବନର ଛୋଟ ଛୋଟ କନ୍ଦୁକ କରି
ଦୂରର ଘରମାନଙ୍କୁ ଚିତ୍ରପଟ କରି ଟାଙ୍ଗିଦେଲା
ଦିଗ୍‌ବଳୟର ଏ ପାଖରୁ ସେ ପାଖ

ସେ ପବନକୁ ସିଟି ମାରିବାକୁ କହିଲା
ସମୟକୁ କହିଲା ଚୁପଚାପ ବସି ରହ
ଛାଇକୁ କହିଲା ପାଦ ତଳେ ଆସି ମୁଣ୍ଡିଆ ମାର
ସମୁଦ୍ରକୁ କହିଲା ଯାଇ ନିଜର ରଙ୍ଗ ବଦଳାଅ
ମେଘକୁ କହିଲା ଆକାଶରେ ଚିତ୍ର ଆଙ୍କ

ଢେଉକୁ କହିଲା ଅଜଣା ଆରପାରିରୁ ଯାଇ
ଘଡ଼ିକୁ ଘଡ଼ି ନୂଆ ନୂଆ ଖବର ଆଣିଦିଅ
ଝାଉଁଗଛ ଅବୁଝା ହୋଇ କାନ୍ଦିବାରୁ
ସେ ତାକୁ ଶାସ୍ତି ଦେଲା ଛିଡ଼ା ହୋଇ ରହିବା ପାଇଁ

ଏଥରକ ଚାରି ଆଡ଼କୁ ଅନାଇ
ପିଲାଟି ସନ୍ତୋଷର ହସ ହସିଲା
ଏବଂ ଛାଇ ଲେଉଟା ଘରକୁ ଫେରିଯିବା ବେଳେ
କାଠିଟିକୁ ଫିଙ୍ଗି ଦେଲା ସମସ୍ତ ଜୋର ଦେଇ
ନିଜର ସ୍ୱଳ୍ପ ବୟସର ସାତତାଳକୁ

## ସ୍ତ୍ରୀ ଲୋକ

ସ୍ତ୍ରୀ ଲୋକଟି ନିଜର ବାଳରେ
ପରିବାରର ସମସ୍ତଙ୍କ ପାଇଁ
ଗୋଟିଏ ଗୋଟିଏ ସ୍ୱେଟର ବୁଣିଲା

ନିଜର ପେଟକୁ କାଟି
ସେ ସମସ୍ତଙ୍କୁ ଖାଇବାକୁ ଦେଲା

ନିଜର ମୁହଁ ଓ ଛାତିକୁ ସେ ସମର୍ପି ଦେଲା
ହିଂସ୍ର ଦାନ୍ତ ଓ ନଖ ପାଖରେ

ନିଜର ଅଙ୍ଗପ୍ରତ୍ୟଙ୍ଗ ଅବୟବମାନଙ୍କୁ
ସେ ସ୍ୱେଚ୍ଛାରେ ଉତ୍ସର୍ଗ କରିଦେଲା
ଭଙ୍ଗାରୁଜା ଘରସଂସାରର ଅବଲମ୍ବ ପାଇଁ

ଏବଂ ଶେଷରେ କହିଲା
ସତରେ ମୁଁ ଅତି ଲଜ୍ଜିତ ଯେ
ଦେବା ପାଇଁ ମୋ ପାଖରେ ଆଉ କିଛି ନାହିଁ

## ଧ୍ୱଂସବିଧ୍ୱଂସ

ଝରକା ବାହାରେ ସଂବର୍ତ୍ତକ ମେଘର ଅନ୍ଧାର
କାନ୍ଥ ଭେଦି ପଶିଆସେ ଦୁର୍ବିନୀତ ଝଡର ତର୍ଜନୀ
ଛାତ ଦେଇ ଭାଙ୍ଗିପଡେ ମେଘମନ୍ଦ୍ର ଆକାଶ
ବିଛଣା ଉପରେ ତମେ ସନ୍ତ୍ରସ୍ତ ଓ ଭୟଭୀତ
ଆଖିରେ ତମର ଆତଙ୍କ ଓ ଉତ୍ତେଜନା
ମୁଁ ଚାହିଁ ରହେ ଅବାକ ସ୍ୱପ୍ନରେ ସମ୍ମୋହିତ
ଅଶାନ୍ତ ମହାସାଗରରେ ନୌକା ଦୋଳୁଥାଏ
ପାଲ ଦୁଇଟି ଫୁଲି ଉଠେ ଦୁର୍ବାର ବାତ୍ୟାରେ
ଜଳାବର୍ତ୍ତ ତାକୁ ଟାଣିନିଏ ଅତଳାତଳକୁ
ନାଆ ଯାଇ ଭାଙ୍ଗିଯାଏ ସମୁଦ୍ରର ଚଟାଣରେ
ସୁପ୍ତ ଆଗ୍ନେୟଗିରି ଜଳି ଉଠେ ଆକ୍ରୋଶରେ
ସୁଦୂରତମ ଅତୀତରୁ ଏକ ଶେଷ ଚିତ୍କାର ଆସି
ନିଃଶବ୍ଦ କରିଦିଏ ଉଦ୍‌ବେଳ ସମୁଦ୍ରକୁ

ତାପରେ ସହସା ସବୁ ଚୁପଚାପ
ତମେ ଶୋଇ ଯାଇଥାଅ ସଂପୂର୍ଣ୍ଣ ଚେତନାହୀନ
ଶେଷ ବିନ୍ଦୁ ଜଳ ଯାଇ ଲୋପ ପାଏ ଆବର୍ତ୍ତରେ
ଆଗ୍ନେୟଗିରି ଚାରିପାଖେ ଲାଭା ଶାନ୍ତ ଓ ଶୀତଳ
ବାହାରେ କେବଳ ଏକ ଥମ ଥମ ସ୍ଥିତି

ଏଥରକ ମୋର ନିଦ ଭାଙ୍ଗେ ଦୁଃସ୍ୱପ୍ନରେ
ଝରକା ବାହାରେ ଛମ ଛମ ଆର୍ଦ୍ର ଜହ୍ନରାତି
ଦୂରରୁ ଗର୍ଜନ ଆସେ ଶ୍ୱାପଦସଂକୁଳ ଅରଣ୍ୟର
କୋଠରୀରେ ସଂଚରିଯାଏ ରହସ୍ୟମିଶା ଭୟ
ବିଛଣା ଉପରେ ତମେ ସଜାଗ ଓ ସଚେତ
ତମର ବିସ୍ଫାରିତ ଆଖିରେ ପ୍ରଶ୍ନ ଓ ପ୍ରତ୍ୟାଶା

ପର୍ବତ ଘାଟି ଉପରେ ଅଟକି ଯାଇଥିବା ଟ୍ରକ୍
ଷ୍ଟାର୍ଟ ନିଏ ଇଂଜିନରେ ସ୍ଫୁଲିଙ୍ଗ ଜଳାଏ
କଳକବ୍‌ଜା ଜୀବନ ନିଅନ୍ତି ମୃଦୁ ଗୁଂଜରଣ କରି
ଅଙ୍ଗପ୍ରତ୍ୟଙ୍ଗରେ ବେପଥୁ ଆସେ ହେଡଲାଇଟ ଜଳେ
ପିଚ୍ଛିଳ ରାସ୍ତା ଉପରେ ଆଗକୁ ଛୁଟିଯାଏ
ଶହେ କିଲୋମିଟର ବେଗରେ
ରାସ୍ତାର ମୋଡ଼ରେ ହଠାତ
ଅନ୍ୟ ହେଡ୍‌ଲାଇଟର ବର୍ଚ୍ଛା ବିନ୍ଧିଯାଏ
ତାକୁ ଏଡ଼ାଇବାର କୌଣସି ଉପାୟ ନାହିଁ

ତମକୁ କୌଣସି ଚେତାବନୀ ଦେବା ପୂର୍ବରୁ
ମୁଁ ଶୁଣେ ତମର ନିଶ୍ୱାସର ଉତ୍‌ଥାନ ପତନ
ତମେ ମୋତେ ଚାପା ଉଦ୍‌ଗ୍ରୀବ ଗଳାରେ କହ
ଯାଉ ଦୁର୍ଘଟଣା ହୋଇଯାଉ ଭାଙ୍ଗିଯାଉ
ଛାରଖାର ଧ୍ୱସ୍ତବିଧ୍ୱସ୍ତ ହୋଇଯାଉ ସବୁ କିଛି

ସ୍ୱପ୍ନର ସମ୍ମୋହନରୁ ଦୃଷ୍ଟି ଫେରାଇ ଆଣି
ମୁଁ ଏଥରକ ସଂପୂର୍ଣ୍ଣ ଏକାଗ୍ର ହୋଇଯାଏ

## ଝରକା ଦେଇ

ଆଦିଗନ୍ତ ଶୂନ୍ୟ ଉପରେ ସୂର୍ଯ୍ୟ ଓ ମେଘ ମିଶି
ଆଙ୍କି ଦିଅନ୍ତି ଏକ ସୁନା ରଙ୍ଗର ଆକାଶ
ଛିଣ୍ଡା ଗୁଡ଼ିଟି ଉଡ଼ାଇ ନେଇ ଆସେ
ତାର ଗୋଟିଏ ଖରା ଖରା ଅପଚିତ ପ୍ରତିରୂପ
ତାକୁ ଆଣି ସଜାଇ ଦିଏ ମୋ ଟେବୁଲ ଉପରେ

ପ୍ରତିହତ ଅନ୍ଧାରର ଉଷ୍ମ ଅଭ୍ୟନ୍ତରରୁ
ନିଶାଚର ପକ୍ଷୀମାନେ ନଖରେ ଉଖାରି ନିଅନ୍ତି
ମେଞ୍ଚା ମେଞ୍ଚା ସଜଳ ଜହ୍ନରାତି
ତାକୁ ଡେଣାରେ ଆଣି ବିରକ୍ତିର ସହିତ
ଫିଙ୍ଗି ଦିଅନ୍ତି ମୋ ବିଛଣା ଉପରକୁ

## ଲୋଧି ଗାର୍ଡ଼େନ

ଏଠାରେ ଅତୀତ ଓ ବର୍ତ୍ତମାନ
ପରସ୍ପର ସହିତ ଚୁକ୍ତି କରି ନେଇଛନ୍ତି
ଶାନ୍ତିପୂର୍ଣ୍ଣ ସହାବସ୍ଥାନର

ପରମ୍ପରା ଏଠାରେ ଆଖି ବୁଜି ସହିନିଏ
ଅନାହୂତ ଆଗନ୍ତୁକମାନଙ୍କର
ସାରାଦିନର ଅର୍ବାଚୀନ ଅଶାଳୀନତାକୁ
ପିକନିକ କରିବାକୁ ଆସିଥିବା ଲୋକମାନେ
ଛାଡ଼ି ଦେଇଯାନ୍ତି ଆବର୍ଜନାର ସ୍ମାରକୀ

ଘାସ ମାନିନିଏ ଜୋତାର ଅତ୍ୟାଚାର
ପକ୍ଷୀମାନେ କିନ୍ତୁ ଅଶୁଣା କରିଦିଅନ୍ତି
ଟ୍ରାନ୍‌ଜିଷ୍ଟରର ଯାନ୍ତ୍ରିକ ରାଗମାଳା
ଗୁଣ୍ଡୁଚିମୂଷା ମୁଣ୍ଡ ହଲାଇ ମନା କରିଦିଏ
ବୁଲାବିକାଳୀ ପାଖରୁ ଚିନାବାଦାମ କିଣିବାକୁ

କିମ୍ବଦନ୍ତୀ ଭିତରୁ ବାହାରି ଆସିଥିବା
ଅନଭିଜ୍ଞ ଯୁବକ ଯୁବତୀ ଦୁହିଁଙ୍କୁ
ଏଠାରେ ଏକାନ୍ତ ହେବା ପାଇଁ ଜାଗା ମିଳେ ନାହିଁ
ପ୍ରତିଟି ଗଛ ପ୍ରତିଟି ବୁଦା ପଛରେ
ପୋଲିସ ଓ ଫେରିବାଲାର ପୋଷାକ ପିନ୍ଧି
ଛିଦ୍ରାନ୍ୱେଷୀ ସଦାଚାର ଛକି ବସିଥାଏ
ଅବଶେଷରେ ତୃଷାର୍ତ୍ତ ଓଠ ବଦଳରେ
ହାତରେ ହାତ ଛନ୍ଦି ନିଅନ୍ତି ସେମାନେ
ବ୍ୟର୍ଥ ଓ ନିରାଶ ହୋଇ ଯୁବକଟି
ସମାଧି ଉପରେ ନିଜର ନାଁ ଖୋଳିଦିଏ
ଅମରତ୍ୱର ଅସମ୍ଭବ ସ୍ପର୍ଦ୍ଧା
ଓ ବିରକ୍ତିର ନିର୍ବୀର୍ଯ୍ୟ ଆକ୍ରୋଶରେ

ସମାଧିର ଗମ୍ବୁଜ ଯେଉଁ ପକ୍ଷୀମାନଙ୍କୁ
ସଂପୂର୍ଣ୍ଣ ନୀଳିମାକୁ ଉଡ଼ାଇ ଦେଇଥିଲା
ସଂଜବେଳେ ସେମାନେ ଫେରିଆସି
ଆଶ୍ରୟ ନିଅନ୍ତି ତାର ନିଜସ୍ୱ ମନନରେ
ରାତି ନିବିଡ଼ରୁ ନିବିଡ଼ତର ହୁଏ
ଅମର ଆତ୍ମାମାନେ ଅଟକି ରହନ୍ତି
ଅତୀତ ଓ ଭବିଷ୍ୟତ ମଝିରେ
ଇତିହାସ ଧାଇଁ ବୁଲୁଥାଏ ଖାଲି ପାଦରେ
ନିଶୂନ ଘନିଷ୍ଠତାର ଆଦିଗନ୍ତ ଏକାନ୍ତ ସାରା

# କବିତା ପାଠ

ବ୍ୟବସ୍ଥାଟି ଠିକ ଯେପରି ଗୋଟିଏ କବିତା
ସାବଲୀଳ ପଂକ୍ତି ଭଳି ଧାଡ଼ି ଧାଡ଼ି ବସିବା ଜାଗା
ଉପଯୁକ୍ତ ଶିରୋନାମାର ଗମ୍ଭୀରତା ନେଇ
ଶୀର୍ଷ ଦେଶରେ ସଭାପତିଙ୍କର ଚଉକି
ଶ୍ରୋତାମାନେ ଗୋଟିଏ ଗୋଟିଏ ସହଜ ଶବ୍ଦ
ଉପଧା ଓ ଯତିପାତ ଅନୁଯାୟୀ ସଜ୍ଜିତ
ଉପମା ଓ ରୂପକ ଭଳି ବସିଛନ୍ତି ଝିଅମାନେ
ଏକା ଭଳି ପୋଷାକରେ ଦୁଇଜଣ ଯୋଡ଼ି ଯମକ
କେବଳ କିଛି ସମାଲୋଚକ ବସିଛନ୍ତି ନାକ ଟେକି
ରୋଷକଷାୟିତ ଆଖି ଓ ଭ୍ରୂକୁଟିରେ ବିଭୂଷିତ
ଗୋଟିଏ ଗୋଟିଏ ମୁଦ୍ରାଦୋଷ ଓ ଯତିଭଙ୍ଗ ଭଳି
କବି ବସିଛି ପ୍ରଥମ ଶବ୍ଦଟିର ଉଦ୍‌ବେଗ ନେଇ

କବି ଆରମ୍ଭ କରୁଛି ତାର କବିତାର ଆବୃତ୍ତି
ନିଜର ଭୁଲିଯିବାକୁ ଚାହୁଁଥିବା ସ୍ମୃତିମାନଙ୍କରେ ଝୁଣ୍ଟି
ପୁରୁଣା ଅନୁଭବର ଧୂସର ଉପକୂଳମାନଙ୍କରେ
ସେ ହଜି ଯାଉଛି ତାର ସୃଜନର ଗୋଲକଧନ୍ଦାରେ
ଶବ୍ଦମାନେ ଟାଣି ନେଉଛନ୍ତି ଅଦ୍ଭୁତ ସୀମାନ୍ତମାନଙ୍କୁ

ଯେଉଁଠାରେ ବିଭିନ୍ନ ସମୟର ରୂପ ରସ ଗନ୍ଧ
ଆସି ତାକୁ ସଂପୂର୍ଣ୍ଣ ବିଚ୍ଛିନ୍ନ କରି ଦେଉଛନ୍ତି
ହଠାତ ଅଜଣା ପାଲଟି ଯାଇଥିବା ବର୍ତ୍ତମାନରୁ
କିଛି ଆଉ ହୃଦୟଙ୍ଗମ କରି ପାରୁନାହିଁ କବି
କାହିଁ କେଉଁ ଦୂର ଅତୀତରେ ଲେଖିଥିବା

ନିଜର କବିତାର ନିର୍ମମ ଦାବୀମାନଙ୍କ ବ୍ୟତୀତ

କବିର ଭାବଶୂନ୍ୟ ଆଖିର ପଲକରେ
କବିତାର ଶେଷ ଧାଡ଼ିଟି ହଜିଗଲା ହଠାତ
ହାତତାଳି ହେଲା ଉପସଂହାରର ନିର୍ଦ୍ଦୟତା ନେଇ
ସଭାଘର ଖାଲି ହୋଇଗଲା ସାର୍ଥକ ମୁହୂର୍ତ୍ତରେ
ଶ୍ରୋତାମାନେ ବାହାରି ଆସିଲେ
ବ୍ୟଞ୍ଜନାର ଦରଜାମାନ ଦେଇ
କଲମ ମୁନରୁ ଛିଟିକି ପଡୁଥିବା ଅକ୍ଷର ଭଳି
ବିସ୍ମୟାଭିଭୂତ ନୀରବ ଓ ଅପ୍ରତିଭ

ସେମାନେ ଏ ପର୍ଯ୍ୟନ୍ତ ତନ୍ମୟ ହୋଇ ଶୁଣୁଛନ୍ତି
ଏ ଭଳି ଅନେକ କବିତାର ଶବ୍ଦ ସ୍ୱର ଓ ଆବେଦନ
କବି ଯାହାକୁ ଲେଖିବାକୁ ଆରମ୍ଭ କରିନାହିଁ

# ମୁର୍ଦ୍ଦାଘରେ ଶବ

ନା ଏ ଶବ ମୋର ନୁହେଁ
ମୁଁ କାହିଁକି ମରିବି ଏ ଭଳି ବେନାମୀ ମୃତ୍ୟୁ

ହୋଇପାରେ ଭିଖାରୀ ମରି ଯାଇଥିବ
ଭୋଜିର ଉଚ୍ଛିଷ୍ଟ ଖାଇ ଅତିଭୋଜନରେ
ବେକାର ଯୁବକ ମରି ଯାଇଥିବ ହୁଏତ
ଶହେଟି ଇଣ୍ଟରଭିଉ ଶେଷରେ ତଣ୍ଟି ଶୁଖିଯାଇ
ବୁଦ୍ଧିଜୀବୀ ନିଜର ଜ୍ଞାନ ତଳେ ଚାପା ପଡ଼ି
କବି ଖସି ପଡ଼ି ହାତୀଦାନ୍ତର ବୁରୁଜ ଉପରୁ

ମୁଁ କଣ ବୋଲି ଭାବିଥିଲି
ମୁଁ ମରିଗଲା ବେଳେ କଣ ସବୁ ହେବ
ଉଲ୍‌କା ଖସିବ ନା ମେଦିନୀ କମ୍ପିବ
ସମୁଦ୍ର ଶୁଖିଯିବ ପର୍ବତ ଭାଙ୍ଗି ପଡ଼ିବ
ରାଷ୍ଟ୍ର ବିପ୍ଳବ ହୋଇଯିବ
ନା ଘରେ ଘରେ କବାଟ ପଡ଼ିଯିବ
ଆକାଶ ଖଣ୍ଡ ଖଣ୍ଡ ହୋଇ ଫାଟିଯିବ
ନା ପବନ ବିକଟାଳ ଚିତ୍କାର କରିବ

ନା କିଛି ବି ହେବ ନାହିଁ
ଏପରିକି ମୋ ନିଜ ଘର ସାରା
ଜୀବନ ଯାତ୍ରା ଅବ୍ୟାହତ ରହିଥିବ
ଟେଲିଫୋନ ବାଜୁଥିବ ଚୁଲି ଜଳୁଥିବ
ରେଡ଼ିଓ ଖୋଲା ଥିବ ପଙ୍ଖା ଚାଲୁଥିବ
ଅତିଥି ଆସି ଚା ପିଉଥିବେ
କାହାରି ହାତରୁ ପିଆଲା ବି ଖସି ପଡ଼ିବ ନାହିଁ

କେବଳ ମୁଁ ହିଁ ମୋ ଦେହରୁ ମୁକ୍ତ
ମୁର୍ଦାଘର ସାରା ଘୂରି ବୁଲୁଥିବି
ଏବଂ ମୁଁ ସନାକ୍ତ କରିବାକୁ ମନା କରୁଥିବା ଶବ
ମୋ ଧୃଷ୍ଟତା ଆଡ଼କୁ ଅପଲକ ଅନାଇ
ବିଦ୍ରୂପ ଓ ତାଚ୍ଛଲ୍ୟକର ହସ ହସୁଥିବ

## ସାମୁଦ୍ରିକ

ତମେ ସାକ୍ଷାତକାରର ସମୟ ନିର୍ଦ୍ଧାରିତ କରିବ
ତମେ ଆସିବ ନାହିଁ
ତମେ କ୍ଷମା ପ୍ରାର୍ଥନାର ଚିଠି ପଠାଇବ

ଯାହା କେବଳ କିଛି ଅକ୍ଷର ନୁହେଁ
ଆମ ସଂପର୍କର ଏକ ନିର୍ମମ ଆଲେଖ୍ୟ
ମାତ୍ର କେତୋଟି ଧାଡ଼ିର ଅକ୍ଷରରେ
ତମର ବିଭିନ୍ନ ମନସ୍ଥିତିର ରୂପରେଖା
ଯାହାର ଆକାର ବିନ୍ୟାସ ଓ ଭଙ୍ଗୀରୁ
ମୁଁ ଗଣନା କରିବି ପୁଣି କେତେବେଳେ
ତମେ ସାକ୍ଷାତକାରର ସମୟ ନିର୍ଦ୍ଧାରିତ କରିବ
ତମେ ଆସିବ ନାହିଁ
ତମେ କ୍ଷମା ପ୍ରାର୍ଥନାର ଚିଠି ପଠାଇବ

# ଛୁଟି ଦିନ

ଆଲାର୍ମ ଘଡ଼ି ହାଉଳି ଖାଇ ରଡ଼ି ଛାଡ଼େ ନାହିଁ
ସକାଳ ଆସେ ଧୀରେ ସୁସ୍ଥେ ଅନେକ ଡେରିରେ
ଘର ଭିତରକୁ ପଶି ଆସୁଥିବା ସୂର୍ଯ୍ୟ କିରଣକୁ
ପବନ ବାହାରକୁ ତଡ଼ିଦିଏ କବାଟ ବନ୍ଦ କରି

ଛାତ ଉପରେ ଗହମ ନିଦ ଶୋଇଥାଏ ସୁଖୀ ଖରା
କାଉ ତାକୁ ଉଠାଇବାକୁ ଚେଷ୍ଟା କରି ହାର ମାନିଯାଏ
ବୁଲାବିକାଳୀଙ୍କ ଡାକର ନିଷ୍ପ୍ରାଣ ଶବ୍ଦମାନଙ୍କୁ
ଘରଚଟିଆ ନେଇ ଲୁଚାଇ ଦିଅନ୍ତି ନିଜ ନିଜ ବସାରେ

ଦୋକାନର ବନ୍ଦ କବାଟମାନେ କାନ୍ଥକୁ ଆଉଜି ବସିଥାନ୍ତି
ବେକାର ଯୁବକଙ୍କ ଭଳି ଅନିର୍ଦ୍ଦିଷ୍ଟ ପ୍ରତୀକ୍ଷାରେ
ରାସ୍ତାର କ୍ରିକେଟ ପଡ଼ିଆରୁ କୁକୁରଙ୍କୁ ତଡ଼ି ଦେଇ
ସାଇର ପିଲାମାନେ ତାକୁ ଅଧିକାର କରି ନିଅନ୍ତି

ବିନା ସନ୍ଦେଶର ଶୁଖିଲାପତ୍ର ଡାଳରୁ ଓହ୍ଲାଇ
ଯାଇ ଭର୍ତ୍ତି ହୋଇଯାନ୍ତି ଖାଲି ଡାକବାକ୍ସ ଭିତରେ
ମନ୍ଦିରର ଘଣ୍ଟି ବାଜୁଥାଏ ସଂପୂର୍ଣ୍ଣ ଆବେଦନ ରହିତ
ଅବତାରମାନେ ଫେରିଯାନ୍ତି ପ୍ରଳୟ ପୟୋଧି ଜଳକୁ

କ୍ୟାଲେଣ୍ଡାର ନାଲି ଆଖି ଦେଖାଇ ଘଣ୍ଟାକୁ ଆକଟ କରୁଥାଏ
ଘଟଣାବିହୀନ ମୁହୂର୍ତ୍ତ ଫାଟିଯାଏ ପ୍ରତିହତ ବୁଦ୍‌ବୁଦ ଭଳି
ଉପରକୁ ଅନାଇ ସମୟର କିଛି ଅର୍ଥ ଖୋଜିବା ବେଳେ
ଆକାଶର ଦର୍ପଣକୁ ଅସ୍ୱଚ୍ଛ କରିଦିଏ ବିରକ୍ତ ଗୋଧୂଳି
ଛୁଟିଦିନଟି ଏଇପରି କଟିଯାଏ ଟିକଟିକ ହୋଇ

## ଇନ୍ଦ୍ରଜାଲ

ମୁଁ ଜାଣିବାରେ ତମର ଅସାଧ୍ୟ କିଛି ନାହିଁ
ଅବଲୀଳାକ୍ରମେ ସବୁ କରିପାର ତମେ
ସମସ୍ତ ଚମତ୍କାର ତମ ପକ୍ଷରେ ସମ୍ଭବ
ତମେ ମୋର ଆନନ୍ଦ ତମେ ମୋର ଅବସାଦ
ତମେ ମୋର ଆଦିମ ପାପ ତମେ ମୋର ଅନ୍ତିମ କ୍ଷମା

ତମେ ମତେ କାହିଁକି ଚିଠି ଲେଖିନାହିଁ ପଚାରିଲେ
ଶୂନ୍ୟରୁ ଟୋଳି ଆଣି ତମେ ମତେ ଦେଖାଇ ଦିଅ
ତମର ଅକ୍ଷରର ମୋହର ଲାଗିଥିବା ଲଫାପା
ଏବଂ ମୁଁ ତାକୁ ପାଇଥିବାର ପ୍ରମାଣ
ସେଥିରେ ଏ ପର୍ଯ୍ୟନ୍ତ ଲାଗି ରହିଥିବା

ମୋର ତୃଷାର୍ତ୍ତ ଆଖି ଓ ଓଠର ଅବଶେଷ

ତମେ ଚୁପ ରହୁଚ ଅଭିଯୋଗ କଲେ
ତମେ ସୃଷ୍ଟି କର ତମର ପ୍ରଗଲ୍‌ଭ ଶବ୍ଦମାଳା
ଯାହାର ଓଁକାର ପ୍ରଣବ ଅନାହଦ
ନାଦ ନିନାଦ ଓ ନିର୍ଘୋଷର ଧ୍ୱନି ପ୍ରତିଧ୍ୱନି
ଆସି ଅନୁରଣିତ ହୋଇଯାଏ ମୋ ଦେହର
ଶିରାପ୍ରଶିରା ମାଂସମଜ୍ଜା ଅସ୍ଥିପଂଜରା ଭିତରେ

ମୁଁ ଯେତେବେଳେ ତମକୁ ମୁଖରା ବୋଲି କହେ
ତମେ ଓଠକୁ ବନ୍ଦ କରି ମତେ ନିର୍ବାସିତ କରିଦିଅ
ଏକ ନିସ୍ତରଙ୍ଗ ସମୁଦ୍ରର ନିସ୍ତବ୍‌ଧ ଅତଳକୁ
ଯେଉଁଠାରେ ମୋର କେଉଁ ପୂର୍ବଜନ୍ମର ଆଦ୍ୟବିନ୍ଦୁ
ଅଭିଶପ୍ତ ପ୍ରାଚୀନ ଆତ୍ମାର ଶବଟିଏ ଭଳି
ନିଷ୍ପ୍ରାଣ ପଡ଼ି ରହିଥାଏ କଳ୍ପକଳ୍ପାନ୍ତର ଧରି
ପୁନର୍ଜନ୍ମର ନିଃଶବ୍ଦ ଅପେକ୍ଷାରେ

ମୁଁ ତମ ଉପରେ ମିଥ୍ୟାର ଆରୋପ କଲେ
ତମେ ଦେହ ଓ ମନରୁ ସମସ୍ତ ଆଚ୍ଛାଦ ଖୋଲି
ମୋ ଆଗରେ ପାରଦର୍ଶୀ ହୋଇ ଠିଆ ହୁଅ
ବିବ୍ରତ ହୋଇ ମୁଁ ହାର ମାନେ ସ୍ଥିର କରିନିଏ
ଆଉ ତମର ବଶୀକରଣର ବାଧ ରହିବି ନାହିଁ

କିନ୍ତୁ ମୁଁ ଯେତେବେଳେ ଚାଲିଯିବାର ମନସ୍ଥ କରି
ତମର ଐନ୍ଦ୍ରଜାଲିକ ବୃତ୍ତ ବାହାରେ ପାଦ ରଖେ
ମୋର ସମସ୍ତ ସଙ୍କଳ୍ପକୁ ମୁହୂର୍ତ୍ତକେ ବ୍ୟର୍ଥ କରିଦେଇ
ଯାଦୁକରୀ ପାରା ଦୁଇଟିକୁ ଅଭ୍ୟସ୍ତ ହାତରେ ଆଣି
ତମେ ରଖିଦିଅ ମୋର ସମ୍ମୋହିତ ହାତ ଉପରେ

# ଟେବୁଲ ଉପରେ

ବହିମାନେ ଗମ୍ଭୀର ହୋଇ ନିଜ ନିଜ ଭିତରେ
ବୌଦ୍ଧିକ ଆଲୋଚନାରେ ମଗ୍ନ
ଚଷମା ଅନାଏ ପ୍ରଶ୍ନବାଚୀ ଦୃଷ୍ଟିରେ
ପେପରୱେଟ୍ ଦାର୍ଶନିକ ଭଳି ବସିରହି
ଛଳନା କରେ ସବୁ କିଛି ବୁଝିବାର
ଉତ୍ତର ଦିଆ ନ ଯାଇଥିବା ଚିଠି
ଶୋଇ ଯାଇଥାନ୍ତି ଆପଣାର ଠିକଣା ଭୁଲି
କଲମ ମୁନ ଲିଭି ପଡ଼ିଥାଏ
ଟେବୁଲ କ୍ୟାମ୍ପ ଆଉ କାହାକୁ ଦେଖେ ନାହିଁ
ନିଜ ଆଲୋକ ବୃତ୍ତ ବାହାରେ

ଖାତାର ଧଳା କାଗଜ ଫର୍ଦ୍ଦ
ନିର୍ଲଜ୍ଜ ସ୍ତ୍ରୀଟି ଭଳି ଖୋଲା ପଡ଼ିଥାଏ
ବାହାରେ ଜଣାଅଜଣାଙ୍କ ଚଳପ୍ରଚଳ
ଆସି ଅନ୍ତଃସ୍ଥଳକୁ ଛୁଇଁ ଛୁଇଁ ଯାଏ
ଟେବୁଲ ଉପରର ଶୂନ୍ୟକୁ ଅନାଇ
କବି ବସି ରହିଥାଏ ଅସମର୍ଥ ହୋଇ
ନିଜ ପ୍ରତିକ୍ରିୟାର ନପୁଂସକତାରେ

# ଅନାଭରଣ

ମୁଁ ତମ ପାଇଁ କବିତା ଲେଖେ
ତାର ଅର୍ଥ ନୁହେଁ ଯେ
ତମେ ମୋ ସହିତ ସଂପର୍କ ରଖିବ
କେବଳ ଭାଷାର ମାଧ୍ୟମ ଦେଇ

ମୋ ପାଇଁ ତମେ ସବୁଦିନେ ଶବ୍ଦାଶ୍ରିତ
ସବୁ ସମୟରେ ଅଳଂକାର ବିମଣ୍ଡିତ
ତମେ ମୋ ପାଖକୁ ଆସିଥାଅ
ଅକ୍ଷର ଉପରେ ନିର୍ଭର ଶବ୍ଦାରୂଢ଼ ହୋଇ
କପାଳରେ ଅନୁପ୍ରାସର ଟୀକା
ଆଖିରେ ଉତ୍‌ପ୍ରେକ୍ଷା ଲଗାଇ
ବାଳରେ ବିମ୍ବ ଓ ରୂପକ ଖୋଷି
ଓଠରେ ଯୋଡ଼ି ଯମକ
ଓ ସାରା ଦେହକୁ ମୁକ୍ତ ଛନ୍ଦରେ ସଜାଇ

କିନ୍ତୁ ଶବ୍ଦ କିପରି ନେଇପାରିବ ସ୍ପର୍ଶର ଶକ୍ତି
କର୍ତ୍ତା ଓ କ୍ରିୟା ହେବେ ଦୃଷ୍ଟିର ବିକଳ୍ପ
ଚିଠି କିପରି ହେବ କଥୋପକଥନ
ଭାଷା କିପରି ଛୁଇଁବ ଖାଲି ଦେହକୁ
ଯେତେବେଳେ ଅଭିଧାନର ସମସ୍ତ ଶବ୍ଦାବଳୀ
ପର୍ଯ୍ୟାପ୍ତ ନୁହନ୍ତି ତମର ବର୍ଣ୍ଣନା ପାଇଁ

ମୁଁ ଜାଣେ ମୋ ପାଖରୁ ଚାଲିଯିବା ପାଇଁ
ତମେ ଦ୍ୱୈର୍ଥ ବ୍ୟଂଜନାର ପ୍ରୟୋଗ କର
ବିରୋଧାଭାସରେ କଥା କହ
ଏବଂ ସମସ୍ତ ନିପାତନକୁ ସିଦ୍ଧ କରିଦିଅ
ତମର ଗୋଟିଏ ମାତ୍ର ନାହିଁରେ
ମୁଁ ଜାଣେ ନିର୍ଣ୍ଣୟର ରୋକଠୋକ ମୁହୂର୍ତ୍ତରେ
ତମେ କାବ୍ୟାଂଶକୁ ଅବଲମ୍ବନ କରିନେବ

କାରଣ ପ୍ରତୀକାତ୍ମକ ପଦ୍ୟକାରିତାରେ
କୌଣସି ଦୁଃସାହସର ପ୍ରୟୋଜନ ନାହିଁ

ତେଣୁ ତମକୁ ପାଇବା ପାଇଁ ମୁଁ ଏଥରକ
ମୋର ପୁରୁଣା କବିତାମାନଙ୍କୁ ଫେରାଇଦେବି
ଟୀକା ଓ ବ୍ୟାଖ୍ୟାକାରଙ୍କ ପାଖକୁ
ବର୍ଣ୍ଣମାଳାକୁ ନିର୍ବାସିତ କରିଦେବି
ଶବ୍ଦକୋଷର କ୍ଷମାହୀନ ପୃଷ୍ଠା ଭିତରକୁ
ତା ପରେ ତମେ ଯେତେବେଳେ ମୋ ପାଖକୁ ଆସିବ
ଅଳଂକାର ସବୁ ଦେହରୁ ଖୋଲିଦେଇ
ସଂପୂର୍ଣ୍ଣ ରୂପେ ଶବ୍ଦବିମୁକ୍ତ ହୋଇ ସଶରୀର
ମୁଁ କବିତା ଲେଖିବା ବନ୍ଦ କରିଦେବି

# ଗୋଧୂଳି

ରହସ୍ୟର ଧୂସର ଧୂଳିରେ ପରଶୋଭିତ
ଅନ୍ଧାର ମାଡ଼ିଯାଏ ଅପେକ୍ଷମାଣ ମୃତ୍ତିକା ଉପରେ
ରାତ୍ରିଚର ପକ୍ଷୀମାନେ ଉଡ଼ି ଆସି ଲିଭାଇ ଦିଅନ୍ତି
ଉଦ୍ଧତ ଅସ୍ତାଚଳର ରକ୍ତିମ ଅହମିକାକୁ

ଶେଷ ଆଲୁଅର ଦୀର୍ଘଶ୍ୱାସ ଛୁଇଁଯାଏ
ମନ୍ଦିରର ମୋହାବିଷ୍ଟ ଘଣ୍ଟାର ପରିଧି
ତାର ପ୍ରତିଧ୍ୱନି ଯାଇ ଆଚ୍ଛନ୍ନ କରିଦିଏ
ସୁଦୂର ଶିଖରମାନଙ୍କରେ ସ୍ୱପ୍ନରତ
ଆତ୍ମନିରୀକ୍ଷଣର ଘନିଷ୍ଠ କ୍ଷଣମାନଙ୍କୁ

ନିସ୍ତବ୍ଧତା ବାଧ୍ୟ କରେ ପଛକୁ ଅନାଇବାକୁ

ଯେଉଁଠାରେ ରହିଯାଇଥିବା ସହଯାତ୍ରୀମାନେ
ଉଦ୍‌ବେଗରେ ବସି ପୁନରାୟ ଲିପିବଦ୍ଧ କରୁଥାନ୍ତି
ଏକ କୋଳାହଳମୟ ଦୁଃସାହସର ବିବରଣୀ

ସଂକଳ୍ପର ଜାହାଜ ଭାସିଯାଇ ଅଟକି ଯାଏ
କେଉଁ ଅଚିହ୍ନା ମହାଦେଶର ଅନ୍ଧାର ଉପକୂଳରେ
ସନ୍ଦିଗ୍ଧ ବେଳାଟିର ରହସ୍ୟ ଆସି ବାଣ୍ଡି ହୋଇଯାଏ
ଖୋଲା ଝରକାମାନଙ୍କର ପ୍ରତୀକ୍ଷାର ସାନ୍ଦ୍ରତାରେ

## ଚଉଛକି

ସାବଲୀଳ ଓ ସୁନିୟନ୍ତ୍ରିତ ଜୀବନକୁ ନେଇ
ଗାଡ଼ି ଚାଲିଥାଏ ଯାନ୍ତ୍ରିକ ନିପୁଣତାର ସହିତ
କିନ୍ତୁ ଛକ ଉପରେ ଯେତେବେଳେ ଟ୍ରାଫିକ ବତୀ
କ୍ରୁଦ୍ଧ ହୋଇ ଲାଲ ଆଖିରେ ଅନାଏ
ଅନାୟାସ ସ୍ୱପ୍ନ ହଠାତ ବନ୍ଦ ହୋଇଯାଏ
ଇଂଜିନ ବିରକ୍ତିର ସହିତ ଗର୍ଜନ କରେ
ପଛରେ ଥିବା ଗାଡ଼ି ଅଧୈର୍ଯ୍ୟ ହର୍ଣ୍ଣ ବଜାଏ
ଯେପରିକି ଏଇ ଛକଟି ପାରି ହେଲେ ହିଁ
ସେ ଯାଇ ପହଞ୍ଚିବ ଆଗାମୀ ଶତାବ୍ଦୀରେ

ଅପେକ୍ଷାର ମୁହୂର୍ତ୍ତରେ ଆଖି ଖୋଜିନିଏ
ଅବସର ବିନୋଦନର କ୍ଷଣିକ ସାଧନ
ଦୁର୍ଘଟଣାପ୍ରବଣ ଗାଡ଼ିର ହାସ୍ୟାସ୍ପଦ ତ୍ରିଭଙ୍ଗ
ଏବଂ ତାର ଚାଳକ ଶାଖାମୃଗର ମୁଖଶ୍ରୀ
ଚାଞ୍ଚଲ୍ୟକର ସମ୍ବାଦ ଖୋଜି
ଟାବଲଏଡ଼ର ହେଡ଼ଲାଇନକୁ ଅନାଇଲେ
ସେଥିରେ କିନ୍ତୁ ଲୋମହର୍ଷକ କିଛି ନ ଥାଏ

ତାକୁ ବିକୁଥିବା ପିଲାଟିର ମୁହଁଟି ବ୍ୟତୀତ

ହଠାତ ଦର୍ପଣ ଆଡ଼କୁ ଆଗେଇ ଆସେ
ମଲାପିଲାକୁ କୋଳରେ ଧରିଥିବା କଂକାଳ
ଚିତ୍କାର କରୁଥିବା ଅସ୍ଥିସାର ଅଙ୍ଗୁଳି
ଇସ୍ପାତକୁ ଭେଦି ଆସି ଦିବାସ୍ୱପ୍ନକୁ ପୋଛିଦିଏ
ଭାଙ୍ଗିଦିଏ ସମସ୍ତ ସରଳ ସମନ୍ୱୟକୁ
ମୁହୂର୍ତ୍ତକେ ନେଇ ଛିଡ଼ା କରାଇ ଦିଏ
ଅନ୍ତଃକରଣର ଭୟଙ୍କର ତଟଦେଶରେ
ଭାଗ୍ୟ ଓ ଈଶ୍ୱର ସହସା ମନେ ପଡ଼ନ୍ତି
ଓଠକୁ ସହଜରେ ଆସେ ପ୍ରାର୍ଥନାର ପଂକ୍ତି

ଟ୍ରାଫିକ ବତୀ କ୍ଷମାଶୀଳ ହୋଇ ତଳକୁ ଅନାଏ
ଗାଡ଼ି ଆଗକୁ ଛୁଟିଯାଏ ଉଦ୍‌ବେଗର ସହିତ
ହଜି ଯିବାକୁ ଚାହେଁ ପ୍ରବହମାନ ଭିଡ଼ ଭିତରେ
କଂକାଳର ଚିତ୍ର କିନ୍ତୁ ଦର୍ପଣରେ ଲାଖି ରହିଥାଏ
ପରବର୍ତ୍ତୀ ଚଉଛକିର ବ୍ୟବଧାନ ପର୍ଯ୍ୟନ୍ତ

## ସୁଖ

ସୁଖ ପାଖେ ପାଖେ ଥାଏ
ଲୋଭୀ ଲୋକଟି କିନ୍ତୁ
କସ୍ତୁରୀ ମୃଗ ଭଳି ଧାଇଁ ବୁଲୁଥାଏ
ଅଜଣା ମାନଚିତ୍ର ହାତରେ ଧରି
ଅସ୍ଥିରତାରୁ ଅସ୍ଥିରତାକୁ

ଦୁଇଟି ଦର୍ପଣ ଭିତରେ ସୁଖ

ଲମ୍ବି ଯାଇଥାଏ କାହିଁ କେତେଦୂର
ପ୍ରତିବିମ୍ବ ପଛରେ ତାକୁ ଖୋଜିବାକୁ ଯାଇ
ଅସନ୍ତୁଷ୍ଟ ଲୋକଟି ବାଟ ଭୁଲିଯାଏ
ଅନିଶ୍ଚୟର ଗୋଲକଧନ୍ଦା ଭିତରେ

ହାତ ମୁଠା ଖୋଲିଲେ ସୁଖ
ଆଖିପତା ଉଠାଇଲେ ସୁଖ
ଆଗକୁ ପାଦ ବଢ଼ାଇଲେ ସୁଖ
ସ୍ପର୍ଶରେ ଆସ୍ୱାଦରେ ଆଘ୍ରାଣରେ
ଓଠରେ ଜାନୁରେ ଜଘନରେ
ଦେହର ପ୍ରତିଟି ଲୋମକୂପରେ ସୁଖ
ସଂଜ ସକାଳେ ମସ୍ତିଷ୍କକୁ ଆସେ ସୁଖ
ଇନ୍ଦ୍ରିୟମାନଙ୍କୁ ହୁଲସ୍ଥୁଲ କରି
ପ୍ରତିଟି ଜୀବକୋଷରେ ନିଆଁ ଲଗାଇ

ସାମାନ୍ୟ ବିଳମ୍ବ ସହେ ନାହିଁ
ସୁଖ ଏକ ଅଭିମାନୀ ଅତିଥି
ବନ୍ଦ କବାଟ ପାଖରୁ ଫେରିଯାଏ
ଅନ୍ୟମନସ୍କ ଆଖି କୋଣରୁ
ଧକ୍କା ଖାଇ ଖସି ପଡ଼େ ସୁଖ
ବହିଯାଏ ବିରକ୍ତ ଅଙ୍ଗୁଳି ଦେଇ
ସୁଖକୁ ଜାବୁଡ଼ି ନ ଧରିଲେ
ପଳାତକ ହୋଇ ସୁଖ ଉଡ଼ିଯାଏ

ଆକାଶର ଆଖିରେ ଥାଏ
ପବନର ହାତରେ ଥାଏ
ନିଭୃତତମ ଅନ୍ତଃସ୍ଥଳରେ ଥାଏ
ଭରିଥାଏ ଡାଳେ ଡାଳେ ପତ୍ରରେ ପତ୍ରରେ
ନିରାଶାର ଦି ପହରେ କ୍ଳାନ୍ତ ପଥିକକୁ
ସୁଖ ଶୁଖାଇ ଦିଏ ନିଜର ଗଛ ଛାଇରେ

ପିଲାଦିନର ନାନାବାୟା ଗୀତ ଶୁଣାଇ

## ସତୀ

କାହିଁକି ଆଉ ଦ୍ୱିଧା
କେଉଁ ଚମତ୍କାର ପାଇଁ ଅପେକ୍ଷା
ସିନ୍ଦୂର ଟୋପା ତ ନିଆଁ ନୁହେଁ
ଯେ ଜାଳିଦେବ ଆତ୍ମସର୍ବସ୍ୱ ସ୍ୱାର୍ଥକୁ
ଶଙ୍ଖା ତ ଶାଣିତ କଟାର ନୁହେଁ
ଯେ ମୁଣ୍ଡ କାଟି ଆଣିବ କୁସଂସ୍କାରର
ଛାତି ତମର ତ ବଜ୍ର ନୁହେଁ
ଯେ ଧରାଶାୟୀ କରିଦେବ ପୁରୁଷକାରକୁ

ତମର ବଞ୍ଚି ରହିଥିବା ହିଁ ବିଡ଼ମ୍ବନା
ତମର ଉଚିତ ଥିଲା ମୃତ୍ୟୁକୁ ମାନିନେବା
ଜନ୍ମ ହେବା ଆଗରୁ ଜଠର ଭିତରେ
ତମର ଉଚିତ ଥିଲା ଜଳି ହଜିଯିବା
ନବବଧୂ ହେବାର ପ୍ରଥମ ପର୍ବରେ

କାହାପାଇଁ ଏ ଭଳି ବଞ୍ଚି ରହିଥିବ
ବଧୂରୁ ବିଧବା ହେବାର ଦିନ ଗଣି ଗଣି
ଯଦି ଏଠାରେ କିଛି ବି ପ୍ରଭେଦ ନାହିଁ
ବିବାହ ଓ ବଳାତ୍କାର ଭିତରେ
କିଛି ବି ମିଳେ ନାହିଁ ପ୍ରତିଦାନ
ପୂଜାରୁ ବ୍ରତରୁ ସେବାରୁ ବଳିଦାନରୁ
ଶେଷରେ ଗୋଟିଏକୁ ବାଛି ନେବାକୁ ହୁଏ

ସୁନ୍ଥାର ସିନ୍ଦୂରରେ ଅଙ୍କା ହୋଇଥିବା ଦୁଃଖ
ନ ହେଲେ ଧଳା ଶାଢ଼ୀରେ ବନ୍ଧା ହୋଇଥିବା ଦୁଃଖ

ବର୍ତ୍ତମାନ ତମେ ସର୍ବସମ୍ମତ ଦେବୀ
ଆଉ ତମ ପାଇଁ ନୁହେଁ ସାଧାରଣ ଜୀବନ
ତମେ ସର୍ବଂସହା କରୁଣାର ମୂର୍ତ୍ତି
ତମର କୌଣସି ଦାବୀ ନାହଁ ମାନବୀ ଅଧିକାରରେ
ତମେ ଆଉ ତମର ଉପାସକମାନଙ୍କୁ
ଅଂଶୀ କରିବ ନାହିଁ ତମର ଦୁଃଖରେ
ସମସ୍ତଙ୍କୁ ତମେ ଦେଇଦେବ ମୁକ୍ତହସ୍ତ ହୋଇ
ସେମାନେ ଲୋଡୁଥିବା ପ୍ରାପ୍ୟ ସବୁ
ନିଜର ସବୁ କିଛି ଉତ୍ସର୍ଗ କରିଦେଇ
ଅକିଞ୍ଚନ ହୋଇ ପୁଣି ଫେରିଯିବ
ତମର ନିଜସ୍ୱ ଶୋକର ଅତଳାନ୍ତକୁ
କେବଳ ଆପଣାର ଦେବୀତ୍ୱରେ ମଣ୍ଡିତ ହୋଇ
ତମେ ଯାଇ ହସି ହସି ଶୋଇଯିବ
ତମର ଦୈନନ୍ଦିନ ବିଛଣାର ଚିତା ଉପରେ
ନିଜକୁ ସଂପୂର୍ଣ୍ଣ ରୂପେ ନିଶ୍ଚିହ୍ନ କରିଦେଇ
ନିର୍ଜୀବ ଓ ନପୁଂସକ ପୌରୁଷ ପାଖରେ

# ନାହିଁ ନ ଥିବା

ଏ ପର୍ଯ୍ୟନ୍ତ ଲେଖି ପାରି ନଥିବା କବିତାଟି
ଯେତେବେଳେ ମୋର ନିଦ ଭାଙ୍ଗିଦେବ
ଆଖି ଖୋଲି ମୁଁ ଆବିଷ୍କାର କରିବି
ଗୋଟିଏ ସଂପୂର୍ଣ୍ଣ ଅନନୁଭୂତ ଦିନର ଆରମ୍ଭ

ଟେବୁଲ ଉପରେ ରଖା ଯାଇଥିବା କାଗଜ ଉପରେ
ସକାଳର ସୂର୍ଯ୍ୟ ଆଣି ବିଛି ଦେଇ ଯାଇଥିବ
କେବେ କେହି ଦେଖି ନ ଥିବା ଅମୂର୍ତ୍ତ ସମ୍ଭାବନା

କୌଣସି ଆଉ ଚିହ୍ନବର୍ଣ୍ଣ ନ ଥିବ ବିଗତ ସ୍ୱପ୍ନର
ଖବରକାଗଜର ପ୍ରତିଟି ପୃଷ୍ଠାରେ ଭର୍ତ୍ତି ଥିବ
ବ୍ୟବହାର ବିବର୍ଜିତ ଅକ୍ଷର ଓ ଅଭାବିତ ସମ୍ବାଦ
ବାହାରେ ସଦ୍ୟଜାତ ଅଦୃଶ୍ୟପୂର୍ବ ଆକାଶ
ଆଖି ଆଗରେ ଖୋଲିଦେବ ନୂଆ ନୂଆ ଝରକା
ପକ୍ଷୀମାନେ ଉଡ଼ିଯିବେ ଆଖିର ଅବଧିକୁ ଲଙ୍ଘି
କେତେକାଳ ଧରି ଅପେକ୍ଷାରେ ରହିଥିବା ସ୍ୱର ଆଡ଼କୁ
ପବନ ମୋର ଦେହସାରା ଛୁଆଇଁ ଦେଇଯିବ
କେବେ କେଉଁଠାରେ ଘଟି ନଥିବା ସମୟର ପ୍ରତିଶ୍ରୁତି
କେବେ ହେଲେ କେହି ହେଲେ ଶୁଣି ନଥିବା ଗୀତଟି
ଓଠରୁ ଓଠକୁ ଡେଇଁଯିବ ପ୍ରଥମ ବସନ୍ତ ପବନ ଭଳି

ସବୁକିଛି ଘଟିବ ପ୍ରଥମ ଥର ପାଇଁ ଆଜି ଦିନ
ଯେପରି କୌଣସି ବି ଅତୀତ ନ ଥିଲା ଏହା ପୂର୍ବରୁ
ଏବଂ ସବୁ କିଛିର ଅୟମାରମ୍ଭ ଏହି ମୁହୂର୍ତ୍ତରୁ
ନୂଆ କରି ପୃଥିବୀ ପାଇବ ପୁଣି ତାର ବର୍ତ୍ତୁଳତା
ଆକାଶ ତାର ବ୍ୟାପ୍ତି ସମୟ ନିଜର ଭବିଷ୍ୟତ
ଶୂନ୍ୟ ପାଇବ ତାର ନିଃସ୍ୱନ ଏବଂ ଶବ୍ଦ ପ୍ରତିଧ୍ୱନି

ଅତୀତର ଆଉ କୌଣସି ଦାବୀ ନାହିଁ ମୋ ଉପରେ
ସବୁ ପୁଣି ଏକ ନିରନ୍ତର ଆବିଷ୍କାରର ବିସ୍ମୟ
ଦିଗନ୍ତକୁ ବିସ୍ତାରିତ ଅଗଣିତ ରାସ୍ତାର ସଙ୍କେତ ଚିହ୍ନ
ନିର୍ଦ୍ଦେଶ କରିବେ ବିଭିନ୍ନ ବିକଳ୍ପ ଭବିଷ୍ୟତ ଆଡ଼କୁ
ଆଜିଯାଏ ଖୋଜୁଥିବା ସ୍ୱପ୍ନଟି ମୋର ହାତ ପାପୁଲିରେ
ତାକୁ ନେଇ ମୁଁ ଫେରି ଆସିବି ସାଦା କାଗଜ ପାଖକୁ

# ପଥେର ପାଁଚାଲୀ

ଆଖି ଖୋଲିଲେ ସଂସାର
ପାଦ ପକାଇଲେ ପୃଥିବୀ
ଘର ବାହାରକୁ ବାହାରିଲେ
ଚାରି ଦିଗରେ ଚଲାବାଟ

ପ୍ରତିଟି ରାସ୍ତା ଟାଣି ନେଇଯାଏ
ନୂଆ ନୂଆ ଆବିଷ୍କାର ଆଡ଼କୁ
ଯେଉଁ ଆଡ଼କୁ ଅନାଇଲେ ଆଶ୍ଚର୍ଯ୍ୟ
ବିସ୍ଫାରିତ ଆଖି ବିଞ୍ଚି ହୋଇଯାଏ
ରୂପକଥାର ରଂଗବେରଂଗ ଅନାବନାକୁ
ସ୍ୱର ବର୍ଣ୍ଣ ଗନ୍ଧ ଆକାର ଆସି
ଅଯାଚିତ ଅଜାଡ଼ି ହୋଇ ପଡ଼ନ୍ତି
ମନଗହନର ନିଭୃତତମ କନ୍ଦିବିକନ୍ଦିରେ

ଚମତ୍କାରକୁ ହାତରେ ତୋଳି ଧରି
ଆସନ୍ତି ପରୀ ଓ ଦାନବ
ଜରିର ମୁକୁଟ ପିନ୍ଧା ରାଜା ରାଣୀ
କୀଟ ପତଙ୍ଗ ଖରା ବର୍ଷା ମେଘ ଧୂଳି
ଗଛ ପତ୍ର ଶୀତ କାକର ଚନ୍ଦ୍ର ସୂର୍ଯ୍ୟ
ତାରା ନକ୍ଷତ୍ର ଅନ୍ତରୀକ୍ଷ ଛାୟାପଥ
ଜନ୍ମ ରୋଗ ଶୋକ ଜରା ମୃତ୍ୟୁ

ଅପ୍ରସ୍ତୁତ ଅବାକ ମୁହୂର୍ତ୍ତରେ
ଭବିଷ୍ୟତର ପ୍ରତିଶ୍ରୁତି ଅଭିଭୂତ କରିଯାଏ
ଆଖି ଆଉ ଥରେ ପରଖି ନିଏ ସବୁ କିଛି
ଗୋଟିଏ ବର୍ଷା ବିନ୍ଦୁରେ କେତେ ଝଡ଼ ପ୍ରଳୟ
ଅଗଣାର ଛୋଟ ପରିଧିରେ କେତୋଟି ପୃଥିବୀ

କେତେ ବିହ୍ୱଳତାକୁ ଧରି ରଖିହେବ
ଛୋଟ ଛୋଟ ଦୁଇଟି ହାତରେ ସାଉଁଟି

ମନ ଖୋଲିଯାଏ ପାଦ ଆଗକୁ ପଡ଼େ
ଅଦୃଶ୍ୟ ହାତ ଆସି ଟାଣିନିଏ
ଗାଁ ମୁଣ୍ଡର ଅଜଣା ଆଡ଼କୁ
ଅଳ୍ପ ବୟସର ଗହନ ରହସ୍ୟସବୁ
ରହିଥାନ୍ତି କାଶବଣ ଆରପାଖେ
ସେଠାରେ ଅପେକ୍ଷାର ଥମଥମ ସମୟରେ
ଛୁକ ଛୁକ ରେଲଗାଡ଼ି ଅଚାନକ ଆସି
ଶୈଶବକୁ ମୁହୂର୍ତ୍ତକେ ଉଡ଼ାଇ ନେଇଯାଏ
କଳାଧଳା ଛାଇଆଲୁଅର
ପ୍ରାପ୍ତବୟସ୍କ ସଂସାର ଭିତରକୁ

## ଡାକଘର

ଏଠାରେ ଆସି ଛିଡ଼ାହେଲେ
ଅନେକ ଦିନର ଅଶରୀରୀ ଚିତ୍ର ସବୁ
ଛୋଟ ଛୋଟ କାଗଜ ଭଳି ଉଡ଼ିଆସି
ଅଜାଡ଼ି ହୋଇ ପଡ଼ନ୍ତି ମନ ଭିତରେ
ଏକ ଅଦ୍ଭୁତ ଲାଲ ରଙ୍ଗରେ
ଆଚ୍ଛାଦିତ ହୋଇଯାଏ ସମୟର ଦୂରତ୍ୱ

ପୁରୁଣା ସ୍ୱର ସକାଳ ବସ୍‌ରେ ଆସନ୍ତି
ପାଶୋରି ଯାଇଥିବା ଗାଁର ଅନ୍ଧାର ଭିତରୁ
ଗୋପନୀୟ ଇଚ୍ଛା ଆସି ଖୋଲିଦିଏ
କେଉଁ କାଳରୁ ବନ୍ଦ ପଡ଼ିଥିବା କବାଟମାନଙ୍କୁ

ଓଠ ଉପରକୁ ଉତୁରିଆସେ ପିଲାଦିନର ସ୍ୱାଦ
ପୁରୁଣା ବୟସ ଆସି ଛୁଆଇଁ ଦେଇଯାଏ
ପ୍ରତିଟି ତନ୍ତ୍ରୀ ଓ ସ୍ନାୟୁର ସାନ୍ଦ୍ରତାରେ
ନାହିଁ ନଥିବା ଅନୁଭବର ହଲଚଲ
ଭୁଲି ଯାଇଥିବା ମନ୍ତ୍ରଟି ହଠାତ ମନେପଡ଼େ

ମନ ଭାସିଯାଏ କେଉଁ କଳରୋଳରେ
ଆଖିରେ କାହାର ପ୍ରତିବିମ୍ବ ପଡ଼େ
କେଉଁ ଦୀର୍ଘଶ୍ୱାସ ଦେହକୁ ଅବଶ କରିଦିଏ
କିଏ ପୁଣି ଆସି ଭାଙ୍ଗିଦିଏ ସଂଯମ ସବୁକୁ

ଗୋଟିଏ ଗୋଟିଏ ଆସି ପାଖରେ ଠିଆ ହୁଅନ୍ତି
ଅକ୍ଷରରେ ସଂଚିତ ସଂପର୍କର ଛାଇମାନେ
ଦୂରଦୂରାନ୍ତକୁ ନିଶ୍ଚିନ୍ତ ପଠାଇ ଦେଇଥିବା
କେତେଦିନର ନୀରବତାରେ ଜଡ଼ିତ ଆତୁରତା
ସଂଧ୍ୟାର ପକ୍ଷୀମାନଙ୍କ ଅବଶ ଡେଣାରେ ଚଢ଼ି
ନୀଡ଼କୁ ଫେରି ଆସିଥିବା ଅଚାନକ ଦୁଃଖ
ସ୍ୱପ୍ନ ଉପରେ ଆଉଜି ପଡ଼ି ରହିଥିବା
ପ୍ରତୀକ୍ଷା ଉତ୍ତେଜନା ଓ ଦ୍ୱିଧାର ଘଡ଼ିସନ୍ଧି

ଚାବି ପାଇଁ ପକେଟରେ ହାତ ଦେଲେ
ଏକ ମଳିନ ହତୋତ୍ସାହ ପଛରୁ ଧକ୍କା ଦିଏ
ମୁହଁ ବୁଲାଇ ଫେରିଯିବା ବେଳକୁ
ଚିତ୍ରମାନେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡ଼ନ୍ତି
ଛାଇମାନେ ଯାଇ ବାଣ୍ଟି ହୋଇଯାନ୍ତି
ବିଭିନ୍ନ ଠିକଣାର ନିର୍ଦ୍ଦିଷ୍ଟ ଖୋପମାନଙ୍କରେ
ଆଖିରେ ଏ ପର୍ଯ୍ୟନ୍ତ ଲାଗି ରହିଥିବା
ଅଦ୍ଭୁତ ଲାଲ ରଙ୍ଗର ସ୍ୱପ୍ନାବଶେଷ
ସବୁ କିଛି ଅସ୍ପଷ୍ଟ ଓ ଧୂମାଭ କରିଦିଏ

## ଫେରିଯିବାର ବେଳ

ପୂର୍ବଜନ୍ମ ତ ଏଇ କାଲିର କଥା
ଚାଲ ଆମେ ଆହୁରି ପଛକୁ ଫେରିଯିବା
ଯେତେବେଳେ ପୃଥିବୀ ତାର କଠିନତା ପାଇ ନଥିଲା
ଆକାଶ ପାଇ ନଥିଲା ନୀଳ ରଙ୍ଗ
ସମୁଦ୍ର ତାର ଗଭୀରତା ସୂର୍ଯ୍ୟ ତାର ଦୀପ୍ତି
ଈଶ୍ୱର ସୃଷ୍ଟି ହୋଇ ନଥିଲେ ଯେତେବେଳେ

ଆମେ ଭୟାର୍ତ୍ତ ହୋଇ ଚାହିଁ ରହିଥିବା
ବଞ୍ଚିବାର ବାଧବାଧକତା ଆମର ହାତ ଧରି
ଟାଣି ନେଇଯିବ ଜୀବନର ଗଳିକନ୍ଦି ଭିତରକୁ
ଅନାହୂତ ଲୋକମାନେ ଆସି ଗହଳି କରିବେ
ଅଜ୍ଞାତ ପଞ୍ଝା ଉଖାରି ନେଇଯିବ ସ୍ୱପ୍ନମାନଙ୍କୁ
ଜନାକୀର୍ଣ୍ଣ ମନର ଉବୁଡୁବୁ ସୀମାନ୍ତରେ
କେହି ଆଉ ସହଚର ନ ଥିବେ
ଆମ ନିଜର ସ୍ୱୟଂସଂପୂର୍ଣ୍ଣ ବ୍ୟର୍ଥତା ବୀତୀତ

ହଠାତ ମନେ ହେବ ଜୀବନ ସତେ ଯେପରି
ରାସ୍ତା ମଝିରେ କ୍ଷଣେ ମାତ୍ର ଅଟକି ଯାଇଥିବା
ଆନନ୍ଦ ଓ ଆଶଙ୍କା ମିଶା ଚେତନା ମାତ୍ର
ସମୟର ଟିକ୍ ଟିକ୍‌ରେ ମପା ହେବା ବ୍ୟତୀତ
ତାର ଯେପରି ଆଉ କୌଣସି ବ୍ୟାପ୍ତି ନାହିଁ
ଆୟୁଷ ଯେପରି କେଉଁ ମୁହୂର୍ତ୍ତରେ
ହଠାତ ଉଠିପଡ଼ି କେଉଁଆଡ଼େ ଚାଲିଯିବ
ପଛକୁ ସାମାନ୍ୟ ବି ଦୃଷ୍ଟିପାତ ନ କରି
ଆମର ଆପଣା ଆପଣାର ଶୈଶବରେ
ଆମକୁ ସଂପୂର୍ଣ୍ଣ ଅରକ୍ଷିତ ଛାଡ଼ିଦେଇ

ଏଥରକ ପଳାଇ ଯିବାର ବେଳ

ଶୈଶବରୁ ଗର୍ଭାଶୟରୁ ଆହୁରି ଅତୀତକୁ
ଏଥରକ ଫେରିଯିବାକୁ ହେବ ଆହୁରି ପଛକୁ
ରୋଗୀର ବିଛଣାରୁ ବିରକ୍ତ କାର୍ଯ୍ୟକ୍ଷେତ୍ରରୁ
ଲଜ୍ଜାରୁ ଅପମାନରୁ ଯନ୍ତ୍ରଣାରୁ ଶୋକରୁ
ଲୋକ ଗହଳିର ନିର୍ମମ ଆଶ୍ଲେଷରୁ
ଫେରିଯିବାକୁ ହେବ ସମୟରୁ ସ୍ୱତନ୍ତ୍ର ହୋଇ
ସେ ଦୁଇ ମିନିଟ ସ୍ୱପ୍ନରେ ହେଉ ଅଥବା
ବୟସ ସହିତ ଯୁଦ୍ଧ କରୁଥିବା ବେଳେ

## ଦୀପାବଳୀ

ଅନ୍ଧାର ଭିତରୁ କେବଳ ଆଖି ଦେଖାଯାଏ
ଆଉ ସବୁ ଆକାର କେତେବେଳୁ ଲିଭି ଯାଇଥାନ୍ତି
ପ୍ରାଥମିକ ବିଶ୍ୱାସର ପ୍ରଗାଢ଼ ଆତ୍ମୀୟତା
ହଜିଯାଇଥାଏ ପ୍ରାପ୍ତବୟସ୍କ ସଘନତାରେ
କେବଳ ଶିଶୁମାନଙ୍କର ଉଚ୍ଛ୍ୱସିତ ହସ
ରାତିର ଛାତରୁ ତଳକୁ ଖସି ପଡ଼େ
ମହମବତୀର ଉଦ୍‌ବୃତ୍ତ ଅଶ୍ରୁବିନ୍ଦୁ ଭଳି

ବ୍ୟକ୍ତିଗତ ବୁଝାମଣାର ପ୍ରଚଣ୍ଡ ଦାବୀମାନେ
ଚୁପ୍ ହୋଇଯାନ୍ତି ଏକ ଆଲୋକିତ ଉଲ୍ଲାସରେ
ଜଳନ୍ତା ଆଶୀର୍ବାଦର ଛୋଟ ଛୋଟ ଅଗ୍ନିକଣା
ନିଜ ଭିତରକୁ ଫେରିଯାନ୍ତି ପ୍ରତିଶବ୍ଦ ଭଳି
ଶେଷ ରାତିର ମର୍ମଭେଦୀ ହତୋତ୍ସାହ
ସେମାନଙ୍କ ଉପରେ ଆଣି ବିଛାଇଦିଏ
କରୁଣାମିଶା ଆଶ୍ୱାସନାର ଆସ୍ତରଣ

ମୃତ ତାରାଙ୍କର ଶୀତଳ ପାଉଁଶ ଭିତରେ

ଲିଭି ପଡ଼ିଥାନ୍ତି ଜୀବନର ଶେଷ ଇଚ୍ଛାମାନ
ହଜି ଯାଇଥିବା ବୟସ ନିଜ ଆଡ଼କୁ ଅନାଏ
ରାତିର ଦର୍ପଣରେ କିନ୍ତୁ କୌଣସି ଉତ୍ତର ନାହିଁ
ଦୀପମାନଙ୍କରୁ ବିକ୍ଷିପ୍ତ ଅନ୍ଧାର ଫେରିଆସି
ଶ୍ୱାସରୁଦ୍ଧ କରିଦିଅନ୍ତି ସଳିତାମାନଙ୍କୁ
ପଥଭ୍ରଷ୍ଟ ଲୋକଟି ଧ୍ରୁବତାରା ଖୋଜୁଥାଏ
ସମୟ ନିଜକୁ ନିଃଶେଷ କରିଦିଏ ଫୁଲଝରି ଭଳି

# ଛାଡ଼ି ଆସିଥିବା ଦିନ

କେବେହେଲେ ଛାଡ଼ି ପଳାଇ ଆସି ହୁଏ ନାହିଁ
ପଶ୍ଚାତ୍ତାପ ଭଳି ଚୁପଚାପ ପଛେ ପଛେ ଲାଗି ରହିଥାଏ

ଲୋକ ଗହଳିରେ ହଜିଯାଇଛି ଭାବିବା ବେଳେ
ଦୀର୍ଘଶ୍ୱାସ ଭଳି ଅତି ସଂଗୋପନରେ ଆସି
ହାତରେ ଆତ୍ମୀୟତାର ହାତ ଯୋଡ଼ିଦିଏ
ତଟସ୍ଥ ମୁହୂର୍ତ୍ତର ଖାଁ ଖାଁ ଅପନ୍ତରାରେ ଠିଆ ହୋଇ
ଦୁର୍ଭାଗ୍ୟର ଆକାଶକୁ ଅନାଇ ରହିଥିବା ବେଳେ
ଅଦିନ ମେଘ ଭଳି ଆସି ସାନ୍ତ୍ୱନା ବିଞ୍ଚିଦେଇଯାଏ

କେତେବେଳେ କେଉଁଭଳି ଆସିବ ଜଣା ନ ଥାଏ
ଚା କପ ଓଠରେ ଦେଲେ କାହାର ସ୍ୱର ମନେପଡ଼େ
ବହିର ପୃଷ୍ଠାରେ ଅକ୍ଷରରୁ ଅନାଏ ପରିଚିତ ମୁହଁ
ଝରକା ଖୋଲିଦେଲେ ହସ ପଶିଆସେ ଭିତରକୁ
ଟେଲିଫୋନର ତରଙ୍ଗରେ ଆସେ ଦେହର ସୌଷ୍ଠବ
ଏକା ଏକା ଅନ୍ୟମନସ୍କ ବସି ରହିଥିବା ବେଳେ

ଅଭିମାନ ହୋଇ ଆସି ନିଜକୁ ଦେହଲଗ୍ନ କରିଦିଏ
ବର୍ତ୍ତମାନ ଆଗରେ ଅଦୃଶ୍ୟ ପରଦା ଟାଣିଦିଏ

ଆଗକୁ ପଡୁଥିବା ପାଦ ଉପରେ ଭାର ହୋଇଯାଏ
ଅସ୍ତବ୍ୟସ୍ତ କରିଦିଏ ଆଖପାଖର ପରିବେଶକୁ
ବାରମ୍ବାର ଆସି ସ୍ମରଣ କରାଇ ଦେଇଯାଏ
ଭୁଲିଯିବା ସହଜ ନୁହେଁ ମନେ ରଖିବା ହିଁ ସହଜ

ସମୟର ସଂଶୟରେ ମଣିଷ ଛଟପଟ ହୁଏ
କିନ୍ତୁ ପୁଣି ଏଇ ଆଶାରେ ବଞ୍ଚିରହେ ଯେ
କେଜାଣି କେବେ କେଉଁ ଅଦୂର ଭବିଷ୍ୟତରେ
ଏଇ ମୁହୂର୍ତ୍ତରେ ଘଟୁଥିବା ବର୍ତ୍ତମାନ
ଛାଡ଼ି ଆସିଥିବା ଦିନଟିଏ ହୋଇ
ଅବଶିଷ୍ଟ ଜୀବନକୁ ଆଲୋକିତ କରିଯିବ
ମୃତ୍ୟୁକୁ ଅପେକ୍ଷା କରିବାର ମନ୍ଥର ମୁହୂର୍ତ୍ତମାନଙ୍କରେ

## ବିଦାୟ ବେଳା

ମୋର ପାଦ ତଳୁ ଯେତେବେଳେ
ଧରାତଳ ଘୁଞ୍ଚିଯାଉଥିଲା
ତମର କଥା କେତେ ପଦ ଉପରେ
ଭରା ଦେଇ ମୁଁ ସମର୍ଥ ହେଲି
ଶେଷ ପର୍ଯ୍ୟନ୍ତ
ତମ ପାଖରେ ଠିଆ ହେବାକୁ

ମୋର ଅବଶ ହାତ ଉପରେ

ତମର ଅଙ୍ଗୁଳିର କ୍ଷଣିକ ଉଷ୍ଣତା
ମୋ ଆଖିତଳେ ଘେରି ଆସୁଥିବା
ସବୁ ଅନ୍ଧାରକୁ ଲିଭାଇ ଦେଲା
ଏବଂ
ମୁଁ ମୋର ଦୃଷ୍ଟିଶକ୍ତି ଫେରି ପାଇଲି

ଟ୍ରେନ ଛାଡ଼ିବା ବେଳେ ତମେ ହାତ ହଲାଇ
ମୋର ଭାଗ୍ୟର ଯେଉଁ ମାନଚିତ୍ର ଆଙ୍କିଥିଲ
ତାକୁ ହିଁ ନିର୍ଭର କରି ମୁଁ ପାଇ ପାରିଲି
ଷ୍ଟେସନ ବାହାରକୁ ଫେରିବାର ରାସ୍ତା

ତମେ ଲେଖି ଦେଇଥିବା ଟେଲିଫୋନ ନମ୍ବର
ମୋର ଚେତନାର କେନ୍ଦ୍ରବିନ୍ଦୁରୁ
ଓହ୍ଲାଇ ଆସିବ ତର୍ଜନୀର ରକ୍ତ ଓ ସ୍ନାୟୁକୁ
ତମର ଅବର୍ତ୍ତମାନର ଗତାୟୁ ମୁହୂର୍ତ୍ତମାନଙ୍କରେ
ପ୍ରତିଶ୍ରୁତି ଦେବ ତମର ସ୍ୱରର ସଂଜୀବନୀର
ତମେ ପୁଣି ମୋ ପାଖକୁ ଫେରିଆସିବା ପର୍ଯ୍ୟନ୍ତ

## ପାର୍କର ସକାଳ

ରାତି ଶେଷର ଶୂନ୍ୟରେ ଦୋଦୁଲ୍ୟମାନ
ଏ ଏକ ଭିନ୍ନ ସମୟ ମାତ୍ର ନୁହେଁ
ଏ ଏକ ଅନ୍ୟ ଦେଶ ମଧ୍ୟ

କାହାରି କୌଣସି ନିର୍ଦ୍ଦିଷ୍ଟ କଳେବର ନାହିଁ

ମେଞ୍ଚା ମେଞ୍ଚା ମୁହଁ ଅନ୍ଧାରରେ ଅମୂର୍ତ୍ତ ହୋଇ
ସମସ୍ତେ ଉତ୍କଣ୍ଠାରେ ଅପେକ୍ଷା କରି ରହିଛନ୍ତି
ପରସ୍ପରର ମୌଳିକତାକୁ ଆବିଷ୍କାର କରିବାକୁ
କେବଳ ଅପ୍ରତିଭ ବତୀଖୁଣ୍ଟମାନେ ଯାହା
ଅପସୃୟମାଣ ପ୍ରହେଳିକାମାନଙ୍କର ପ୍ରତିଚ୍ଛାୟାକୁ
ଆଉ କିଛିକ୍ଷଣ ଧରି ରଖିବାକୁ ବ୍ୟାକୁଳ

ଏବେ ରହସ୍ୟ ଆଶଙ୍କା ଓ ଆତଙ୍କର ବେଳ
ଗଛମାନେ ମୁଖାପିନ୍ଧା ସନ୍ତ୍ରାସବାଦୀଙ୍କ ଭଳି ସତର୍କ
ମୁଣ୍ଡ ଉପରେ ଡେଣା ଝପଟାଇ ଉଡ଼ିଯାଏ
ଦୁର୍ଘଟଣାରେ ମରିଯାଇଥିବା ଲୋକର ଅନ୍ତିମ ଚିତ୍କାର
ପାଦ ତଳର ଚଲାବାଟ ନିଜକୁ ସଂକୁଚିତ କରିଦିଏ
ବଳାତ୍କାର ହୋଇଥିବା ସ୍ତ୍ରୀର ବିବଶ ଦେହ ଭଳି
ଫୁଟପାଥର ଭିଖାରୀର କରୁଣ ଆବେଦନକୁ ଆଣି
ଆତ୍ମାକୁ ଛୁଇଁଯାଏ ଶେଷରାତିର ହେମାଳ ପବନ

ଆକାଶରୁ ଗୋଟିଏ ଗୋଟିଏ ବତୀ ଲିଭିଯାଏ
ବେଞ୍ଚ ଉପରୁ ଉଠି ଝାଡ଼ିଝୁଡ଼ି ହୋଇ
ଅନ୍ଧାର ଚାଲିଯାଏ ପାର୍କର ସଦର ଫାଟକ ଖୋଲି
କଅଁଳ ଖରାର ଛନଛନ ସହର ସକାଳ
ସାଇରେନର ସୂଚନାକୁ ଅପେକ୍ଷା ନ କରି
ଭିତରକୁ ପଶିଆସେ କିଚିରି ମିଚିରି ହୋଇ

ଏବେ ଆଉ କୌଣସି ଡର ଭୟ ନାହିଁ
ଚାରାଗଛ ଠିଆ ହୁଏ ଦୁଃସାହସୀ ଭଙ୍ଗୀରେ
ଘାସ ପଡ଼ିଆ ଉପେକ୍ଷାରେ ଆକାଶକୁ ଅନାଏ
ଫୁଲମାନେ ଆଗଭର ହୁଅନ୍ତି ଉପରେ ପଡ଼ି
ଅଚିହ୍ନା ଲୋକଙ୍କ ସହିତ କଥା କହିବାକୁ

# ଇଚ୍ଛା

ମନ ଭିତରର ଅଜଣା ତଟମାନଙ୍କରେ
ଧକ୍କା ଖାଉଥାଏ ଦିଗ୍‌ଭ୍ରାନ୍ତ ଆର୍ତ୍ତନାଦ ଭଳି
କ୍ଲାନ୍ତ ହୁଏ ନାହିଁ ହାରିଯାଏ ନାହିଁ
ଲହରୀ ଭଳି ବାରମ୍ବାର ଫେରିଯାଏ
ପ୍ରତିଟି ଉଚ୍ଛ୍ୱାସରେ ପୂର୍ବର ଆବେଗ ନେଇ

ନକ୍ଷତ୍ର ଖଚିତ ସ୍ୱପ୍ନମାନଙ୍କ ଭିତରେ
ଅଶାନ୍ତ ନୀହାରିକା ଭଳି ଘୂରି ବୁଲେ
ଛାୟାପଥ ବାଟ ଭାଙ୍ଗି ଚାଲିଯାଏ
ସେ କିନ୍ତୁ ଅନାୟାସ ଧ୍ରୁବକୁ ଖୋଜିନିଏ
ସୌରମଣ୍ଡଳର ଅନାତ୍ମୀୟ ବ୍ୟାପ୍ତି ଭିତରୁ

ହରାଇ ଦେଇ ଆସିଥିବାର ନଷ୍ଟ ରାତିମାନେ
ପଛକୁ ଫେରିଯିବାକୁ ଡାକ ଦିଅନ୍ତି
ଅନ୍ଧାରର ଭୟାବହ ସୀମାନ୍ତରେ ଠିଆ ହୋଇ
ଆଖିର ତଟସ୍ଥ ମହାକାଶ ଭିତରେ
ସେ ଉଦୟ ଦିଗନ୍ତକୁ ହାତ ବଢ଼ାଏ
ଦେହର ସଘନତାରେ ପ୍ରତିଧ୍ୱନି ଖୋଜି
ନିଜକୁ ବିକ୍ଷିପ୍ତ କରିଦିଏ ଦିଗ୍‌ବିଦିଗ
ଯେଉଁ ଆଡ଼କୁ ଅନାଇଲେ ଅପସୃୟମାଣ କ୍ଷିତିଜ
ଏବଂ ଚାରିପାଖେ ନିରାକାର ମୌନ
ସେ କିନ୍ତୁ ଫେରି ଆସେ ନାହିଁ

ଚିହ୍ନା ଅଚିହ୍ନା ଷ୍ଟେସନମାନଙ୍କରେ
ପ୍ରତିଟି ଡବାରେ ଯାଇ ପରିଚୟ ମାଗେ
କାହାରି ମୁହଁରେ ଆଲୁଅ ଚମକେ ନାହିଁ
ତଥାପି ସେ ହତୋତ୍ସାହ ହୁଏ ନାହିଁ

ରେଳ ଲାଇନର ଉଜ୍ଜ୍ୱଳତା ଉପରେ ପାଦ ରଖି
ଦୂରତ୍ୱକୁ ଆପଣାର କରିନିଏ

ଓଠର ଉପକୂଳରେ ଉପନିବେଶ ଖୋଜିବା ବେଳେ
ଅନୁଚ୍ଚାରିତ ଶବ୍ଦର ଝଡ଼ ଆସି
ଉଡ଼ାଇ ନେଇଯାଏ ଦ୍ୱୀପାନ୍ତରର ଅଜ୍ଞାତବାସକୁ
ତଳେ ପଡ଼ିଥିବା ଭଙ୍ଗା ଆକାରମାନଙ୍କୁ ସାଉଁଟି
ସେ ସଜାଇନିଏ ତାର ମାନଚିତ୍ର
ଏବଂ ପୁଣି ପ୍ରସ୍ତୁତ ହୋଇଯାଏ ଯାତ୍ରା ପାଇଁ

ମନ୍ଦିରର ସଂକୀର୍ଣ୍ଣ ଅର୍ଗଳୀ ପାଖରେ
ପୁରୋହିତ ଅଟକାଇ ଧର୍ମଶାସ୍ତ୍ର ଶୁଣାଏ
ବିନା ତପଶ୍ଚାରଣ ଭିତରକୁ ଯିବା ନିଷେଧ
ସେ କିନ୍ତୁ ଇଷ୍ଟଦେବଙ୍କୁ ଛୁଇଁବାକୁ ବଦ୍ଧପରିକର
ପାପପୁଣ୍ୟର ନୀତି ନିୟମ ତାକୁ ଜଣା ନାହିଁ
ସେ କେବଳ ବୁଝେ ତାର ବ୍ରହ୍ମରନ୍ଧ୍ର ଦେଇ
ପୂର୍ଣ୍ଣତା ଓ ପ୍ରାପ୍ତିର ସୁଖ ଦୁଃଖ
ଏବଂ ନିଜର ସନ୍ଧାନର ବାଧ୍ୟବାଧକତା

# ସାର୍ବଜନୀନ

ତମେ କେଉଁଠାରେ ମତେ ଜଣା ନାହିଁ
ମୁଁ ଏତିକି ଜାଣେ ଯେ ତମେ ମୋ ଠାରୁ ଦୂରରେ
ଏବଂ ମୁଁ ଆହୁରି ମଧ୍ୟ ଜାଣେ
ଯେ ଈଶ୍ୱରଙ୍କ ଭଳି ତମେ ସମସ୍ତଙ୍କର
ମୋର କୌଣସି ଆସ୍ପର୍ଦ୍ଧା ନାହିଁ ତମକୁ
ଐକାନ୍ତିକ କେବଳ ମୋର କରିନେବାର

ତମେ ହେଉଛ ଅଧିଷ୍ଠାତ୍ରୀ ଦେବୀ
ତମେ ଧୂପ ଓ ଅଗୁରୁର ଗନ୍ଧରେ
ଫୁଲ ଓ ନୈବେଦ୍ୟର ଜ୍ୟୋତି
ସ୍ତବମାନଙ୍କର ପାବକ ଉଚ୍ଚାରଣରେ
ତମେ ଅପାର୍ଥିବ ମୋକ୍ଷର ଉଲ୍ଲାସ
ପାଦ ତଳେ ପଡ଼ିରହିଥିବା ସାଧକ ପାଇଁ
ତମେ ହେଉଛ ତମର ତୀକ୍ଷ୍ଣ ଆୟୁଧମାନଙ୍କରୁ
ତଳକୁ ଛିଟିକି ପଡୁଥିବା କୋମଳ ବରଦାନ

କେବେହେଲେ ଭେଟି ନ ଥିବା ସ୍ତାବକର
ଇହ ଓ ପରର ଅଜଣା ସଂପର୍କ
ଡାକଘର ଓ ଡେଡ୍‌ଲେଟର୍ ଅଫିସ ସମେତ
ତମେ ତମ ପାଇଁ ଉଦ୍ଦିଷ୍ଟ ସମସ୍ତ ଚିଠି
ଓ ସେମାନଙ୍କର ପ୍ରସ୍ତୁତିରେ ଚିରା ହୋଇଥିବା
ଅସଂଖ୍ୟ ଚିଠା ଓ ଲଫାପା ଉପରେ
କେବେ ବି ନ ପହଞ୍ଚିବାର ଭୁଲ ଠିକଣା

ପାରିବାରିକ ସୁଖଶାନ୍ତିରେ ପରିପୂର୍ଣ୍ଣ
ପ୍ରିୟପରିଜନ ପୋଷାକୁକୁର ପରିବେଷ୍ଟିତ
ନିବୁଜ ବସିବା ଘରର ଚୌହଦୀ ଭିତରେ
ତମେ ତମର କୁଳ ମର୍ଯ୍ୟାଦା ଓ ପରମ୍ପରା
ଏବଂ ସେଥିରେ ଶ୍ୱାସରୁଦ୍ଧ ହେଉଥିବା ପରିତ୍ରାଣର
ତମେ ନିଜେ ଏକ ସୁବ୍ୟବସ୍ଥିତ ବ୍ୟତିକ୍ରମ

ମନଗହନକୁ ଅସଂବୃତ୍ତ କରିଦେଉଥିବା
ଶବ୍ଦମାନଙ୍କର ମରଣାନ୍ତକ ଅସ୍ୱସ୍ତି
ଅନାୟାସ କଳ୍ପନା ବିଳାସରେ ଶାଣିତ
ପଂକ୍ତିମାନଙ୍କର ଭାବଗର୍ଭ ତୀକ୍ଷ୍ଣତା
ସଂଜ୍ଞା ଲୋପ କରି ଦେଉଥିବା ସ୍ତୋତ୍ରରେ

ପ୍ରାଣ ସଂଚାରର ଅଲୌକିକ ସଂଜୀବନୀ
ତମେ ତମର କବିତାରେ ନ କହିଥିବା
ଅନେକ ଯନ୍ତ୍ରଣାର ଅପୂର୍ବ ବ୍ୟଞ୍ଜନା

ତମେ ଅପ୍ରସନ୍ନ ଦେବୀର କରୁଣା
ତମେ ନ ଲେଖିଥିବା ଚିଠିର ସମ୍ବୋଧନ
ତମେ ଖାଲି ଘରର ଘନିଷ୍ଠତା
ତମେ ବୁଝି ନ ହେଉଥିବା ସରଳାର୍ଥ
ମୁଁ କିପରି ଖୋଜି ବୁଲିବି ତମକୁ
କେଉଁ ଘର କେଉଁ ଦେବାଳୟ
କେଉଁ ଡାକଘର କେଉଁ କବିତାର ବହି
କେତେ ଭୁବନର କିଭଳି ତ୍ରିସୀମାରେ
କାହା କାହାର ସ୍ୱପ୍ନ ଭିତରକୁ ଯାଇ

# ଲୋକଶ୍ରୁତି

ସତ୍ୟ ହେଉଛି ଶାଣିତ ଦର୍ପଣ ଭଳି
ନିଜର ଶ୍ରୀହୀନ ଓ ନିଷ୍କରୁଣ ଚେହେରାର
ମୁହାଁମୁହିଁ ହୋଇଯିବାର ଭୟରେ
ଆମେ ତା ଆଡୁ ମୁହଁ ଫେରାଇ ଆଣୁ

ସ୍ମରଣର ନିଛାଟିଆ ଅନ୍ଧଗଳିରେ
ଦୁର୍ନିବାର ମୃତ୍ୟୁ ଭଳି ଅତର୍କିତ ଭାବେ
ପୁରୁଣା ସମୟ ଆସି ମୁହଁ ଦେଖାଏ
ଆମେ ତାକୁ ଚିହ୍ନିବାକୁ ମନା କରିଦେଇ

ରାସ୍ତା ଭାଙ୍ଗି ପଶିଯାଉ ଅନ୍ୟ କାହାର
ହସଖୁସିର ଖୋଲା ଝରକା ଭିତରକୁ

ପଛକୁ ଅନାଇଲେ ଆଖି ଆଗରେ
ଇତିହାସ ଦେଖାଯାଏ ଅପନ୍ତରା ଭଳି
ଅଶୋଭନ ନୀରସ କାତର ଓ ଅସହାୟ
ଆମେ ତାକୁ ସୁଷମାମଣ୍ଡିତ କରିଦେଉ
ସାହସ କୃତିତ୍ୱ ଦର୍ପ ଅଭିମାନର
ମାଗି ଆଣିଥିବା ଅସାମାନ୍ୟ ବୈଶିଷ୍ଟ୍ୟରେ

ନଗଣ୍ୟ ଜୀବନଯାପନର ମଳିନ ରତୁରେ
ଅଙ୍ଗୀକାରହୀନ କାନ୍ଥ ଆଡ଼କୁ ଅନାଇ
ଆମେ ବସି ବସି କଳ୍ପନା କରୁଥାଉ
ଲୋକଶ୍ରୁତି ଆସି କିପରି ଲିପିବଦ୍ଧ କରିଯିବ
ଆଉ କିଛି ଅଳୀକ ସାଫଲ୍ୟର ରଙ୍ଗ
ଆମେମାନେ ବଞ୍ଚିଥିବା କିମ୍ବଦନ୍ତୀମାନଙ୍କରେ

## ସ୍ମୃତିର ସହର

ପ୍ଲାଟଫର୍ମ ଉପରେ ପାଦ ଦେଲା ବେଳକୁ
କାନ ପାଖରେ କିଏ ଆସି ଚୁପଚୁପ କହେ
ଏତେ ଦିନ ପରେ ମନେ ପଡ଼ିଲା
ପଛକୁ ଅନାଇଲା ବେଳକୁ କେହି ବି ନାହିଁ
ଟ୍ରେନ କେତେବେଳୁ ଚାଲିଯାଇଥାଏ
ସିଗନାଲ ଖୁଣ୍ଟ ଉତ୍ତେଜିତ ଆଖି ଦେଖାଇ
ଅପେକ୍ଷମାଣ ଉତ୍କଣ୍ଠାମାନଙ୍କୁ ମନା କରୁଥାଏ
ରେଳ ଲାଇନ ଉପରକୁ ଓହ୍ଲାଇବା ପାଇଁ

ମୋ ରିକ୍ସା ଚାଲିଥାଏ ଗଳିରୁ ଗଳିକୁ
ଧୀରେ ଯିବାକୁ କହି ମୁଁ ସାମନାକୁ ଅନାଏ
ରିକ୍ସାବାଲା କେତେବେଳୁ କୁଆଡ଼େ ଚାଲିଯାଇଥାଏ
କେବଳ ଏକ ସ୍ୱେଦସିକ୍ତ କରୁଣତା ଧଇଁସଇଁ ହୋଇ
ମତେ ଟାଣି ନେଉଥାଏ ଆଗରୁ ଆଗକୁ

ଧ୍ୟାନ ଭାଙ୍ଗିଯାଏ କିଚିରି ମିଚିରି ଶବ୍ଦରେ
ଚିନ୍ତାକୁଳ ସ୍କୁଲ ଘରର ଛାଇ ଚାରିପାଖେ
ଉଡ଼ି ବୁଲୁଥାନ୍ତି ଖେଳଛୁଟିର ପକ୍ଷୀମାନେ
କଳାପଟାର ଲିଭିଲା ଅକ୍ଷର ନାଁ ଧରି ଡାକେ
କେଉଁ ଦୁଷ୍ଟାମିରୁ ବାହାରି ଆସି ଅପରାଧୀ ଭଳି
ତଳକୁ ମୁହଁ ପୋତି ଠିଆହୁଏ ପିଲାଦିନ

ସିନେମା ଘରର ଆତୁର ଅନ୍ଧାର ଭିତରେ
ଏଇମାତ୍ର ଚିହ୍ନା ହୋଇଥିବା ମୁହଁଟି ଯାଇ
ପର୍ଦ୍ଦା ଉପରର କାହାଣୀରେ ମିଶିଯାଏ
ପ୍ରଥମ ପ୍ରଥମ ଉତ୍ତେଜନାର ଉଷ୍ମ ଚାପରେ
ହାତ ମୁଠାରେ ଟିକେଟର ଟୁକୁଡ଼ା ଛଟପଟ ହୁଏ
ବାହାରେ ଖରାର ନିସ୍ତବ୍ଧ କାନ୍ଥରୁ ଖସି ପଡ଼ନ୍ତି
ପୁରୁଣା ଫିଲ୍ମ ଗୀତର ଦୀର୍ଘଶ୍ୱାସ ବାଜି
ଗୋଟିଏ ଗୋଟିଏ ହୋଇ ସବୁଯାକ ପୋଷ୍ଟର

ଛକ ପାରି ହେଉ ହେଉ ପୁରୁଣା ବଜାର
ଗୋଟିଏ ଦୋକାନରୁ ଆଉ ଗୋଟିଏ ଦୋକାନକୁ ଯାଇ
କୁତୂହଳଭର୍ତ୍ତି ଥାକମାନଙ୍କୁ ଓଲଟାଇ ଦେଖେ
ଜରୁରୀ ଜିନିଷର ତାଲିକା କିନ୍ତୁ ମନେ ପଡ଼େ ନାହିଁ
ମୁଁ ଥକା ହୋଇ ରହିଯାଏ ନାମଫଳକଟି ଭଳି
ଦୋକାନୀ ମୋ ଆଡ଼କୁ ଅନାଇ ରହିଥାଏ
ଆଖି ଆଗର ଅଦରକାରୀ ଜିନିଷକୁ ଗୋଟାଇ ନେଇ

ସଂଭ୍ରମରେ ମୁଁ ପାଦ ଚିପି ଓହ୍ଲାଇ ଆସେ
ଦୋଦୋପାଞ୍ଚ ପାହାଚ ଦେଇ ଗହଳି ଭିତରକୁ

ମଶାଣି ମୁଣ୍ଡରେ ଯାଇ ରାସ୍ତା ସରିଯାଏ
କେତେ କାଳୁ ମରିଯାଇଥିବା ଗଛର ଅନ୍ଧାର
ଆଦର କରି ଡାକିନିଏ ଆପଣା ପାଖକୁ
ତିଳତର୍ପଣର ଛିନ୍ନଭିନ୍ନ ଅବଶେଷ ଉପରେ
ପିତୃପୁରୁଷମାନଙ୍କ ଆଖିର ରୋଷାଗ୍ନି ସବୁ
ଜୁଳୁଜୁଳିଆ ହୋଇ ଉଡ଼ି ବୁଲୁଥାନ୍ତି
ପ୍ରାୟଶ୍ଚିତ୍ତ ଖୋଜି ଶୂନ୍ୟକୁ ଚାହିଁଥିବା ବେଳେ
ସହର ଛାଡ଼ିବାର ଟ୍ରେନ ଶେଷ ସିଟି ଦିଏ
ତାର କ୍ଷମାହୀନ ଡାକର ନିର୍ଦ୍ଦୟ ପ୍ରତିଧ୍ୱନି
ଘୂରି ବୁଲୁଥାଏ ଖାଁ ଖାଁ ପଡ଼ିଆ ଉପରେ

## ନୈସର୍ଗିକ

ମୁଁ ଯେତେବେଳେ ତମକୁ ଖୋଜି ବୁଲୁଥାଏ
ପର୍ବତ ମନେ ପକାଇଦିଏ କେବଳ ଦୂରତ୍ୱ
ରକ୍ତିମ ଅସ୍ୱଷ୍ଟତାର ରହସ୍ୟରେ ଲୁଚାଇଦିଏ
ମୋ ଅନ୍ୱେଷଣର ଆୟାସସାଧ୍ୟ କାରୁକାର୍ଯ୍ୟ
ତଥାପି ମନ ହାର ମାନେ ନାହିଁ
ଦେହର ସ୍ଥବିର ଚେତନା ଭିତରୁ
ବାହାରକୁ ଖୋଲିଆଣେ ଅସ୍ଥିର ଇଚ୍ଛାକୁ
କିନ୍ତୁ ମନସ୍କାମନାମାନ ସାକାର ହେବା ପୂର୍ବରୁ
ପଲକର ଭୂପାତରେ ସକାଳଟି ଧସି ପଡ଼େ

ଆଖି ଫେରିଆସେ ଆଦିଗନ୍ତ ଭୂଖଣ୍ଡକୁ
ମୋର ସହନଶୀଳତାର ଛଟପଟ ସୀମାନ୍ତରେ
ବିସ୍ରସ୍ତ ଶାଢ଼ୀ ଭଳି ସବୁଜତା ଲୋଟୁଥାଏ
ପବନର ଶୀତଳ ଜିଜ୍ଞାସା ଯାଇ ଖୋଲିଦିଏ
ପରିପୂର୍ଣ୍ଣ ପୃଥିବୀର ପ୍ରତିଟି ଲୋମକୂପକୁ
ମନଗହନର ଗଭୀର ଅତଳରୁ ବାହାରି
ଫାଲ୍‌ଗୁନ ଦଉଡ଼ିଯାଏ ଘାସ ଉପର ଦେଇ
ସୁଦୂର ରାଗରାଗିଣୀର ଗୁଞ୍ଜନ ଆସି
ଚେତନାମାନଙ୍କୁ ରୋମାଞ୍ଚିତ କରିଦେବା ବେଳେ
ଭୂକଂପରେ ଦିନଟି ଭାଙ୍ଗିରୁଜି ଯାଏ

ଅରଣ୍ୟ ତଥାପି ସଂପାଦି ରଖିଥାଏ
ନିଗୂଢ଼ ରହସ୍ୟର ନିଷିଦ୍ଧ ସ୍ମୃତିସବୁକୁ ନେଇ
ପ୍ରାଗୈତିହାସିକ ଗୋଲକଧନ୍ଦାମାନଙ୍କରେ
ଶୀତଳଶୟନରେ ରହିଥାଏ ଆଦିମତା
ବାରବୁଲା ଇଷ୍ଟ ଖୋଜି ବୁଲୁଥାଏ
ବିବରମାନଙ୍କରେ ଲୁକ୍କାୟିତ ଅନ୍ତଃସ୍ଥଳକୁ
ହାରିଯାଇଥିବା ପାଦ ତଳୁ ସ୍ଫୁଲିଙ୍ଗ ଛିଟିକି
ସବୁ ଅଭିପ୍ରାୟ ସମର୍ପିତ ହୋଇଯାଏ
ବନାଗ୍ନିର ଜଳନ୍ତା ଜଠର ଭିତରେ

ଆକାଶ ହିଁ ଆଶ୍ରୟ ଓ ଶେଷକଥା
ପତନୋନ୍ମୁଖ ତାରା ଆଣି ବିଞ୍ଚି ଦିଅନ୍ତି
କରୁଣାର ଅଗଣିତ ଶୀତଳ ସନ୍ତୋଷ
ନୀଳ ଅନ୍ଧାର ଶୁଣାଏ ବିଶ୍ୱାସର ଆପ୍ତବାଣୀ
ପୁଣି ଅଯାଚିତ ମେଘ ଆସି ଘେରିନିଏ
କଳା ରଙ୍ଗ ଆକ୍ରାନ୍ତ କରିଦିଏ ସବୁକିଛି
ମୁହୂର୍ତ୍ତେ ସ୍ତବ୍ଧ ରହେ ଅଭିଶାପର ବଜ୍ରଘୋଷରେ
ବିଜୁଳି ଚିରିଦିଏ ପ୍ରତ୍ୟାଶାର ବିମୂର୍ତ୍ତ ଚିତ୍ରକୁ

ହତୋତ୍ସାହ ହୋଇ ନିଜ ଭିତରକୁ ଫେରିଲେ

ଆଶ୍ଚର୍ଯ୍ୟ ତମକୁ ମୁଁ ଆବିଷ୍କାର କରେ
ମୋ ଘରର ପ୍ରାତ୍ୟହିକ ବିଛଣା ଉପରେ
ପ୍ରାଥମିକ ସମୟର ନିର୍ଲିପ୍ତତା ତଳେ
ତମେ ଶୋଇଥାଅ ନିରବଧି ନଦୀ ଭଳି
ଶାନ୍ତ ଅନାସକ୍ତ ଏବଂ ସଂପୂର୍ଣ୍ଣ ସ୍ୱପ୍ନମୟ
ମୋ ନିଜର ଉନ୍ମାଦନାର ତଟଦେଶରେ ବସି
ମୁଁ ରୁଦ୍ଧଶ୍ୱାସ ହୋଇ ରହିଯାଏ
ଅଚାନକ ବନ୍ୟାର ଅପେକ୍ଷା ଓ ଆତଙ୍କରେ

## ବେଲୁନବାଲା

ଅକାଳେ ସକାଳେ ଚୋରା ଚଇତାଳି ଭଳି
ବିଷର୍ଣ୍ଣ ଗଳି ଭିତରକୁ ପଶିଆସେ
କଅଁଳ ଛନ ଛନ ଖରା ହାତରେ ଧରି

ଆପଣା ଜୀବନର ତୁଚ୍ଛ କାତରତାମାନ
ରାସ୍ତାର ଅନାଥ କୁକୁର ଛୁଆଙ୍କ ଭଳି
ତା ପଛରେ ପାଦେ ପାଦେ ଲାଗି ରହିଥାନ୍ତି
ସେ ସେମାନଙ୍କୁ ଅଶୁଣା କରିଦିଏ

ଅମାନିଆ ଦିପହର ସାରା
ଗଳିରୁ ଗଳିକୁ ଏ ପାଖରୁ ସେ ପାଖ
ରେଜା ପଇସା ବଦଳରେ ସେ ବାଣ୍ଟିଯାଏ
ଖୁସିର ଛୋଟ ଛୋଟ ଟୁକୁଡ଼ା

କୁନି କୁନି ଓଠର ଦରୋଟି ହସରେ

ଖରାବେଳ ଚକାଭଉଁରୀ ଖେଳୁଥାଏ
ପିଲାମାନଙ୍କ ନରମ ପାପୁଲି ଉପରେ
ସେ ରଖିଦିଏ ରଂଗବେରଂଗ ସ୍ୱପ୍ନ

ଛାଇ ଲେଉଟିଯାଏ ଅବାକ ହୋଇ
ହାତଅପହଞ୍ଚ ଅଜଣା ଚଢ଼େଇ ଭଳି
ବାକି ଦିନର ହିସାବ ନିକାଶରେ
ସେ ଚାଲିଯାଇ ଅଦୃଶ୍ୟ ହୋଇଯାଏ
ପାଖ ଗଳିର ପ୍ରତୀକ୍ଷମାଣ ମୁହଁ ଭିତରେ

# ଶାସ୍ତି ବିଧାନ

ସବୁ ମୋର ଶିରୋଧାର୍ଯ୍ୟ ଥିଲା
ମୋର ପ୍ରତ୍ୟେକଟି ପାପ ପାଇଁ
ତମେ ଯେଉଁ ଯେଉଁ କର୍ମଫଳମାନ
ପୂର୍ବରୁ ନିର୍ଦ୍ଧାରିତ କରି ଦେଇଥିଲ

ଆମର ପରିଚୟର ଅନେକ ଆଗରୁ
ତମକୁ ନ ଜାଣିଥିବାର ଅନ୍ଧାରରେ
ମୁଁ ଯେତେବେଳେ ଶ୍ୱାସରୁଦ୍ଧ ହେଉଥିଲି
ଘୁଞ୍ଚିଯାଉଥିବା ଇଚ୍ଛାମାନଙ୍କ ଉପରେ
ତମକୁ ଖୋଜିବାର ଛଟପଟ ପାଦ
ଯେତେବେଳେ ଲକ୍ଷ୍ୟଭ୍ରଷ୍ଟ ହୋଇଯାଉଥିଲା
ତମେ ମୋର ଏକନିଷ୍ଠତାର ଅଭାବର
ଦୟାମାୟାହୀନ ଶାସ୍ତି ଦେଇଥିଲ
ମତେ ତମର ଅଜଣା କରି ରଖିବାର

ଏଇ ସମୟଟି ମୋ ପାଇଁ ଥିଲା
ଦୂରରୁ ତମର ଆଖିର କଷଟିକୁ ଅନାଇ
ଛାତିର ପ୍ରତିଟି ସ୍ପନ୍ଦନରେ ପ୍ରତିଧ୍ୱନିତ
ତମର ନିର୍ଣ୍ଣୟର ଅଧୈର୍ଯ୍ୟ ଅପେକ୍ଷାରେ
ଭୟ ଓ ପ୍ରତ୍ୟାଶାର ଉତ୍‌ପୀଡ଼ନ

ଆମର ଯେତେବେଳେ ସାକ୍ଷାତ ହେଲା
ଯାହା ମୋ ପାଇଁ ରାସ୍ତାର ଶେଷ
କିନ୍ତୁ ତମ ପାଇଁ ବୈଚିତ୍ର୍ୟହୀନ ଥିଲା
ମୋର ସ୍ମରଣାତୀତ ପୂର୍ବ କୃତିମାନଙ୍କର
ତମେ ପ୍ରାୟଶ୍ଚିତ୍ତ ବିଧାନ କରିଦେଲ
ତମର ସ୍ୱୟଂର ନିବୁଜ ପିଞ୍ଜରା ଭିତରେ
ଯାବଜ୍ଜୀବନ କାରାରୁଦ୍ଧ ରହିବାର

ଏକ ସନ୍ତୁଷ୍ଟ ଗୃହବନ୍ଦୀ ଭାବେ
ମୁଁ ନିଜକୁ ଅଭ୍ୟସ୍ତ କରିନେଲି
କିନ୍ତୁ ତମେ ପୁଣି ମୋର ବ୍ୟତୀତ
ବର୍ତ୍ତମାନ ଓ ଅନାଗତକୁ ବ୍ୟବଚ୍ଛେଦ କରି
ମୋ ପାଇଁ ନିରୂପିତ କରିଦେଲ
ତମର ଅସ୍ତିତ୍ୱ ବାହାରେ ମୋର ନିର୍ବାସନ
ଜଡ଼ ପାଲଟି ଯାଇଥିବା ଟେଲିଫୋନ
ଏବଂ ଆସୁ ନଥିବା ଡାକବାଲାକୁ
ଚାହିଁ ବସି ରହିଥିବାର ଅବଶିଷ୍ଟ ଜୀବନ

# ରାସ୍ତା ସରିଯାଏ

କିଛି ଆଉ ରହେ ନାହିଁ ରାସ୍ତା ସରିଗଲେ
ନା ଇଚ୍ଛା ନା ଏକାଗ୍ରତା ନା ଅଭୀଷ୍ଟ
ଭିଡ଼ ଭିତରେ ଗୋଟିଏ ବି ଚିହ୍ନା ମୁହଁ ନ ଥାଏ
ନ କହି ପାରିଥିବା କଥାମାନେ ମଉଳି ଯାଇଥାନ୍ତି
ପୁଣି ଦେଖା ନ ହେବାର ଭୟରେ ଛଟପଟ ହୋଇ
ଅନ୍ୟମନସ୍କ କ୍ଷଣଟି ଆସି ଏପାଖ ସେପାଖ ହୁଏ
ଆଗାମୀ କାଲିର ଅନାହୂତ ଆଗନ୍ତୁକ ଭଳି

ଭଙ୍ଗା ମୁହୂର୍ତ୍ତର ନିଷ୍ପ୍ରୟୋଜନତାକୁ
ଔପଚାରିକତା ଦେଇ ସଂପାଦି ରଖିବା ବେଳେ
ଅତି ସହଜରେ ପବନ ଉଡ଼ାଇ ନେଇଯାଏ
ବାଲି ଉପରେ ଅଙ୍କା ଯାଇଥିବା ପିଲାଦିନକୁ
ଲହରୀର ଲୀଳାୟିତ ହାତ କେଉଁଠାରୁ ଆସି
ସଯତ୍ନରେ ସଜଡ଼ା ଇତିହାସକୁ ଭାଙ୍ଗିଦିଏ

ଅଙ୍ଗୀକାରର ଯେଉଁଠାରେ ଶେଷ ହୁଏ
ସେଠାରେ ଆଉ କୌଣସି ଭବିଷ୍ୟତ ନ ଥାଏ
ପହଞ୍ଚି ଯାଇଥିବାର ତାତ୍‌କ୍ଷଣିକ ଉଲ୍ଲାସରେ
ନ ପାଇଥିବାର ଅସ୍ୱସ୍ତିର ଚିହ୍ନବର୍ଣ୍ଣ ନାହିଁ
ସବା ଶେଷ ଛକ ମନ ମାରି ରହିଥାଏ
ରାସ୍ତାମାନେ ତା ପାଖରୁ ଚାଲିଯାଇଥାନ୍ତି
ଆପଣାର ଭିନ୍ନ ଭିନ୍ନ ଲକ୍ଷ୍ୟସ୍ଥଳ ଆଡ଼କୁ

ସଂଜ ହୋଇଯାଏ ଦିନଟି କଥା ଭାବୁ ଭାବୁ
ରାସ୍ତା ସରିଯାଏ ସବୁ କଥା କହିବା ଆଗରୁ

# ଯାଅ ନାହିଁ

ଥରେ ଭୁଲ କରି ମୋ ଜୀବନକ ଆସିଯିବା ପରେ

ତମେ କଣ ଭାବୁଛ ବାହାରକୁ ଚାଲି ଯାଇ ପାରିବ
ମତେ ପୁଣି ମୋର ନିଜର ଆୟତନ ଭିତରେ ଛାଡ଼ିଦେଇ

ମୋର ଏତେ ବର୍ଷର ଜୀବନର ମାନଚିତ୍ର ହେଉଛି
ବାଟ ଭୁଲିଯିବାର ଏକ ଦୁରୂହ ଗୋଲକଧନ୍ଧା
ତମେ କିପରି ଖୋଜି ପାଇବ ବାହାରିଯିବାର ରାସ୍ତା
ଯେଉଁ ଫାଟକ ଖୋଲି ତମେ ଯେଉଁଠାରେ ପହଞ୍ଚିବ
ତମେ ଦେଖିବ ମୁଁ ସେଠାରେ ତମ ଅପେକ୍ଷାରେ ଥିବି

ଆଉ ସମ୍ଭବ ନୁହେଁ ପରସ୍ପରଠାରୁ ବିଦାୟ ମାଗିନେବା
ତମେ ମୋ ପାଇଁ ଯେପରି ଏକ ଶାଶ୍ୱତ ବରଦାନ
ମୁଁ ତମ ପାଇଁ ସେହିପରି ଏକ ଚିରସ୍ଥାୟୀ ଅଭିଶାପ
ଆନନ୍ଦ ବିଷାଦ ସଂଶୟ ନିଶ୍ଚୟ ଆସକ୍ତି ଓ ବିରକ୍ତିରେ

ଏଥରକ ତେଣୁ ତମ ମନ ଭିତରୁ ଦୂର କରିଦିଅ
ମୋ ପରିଧି ଭିତରୁ ବାହାରିଯିବାର ସାମାନ୍ୟତମ ଚିନ୍ତା
ମେ ପାଖରେ ରହି ତମେ ପୁଣି ଆଶ୍ୱସ୍ତ କରିଦିଅ
ମୋର ନିରୁପାୟ ବଞ୍ଚିବାର ଇଚ୍ଛା ଓ ସାମର୍ଥ୍ୟକୁ

ରଖିଦିଅ ପୁଣି ମୋର ସବୁବେଳେ ମାଗୁଥିବା ହାତ ଉପରେ
ତମର ଜୀବନର କେତୋଟି ସାମାନ୍ୟ ଅଦରକାରୀ ମୁହୂର୍ତ୍ତ
ଯାହା କେବେ ହେଲେ ପରିତୃପ୍ତ କରିପାରିବ ନାହିଁ
ତମ ପାଇଁ ମୋର ଅମାପ ଓ ଅସରନ୍ତି ଲୋଲୁପତାକୁ
କିନ୍ତୁ ଯାହା ମତେ ଅନାୟାସ ଜୀବିତ କରି ରଖିବ
ତମ ପାଇଁ ଅପେକ୍ଷାର ଗୋଟିଏ କ୍ଷଣରୁ ଅନ୍ୟ କ୍ଷଣକୁ

## ସହରରେ କର୍ଫ୍ୟୁ

ଆଖିରେ ମୋର ସହରର ସ୍ୱପ୍ନ

ନୈତିକତା ଓ ଆଦର୍ଶ ମୋର ସମ୍ବଳ
ମୁଁ ଯାଏ ନଇ ପାରିହୋଇ
ପିଲାଦିନର ଚଲାବାଟ ଧରି
ମୋର ବୟସ୍କ ହେବାର ଚଉଛକିମାନଙ୍କରେ
ମୁହୂର୍ତ୍ତେ ମୁହୂର୍ତ୍ତେ ଅଟକି
ମୁଁ ଠିକ ରାସ୍ତାଟି ଖୋଜିନିଏ
ମୋର ହସଖୁସିର ଆଜନ୍ମ ସହରକୁ

ଚିହ୍ନା ହସ୍ତାକ୍ଷରର ଠିକଣାମାନେ
ବାଟ ଦେଖାଇ ଦିଅନ୍ତି
ମନେ ପଡୁଥିବା ମୁହଁମାନେ
ଡାକି ନିଅନ୍ତି ଆଗରୁ ଆଗକୁ
ବିଭିନ୍ନ ଅନୁଭବର ସୂକ୍ଷ୍ମାତିସୂକ୍ଷ୍ମ ଭଗ୍ନାଂଶ
ଆସି ମୋର ଇନ୍ଦ୍ରିୟମାନଙ୍କୁ ଛୁଇଁଯାନ୍ତି
ଜଣାଶୁଣା ଆତ୍ମୀୟତାରେ
ହଠାତ ମୋ ଆଖି ଆଗରେ
ଉଭା ହୋଇଯାଏ ମୋର ସ୍ୱପ୍ନର ସହର

ରାସ୍ତାଘାଟ ଚିହ୍ନା ଚିହ୍ନା
କିନ୍ତୁ ସବୁ ଯେପରି ଭିନ୍ନ ଓ ବିଷମ
ସବୁ ଶୂନଶାନ ଉଜୁଡ଼ା
ସବୁଆଡ଼ ଜନମାନବଶୂନ୍ୟ
ଘରମାନେ ଯେପରି ବିତୃଷ୍ଣାରେ
ମୁହଁ ଭାଙ୍ଗି ନେଇଥାନ୍ତି ରାସ୍ତା ଉପରୁ
କାନ୍ଥରେ ପୋଷ୍ଟରର ଭିଡ଼ରେ
ନିଜସ୍ୱମାନ ଧ୍ୱସ୍ତବିଧ୍ୱସ୍ତ
ଭଙ୍ଗା ପାଚେରୀ ଓ କାନ୍ଥ ଉପରୁ
ପ୍ରସ୍ତ ପ୍ରସ୍ତ ଖସିପଡ଼େ ଅନାବନା
ଏତିକିବେଳେ ମୋର ଭେଟ ହୁଏ

ଅପେକ୍ଷା କରୁଥିବା ବିଡ଼ମ୍ବନାମାନଙ୍କ ସହିତ

ନ ଚାହୁଁଥିବା ଦୃଶ୍ୟମାନେ
ସଦଳବଳ ଆସନ୍ତି ସାମନାକୁ
ବନ୍ଦ କବାଟରେ ପ୍ରତିହତ ପ୍ରତ୍ତୋଶୀର କରାଘାତ
ଶୁଖିଲା ପାଣିକଳରୁ ଫେରି ଆସୁଥିବା ଶୋଷ
ଅନାଥ ଭବିଷ୍ୟତକୁ କାନ୍ଦି କାନ୍ଦି ଯାଉଥିବା ଶୈଶବ
ଲଜ୍ଜାରେ ଲୁହକୁ ଢାଙ୍କିବାକୁ ଚେଷ୍ଟା କରୁଥିବା ସତୀତ୍ୱ
ପ୍ରତିଦ୍ୱନ୍ଦ୍ୱୀଙ୍କର ବନ୍ଧୁକ ଗୁଳି ମଝିରେ
ନିଜକୁ ବଞ୍ଚାଇ ପାରୁ ନଥିବା ନିରୀହତା
ବଳାତ୍କାରରେ ମୁହ୍ୟମାନ ଆର୍ତ୍ତନାଦର ଅବଳା ଆତଙ୍କ
ଗମ୍ବୁଜ ଉପରୁ ଖଣ୍ଡ ଖଣ୍ଡ ଭାଙ୍ଗି ପଡୁଥିବା ଏକାତ୍ମତା

ମୋର ଖୋଜୁଥିବା ଦିନଟି
ଅପମାନିତ ହୋଇ ଫେରିଯାଏ
ରାତି ଆସେ ନିରାନନ୍ଦ
ନିଜର ଲଜ୍ଜାବୋଧର ସଂପୂର୍ଣ୍ଣତାରେ
ମୁଁ ସ୍ଥାଣୁ ହୋଇ ଦେଖୁଥାଏ
ମୋର ଚାରିଆଡ଼କୁ ଅନାଇ
ଛୁରୀ ମୁନରେ ବିଦ୍ଧ ସରଳତା
ବିସ୍ଫୋରଣରେ ଧୂଳିସାତ ଧର୍ମ
ରକ୍ତରେ ଉବୁଟୁବୁ ବିବେକ
ନିଆଁରେ ଜଳି ଯାଉଥିବା ନ୍ୟାୟ
ମୋ ଆଖିରେ ସ୍ୱପ୍ନ ସ୍ୱପ୍ନରେ ସହର
ଏବଂ ସହରରେ କର୍ଫ୍ୟୁ

# ତମେ ବର୍ତ୍ତମାନ

କଣ ସବୁ କରୁଥିବ ତମେ ବର୍ତ୍ତମାନ
[illegible]ଟିରେ ବସି ବସି

ଅକାତର ଝରକା ବାହାରକୁ ଅନାଇ
ବିନା ନାଉରିଆ ଥିବା ଡଙ୍ଗା ଭଳି
ସ୍ୱଚ୍ଛନ୍ଦ ଭାସି ଯାଉଥିବା ଦିନଟି ଆଡ଼କୁ
ତମେ ଅପଲକ ଚାହିଁ ରହିଥିବ
ହଠାତ ତମର ଆଖିର ବୁଦ୍‌ବୁଦରେ ଆସି
ଛଟପଟ ଖରାବେଳଟି ଫାଟିଯିବ

ତମେ ବସିଥିବ ଆତ୍ମୀୟମାନଙ୍କ ଗହଣରେ
ତମର ସଂପର୍କମାନଙ୍କ ଆଡ଼କୁ ପିଠି କରି
ତମର ବିତିଯାଇଥିବା ମୁହୂର୍ତ୍ତମାନଙ୍କର
ପ୍ରାଚୁର୍ଯ୍ୟ ଓ ପରିପୂର୍ଣ୍ଣତା ଉପରେ ଆଉଜି
ବାହାରେ ଗଛ ପତ୍ର ମାଟି ଘାସ ଉପରେ
ବର୍ଷି ଯାଉଥିବ ତମ ଆଖିର ସନ୍ତୋଷ
ଦୂର ମେଘର ଅସ୍ଥାୟୀ ସୀମାନ୍ତରୁ ଆସି
ତମ ପାଦ ତଳେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଯିବ
ଅସମୟ ଇନ୍ଦ୍ରଧନୁର ଆନତ ବକ୍ରତା

ଅଧାପଢ଼ା ବହି ତମେ ତଳେ ରଖିଦେବ
ଓଠରେ ଆଶ୍ରୟ ଖୋଜୁଥିବା ଶବ୍ଦଟିକୁ
ତମେ ଚୁପ କରିଦେବ କିଛି କାଳ ପାଇଁ
କପାଳରେ ଉଡ଼ି ଆସି ପଡୁଥିବା ବାଳରେ
ବିନା କାରଣର ଅବୋଧ ଉଦ୍‌ବେଗମାନଙ୍କୁ
ତମେ ସାଉଁଳାଇ ଦେବ ହାତରେ ନେଇ
ଭରପୂର ଋତୁ ଆସି ବିଞ୍ଛିଯିବ
ମୁମୂର୍ଷୁ ହୋଇ ସାରା ଚଟାଣରେ ଏପାଖ ସେପାଖ

ବୁଦାରୁ ବୁଦା ଡେଇଁ ଡେଇଁ ବୁଲୁଥିବା
ଛୋଟ ପକ୍ଷୀଟିର ଅଶାନ୍ତ ଅସ୍ୱସ୍ତିରେ
ତମ ଛାତିର ହଲଚଲ ଧ୍ୱନିତ ହେଉଥିବ

ପତ୍ର ଗହଳରେ ମୁହଁ ଲୁଚାଉଥିବା
ଫୁଲଟିର ଆଚମ୍ବିତ ପାଖୁଡ଼ାମାନଙ୍କରେ
ଜଡ଼ି ରହିଯିବ ତମର କୋମଳ କୁଣ୍ଠା ସବୁ
କାହାର ଅପରିଚିତ କଣ୍ଠସ୍ୱର ଶୁଣି
ତମେ ଯେତେବେଳେ ପଛକୁ ମୁହଁ ବୁଲାଇବ
ସେଇଟି କାନ୍ଥର ଦର୍ପଣରେ ଅଟକିଥିବା
ସୂର୍ଯ୍ୟାସ୍ତର ଶେଷ ଅଭିମାନ ଥିବ

ମୋର ଖୋଜୁଥିବାର ଅଗଣିତ ହାତ
ମୋର ଚାହିଁ ରହିଥିବାର ସହସ୍ର ଆଖି
ମୋର ଇଚ୍ଛାର ଉଦଗ୍ର ନିବିଡ଼ତା
ସବୁ ତମର ନୈସର୍ଗିକ ପରିପାର୍ଶ୍ୱର
ପ୍ରତିଟି ଅଣୁ ପରମାଣୁରେ ମୂର୍ତ୍ତ ହୋଇ
ତମକୁ ସଂପୂର୍ଣ୍ଣ ଭାବେ ଘେରି ରଖିବେ

ତମେ ବର୍ତ୍ତମାନ ତମର ବିଦେଶର ଘରେ
ଯେତେବେଳେ ଏକା ଏକା ବସି ରହି
ସଂପୂର୍ଣ୍ଣ ଉଦାସୀନତାର ସହିତ
ବାହାରେ ଖୋଲା ଝରକା ଆଡ଼କୁ ଅନାଇ
ସୃଷ୍ଟିର ଭାରସାମ୍ୟକୁ ଏଇପରି
ଅବଲୀଳାକ୍ରମେ ନଷ୍ଟଭ୍ରଷ୍ଟ କରି ଚାଲିଥିବ

## ଖଣ୍ଡଗିରି

କିଏ ସମ୍ରାଟ କାହିଁ ସେନାବାହିନୀ କେତେ ଦୂରରେ ଦୁର୍ଗ
କେଉଁଠାରେ ପ୍ରାସାଦ ସିଂହାସନ ରଙ୍ଗମଞ୍ଚ ଅନ୍ତଃପୁର

କେଉଁ ତାଳରେ ହଠାତ ଅଟକିଗଲା ରାଜନର୍ତ୍ତକୀର ପାଦ
ଘୋଡ଼ା ଝପଟାଇ କେତେବେଳେ ଆସିବ ଶତ୍ରୁପକ୍ଷର ଦୂତ
ରାଜ ପୁରୋହିତର ଭବିଷ୍ୟଦ୍‌ବାଣୀ କି ସମ୍ଭାବନା ସୂଚାଏ
ପଥର ଅପନ୍ତରାରେ କିନ୍ତୁ କେହି କୁଆଡ଼େ ନ ଥାନ୍ତି
ସହାନୁଭୂତିହୀନ ଆକାଶ ଫେରାଇ ଦିଏ ପ୍ରଶ୍ନମାନଙ୍କୁ
ଇତିହାସ ଶୋଇଯାଇଥାଏ ନିଜର ବିଡମ୍ବନାମାନଙ୍କରେ

ଗିରିଗହ୍ୱରର ସ୍ୱଚ୍ଛତାରେ ସାମ୍ରାଜ୍ୟର ଚିହ୍ନବର୍ଣ୍ଣ ନାହିଁ
ଭିତ୍ତିଚିତ୍ରରେ ଲିଭିଗଲାଣି ବିଜୟୋତ୍ସବର ଉତ୍ତେଜନା
ଭଙ୍ଗା ପଥର ଧ୍ୱନିତ କରେ ନାହିଁ ନୂପୁରର ଅନୁରଣନ
ଲତା ଗୁଳ୍ମ ଘେରାଇ ନିଅନ୍ତି ଯୁଦ୍ଧ ଶିବିରର ସ୍ପର୍ଦ୍ଧାକୁ
ଅନୁପ୍ରାଣନର ଆଲୋକିତ ପୁଟ ଦେଇ ଖୋଜୁଥିବା ବେଳେ
ସବୁ ନିସ୍ତେଜ କରିଦିଏ ଅସୁସ୍ଥ ଅକ୍ଷରର ଅବକ୍ଷୟ

ମନ ତଥାପି ଉଚ୍ଚକିତ ରହିଥାଏ ପ୍ରତିଟି ପରିବର୍ତ୍ତନକୁ
ଖୋଜୁଥାଏ ପଥର ସନ୍ଧିରେ ଗଛ କୋରଡରେ ଚଟାଣ ତଳେ
ଯୁଦ୍ଧଘୋଷ ମନ୍ତ୍ରଧ୍ୱନି ନିକ୍ୱଣର ପ୍ରତିଶବ୍ଦ
ଜୟଯାତ୍ରା ସମାରୋହ ମହୋତ୍ସବର ଘଟା ଆଡମ୍ବର
ଅନ୍ୱେଷଣ ଅଟକିଯାଏ କିଛି ଆଉ ନ ଥିବାର ଅନ୍ଧାରରେ
ବିମ୍ବ ଓ ଧ୍ୱନି ଫେରିଆସନ୍ତି ଶୂନ୍ୟ ଓ ନିଃଶବ୍ଦ ହୋଇ

କେବଳ ନାମ ମାତ୍ର ଯୋଡ଼ି ରଖେ ସ୍ୱର୍ଗ ଓ ଅଳକାପୁରୀକୁ
ଗୁମ୍ଫାର ରନ୍ଧ୍ର ଭିତରକୁ ପଶିଯାଏ ଯଶ ଓ ଖ୍ୟାତି
ଭଙ୍ଗା ଶିଳାଲିପିରେ ପୋଛିଯାଏ ପ୍ରତିଷ୍ଠା ଓ ପରାକ୍ରମ
ଉଡ଼ାଜାହାଜର ଶବ୍ଦ ଉଡ଼ାଇନିଏ ଗରିମା ଓ ଗୌରବ
ସମ୍ରାଟର ସ୍ମୃତି ଖସିପଡ଼େ କୁମାରଗିରିର ଶୀର୍ଷରୁ
ହାଇୱେ ଉପରେ ପଡ଼ି ଭାଙ୍ଗିଯାଏ ଖଣ୍ଡ ଖଣ୍ଡ ହୋଇ

ସଂନ୍ଧ୍ୟାର ସୂର୍ଯ୍ୟ ସାଧାରଣ ଦିନଟିକୁ ଟାଣି ନେଇ ଚାଲିଯାଏ
ଆବୁଡ଼ା ଖାବୁଡ଼ା ପଥରର ନିର୍ଲିପ୍ତତା ଉପର ଦେଇ

# ଠିକଣା ବହି

ପ୍ରଥମ ପୃଷ୍ଠାରେ ଅବଶ୍ୟମ୍ଭାବୀ ଅନାମିକା
ଅତୀତରୁ ଓହ୍ଲାଇ ଆସିବ ଜହ୍ନରାତି ଭଳି
ମୋର ସଂଭ୍ରମର ଝରକା ବନ୍ଧକୁ ଡେଇଁ
ସିଧା ଚାଲିଯିବ ମୋର ବିଛଣାର ଘନିଷ୍ଠତାକୁ

କେଉଁ ଠିକଣା ଶୈଶବର ସୀମାନ୍ତରୁ ଆସି
ଗୋଟିଏ ପ୍ରଜନ୍ମର ଇତିବୃତ୍ତିକୁ ପାଦରେ ଏଡ଼ାଇ
ଖେଳନା ସବୁକୁ ଭିନ୍ନ ଭାବରେ ସଜାଇ ରଖିଦେବ
ମୋର ସ୍ମରଣ ଶକ୍ତିର ବିପର୍ଯ୍ୟସ୍ତ ଥାକମାନଙ୍କରେ

କିଏ ପୁଣି ଆସି ପହଞ୍ଚିବ ଅଚିହ୍ନା ମୁହଁ
ଓ ଅଜଣା ଦେହର ପରିଚୟପତ୍ର ନେଇ
ବହିଥାକରେ ଆଉଜି ବସିବ ଉପନ୍ୟାସର ଚରିତ୍ର ଭଳି
କିଛି ମୋର ମନେ ନ ଥିବ ଅପେକ୍ଷାର ଅବଧି ବ୍ୟତୀତ
ଅବ୍ୟବସ୍ଥିତ କାହାଣୀଟିକୁ ଯୋଡ଼ିବାକୁ ଚାହିଁଲେ
ମୋର ହଠାତ ମନେ ପଡ଼ିଯିବ ଯେ
ମୁଁ ମୋର ସ୍ୱପ୍ନର ଅନ୍ୱେଷାମାନଙ୍କୁ
କାହିଁ କେତେକାଳ ପଛରେ ଛାଡ଼ି ଆସିଥିଲି

କାହା ନାଁ ଧରି ବର୍ଷା ପଶିଆସିବ ଭିତରକୁ
କାହା ଠିକଣା ଆଣିଦେବ ହସପିଟାଲର ଗନ୍ଧ
କାହାର ଟେଲିଫୋନ ନମ୍ବର ମତେ ଡାକିଦେବ
ସୁଦୂର ବିଦେଶର ବରଫାବୃତ ସକାଳ ଭିତରେ
କାହାର ସହର ସହଜରେ ଓଠକୁ ଆଣିଦେବ

ସଂଜ ଓ କୁହୁଡ଼ିରେ ମିଳିମିଶି ଯାଇଥିବା
ରାସ୍ତା ପାଖ ଦୋକାନର ଗରମ ଚା'ର ସ୍ୱାଦ

ଚିତ୍ରିତ ପ୍ରଜାପତି ଭଳି କାଗଜର ଅନାବନାରେ
ନାଁ ଓ ଠିକଣା ଭିତରେ ଏଇପରି ଭାସି ବୁଲୁଥିବେ
ସମୟର ଆଲିଖିତ ଆଖି ମୁହଁ ଛାତି ଦେହ
ଅଭିମାନ ହସ ଲୁହ ରାଗ ରୋଷ ଦୀର୍ଘଶ୍ୱାସ
ଶାଣିତ ଚାହାଣୀ ଜଳନ୍ତା ସ୍ପର୍ଶ କମ୍ପିତ ସ୍ୱର

କିଏ ପହଞ୍ଚିବ ମୋର ଅନ୍ୟମନସ୍କ ସ୍ୱପ୍ନ ଭିତରେ
ସମୟର ସହଜ କ୍ରମରେ ହୁଲସ୍ଥୁଲ ଆଣି
କିଏ ଆସିବ ମୋର ହୃତପିଣ୍ଡର ଟିକଟିକରୁ
ଗୋଟିଏ ଛୋଟ ସ୍ପନ୍ଦନକୁ ସ୍ଥଗିତ କରିଦେଇ
କିଏ ଫେରିଯିବ ତଟସ୍ଥ ଛାତି ଉପରେ
ଶେଷ ରାତିର ଏକ୍ସପ୍ରେସ ଟ୍ରେନ ନେଇ
କିଏ ପୁଣି ଚାଲିଯିବ ଦେହର ଅବକ୍ଷୟରେ
ମୁହୂର୍ତ୍ତରୁ ମୁହୂର୍ତ୍ତକୁ ବ୍ୟବଚ୍ଛେଦ କରିଦେଇ

ଅନ୍ତିମ ମୁହୂର୍ତ୍ତରେ ସେ ଆସିବ ମୋ ଆଗକୁ
ଯାହାର ନାଁ ମୋ ଠିକଣା ବହିରେ ନ ଥିଲା
ସଂଜ୍ଞା ଗଳି ସହର ଟେଲିଫୋନ ନମ୍ବର ନୁହେଁ
ରକ୍ତମାଂସର ଭରପୂର ଶରୀର ନେଇ ପହଞ୍ଚିବ
ଅଯତ୍ନରେ ଉଠାଇନେବ ମୋର ଠିକଣା ବହିକୁ
ପୃଷ୍ଠା ସବୁକୁ ଚିରିଦେବ ଟିକଟିକ କରି
ନିଃସଂକୋଚ ଉଡ଼ାଇଦେବ ମୋ ସତ୍ତାର ଝରକା ବାହାରକୁ
ମୋର ସମଗ୍ର ଜୀବନର ପୂର୍ବାପର ସଂଗତିମାନଙ୍କ ସହିତ

# ଖେଳନା

କେଉଁ ଉପକଥାର ଆଶ୍ଚର୍ଯ୍ୟରୁ ବାହାରି
ଦୂର ଭବିଷ୍ୟତର କିଛି ହସଖୁସି
ବାଟ ଭୁଲି ହଠାତ ଭିତରକୁ ଆସିଲେ
ଏପ୍ରିଲର ଖୋଲା ଝରକା ଦେଇ
ଆମକୁ ଆମର ସମୟଠାରୁ ବିଭକ୍ତ କରିଦେଇ
ଆମ ଆଖିରେ ଅମରତ୍ୱର ସ୍ୱପ୍ନ ଆଣିଦେଲେ
ଥାକ ଉପରେ ସଜା ହୋଇଥିବା ଖେଳନାଟିକୁ
ଆମେ ଆଣି ଶୁଆଇଦେଲୁ ରାତିର ବିଛଣାରେ

ସକାଳେ ଖେଳନା ନିଦରୁ ଉଠି ଆଖି ଖୋଲିଲା
ଦିନ ପରେ ଦିନକୁ ନିଜର କରିନେଲା
ଛୋଟ ଛୋଟ ହାତରେ ଜଳଜଳ ଆଖିରେ
ହସିଲା କାନ୍ଦିଲା କଡ଼ ଲେଉଟାଇଲା
ବିଛଣା ଉପରେ ଉଠିବସି କଥା କହିଲା
ଦିନେ ଖରାବେଳେ ଆମକୁ ଚମକାଇ ଦେଇ
ଖେଳନା ହଠାତ ଉଠି ଠିଆ ହେଲା
ପୁଣି କାନ୍ଥରେ ଭରା ଦେଇ ଚାଲିଲା

ଦେଖୁ ଦେଖୁ ଖେଳନା ଖେଳିଲା ଦଉଡ଼ିଲା
ଖେଳନା କାନ୍ଦିଲା ରୁଷିଲା ଅଭିମାନ କଲା
ଖେଳନା ଆମକୁ ହସାଇଲା କନ୍ଦାଇଲା
ଖେଳନା ହସିଲା ନାଚିଲା ଗୀତ ଗାଇଲା
ଫ୍ରକ ପିନ୍ଧି ବହି ଧରି ସ୍କୁଲକୁ ଗଲା
ଖେଳନା ନିଜର ଭଲମନ୍ଦ ନିଜେ ବୁଝିଲା
ଖେଳନା ନିଜ ପାଦ ଉପରେ ଠିଆ ହେଲା
ଦିନେ ପୁଣି ଉଡାଜାହାଜ ଚଢ଼ି ହାତ ହଲାଇ

ଦୂର ବିଦେଶକୁ ଚାଲିଗଲା ଖେଳନା

ଖେଳନା ଚିଠି ଲେଖିଲା ଟେଲିଫୋନ କଲା
ଆମକୁ ସାନ୍ତ୍ୱନା ଦେଲା ଆଶ୍ୱାସନା ଦେଲା
ଆମକୁ ବୁଝାଇଲା ଆମକୁ ଆକଟ କଲା
ଦୂରରୁ ହିଁ ଆମକୁ ବାନ୍ଧି ରଖିଲା ଖେଳନା

ଏଥରକ ଖେଳନା ନିଜର ଘର ତିଆରି କଲା
ଝରକା ବାହାରକୁ ଅନାଇ ସ୍ୱପ୍ନ ଦେଖିଲା
ରୂପକଥାର ହସ ଖୁସିଙ୍କୁ ପାଖକୁ ଡାକିଲା
ଥାକ ଉପରୁ ଉଠାଇନେଲା ଖେଳନାଟିକୁ

# ଫଟୋଗ୍ରାଫ

ତମକୁ ବାରମ୍ବାର ଦେଖିବାର ଅଗଣିତ କ୍ରମରେ
ମୁଁ ଆହୁରି ଥରେ ତମ ମୁହଁକୁ ଅନାଏ
କିନ୍ତୁ ତମର ଆଖି ମୋର ଚାହିଁଥିବାକୁ ଲଂଘି
ଚାଲିଯାଇଥାଏ କେଉଁ ଅନ୍ୟ ସମୟର ଆକାଶରେ
ନୂଆ ହୋଇ ଜନ୍ମ ନେଉଥିବା ସ୍ମୃତିପୁଞ୍ଜ ଆଡ଼କୁ

ତମ ଦେହଭଙ୍ଗୀ ତମ ପରିବେଶରେ ଜଡ଼ୀଭୂତ
ତମ ଚାରିପାଖର ଗଛଲତା ଚରାଚର ସମସ୍ତେ ନିସ୍ପନ୍ଦ
ତମ ହାତର ଚା କପରେ କୌଣସି ବିକ୍ଷୋଭ ନାହିଁ
ମୋର ସମସ୍ତ ଜିଜ୍ଞାସା କିନ୍ତୁ ଯାଇ ଛିନ୍ନଛତ୍ର ହୋଇଯାନ୍ତି
ତମ ଦେହର ଦିଗ ଦିଗନ୍ତରେ ଥିବା ସ୍ଥିର ବିଦ୍ୟୁତରେ

ମୁଁ ତମ ମୁହଁରୁ ମୋର ସବୁ ଅଜ୍ଞତାର ସମାଧାନ ଖୋଜେ

କେଉଁ ଆଲୋଡ଼ନର ଅସ୍ୱସ୍ତି ତମର ବାଳର ସ୍ଫୁଲିଙ୍ଗରେ
କଣ କହିବାକୁ ଚାହେଁ ତମ ଆଖିର ସୂଚୀଭେଦ୍ୟ ମୌନ
କାହା ଅପେକ୍ଷାରେ ତମ କପାଳରେ ସିନ୍ଦୂର ବିନ୍ଦୁର ଧୈର୍ଯ୍ୟ
କିଏ ଦିଏ ତମର ଓଠରେ ହସର ଅପରିସ୍ଫୁଟ ସକାଳ
ତମ ଗାଲ ଉପରେ ଅସମୟ ଖରାର କେଉଁ ଲୁଚକାଳି
ତମ ଶାଢ଼ୀରେ କିଭଳି ଅନାୟାସ ସ୍ୱପ୍ନର ଫୁଲ ସବୁ

କିଛି ବି କହେ ନାହିଁ ତମର ଚିତ୍ର ପ୍ରତିମାର ମୁହଁ
କେବଳ ମୋର ଅଦୃଷ୍ଟ ବଦଳି ବଦଳି ଯାଏ
ତମର ମୁହଁରେ ଭାସମାନ ରଙ୍ଗମାନଙ୍କର ଛାୟାଛବିରେ
ତମର ଦେହର ନତୋନ୍ନତ ନେତିରେ ଧକ୍କା ଖାଇ
ମୋର ଅଭାବ ସବୁ ପୁଣି ମୋ ପାଖକୁ ଫେରି ଆସନ୍ତି
ତମ ହାତର ଚା କପ ଓଠ ତଳେ ଅବିଚଳିତ ରହିଥାଏ
ମତେ କିନ୍ତୁ ଝଡ଼ ଆସି ବିପର୍ଯ୍ୟସ୍ତ କରିଯାଏ
ବାରମ୍ବାର ଆହତ କରୁଥିବା ପୁରୁଣା ପ୍ରଶ୍ନମାନଙ୍କ ଭଳି

ଆଉ ମୋର ସାହସ ହୁଏ ନାହିଁ ଦେଖିବା ପାଇଁ
ସମୟ କ୍ଷମା କରିଦେଇଥିବା ତମର ଦେହ ସୌଷ୍ଠବକୁ
ତମ ମୁହଁ ଉପରୁ ମୁଁ ଆଖି ଫେରାଇନିଏ
ସନ୍ତର୍ପଣରେ ତମକୁ ମୁଁ ରଖିଦିଏ ନେଇ ଛାତି ଭିତରେ
ତମେ ଯେପରି ବିଚାରକର ଆଖି ନେଇ ମତେ ଆଉ
ଏପରି ସବୁ ପ୍ରଶ୍ନମାନଙ୍କର ଆଶୁ ଉତ୍ତର ମାଗିବ ନାହିଁ
ଯାହା ତମେ ମତେ କେବେ ବି ପଚାରି ନ ଥିଲ

## ଚିଠି ଆସେ ନାହିଁ

କେହି ବି ମନେ ପକାନ୍ତି ନାହିଁ
ଆଉ ଚିଠି ଆସେ ନାହିଁ
ଖାଲି ଘରର ସବୁ ଉଦାସକୁ

ମୁଁ ହାତରେ ନେଇ ଏକାଠି କରୁଥାଏ
ଝରକା ବାହାରକୁ ଫିଙ୍ଗିଦେବା ପାଇଁ
ଦୃଷ୍ଟି ବୁଲି ବୁଲି ଫେରିଆସେ
ବିମୂର୍ତ୍ତ ଛବିର ରେଖାଙ୍କନ ଭଳି

ଚିଠି ଆସେ ନାହିଁ
ପବନ କଥାବାର୍ତ୍ତା ବନ୍ଦ କରିଦିଏ
ପ୍ରତିବିମ୍ବ ଫେରିଯାଏ ନିଃସ୍ୱନ କୋଟରକୁ
ପୃଷ୍ଠା ଉପରେ ଅକ୍ଷର ଅସ୍ପଷ୍ଟ ହୋଇଯାନ୍ତି
ଫଟୋଗ୍ରାଫ୍‌ର ମୁହଁ ଆଖି ବନ୍ଦ କରିଦିଏ
ଡାକବାଲା ବାଟ ଭାଙ୍ଗି ଚାଲିଯାଏ

ହାତ ବଢ଼ାଇଲେ ଆଗରେ ନିଃଶବ୍ଦ
ପାପୁଲି ଉପରେ ତରଳି ଜମିଯାଏ
କାହିଁ କେତେ ଦିନର ମୌନ
ଖାଲି ରାସ୍ତାରେ କାହାକୁ ନ ଭେଟି
ଆଖିର ଅଦମ୍ୟ ଆଗ୍ରହ ଫେରି ଆସନ୍ତି
ମୋର ଚାହିଁବାର ଆତିଶଯ୍ୟ ଭିତରକୁ
ଦୀର୍ଘଶ୍ୱାସର ଶୁଖିଲା ଗଛ ଉପରେ
କାଉ ଉଡ଼ିଆସି ଚୁପଚାପ ବସେ
କେଉଁ ଅବୁଝାମଣାର କଳା ଚିହ୍ନ ଭଳି
ବାର୍ତ୍ତାବିହୀନ ଶୁଖିଲା ପତ୍ରଟିଏ
ତଳକୁ ଖସିପଡ଼େ ଅନ୍ୟମନସ୍କ ହୋଇ

ମୋ ଉତ୍କଣ୍ଠା ମନକୁ ଆଣିଦିଏ
କବାଟରେ ମୃଦୁ ଆଘାତ କରୁଥିବା ଘନିଷ୍ଠତା
ଟେଲିଫୋନରେ ଅନୁରଣିତ ସୌହାର୍ଦ୍ଦ୍ୟ
ଝରକାରେ ଉଙ୍କି ମାରୁଥିବା ଆତ୍ମୀୟତା
ମୁଁ ଆତ୍ମସ୍ଥ ହୋଇ ସ୍ୱୀକାର କରିନିଏ
ସବୁ ମୋର ବୋଧଶକ୍ତିର ବିଭ୍ରମ

ଏବଂ ଆଜି ବି ଚିଠି ଆସିବ ନାହିଁ
ତଥାପି ମୁଁ ଅଦୃଶ୍ୟ ହୋଇ ବସି ରହିଥାଏ
ନିଜର ଆୟୁଷର ନିଝୁମ ଅନ୍ଧାରରେ
ଜଳି ଯାଇଥିବା ଡେଣାକୁ ମେଲାଇ
ମୃତ୍ୟୁର ଆଲୁଅ ଚାରିପାଖେ ଘୂରି ବୁଲୁଥିବା
ଜିଜୀବିଷାର ଏକାଗ୍ରତା ନେଇ

# ମାନିନୀ

କାହାରିକି ମାନେନାହିଁ ମାନିନୀ
ନା ରାତି ନା ଆୟୁଷ
ନା ଦୁଃଖ ନା ସ୍ୱପ୍ନକୁ
ନା ଛାତି ତଳେ ଛଟପଟ ନିଜର ମନକୁ

କାହାରିକି କିଛି କହେ ନାହିଁ ମାନିନୀ
ଚୁପଚାପ ରହିଥାଏ ନିଜ ଭିତରେ ନିଜେ
କେବେ ଇଚ୍ଛା ହେଲେ ଖୋଲିଦିଏ ନିଜକୁ
ଦି ଧାଡ଼ି କବିତାର ଚିଠି ଲେଖିଦିଏ

ମାନିନୀ ମାପିଚୁପି ଦିଏ ଦୁଇ ଥର ସାକ୍ଷାତ
ମାତ୍ର ଛ'ଟି ଚିଠି
ଓ ଟେଲିଫୋନରେ ଦଶଥର ସୌଜନ୍ୟ
ମାନିନୀ ହଠାତ ଉଠିଯାଏ କିଛି ବି ନ କହି
ଦିନ ମାସ ବର୍ଷ କେଉଁଠି ହଜିଯାଏ ମାନିନୀ

କାହାରି ମନକୁ କେବେହେଲେ ବୁଝେ ନାହିଁ ମାନିନୀ
ସମସ୍ତଙ୍କୁ ଅଜଣା ଅଦେଖା ଅଶୁଣା କରିଦିଏ
କାହାରିକି ମନେ ପକାଏ ନାହିଁ ମାନିନୀ

ମାନିନୀ ନେଇଯାଏ ସମସ୍ତଙ୍କ ଅଜାଣତରେ
ଆଖିରୁ ନିଦ ପ୍ରାଣରୁ ମାୟା
ଆଘାତରୁ ବେଦନା ଏବଂ ମୃତ୍ୟୁରୁ ଭୟକୁ
ମାନିନୀ ସବୁବେଳେ ମନେ ପଡୁଥାଏ
ରାତି ଆୟୁଷ ଦୁଃଖ ଓ ସ୍ୱପ୍ନରେ

# କବିତାର ଦେଶ

କବିତାର ପ୍ରଥମ ଧାଡ଼ିଟି ସେତିକି କଷ୍ଟସାଧ୍ୟ
ଯେତିକି ପ୍ରେମର ପ୍ରଥମ ପଦକ୍ଷେପ ନେବା

କବିତାର ଦେଶ ଭିତରେ ପଶିବାକୁ ହୁଏ
ମନ ସ୍ଥିର କରି ଜୀବନ ମରଣର ପଣ ନେଇ
ପ୍ରସ୍ତୁତି ପର୍ବର ପ୍ରଥମ ପାଦ ପକାଇବାକୁ ହୁଏ
ଚାରିପାଖର ପ୍ରବେଶ ନିଷେଧର ଫଳକକୁ ଭାଙ୍ଗି

ତା ପରେ କିନ୍ତୁ ହଜିଯାଏ ପଥ ଓ ସଂକଳ୍ପ
ଦ୍ୱୀପାନ୍ତରରେ ନିର୍ବାସିତ ଅଭିପ୍ରାୟମାନଙ୍କ ଭଳି
ଯାବଜ୍ଜୀବନ ଘୂରି ବୁଲିଥାଏ ବାଉଳା ମନ
ବାଟ ଅବାଟରେ କଣ୍ଟାଲଟାରେ ଛାଟିପିଟି ହୋଇ
ଶବ୍ଦ ଓ ସଂପର୍କକୁ ଯୋଡ଼ି ରଖିବାର ସାଧନ ଖୋଜି

କବିତାରେ ସବୁ କିଛି ସମ୍ଭବ ଓ ସାଧ୍ୟ ମନେ ହୁଏ
ପ୍ରେମର ସର୍ବଶକ୍ତିମାନ ସମ୍ଭାବନାମାନଙ୍କ ଭଳି
ଆରବ୍ୟ ରଜନୀର ଆଜ୍ଞାବହ ଭୃତ୍ୟ ଯେପରି
କଲମ ମୁନରୁ ବାହାରିଆସି ଆଦେଶ ମାଗିବ
ବର୍ଣ୍ଣମାଳାର ଗହ୍ୱରରୁ ଦୁର୍ଲଭ ଶବ୍ଦମାନଙ୍କୁ ଆଣି
ଅର୍ଥ ବିନ୍ୟାସରେ ପଂକ୍ତିକ୍ରମେ ସଜାଇ ଦେବାର

ଇଚ୍ଛାର ଏକାଗ୍ରତା ସେଥିରେ ଆଣିଦେବ ମାର୍ମିକ ବ୍ୟଞ୍ଜନା
ଚିରି ଦେଇଥିବା ପୁରୁଣା ଚିଠିର ବାକ୍ୟାଂଶମାନ
ଆଖି ଓଠ ମୁହଁ ହୋଇ ସ୍ୱୀକାରର ସମ୍ମତି ଜଣାଇବେ
ଭାବ ଓ ଭାବନାର ଛନ୍ଦ ସବୁ ମୃତ୍ୟୁକୁ ଲଂଘିଯିବେ
ପ୍ରେମ ଅପ୍ରେମର କ୍ଷୁରଧାର ଉପର ଦେଇ

ଠିକ କବିତାର ଦେଶ ଭଳି ପ୍ରେମର ପରିସର
ଉଦ୍‌ବେଗରେ ଭର୍ତ୍ତି ହେଉଥାଏ ବୟସର ଖାଲି ପୃଷ୍ଠା ସବୁ
ଉପସଂହାର ଆଡ଼କୁ ଟାଣି ହୋଇଯାଆନ୍ତି କବି ଓ ପ୍ରେମିକ
ଉପଯୁକ୍ତ ଶେଷ କଥାଟି ଖୋଜି ନ ପାଉ ଥିବାର
ଆଜୀବନ ଅସ୍ଥିରତା ଅସ୍ୱସ୍ତି ଓ ହା ହୁତାଶରେ

# ଫେରିଯିବା ବେଳେ

ଝରକା ଖୋଲିଦେଲେ ଆୟାସଲବ୍‌ଧ ଏକାନ୍ତ ସବୁ
ଅବଲୀଳାକ୍ରମେ ବାହାରକୁ ଉଡ଼ି ଚାଲିଯିବେ
ନିର୍ବାସିତ କରିଦେଇଥିବା ଇତିବୃତ୍ତମାନ ଫେରିଆସି
ଆମକୁ ସଂକ୍ରମିତ କରିଦେବେ ନିତ୍ୟନୈମିତ୍ତିକ ନଗଣ୍ୟତାରେ

ଏଥରକ ନିଜକୁ ପୁଣି ସ୍ୱାଭାବିକ କରିଦେବାର ବେଳ
ବିଛଣାକୁ ସଜାଡ଼ି ଦିବାସ୍ୱପ୍ନକୁ ଅଲଗା ରଖି
ଆମେ ଭୁଲିଯିବା ଛାତି ଉପରେ ହାତର ଭାର
ଗାଲ ଉପରେ ଖର ନିଶ୍ୱାସର ଉଠାଣି ଉଜାଣି
ଓଠରେ ଏ ପର୍ଯ୍ୟନ୍ତ ଅଟକି ରହିଥିବା ଉତ୍କଣ୍ଠା
ଓ ଅଣନିଶ୍ୱାସୀ ଅଙ୍ଗୀକାରର ଉନ୍ମନତାକୁ

ଏଥରକ ତମର ରୁଦ୍ଧ ନିଶ୍ୱାସକୁ ମୁକ୍ତି ଦେଇଦିଅ

ପ୍ରତିବନ୍ଧ ଲଗାଇଦିଅ ଉଚ୍ଛୃଙ୍ଖଳ କଥା ଉପରେ
ପୋଷାକକୁ ସାଉଁଳି ଦେଇ ସେଥିରୁ ଲିଭାଇଦିଅ
ଅଙ୍ଗାଙ୍ଗୀ ସନ୍ନିଧିର ଅନ୍ତରଙ୍ଗ କୁଞ୍ଚନ ସବୁକୁ
ଦର୍ପଣ ଉପରୁ ବିନ୍ଦୁକୁ ଉଠାଇ ନେଇ କପାଳରେ ଲଗାଅ
ରଙ୍ଗ ଦେଇ ଲିଭାଇଦିଅ ଓଠର ସ୍ପର୍ଶଅକାତରତାକୁ
ଦୀର୍ଘଶ୍ୱାସରେ ପୋଛିଦିଅ ଆଖି ମୁହଁ ଦେହରୁ
ପରିପ୍ଳୁତ ସନ୍ତୋଷର ଆର୍ଦ୍ର ଉଦ୍‌ବୃତ୍ତିକୁ

ମୁହୂର୍ତ୍ତରୁ ମୁହୂର୍ତ୍ତର ଅଦୃଶ୍ୟ ଉତ୍ତରଣରେ
ଦେହରୁ ଖୋଲି ଅତୀତକୁ ଫେରାଇଦିଅ
ଆଖିର ଅପଲକ ଆଗ୍ରହ କର୍ଣ୍ଣଗହ୍ୱରର ଗଭୀର ପ୍ରତ୍ୟାଶା
ଇନ୍ଦ୍ରିୟ ଅବୟବମାନଙ୍କର ଶ୍ୱାସରୁଦ୍ଧ ଏକାଗ୍ରତା
ପ୍ରତି ଲୋମକୂପର ପ୍ରତିଟି ସ୍ୱତନ୍ତ୍ର ଶିହରଣ

ଶେଷଥର ପାଇଁ ଦେଖିନିଅ ସବୁ ପୂର୍ବପରି
ପଛରେ ରହି ଯାଇନାହିଁ କିଛି ବି ପରିଚୟ
ସ୍ମୃତି ବ୍ୟତୀତ ନାହିଁ ଆଉ କୌଣସି ବି ସ୍ମାରକ
ଅନ୍ୟମାନଙ୍କ ଆଖି ଦେଇ ପରଖି ନିଅ ନିଜକୁ
ନିଶ୍ୱାସ ପ୍ରଶ୍ୱାସ ସ୍ୱଚ୍ଛନ୍ଦ ସହଜ ଓ ସାଧାରଣ
ମୁହଁ ଉପରେ ପ୍ରାତ୍ୟହିକତାର ସ୍ୱକୀୟ ରୂପରେଖା
ସବୁ ଯେ ଯାହା ସ୍ଥାନରେ ସ୍ୱାୟତ୍ତ ଓ ସମନ୍ୱିତ

ନିଜର କର୍ତ୍ତବ୍ୟବୋଧରେ ହଠାତ ସଚେତନ ହୋଇ
ଘଡ଼ି ପୁଣି ଥରେ ଠିକ ଠିକ ସତର୍କବାଣୀ ଶୁଣାଏ
ଏଥରକ ଯିବାକୁ ହେବ ପୂର୍ବନିର୍ଦ୍ଧାରିତ ରାସ୍ତା ଉପରକୁ
ଫେରିଯିବା ବେଳର ଅସ୍ଥିର ଓ ବିମର୍ଷ ପାଦରେ
ଅମରତ୍ୱକୁ କ୍ଷଣକ ପାଇଁ ଛୁଇଁ ଆସିଥିବାର ଦମ୍ଭ ନେଇ

# କାଗଜର ନାଆ

କେବଳ ପରୀକଥାରେ ସମ୍ଭବ ହୁଏ
ଏଭଳି ଅସମୟ ବର୍ଷା
ସଜଳ ଅନ୍ଧାର ଆସି ଆକାଶକୁ ବାନ୍ଧିଦିଏ
ଘନଘୋର ଆଶ୍ଳେଷରେ
ଅସରା ବର୍ଷିଯାଏ ଟୁପୁର ଟୁପୁର ହୋଇ
ଶୈଶବର ଫୁଲ ବଗିଚାରେ
ଆନନ୍ଦର ଅତିରେକ ବହିଯାଏ
ରିମଝିମ ରିମଝିମ ଧାରଟିଏ ହୋଇ
କାଗଜର ହସଖୁସି ମୁହଁଟି
ତା ଉପରେ ଭାସିଯାଏ ସହଜ ସ୍ୱଚ୍ଛନ୍ଦ
ଅକାରଣ ସୁଖର ସ୍ମୃତିରେ
ସ୍ୱପ୍ନରୁ ସ୍ୱପ୍ନକୁ ଆଲୋକିତ କରି

ମେଘ ଭାଙ୍ଗି ପଡ଼େ ଲହରୀ ଉବୁକି ଉଠେ
କାଗଜର ନାଆ ପହଁରିଯାଏ
ଚେତନାର ଛାଇ ଆଲୁଅରେ ଦୋଳି ଖାଇ
ମନର ଉଠାଣି ଉଜାଣି ଦେଇ
ଦୃଷ୍ଟିର ସୀମାନ୍ତକୁ ପାରି ହୋଇ
ଯାଇ ଛୁଏଁ ଅନ୍ତର୍ଲୀନ ପ୍ରବାଳଦ୍ୱୀପକୁ

ଅପେକ୍ଷାର ଆଖି ଜାଗ୍ରତ ରହିଥାଏ
ସ୍ରୋତ ଆଡ଼କୁ ଅନାଇ
ଆଗାମୀ ସୁଖର ଦିନ ସବୁକୁ
ତା ସହିତ ଫେରାଇ ଆଣିବାର ଆଶାରେ

କେଉଁମାନେ ପୁଣି ଅଦେଖା ଅଜଣା କରିଦିଅନ୍ତି
ନବଜାତକର ଦୁଃସାହସ
ସମସ୍ତେ ନିଜକୁ ଭସାଇଦେଇ ପାରନ୍ତି ନାହିଁ
ରୂପକଥାର ରତ୍ନାକର ଭିତରକୁ
ସମସ୍ତଙ୍କ ଓଠକୁ ସହଜରେ ଆସେ ନାହିଁ
ସ୍ୱାଗତ ସମ୍ଭାଷଣର ପଦାବଳୀ
ସମସ୍ତଙ୍କୁ ଛୁଏଁ ନାହିଁ ବର୍ଷାର ଅୟୁତ ଅଙ୍ଗୁଳି
ଓ ସ୍ରୋତର ଅମାପ ଆତ୍ମୀୟତା
ଉଷ୍ମା ନ ଥାଏ ସମସ୍ତଙ୍କ ଇଚ୍ଛାରେ
ନ ଥାଏ ସମସ୍ତଙ୍କ ଆଗ୍ରହରେ ଡେଣା
ସଭିଙ୍କ ଛାତି ଭିତରେ
ସଂଗୀତର ହିଲ୍ଲୋଳ ଆଣେ ନାହିଁ ହେମାଳ ପବନ

ପାଣିର ଧାର ଯୋଡ଼ିଦିଏ
ବୟସରୁ ବୟସକୁ ଋତୁରୁ ଋତୁକୁ
ପରଲୋକ ଫେରାଇଦିଏ
ଅବଶିଷ୍ଟ ଆୟୁଷ ନୈରାଶ୍ୟ ଓ ସ୍ଥିତାବସ୍ଥା
ଆଦି ଅନ୍ତ ଖୋଜି ପାଏ ନାହିଁ ଆଖି
ବୁଝେ ନାହିଁ ଆକାରମାନଙ୍କୁ
ଲହରୀ ଆଣି ଅବଜ୍ଞାରେ କୂଳରେ ଫିଙ୍ଗିଦିଏ
ହଜି ଯାଇଥିବା ସ୍ମାରକୀସବୁ

ଆକାଶର ଦୁରୁହତାକୁ ଚିରି
ପ୍ରଶ୍ନବାଚୀ ମୁହଁମାନେ ତଳକୁ ଅନାନ୍ତି
ଗାଈଆଳ ପିଲା ଗୋଠ ବାହୁଡ଼ାଇ
ଚାଲିଯାଏ ଗୋଧୂଳିର ଅପର ପାଖକୁ

ଇହପରର ଉଭୟ ସଙ୍କଟ ଭିତରେ
ସନ୍ତ୍ରସ୍ତ ରହିଥାଏ ସ୍ଥିତପ୍ରଜ୍ଞ
ଦୁଇ ହାତରେ କାର୍ଯ୍ୟକାରଣ

ଓ ଯୌକ୍ତିକତାର ପ୍ରମାଣପତ୍ରମାନ ଧରି
ଜୀବନର ଜଟିଳ ତର୍କମାନଙ୍କରେ ଉବୁଟୁବୁ ହେଉଥାନ୍ତି
ତାର ଛାୟାଚ୍ଛନ୍ନ ଦିନଟିର ପ୍ରତିଟି ସତର୍କ କ୍ଷଣ

ମୁହୂର୍ତ୍ତମାନଙ୍କର ରଂଗସବୁ ମିଶିଯାନ୍ତି
ପରିସମାପ୍ତିର ସାଙ୍କେତିକ ଚିତ୍ରମାନଙ୍କ ଭିତରେ
ସେ ଅନାଇ ରହିଥାଏ ହତବାକ ହୋଇ
ମୃତ୍ୟୁକୁ ବିସ୍ମିତ କରି ଭାସି ଯାଉଥିବା ବୁଦ୍‌ବୁଦ ଆଡ଼କୁ
ତା ହାତରେ ଧରିଥିବା କାଗଜଟି କିନ୍ତୁ
ନାଆର ଆକାର ନିଏ ନାହିଁ

## ମୁହଁଅନ୍ଧାର

ଆଉ କେହି ନାହାନ୍ତି ଏଠାରେ
ଆଉ କିଛି ବି ନାହିଁ
ଇତିବୃତ୍ତମାନେ ବସା ଭାଙ୍ଗି
ଉଡ଼ି ଗଲେଣି କେତେବେଳୁ
କେବଳ ଖାଲି ଘର ଖୋଲା ଝରକା
ଓ ମୋର ତୃଷାତୁର ଆଖି
ଏବଂ ଭୟ ଇଚ୍ଛା ଈର୍ଷା ଯନ୍ତ୍ରଣା ଅନ୍ଧାରର
ରଂଗମାନଙ୍କରେ ଅମୂର୍ତ୍ତ ହୋଇ ଯାଇଥିବା
ତମର ଅନଶ୍ୱର ମୁହଁର ଆଲେଖ୍ୟ

ତମ ମୁହଁକୁ ଘେରି ରହିଥିବା
ପ୍ରଭାମଣ୍ଡଳର ଅପର ପାର୍ଶ୍ୱରେ
ଶାଖାପ୍ରଶାଖାର ହାତ ବଢ଼ାଇ

ରାତି ଖୋଜେ ନିଜର ସଘନତାକୁ
ଗଛପତ୍ରରୁ ମର୍ମରକୁ ଟାଣି ନେଇ
ମନ୍ତ୍ରମୁଗ୍ଧ ରହିଯାଏ ବାୟୁମଣ୍ଡଳ
ମୁଷ୍ଟିମେୟ ତାରା ଛଟପଟ ହେଉଥାନ୍ତି
ନିଜ ନିଜ ବିବିକ୍ତତା ନେଇ

ତମର ଅଙ୍ଗଭଙ୍ଗୀରେ
ଆକାଶ ନଇଁଆସେ ପ୍ରାଚୀନ ଭକ୍ତିରେ
ତମର ଦେହର ଗନ୍ଧ ସମ୍ମୋହିତ କରିଦିଏ
ଦେବଲୋକର ଦିଗ୍‌ବିଦିଗ
ତମର ନିଶ୍ୱାସ ଯାଇ ଉଚ୍ଚାରିତ ହୋଇଯାଏ
ସନ୍ଧ୍ୟାର ସହସ୍ର ନାମରେ

ମୁହାଁମୁହିଁ ବସିଥିବା ବେଳେ
ଅନ୍ଧାରର ନିରୁକ୍ତି ମଝିରେ
ବ୍ୟତୀତ ବହିଯାଉଥାଏ ଆବହମାନ ନଦୀ ଭଳି
ଦୁଃଖର ବଶବର୍ତ୍ତୀ ହୋଇ
ସେଥିରେ ଉଜାଣି କାଟୁଥାଏ ନିଃଶବ୍ଦ
ତାର ହାଲୁକା ଢେଉ ଆସି
ଛୁଇଁଯାଏ ଦୁଇ କୂଳକୁ ଲଂଘି
ବିଭକ୍ତ ହୃଦୟର ସୀମାନ୍ତମାନଙ୍କୁ
ଆର୍ଦ୍ର ମନୋଭାରରେ ସିକ୍ତ କରିଦେଇ

ଆଖି ଫେରିଆସେ ଝରକାର ଅନ୍ଧାରରୁ
ଘରର ନିଭୃତକୁ
ଧ୍ୟାନ ଧାରଣା ସବୁ
ଯାଇ କେନ୍ଦ୍ରୀଭୂତ ହୋଇଯାଏ
ସଂକୀର୍ଣ୍ଣ ବଳୟ ଭିତରେ

ଯେଉଁଠାରେ ଆଉ ସମୟର ସଂଚାର ନାହିଁ
ନଦୀର ନିରନ୍ତର ନାହିଁ
ହାତପାହାନ୍ତାରେ ସମସ୍ତେ
ନିଜ ନିଜର ଆହୁରି ନିକଟତର

ଅଳ୍ପ ଅନ୍ଧାରର ସାନ୍ଦ୍ରତା
ଓ ସୀମାବଦ୍ଧ ପରିସର ଦେଇ
ଯାହା କିଛି ଦେଖାଯାଏ ବୁଝିହୁଏ
କେବଳ ଇଚ୍ଛାର ଦୀପ୍ତିରେ
ଯେପରି ତମର ଚାହୁଁଥିବା ମୁହଁ
ଯେପରି ମୋର ଖୋଜୁଥିବା ଆଖି

# ଅସତ୍ୟ ସହର

ସକାଳେ ନିଦ ଭାଙ୍ଗିଯାଏ
ଗାଡ଼ି ମଟରର କିଚିରି ମିଚିରିରେ
ଛାତ ଉପରେ ଛିଡ଼ା ହୋଇ
ଆଗକୁ ଅନାଇଲେ ଦେଖାଯାଏ
ମରୁଡ଼ିରେ ଉଜୁଡ଼ା କ୍ଷେତ ଭଳି ସହର
ଅଜଣା ଦିଗବଳୟରେ ବଣା ହୋଇ
ଆଖି ଫେରିଆସେ ହାତପାହାନ୍ତାକୁ
ଫେରିବାଲାଙ୍କର ଡାକ ଶୁଭେ
ଅଧୈର୍ଯ୍ୟ ହମ୍ୱାରଡ଼ି ଭଳି
ବାହାରକୁ ବାହାରିବାକୁ ବାଧ୍ୟ କରିଦିଏ
ସାଇରେନର ଆଳତି ଘଣ୍ଟା

କାମଧନ୍ଦାର ଅନାବନା ଅରମାରେ
ରାତିଅଧର ଭୁଲାସ୍ୱପ୍ନ ଭଳି
ସାରା ଦିନଟି କଟିଯାଏ ଆନମନା ହୋଇ
ଥକା ହୋଇ ଛାଇଲେଉଟାଣି ବେଳେ
ଫେରନ୍ତା ରାସ୍ତା ଉପରକୁ ଓହ୍ଲାଇଲେ
ଘରମୁହାଁ ପାଦ ଉଚ୍ଚାଟ ହୋଇଯାଏ

ଗଳି ରାସ୍ତାର କଣ୍ଟାବଣିଆରେ
ହାଉଯାଉ ମଟର ଗାଡ଼ିଙ୍କ ଗୋଠ ଦେଇ
ମୁହଁସଂଜ ଚାଲିଯାଏ ଧୂଳି ଉଡ଼ାଇ
ଥୁଣ୍ଟା ବତୀଖୁଣ୍ଟ ଉପରେ
ପିଲାଦିନର ଜୁଳୁଜୁଳିଆ ପୋକ
ଜଳି ଉଠନ୍ତି ମିଞ୍ଜିମିଞ୍ଜି ହୋଇ
ରାସ୍ତାକଡ଼ର ପାଣି କଳ ପାଖରେ
ଠିଆ ହୋଇ ଆଖି ବୁଜିନେଲେ
ନଈର କୁଳୁକୁଳୁ ଶୁଣାଯାଏ

ନିଶୂନ ଘର ଭିତରେ ଏଥରକ
ବିଜୁଳିବତୀଟି ଧପଧପ ଲିଭିଯାଏ
ଅନ୍ଧାର ଆସି ଜାବୁଡ଼ି ଧରେ
ଆକ୍ତାମାକ୍ତା କରିଦିଏ ଦେହ ମନକୁ
ଅଧାଭୁଲା ନାନାବାୟା ଗୀତ
ଆଖିପତାକୁ ଆଉଁଶି ଯାଏ
ଛାଇ ନିଦର କାଉଁରୀକାଠି
ମନପବନରେ ଉଡ଼ାଇ ଆଣିଦିଏ
କାହିଁ କେତେ ଦିନର ଆଳିମାଳିକା ସବୁ
ଛାତିର କନ୍ଦିବିକନ୍ଦିକୁ ଉଲୁସାଇ ଦିଏ

ଖାଲି ଯାହା ଆଣିଦେଇ ପାରେ ନାହିଁ

ଲାଜଲାଜ ମୁହଁର ଆଢ଼ରୁଷା
ଆଉ ଅଝଟ କାନ୍ଦର ଅବୁଝା ରାହା
ରାତିର ଛଟପଟ ହେଉଥିବା ନିଛାଟକୁ
ଆଲୁଅରେ ହାଲୋଳ କରିଦେବା ପାଇଁ

## ଗେଷ୍ଟ ହାଉସ

ସୁଟକେସ ସଜଡ଼ା ହୋଇ ଯାଇଛି
ଏବଂ ବିଲ୍ ଦିଆ ସରିଲାଣି
ଭୁଲରେ କିଛି ଛାଡ଼ି ଯାଇ ନ ଥିବାର
ଶେଷ ଅଙ୍କକଷା ବି ସରିଛି
ଏବେ କେବଳ ଟ୍ୟାକ୍ସିର ଅପେକ୍ଷା
ଏବଂ ପ୍ରାପ୍ତି ଅପ୍ରାପ୍ତିର ଆକଳନରେ
ମୁହୂର୍ତ୍ତରୁ ଆଉ ଗୋଟିଏ ମୁହୂର୍ତ୍ତ

ତିନି ଦିନର ସାମୟିକ ଘରସଂସାରକୁ
ଏଇପରି ଭାଙ୍ଗିଦେଇ ଯିବା ବେଳେ
ଆଖି ବର୍ତ୍ତମାନ କେବଳ ଦେଖୁଛି
ବାହାର ଲୋକର ନିର୍ଲିପ୍ତତା ଦେଇ
କୋଠରୀର ରୁକ୍ଷ ଇତରତାକୁ
କାନ୍ଥରୁ ଖସି ପଡୁଥିବା ପଲସ୍ତରା
ଛାତରୁ ଝୁଲୁଥିବା ବୁଢ଼ିଆଣୀ ଜାଲ
ଚଉକିର ହାତ ଉପରେ ଧୂଳିର ପରସ୍ତ
ଦର୍ପଣ କାଚ ଉପରେ ଛିଟା ଦାଗ
ରଙ୍ଗଛଡ଼ା ଟେବୁଲ କ୍ଲଥର ଭ୍ରୂକୁଞ୍ଚନ
ଏବଂ ଝରକାର ମଇଳା କାଚ ଦେଇ

ଭିତରକୁ ପଶି ଆସୁଥିବା ସୂର୍ଯ୍ୟକିରଣ
ଯାହା ଏସବୁ ସହିତ ଆଲୋକପାତ କରିଯାଉଛି
ଜୀବନ ଦର୍ଶନର ତୁଚ୍ଛତା ଉପରେ

ସୁଟକେସ ଓ ପକେଟ ଭିତରେ
ଯେ ଯାହା ଜାଗାରେ ସୁରକ୍ଷିତ ଥାନ୍ତି
ତଥାପି କିଛି ହଜିଯାଇଥିବାର ଭ୍ରମ ହୁଏ
ମନେ ହୁଏ ଯେପରି ନିଷ୍ଫଳ ଯାଉଛି
ବସି ରହିଥିବାର ସମୟ ସବୁ
ଏବଂ ହଠାତ୍ ଉଠି ଚାଲିଯାଇ ପାରିଲେ
ଜୀବନର କୌଣସି ମହତ ଉଦ୍ଦେଶ୍ୟ
ଅଚିରେ ସାଧିତ ହୋଇ ପାରିବ
ଶୂନ୍ୟ କୋଠରୀର ଦିନକାଳ କିନ୍ତୁ
ଚକିତରେ ଉଡ଼ାଇ ନିଏ ଏଭଳି ଚିନ୍ତାକୁ
ମଧ୍ୟାହ୍ନର ନିଃଶବ୍ଦ ହସରେ

ଆଖି ଏଥରକ ଫେରିଆସେ
ନିଜସ୍ୱ ସ୍ମାରକୀମାନଙ୍କ ଆଡ଼କୁ
ଛିନ୍ନଛତ୍ର ପୁରୁଣା ଖବରକାଗଜ
ଛିଣ୍ଡା ଲଫାପା ଔଷଧର ଜରି ଖୋଳ
ଖାଲି ବୋତଲ ଅଧାଗ୍ଲାସ ପାଣି
ସର ପଡ଼ି ଯାଇଥିବା ଚା କପ୍
ଆଶ୍ ଟ୍ରେରୁ ଅଜାଡ଼ି ପଡୁଥିବା ପାଉଁଶ
ନିଦ ବାଉଳାରେ ଖଟରୁ ଖସିପଡ଼ିଥିବା
ବାରମିଶା ସ୍ୱପ୍ନର ଆଳୁକୁଚି ମାଳୁକୁଚି

ଟ୍ୟାକ୍ସିର ଡାକ ଶୁଣିବାକୁ
ଉତ୍କୀର୍ଣ୍ଣ ବସି ରହିଥିବା ବେଳେ
ଆଖି ସବୁ ଦେଖିନିଏ ବୁଝିନିଏ
ନୂଆ ଅତିଥି ଆସି ପହଞ୍ଚିବା ପୂର୍ବରୁ
ଚଉକି ଟେବୁଲ ଠିକ ଜାଗାରେ ଥିବେ

ବିଛଣା ଉପରେ ସଫା ଚାଦର
ବୋତଲରେ ପାଣି ଭର୍ତ୍ତି
ଝରକାରୁ ଖରା ଓହ୍ଲାଇ ଯାଇଥିବ
ଚଉକିଦାର ଚଟାଣକୁ ଓଳାଇ
କୋଠରୀ ବାହାରକୁ ଫିଙ୍ଗି ଦେଇଥିବ
ଧୂଳି ଛିଣ୍ଡାକାଗଜ ସିଗାରେଟ ଟୁକୁଡ଼ା ସହିତ
ଜୀବନର ତିନୋଟି ଅଦରକାରୀ ଦିନକୁ

## ସମ୍ଭାବନା

କିଛି ବି ସୁଦୂରପରାହତ ନୁହେଁ
ସବୁ ସମ୍ଭବପର ସବୁ ଘଟିପାରେ
ଯଦିଓ କାହାରିକି ଜଣା ନ ଥିବ
କେତେବେଳେ ବାହାରି ଆସିବ ବହି ଭିତରୁ
ମହାକାବ୍ୟର ନାଟକୀୟ ମୁହୂର୍ତ୍ତଟି
ପେଟରେ ଚିହ୍ନଟ ମୁଦି ଥିବା ମାଛ
ଆପେ ଆପେ ଆସି ଧରାଦେବ ଜାଲରେ
ବିନା ଠିକଣାର ଚିଠି ଖସି ପଡ଼ିବ
ଘରଦ୍ୱାର ଛାଡ଼ି ଚାଲି ଆସିଥିବା
ଉର୍ଦ୍ଧ୍ୱବାହୁ ସନ୍ୟାସୀର ହାତ ପାପୁଲିରେ
ଫାଶି ଆସାମୀ ଆଖିର ଆଲୁଅ
ଜହ୍ଲାଦ ହାତର କୁଠାରରେ ଲାଗି
ଉଦ୍ଭାସିତ କରି ଦେଇ ଯିବ
ବିଚାରକ ମୁହଁର କ୍ଷମାପତ୍ରକୁ

ଅଧାଲେଖା କାଗଜ ଉପରୁ
ଆଖି ଉଠାଇ ଦେଖିଲା ବେଳକୁ
ଆଗରେ ଠିଆ ହୋଇଥିବ

ଛାତି ଭର୍ତ୍ତି ଦୁଃସାହସ ନେଇ
ଦେହକୁ ପ୍ରହେଳିକାରେ ଢ଼ାଙ୍କି
ଓଠରେ ଅଭିମାନ ଆଖିରେ ଆଶ୍ଚର୍ଯ୍ୟ
ମନସ୍କାମନାରେ ବାଳକୁ ସଜାଇ
ଅନେକ ଦିନ ତଳେ ଟ୍ରେନରେ ଭେଟିଥିବା
ସେଇ ପାଶୋରି ଯାଇଥିବା ଝିଅଟି
ପାଞ୍ଚ ମିନିଟର ପରିଚୟ ଭିତରେ
ବହି ଉପରୁ ଆଖିକୁ ଉଠାଇ
ମୁହଁ ଉପରେ ଖେଳୁଥିବା ଛାଇ ଭିତରୁ
ଯିଏ ଅନାୟାସ କହିଥିଲା
ପୁଣି କେବେ ଦେଖା ହୋଇଯିବ ବୋଲି

# ପାରି

ମୁହାଣ ଉପରେ ପହଞ୍ଚିବା ପରେ
ନାଉରିଆ ଆହୁଲାକୁ ଉଠାଇ ରଖିଦିଏ
ଯଦିଓ ଆଖି ଆଗରେ ଲମ୍ବି ଯାଇଥାଏ
କାହିଁ କେତେ ଅଜଣା ସମୁଦ୍ରର
ହାତ ଠାରି ଡାକୁଥିବା ବିସ୍ମୟମାନ

ଅସଂପୂର୍ଣ୍ଣ କାନଭାସ ଉପରେ
ଅପର୍ଯ୍ୟାପ୍ତ ଖାଲି ଜାଗା ରହିଥାଏ
ତୁଳୀ ମୂନରେ ଥାଏ ଆହୁରି ଅନେକ
ଚିତ୍ରିତ ଆକାଶର ସମ୍ଭାବନା
ତଥାପି ଚିତ୍ରକର ଯାଇ
ବାରମ୍ବାର ନିଜକୁ ହଜାଇ ଦିଏ
ଏଇମାତ୍ର ଆଙ୍କିଥିବା ମେଘର ଘନିଷ୍ଠତାରେ

ଶେଷ ପଂକ୍ତିଟି ଲେଖିସାରିବା ପରେ
ନିଜର ଭାବନାକୁ ବନ୍ଦ କରିନିଏ କବି
ବର୍ଣ୍ଣମାଳାରୁ ଅନେକ ଶବ୍ଦ ଯଦିଓ
ଖାଲି କାଗଜ ଉପରେ ଉଡ଼ି ବୁଲୁଥାନ୍ତି
ନୂଆ ନୂଆ ଶୃଙ୍ଖଳାର ପ୍ରତ୍ୟାଶା ନେଇ

ସୂର୍ଯ୍ୟର କୌଣସି ଦିନରାତି ନାହିଁ
ସମୟ ଉଦାର ହୋଇ ଦେଖାଇଦିଏ
ଆରମ୍ଭ ଓ ଶେଷହୀନ ବିକଳ୍ପମାନ
ରାଶି ରାଶି ରିକ୍ତତା ଭିତରୁ
ଯାହା ମିଳେ ତାକୁ ହିଁ ଆଦରି ନିଏ ମନ
ଆଶାବାଦୀ କହେ ଏହା ହିଁ ଉପଲବ୍ଧି

ଜୀବନ ଦୌଡ଼ ପ୍ରତିଯୋଗିତା ନୁହେଁ
ତଥାପି କିଏ ଜିତିଲା ବୋଲି
ପଚରାଯାଇଥାଏ ଅଜ୍ଞାନତାରୁ

ଯଦିଓ ସମସ୍ତଙ୍କୁ ଜଣାଥାଏ ଯେ
ଏ ପ୍ରଶ୍ନର କୌଣସି ସଠିକ ଉତ୍ତର ନାହିଁ

## ଘରକରଣା

ଅନ୍ୟମନସ୍କ ଚୁଲି ଉପରୁ
ସ୍ୱପ୍ନ ସବୁ ଉତୁରି ପଡ଼ନ୍ତି
ଝରକା ବାହାରୁ ବିଷଣ୍ଣତା ଆସି
ଆଉ କିଛି ଅନ୍ଧାର ଲିପିଦେଇ ଯାଏ
ରଂଗଛଡ଼ା ବୟସର କାନ୍ଥ ଉପରେ
ନିଆଁର ନାଚୁଥିବା ଛାଇ
ଖୋପମାନଙ୍କରେ ସଂପାଦି ରଖିଥିବା
କେତେଦିନର ଆଶା ଭରସାକୁ
ନିମେଷକରେ ଯାଇ ଲିଭାଇଦିଏ

ଆଉ କିଛି ଶୋରଶବ୍ଦ ନାହିଁ
ଆଖି ଆନମନା ହୋଇରହିଥାଏ
ଟକମକ ଫୁଟୁଥିବା ଡେକଚି ଉପରେ
କାନ ଡେରିଥାଏ ପାଖ କୋଠରୀରେ
ରୋଗୀର କଣ୍ଠାଗ୍ରତ ଶ୍ୱାସ ପ୍ରଶ୍ୱାସକୁ
ହାତର ଚଟୁ ଉପରେ ଛିଟିକି ପଡ଼େ
ପୁରୁଣା ଅବସାଦର ମଉଳା ଝୁଲ
ଛାତି ଭିତରେ ଛଟପଟ ହେଉଥିବା
ଆଜିର ଉଚ୍ଚାଟ ସବୁକୁ ଆସି
ଆଉଟିଦିଏ କାଲିର କଲବଲ

ମୁଣ୍ଡ ଉପରେ ମାଡ଼ି ମାଡ଼ି ପଡ଼େ

ତେଲ ଲୁଣର ଲାଞ୍ଛନା
କେବେ ବି ସଂକଳ୍ପ ନଥିବା
ସଂସାର ଆସି ଲଦି ହୋଇଯାଏ
ଦିନ ଶେଷର ଥକା ଦେହ ଉପରେ
ମରିବାକୁ ବି ଆଉ ଡର ନଥାଏ
ଅଲଣା ଜୀବନର ଅଲୋଡ଼ା ପହର
ଘାଣ୍ଟି ହେଉଥାଏ ସକାଳୁ ସଂଜର ହାଉଯାଉରେ

ପରଦେଶରେ ଥିବା ପିଲାଙ୍କ ପାଖରୁ
ଅକାଳ ସକାଳ ଚିଠି ଆଉ ଆସେ ନାହିଁ
ପରିଜନଙ୍କ ମୁହଁ ଝାପ୍‌ସା ହୋଇଯାଏ
ପୁରୁଣା ଦର୍ପଣର କୋଚଟ କାଚରେ
ଆଖିରେ ଆଉ ଲୁହ ନ ଥାଏ
ତେବେ ବି ଝୁରିବାର ଦିନ ସରେ ନାହିଁ
ଛାତିର ନିଶ୍ୱାସରେ ବସା ବାନ୍ଧିଥିବା
କାହିଁ କେତେଦିନର ଅସ୍ଥିର ଅଳନ୍ଧୁ
ଅନ୍ଧାର କରିଦିଏ ଅନ୍ତସ୍ଥଳର ଚଉଦିଗକୁ

ବାକି ଦିନମାନଙ୍କର କଳନା କଲାବେଳେ
ବୁଡ଼ି ଯାଉଥିବା ବେଳମାନଙ୍କ ବ୍ୟତୀତ
ଆଗରେ ପଛରେ ଆଉ କିଛି ନ ଥାଏ
ରାତି ଛଟପଟ ହୋଇ କଡ଼ ଲେଉଟାଏ
ନିଦରେ ଶୋଇ ପଡୁଥିବା କାନ୍ଥର କଣରେ
ବତୀ ମିଂଜିମିଂଜି ହୋଇ ଜଳୁଥାଏ
ଆପଣା ଆଳୁଅ ପ୍ରତି ଅତି ଅରୁଚିରେ
ଭଙ୍ଗା ପାଣିକଳରୁ ଟୋପା ଟୋପା ଉଦାସ
ଚୁପଚାପ ପଡୁଥାଏ ଅଯଥା ବେଜାର ହୋଇ
ସାରା ଦିନର ଅଇଁଠା ବାସନ ଉପରେ

# କବିତାର ଅର୍ଥ

ଅନେକେ ପଚାରିଥାନ୍ତି
କବିତାର ଅର୍ଥ ଓ ଅଭିପ୍ରାୟ କଣ
ଏପରିକି ସେମାନେ ବି
ଯେଉଁମାନେ କବିତାର ଧାର ଧାରନ୍ତି ନାହିଁ
କିନ୍ତୁ କେହି ବି ପଚାରେ ନାହିଁ
ସମୟର ସଂଜ୍ଞା କଣ
ପ୍ରେମର ପରିଭାଷା କଣ
ଅଥବା ଜୀବନର ତାତ୍ପର୍ଯ୍ୟ କିପରି

କେବେ କିଏ କହିଥିଲା ଯେ
କେହି ବି କବିତା ପଢ଼ନ୍ତି ନାହିଁ
ନା ମାଛବାଲା ନା ମୁଖ୍ୟମନ୍ତ୍ରୀ
ନା ପ୍ରକାଶକ ନା ବି ଅଧ୍ୟାପକ
ଏ କଥା ବି ଜଣା ଯେ ସେମାନେ
ଇନ୍ଦ୍ରଧନୁ ପ୍ରଜାପତି ଘାସଫୁଲ
ଡାହାଣିଆ ଖରା ଫୁଲସଂଜ
ଦକ୍ଷିଣା ପବନ ଭିଜା ମାଟି
ଟୁପୁର ଟାପର କିଚିରି ମିଚିରି
ଏମାନଙ୍କ ବିଷୟରେ ବି ସଂପୂର୍ଣ୍ଣ ଉଦାସୀନ

ଏକଥା ମଧ୍ୟ ସୁପ୍ରତୀତ ଯେ
କବିତା ବିପ୍ଳବ ଆଣେ ନାହିଁ
ଭୋକିଲା ମୁହଁରେ ଭାତ ଦିଏ ନାହିଁ
କବିତା ରୋକି ପାରେ ନାହିଁ ପୁଲିସର ଗୁଳି
ଏପରିକି କବିତା ନୀତି ଶିକ୍ଷା ବି ଦିଏ ନାହିଁ
ତା ଯଦି ଲକ୍ଷ୍ୟ ହୋଇଥାନ୍ତା
କବି କଲମ ନୁହେଁ ବନ୍ଧୁକ ଧରି
ରାସ୍ତା ଉପରକୁ ଓହ୍ଲାଇ ଆସି
ହାତମୁଠା ଉଠାଇ ଚିତ୍କାର କରନ୍ତା
ଏବଂ କବିତା ନ ଲେଖି

ସେ ଲେଖିଥାନ୍ତା ନାରା ଓ ନୀତିକଥା

ପାଠକମାନେ ପ୍ରାୟଶଃ
କବିତା ପାଖକୁ ଯାଆନ୍ତି ନାହିଁ
ତଥାପି ତାକୁ ପଢ଼ନ୍ତି କିଛି ଚନ୍ଦ୍ରାହତ ଲୋକ
ପଢ଼ନ୍ତି ଏବଂ କବି ସହିତ ମିଶି
ସେମାନେ ବି କବିତାକୁ ତିଆରି କରନ୍ତି
ଓ ତାକୁ ଜୀବନ୍ୟାସ ଦିଅନ୍ତି
କବିତା କେବଳ ସେଇମାନଙ୍କ ପାଇଁ
ଯେଉଁମାନେ ଥରେ ପଢ଼ି ସାରିବା ପରେ
ତାକୁ ହୃଦୟଙ୍ଗମ ନ କରିବା ସତ୍ତ୍ୱେ
ସ୍ପର୍ଦ୍ଧା ରଖନ୍ତି ଆଉ ଥରେ ପଢ଼ିବାର
କବିତାର ଉପଲବ୍ଧି ସେତିକି
ଯାହା ଆଖିକୁ ଲଂଘି
ଅର୍ଥ ଓ ଅନର୍ଥମାନଙ୍କୁ ଦେଇ
ସିଧା ଚାଲିଯାଏ ମନ ଗହନକୁ

ଯିଏ ତାକୁ ଯେତିକି ବୁଝେ
ବ୍ୟଂଜନା ଓ ଦୁର୍ବୋଧ୍ୟତା ମଝିରେ
କବିତାର ଯଥାର୍ଥତା ସେତିକି ମାତ୍ର
ତା ବାହାରେ ଆଉ କିଛି ନୁହେଁ

କବିତା କିଛି ପ୍ରେମ ଭଳି
କିଛି ବି ସମୟ ଭଳି
ନିଜ ଭିତରେ ସ୍ୱୟଂସଂପୂର୍ଣ୍ଣ
କାହାରିଠାରୁ କିଛି ମାଗେ ନାହିଁ
କୌଣସି ସଫଳତାର ଦାବୀ ନାହିଁ
ନିଜେ ନିଜର ସାଧନା ଓ ସିଦ୍ଧି
ନିଜେ ନିଜର ଆଧାର ଓ ଅବଧି
ନିଜେ ନିଜର ସମନ୍ୱୟ ଓ ସଂଗତି
କବି ସ୍ୱୟଂଭୂ ହୋଇ ତିଆରି କରେ

## ନିଜେ ନିଜର ଅର୍ଥ ଓ ଦୁର୍ବୋଧତା

କବିତା ଥାଏ ଛନ୍ଦ ଅଳଙ୍କାର ବାହାରେ
କବିତା ଥାଏ ଉପମା ଅନୁପ୍ରାସ ଶ୍ଲେଷ
ବିମ୍ବ ରୂପକ ଚିତ୍ରକଳ୍ପରୁ ସ୍ୱତନ୍ତ୍ର
କବିତା ଥାଏ ବନାନ ବ୍ୟାକରଣ
ଓ ବିରାମ ଚିହ୍ନରୁ ଊର୍ଦ୍ଧ୍ୱ
ସମୀକ୍ଷକ ସମାଲୋଚକ ଅଧ୍ୟାପକ
ତାତ୍ତ୍ୱିକ ଟୀକାକାର ବ୍ୟାଖ୍ୟାତାଙ୍କ
ଅଧିକାର ଓ ଆଧିପତ୍ୟରୁ ବିମୁକ୍ତ
କବିତା ଥାଏ ନିଜର ସ୍ୱାୟତ୍ତ ସାମ୍ରାଜ୍ୟରେ
ନିଜେ ନିଜର ସାର୍ବଭୌମ ସମ୍ରାଟ ହୋଇ

କବିତା ପାଖକୁ ଟାଣି ନିଏ
ବୁଝିବା ନ ବୁଝିବା ନିର୍ବିଶେଷ
କବିତା ପ୍ରଲୋଭିତ କରେ
ଦୁର୍ବିନୀତ ଶବ୍ଦମାନଙ୍କ ପାଖରେ
ବିନା ସର୍ତ୍ତ ଆତ୍ମସମର୍ପଣର
କବିତା ବାରମ୍ବାର ବାଧ୍ୟ କରେ
ଅବାକ ଆଖିକୁ ଆହୁରି ଥରେ
ପଛ ଧାଡ଼ିକୁ ଫେରିଯିବା ପାଇଁ

କେହି ସଚରାଚର କବିତା ପଢନ୍ତି ନାହିଁ
ଏପରିକି ସେ ବି ପଢ଼େ ନାହିଁ
ଯାହା ପାଇଁ କବିତାଟି ଲେଖା ହୋଇଥିଲା
ଏଥିରୁ ହୁଏ ତ ନିଷ୍କର୍ଷ ବାହାରିବ
ଯେ କବିତା ତା ହେଲେ କିଛି ବି ନୁହେଁ
ଏବଂ ଜୀବନ ପାଇଁ
ସଂପୂର୍ଣ୍ଣ ଅବାନ୍ତର କବିତା
ସେପରି ଭାବେ ଦେଖିବାକୁ ଗଲେ
ଜୀବନ ବି ତ ଆଉ କିଛି ନୁହେଁ

କେଉଁ ଅଜଣା କବିତାର ବୁଝି ହେଉ ନଥିବା
କେତୋଟି ଅର୍ଥହୀନ ପଂକ୍ତି ବ୍ୟତୀତ

## ଆବାହନ

ତମେ ଆସ ନିଷିଦ୍ଧ ସ୍ୱପ୍ନ ହୋଇ
ମୋର ଚେତନାର ନାଭି କେନ୍ଦ୍ରକୁ
ମୁଁ ଆଖି ବନ୍ଦ କରିନେବା ପୂର୍ବରୁ

ମୁଁ ତମର ଧ୍ୟାନମନ୍ତ୍ରକୁ
ସ୍ମରଣରେ ଜାଗରିତ କରିବା ପୂର୍ବରୁ
ତମେ ସ୍ୱୟଂ ସଶରୀର ଆସି
ମୋ ଆଗରେ ମୂର୍ତ୍ତିମତୀ ହୋଇଯାଅ

ସ୍ୱାଗତର ସମସ୍ତ ଦ୍ୱାର
ଆପେ ଆପେ ଉନ୍ମୁକ୍ତ ହୋଇଯାନ୍ତୁ
ମୁଁ ତମର ସମ୍ମୁଖୀନ ହେବା ପୂର୍ବରୁ
ମୋର ନିଶ୍ୱାସ ତମକୁ ଛୁଇଁବା ପୂର୍ବରୁ
ତମେ ଇନ୍ଦ୍ରିୟର ଦାହରେ ଦ୍ରବୀଭୂତ ହୋଇଯାଅ

ତମର ଛାତିର ଉଦଗ୍ର ଆଗ୍ରହ
କଠିନ କଠୋର ହୋଇଯାଉ
ମୋର ନିରଙ୍କୁଶ ହାତର ଶଂକାରେ
ତମର ଅଧରୋଷ୍ଠ ଉନ୍ମୋଚିତ ହୋଇଯାଉ
ମୋର ଜିହ୍ୱାଗ୍ରର ଅନ୍ୱେଷଣ ପୂର୍ବରୁ

ତମେ ଆସ ଇଚ୍ଛାର ଆର୍ଦ୍ରତାରେ

ପ୍ରତ୍ୟାଶାରେ କ୍ଲିନ୍ନ ଓ ପରିପ୍ଲୁତ ହୋଇ
ମତେ ଅନୁଗୃହୀତ କରିଦିଅ
ତମର ସମର୍ପଣର ବଦାନ୍ୟତାରେ
ତମକୁ କିଛି ବି ଯାଚନା କରିବା ପୂର୍ବରୁ

ତମେ ଆସ ସାବୟବ ଶକ୍ତି ହୋଇ
ସନ୍ତୋଷ ସଂକୁଳ ଶୁଭକ୍ଷଣମାନଙ୍କରେ
ଦେହର ପ୍ରୟୋଜନରେ ଅସ୍ଥିର ଓ ଉଚ୍ଚାଟ
ସମ୍ଭାବ୍ୟ ପରିତୃପ୍ତିର ଉଲ୍ଲାସରେ ଆକ୍ରାନ୍ତ
ତମେ ସର୍ବଥା ଭୀତତ୍ରସ୍ତ ହେଉଥାଅ
ସେଇ ସବୁ ସୁଖମାନଙ୍କର ଆତଙ୍କରେ
ଯାହା ଏ ପର୍ଯ୍ୟନ୍ତ ମୋର କଳ୍ପନାର ବହିର୍ଭୂତ

## ଡାଫୋଡ଼ିଲ

କେହି ତାକୁ ଚର୍ମଚକ୍ଷୁରେ ଦେଖି ନ ଥାଏ
ନା ପାଠ ପଢ଼ାଉଥିବା ଶିକ୍ଷକ
ନା ନ ବୁଝି ପାରୁଥିବା ଛାତ୍ର
ନା ପଶ୍ଚିମାଭିମୁଖୀ ବିଦ୍ୱାନ
ତଥାପି ସମସ୍ତଙ୍କ ଅନ୍ତର୍ଦୃଷ୍ଟିକୁ
ମୁଗ୍ଧ ଚକିତ କରି ରଖିଥାଏ ଡାଫୋଡ଼ିଲ
ପବନରେ ଦୋଳୁଥିବା ନାଚୁଥିବା
ନିଜର ସୁନାରଙ୍ଗର ଔଦ୍ଧତ୍ୟରେ

ରାଜତ୍ୱ ଯଦିଓ ସରିଯାଏ
ଅଳ୍ପ ସମୟର ବସନ୍ତ ଭଳି
ଡାଫୋଡ଼ିଲ ମରିଯାଏ ନାହିଁ
ସାମ୍ରାଜ୍ୟ ଯଦିଓ ନିଃଶେଷ ହୋଇଯାଏ

ବର୍ଷା ଭଳି କାକର ଭଳି
ଡାଫୋଡିଲ ତଥାପି ଉଜ୍ଜ୍ୱଳ ରହିଥାଏ

ସାମ୍ରାଜ୍ୟବାଦର ସୁବର୍ଣ୍ଣ ଯୁଗରେ
ଯେଉଁଭଳି ଶୋଭନ ଓ ସତେଜ
ଉପନିବେଶର ଧ୍ୱଂସାବଶେଷରେ ବି
ସେତିକି ଅମ୍ଳାନ ରହିଥାଏ
ସାଂସ୍କୃତିକ ଅତିକ୍ରମଣର
ଅଧିକୃତ ଇଲାକାମାନଙ୍କରେ
ତାରା ଭଳି ଜଳୁଥାଏ ଡାଫୋଡ଼ିଲ

ମନର ଖୋଲା ଝରକାମାନଙ୍କ ଦେଇ
ଅର୍ବାଚୀନ ଦେଶ ବିଦେଶରୁ
ଅପସଂସ୍କୃତିର ଝଡ଼ ଧସି ଆସେ
ପାଦକୁ ଦୋହଲାଇ ଦେଇ
ଆମକୁ ଧରାଶାୟୀ କରିଦିଏ
ଆମର ନିଜତ୍ୱର କୋଠରୀ ଭିତରେ
ଡାଫୋଡ଼ିଲ ଆଗ ଭଳି ଚମକୁଥାଏ
ନିଜର ନିର୍ଲଜ୍ଜ ଅହଂକାରକୁ ନେଇ
ବୁଦ୍ଧିଜୀବୀମାନଙ୍କର ଦିବ୍ୟ ଚକ୍ଷୁରେ

## ଘରଚଟିଆ

ସ୍ୱପ୍ନର ଅସ୍ପଷ୍ଟ ଇଲାକା ଭିତରୁ ବାହାରି
ମୁଁ ଯେତେବେଳେ ବାହାରକୁ ଅନାଏ

ଝରକାବନ୍ଧ ଉପରେ କେତେବେଳୁ ଆସି ବସିଥାଏ
ନିଶାନ୍ତର ଅଳ୍ପ ଅନ୍ଧାରରେ ତିଆରି ହୋଇଥିବା
ଆୟୁଷର ଜୀବନ୍ତ ଛାଇଟିଏ ଭଳି

ସକାଳର କୋମଳତାକୁ ଡେଣାରେ ନେଇ
ଡେଇଁ ବୁଲେ ମୋର ଚେତନାର ଚତ୍ୱର ସାରା
ଉଡ଼ିଯାଏ ମୋର ଇନ୍ଦ୍ରିୟମାନଙ୍କର ଶୂନ୍ୟକୁ
ମନର ଅନ୍ତରତମ ଏକାନ୍ତକୁ ଯାଇ
ଭୁଲି ଯାଇଥିବା ଅନ୍ତର୍ମୁଖୀ ଅନୁଭବମାନଙ୍କର
ଦିଗ୍‌ବଳୟମାନ ଖୋଲି ଖୋଲି ଦିଏ
ଅବସାଦର ଯେତେ ସବୁ ମଉଳା କୁଟାକାଠି
ଉଠାଇ ନେଇଯାଏ ନିରାଲୋକ କୋଣମାନଙ୍କରୁ

ଶୂନ୍ୟକୁ ଛୋଟ ଛୋଟ ପରିଧିରେ ଭାଗ କରି
ଆକାଶକୁ ମୋ ଆଖି ଆଗରେ ଖୋଲି ଧରେ
ଦୃଷ୍ଟିକୁ ଟାଣିନିଏ ଆଲୁଅ ଓ ଅନ୍ୱେଷାକୁ
ଥଣ୍ଟରେ ଧରିଥିବା ଗୋଟିଏ ମାତ୍ର କୁଟାରେ
ସ୍ପଷ୍ଟ ଭାବେ ସଂଚରିତ କରି ଦେଖାଇଦିଏ
ଭବିଷ୍ୟତର ଅତୁଟ ନକ୍‌ଶା ନକ୍ଷତ୍ର
ଘର ବାହାରକୁ ନେଇ ପରିଚୟ କରାଏ
ଅସମୟ ଋତୁର ପ୍ରକୋପରେ
ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଥିବା
ନୀଳବର୍ଣ୍ଣର ସ୍ୱର୍ଣ୍ଣଘଟିତ ପୁନର୍ଜନ୍ମ ସହିତ
କିଚିରି ମିଚିରିରେ ଶୁଣାଇଯାଏ
ଏଭଳି ଅନ୍ତରଙ୍ଗ କଥା ସବୁ
ଯାହା କେବଳ ଲିଭି ଆସୁଥିବା ତାରାମାନେ
ବ୍ରାହ୍ମମୁହୂର୍ତ୍ତର ଆକାଶକୁ କହିଥାନ୍ତି

ଘର ଭିତରକୁ ପଶିଆସେ ଘରଚଟିଆ
କୋଠରୀରୁ କୋଠରୀ ଉଡିବୁଲି ଦେଖାଇଦିଏ

ଅଜଣାରୁ ଜଣା ଭୁଲାରୁ ଅଭୁଲା
ଅତୀତ ବର୍ତ୍ତମାନ ଘଟୁଥିବାରୁ ସମ୍ଭାବନାକୁ
ମୋ ବହିଥାକ ଭିତରୁ ଖୋଜି ବାହାର କରେ
ମୁଁ ଏ ପର୍ଯ୍ୟନ୍ତ ବୁଝିପାରି ନ ଥିବା ତତ୍ତ୍ୱମାନ
ଦର୍ପଣ ଭିତରେ ମତେ ଦେଖାଇ ଦିଏ
ମୋର ଆପଣାର ଅଜ୍ଞାଜ୍ଞାତ ନିଜସ୍ୱକୁ
ରେଡ଼ିଓ ଭିତରୁ ମନ୍ଥନ କରି ଆଣେ
କେହି କେବେ କେଉଁଠାରେ ନ ଶୁଣିଥିବା ଗୀତକୁ

ଏବଂ ସବାଶେଷରେ ଯେପରି
ମତେ କୌଣସି ମହାମନ୍ତ୍ରର ଦୀକ୍ଷା ଦେବା ପାଇଁ
ସିଧା ଉଡିଯାଏ ଚଳନ୍ତା ପଂଖା ଭିତରକୁ
ଖସିପଡ଼େ ଦୁଃଖଦ ସ୍ମରଣର ଭଗ୍ନାଂଶ ହୋଇ
ମତେ ସଂପୂର୍ଣ୍ଣ ସ୍ୱପ୍ନମୁକ୍ତ କରିଦିଏ
କ୍ଷଣକରେ ମତେ ବୁଝାଇ ଦିଏ
ଝରକା ଦେଇ ଭିତରକୁ ପଶି ଆସୁଥିବା
ଜୀବନର ବୃହତ୍ତର ସତ୍ୟମାନଙ୍କୁ
ଚଟାଣ ଉପରେ ବିଞ୍ଚିହୋଇ ପଡ଼ିଥିବା
ପ୍ରାଂଜଳ ପାଦଟୀକାମାନ ଦେଇ

# ପର୍ଯ୍ୟଟକ

ତମ ସହରରେ ମୋର ପ୍ରଥମ ସକାଳ
ଆଖି ଖୋଲି ମୁଁ ପାଖରେ ତମକୁ ଖୋଜେ
ଯଦିଓ ମତେ ଜଣା ଯେ କାହିଁ କେତେ ଦିନରୁ

ତମେ ଆଉ ଏ ସହରରେ ନାହଁ

ମୁଁ ତେଣୁ ଖୋଜିବି ତମର ସ୍ମାରକୀ ସବୁ
ମୁଁ ଓହ୍ଲାଇବି ସେଇ ପରିଚିତ ରାସ୍ତା ଉପରକୁ
ଯାହା ଉପରେ ତମେ ଦିନେ ପାଦ ରଖିଥିଲ
ମୁଁ ଦେଖିବି ଦି ପାଖର ଘରମାନଙ୍କୁ
ଏବେ ବି ସେମାନଙ୍କୁ ଉନ୍‌ମନା କରି ରଖିଥିବ
ତମର କେଉଁଦିନର ଅନ୍ୟମନସ୍କ ଦୃଷ୍ଟିପାତ
ମୁଁ ଯାଇ ଛୁଇଁବି ପାର୍କର ସଜୀବ ସମୃଦ୍ଧିକୁ
ତମର କେବେକାର ସ୍ପର୍ଶରେ ଯାହା ଏବେ ବି ସବୁଜ

ତମକୁ ମନେ ରଖିଥିବା ଆକାଶରେ
ମୁଁ ଦେଖିବି ତମେ ସଜାଇ ରଖି ଯାଇଥିବା
ପୁଂଜୀଭୂତ ମେଘମାନଙ୍କର ଅନନ୍ୟ ବିନ୍ୟାସ
ଦୋକାନର ଥାକରେ ମୁଁ ଦେଖିବି ଶୂନ୍ୟସ୍ଥାନ
ଯାହା ତିଆରି ହୋଇଥିଲା
ତମେ କିଣି ନେଇଥିବା ଜିନିଷର ଅବର୍ତ୍ତମାନରେ
ଯେତେ ଶବ୍ଦ ମୋର ଶ୍ରୁତିକୁ ଆସିବ
ମୁଁ ଜାଣିବି ସେଥିରେ ନିହିତ ଥିବ
ତମ ଓଠକୁ ଛୁଇଁ ଆସିଥିବାର ଅସ୍ମିତା

ତମର ପାଦ ପଡ଼ିଥିବା ପ୍ରତ୍ୟେକଟି ଇଲାକା
ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଦର୍ଶନୀୟ ସ୍ଥାନ
ମତେ ଗୋପନରେ ଡାକି ନେଇଯିବ
ତମ ଦେହରୁ ବିସୃତ ଜ୍ୟୋତିରେ
ଆଲୋକିତ ହୋଇଯାଇଥିବା ଅନ୍ଧଗଳି
ମୁଁ ଯାଇ ସେଠାରେ ଆଶ୍ରୟ ଖୋଜିବି
ତମେ ଦିନେ ଆଉଜି ଥିବା କାନ୍ଥର ଆତ୍ମୀୟତାରେ
ମୋର ଅପରିପୂର୍ଣ୍ଣତାରୁ ମତେ ଉଦ୍ଧାର କରିବ

ସମସ୍ତ ପରିପାର୍ଶ୍ୱରେ ତମ ନିଶ୍ୱାସର ଉଷ୍ଣତା
ପ୍ରତିଟି ଇନ୍ଦ୍ରିୟ ଦେଇ ମୁଁ ଆସ୍ୱାଦନ କରିବି
ପାଣିପବନ ଧୂଳିକଣାରେ ତମର ଦେହର ସାରାଂଶ

ତମେ ଭରପୂର ରହିଥିବ ସହର ସାରା
ସମସ୍ତ ବାତାବରଣକୁ ଉଦାର କରିଦେଇ
ପାର୍କର ପତ୍ରପୁଷ୍ପରେ ତମର ସ୍ୱତଃସ୍ଫୂର୍ତ୍ତ ହସ
ସବୁ ନିସ୍ତବ୍‌ଧତାକୁ ମୁଖର କରି ଦେଉଥିବା
ତମର କଣ୍ଠଧ୍ୱନିର ଅବାଧ ଗୁଂଜନ
ମନ୍ଦିରର କାରୁକାର୍ଯ୍ୟରେ ତମ ଦେହର ସୌଷ୍ଠବ
ମିଉଜିଅମର ଶିଳାଲିପିରେ ତମର ହସ୍ତାକ୍ଷର
ସହରର ପ୍ରତିଟି ସାଧାରଣ ଘର ଏକ କୀର୍ତ୍ତିସ୍ତମ୍ଭ
ପ୍ରତିଟି ଅକିଞ୍ଚିତକର ଘଟଣାରେ ଐତିହାସିକତା

ତମେ କେବେ ଦିନେ ଏଠାରେ ଥିଲ
ଆଜି ତେଣୁ ସହରରେ କାହିଁ କେଉଁଠାରେ
ବିଶୃଙ୍ଖଳା ନାହିଁ ବିରୂପତା ନାହିଁ ଅସନ୍ତୋଷ ନାହିଁ
ପ୍ରତ୍ୟେକଟି ଖୋଲା ଦରଜାରେ ସ୍ୱାଗତ
ପ୍ରତିଟି ଅପରିଚିତ ମୁହଁରେ ପ୍ରୀତି ନିବେଦନ
ପ୍ରତିଟି ଆଗକୁ ବଢ଼ାଇ ଦେଇଥିବା ହାତରେ ବଂଧୁତ୍ୱ

ତମ ସହରରୁ ବିଦାୟ ନେବା ବେଳେ
ଶେଷ ସଂଜବେଳାର ଆନତ ଆଲୁଅରେ
ଜନ ସମାଗମକୁ ଅନାଇଲେ ମୁଁ ଦେଖିପାରିବି
ତମେ ଦିନେ ଯେଉଁଭଳି ଦେଖିଥିଲ
ସେମାନଙ୍କର ଆବିଷ୍ଟ ମୁହଁ ଉପରେ
ସମୟର ସଦିଚ୍ଛାରେ ସ୍ଥିର ହୋଇଯାଇଥିବା
ସୁଖଦ ସ୍ମରଣମାନଙ୍କର ଅପୂର୍ବ କୋମଳତା

# ପରାପର

ମୁଁ ମୋର ଦର୍ପଣ ଭିତରେ
ମୋ ପାଇଁ ଅପେକ୍ଷା କରି ରହିଥିବା
ସେଇ ଅଜଣା ଚେହେରା
ଯେ ସିଧାସଳଖ ମୋ ଆଖିକୁ ଅନାଇ
ମତେ ତାର ଉଧାରର ହିସାବ ମାଗେ

ମୁଁ ହେଉଛି ମୁଁ ହିଂସା କରୁଥିବା
ସେଇ ଇର୍ଷାପରାୟଣ ଲୋକଟି
ଯାହା ସହିତ ବସ୍‌ରେ ଚଢ଼ି
ମୁଁ ପ୍ରତିଦିନ ଅଫିସକୁ ଯାଇଥାଏ

ମୁଁ ହେଉଛି ମୋର ତୁଚ୍ଛତାର ଦୈନ୍ୟ
ଯାହାକୁ ମୁଁ ବର୍ଷ ମାସ ଧରି
ବ୍ୟସ୍ତ ସମସ୍ତ ଛଳନାର ଦିନ ଶେଷରେ
କରୁଣାର ଆଖିରେ ଅନାଏ

ମୁଁ ମୋ ନିଜର ସଂପୂର୍ଣ୍ଣ ରିକ୍ତତା
ଯାହା ସବୁବେଳେ ଯୋଡ଼ିବାକୁ ଚାହୁଁଥାଏ
ମୋ ଭିତରେ ଥିବା ଅଭାବ ସବୁକୁ
ବାହାରେ ବିଞ୍ଚି ପଡ଼ିଥିବା ଅଭାବ ସହିତ

ମୁଁ ହେଉଛି ହାତରେ ଧରା ଦେଉ ନଥିବା
ସେଇ ଆଚମ୍ବିତ ସ୍ୱରବର୍ଣ୍ଣମାନ
ଯେଉଁମାନଙ୍କର ଅବର୍ତ୍ତମାନରେ
ମୋର ଶବ୍ଦମାନେ ମଉଳିଯାନ୍ତି

ମୁଁ ହେଉଛି ସେଇ ଆଦର୍ଶମାନଙ୍କର
ଅମୂର୍ତ୍ତ ରେଖାଚିତ୍ର
ମୋର ଚିହ୍ନିବାର ଚେଷ୍ଟାରେ
ଯାହାର ସ୍ୱରୂପ ବଦଳିଯାଏ

ମୁଁ ହେଉଛି ମୋର ଦେହର ଅବସାଦରୁ
ଖସି ପଡୁଥିବା ଖଣ୍ଡଖଣ୍ଡ ଭଙ୍ଗୁରତା
ଯାହାକୁ ତଳୁ ଗୋଟାଇ ନେଇ
ମୁଁ ତିଆରି କରିବାରେ ଲାଗି ରହିଥାଏ
ମୋର ଆୟୁଷର ନଶ୍ୱର ନକ୍‌ଶାକୁ

ସର୍ବୋପରି ମୁଁ ହେଉଛି
ମୋର ପୂର୍ବପୁରୁଷମାନଙ୍କର
ପରମ୍ପରାର ସ୍ପର୍ଦ୍ଧା
ଯାହାର ଅସମ୍ଭବ ପ୍ରତ୍ୟାଶା
ମତେ କ୍ଲୀବ ଓ ସ୍ଥବିର କରିଦିଏ
ପିତୃପକ୍ଷର ଅନ୍ଧାର ରାସ୍ତାରେ

## ସ୍ମୃତିଜୀବୀ

କାହିଁ କେତେଦିନର ପଛକଥା ସବୁ
ପରଲୋକର ତଟସ୍ଥ ଅନ୍ଧାର ଭିତରୁ
ଅତର୍କିତ ବାହାରି ଆସି
ଲକ୍ଷ୍ୟଶୂନ୍ୟ ଭାବେ ଭାସି ବୁଲନ୍ତି
କିଛି ବି ଘଟୁ ନଥିବା ବର୍ତ୍ତମାନର

ଚିରନ୍ତନ ଗୋଧୂଳି ଆକାଶରେ

ଜନ୍ମାନ୍ତରର ନୀତି ନିୟମକୁ ନ ମାନି
ଅଯାଚିତ ଆଗନ୍ତୁକ ଭଳି ଆସନ୍ତି
ମରି ହଜି ଭୁଲି ଯାଇଥିବା
ପିଲାଦିନର ସଖା ଓ ସୋଦର
ସେମାନଙ୍କର ପୁରୁଣା ରାଗରୋଷ
ଅଭିମାନ ଈର୍ଷା ଭୁଲିଯାଇ
ନିର୍ଲିପ୍ତ ଭାବେ ଯା ଆସ କରନ୍ତି
ଅନ୍ତସ୍ତଳର ଖାଲି କୋଠରୀମାନଙ୍କରେ

ମନସ୍ତାପର ଉତ୍ତପ୍ତ ମଧ୍ୟାହ୍ନ ଦେଇ
ସଜଳ ଆଶ୍ୱାସନାର ଦକ୍ଷିଣା ଚାଲିଯାଏ
ଉଦାସ କଳ୍ପଲୋକର ଚାପ ଉପରେ
ହସଖୁସିର ମେଳା ଲାଗିଯାଏ
ଜର୍ଜର ଶବ୍ଦମାନଙ୍କର ପାଉଁଶ ଭିତରୁ
ଫୁଟି ଉଠନ୍ତି କମନୀୟ ସୂକ୍ତ
ନିଃସ୍ୱନ ହାହାକାରର ଶୂନ୍ୟମଣ୍ଡଳରେ
ଦୋଳା ଖାନ୍ତି ଅଭାବିତ ଛନ୍ଦମାନେ

ଆଗରେ ସମୟ ପଛରେ ସମୟ
ଚେତନାହତ କାଳର କବଳରେ
ଘଣ୍ଟାର ହାତ ଅବଶ ହୋଇଯାଏ
କାନ୍ଥର ବିବର୍ଣ୍ଣ ଦିନପଂଜିକାରେ
ରଂଗୀନ ଅଙ୍କ ସବୁ ଖୋଜି ବୁଲନ୍ତି
ଗୋଟିଏ ଦିନରୁ ଅନ୍ୟ ଦିନକୁ
ଲୋକଭର୍ତ୍ତି ମଉଳା ଫଟୋଗ୍ରାଫ୍‌ର
ଚିହ୍ନି ହେଉ ନଥିବା ମୁହଁର ଭିଡ଼ରେ
ଅନଧିକାର ପ୍ରବେଶ କରନ୍ତି
ଆଉ କିଛି ଜଣା ଅଜଣା ଚେହେରା
ସେମାନଙ୍କ ସହିତ ଯୋଡ଼ି ହୋଇଯାଏ

ଆଉ କେବେ କେଉଁଠାରେ ଘଟିଥିବା
କାହାର କିଭଳି ଉପକଥା
ପୂର୍ବାପର ସତ୍ୟାସତ୍ୟ ମିଳିମିଶି
ଅନାୟାସ ଟାଣି ନେଇଯାନ୍ତି
ଏକ ଅଦ୍‌ଭୁତ ବାସ୍ତବତା ଆଡ଼କୁ
ଯେଉଁଠାରେ ଆନନ୍ଦ ଉତ୍ତେଜନା
ଅନାଗ୍ରହ ଶୋକ ସମ୍ବେଦନା
କେହି କାହାଠାରୁ ପୃଥକ ନୁହେଁ

ମନେ ପଡ଼ିବାର ଭଲମନ୍ଦ ଭୁଲ ଠିକ
ସୁଖ ଦୁଃଖର ଭିନ୍ନତା ନାହିଁ
ଯାହା ସୁଖର ଅନୁକମ୍ପା
ତାହା ହିଁ ଦୁଃଖର ବିଡମ୍ବନା

ସ୍ମୃତିଜୀବୀ ବସି ରହିଥାଏ
ଅତୀତର ଧ୍ୱଂସସ୍ତୂପ ଉପରେ
ଅରାଜକ ମନର ବନ୍ଧନୀ ଭିତରୁ
ତଳକୁ ଓହ୍ଲାଇବା ସମ୍ଭବ ନୁହେଁ
ସେ ନିଶ୍ଚିତ ଜାଣେ ଯେ
ପଶ୍ଚାତ୍ ଚାରଣ ହେଉଛି ଜୀବନ
ସ୍ମରଣ ହିଁ ଚେତନା
ଚେତନା ହିଁ ଅସ୍ତିତ୍ୱ
ଏବଂ ଯେଉଁଠାରେ ସ୍ମରଣର ଶେଷ
ସେଇଠାରୁ ପରିଣତିର ଆରମ୍ଭ

# ପତ୍ରାଳାପ

ଅକ୍ଷର ହାତରେ ଧରା ଦିଅନ୍ତି ନାହିଁ
ଚିଠି ଅଲେଖା ରହିଯାଏ
ମୁଁ ହାର ମାନି କଲମ ରଖିଦିଏ
ତମକୁ ଦେଇଥିବା ପ୍ରତିଶ୍ରୁତି ପାଖରେ

ମୋର ଆୟତ୍ତର ବାହାରେ ରହି
ମତେ ଉପହାସ କରେ ବର୍ଣ୍ଣମାଳା
ମୋର ଆଖପାଖରେ ଘୂରି ବୁଲି
ମତେ ଆସ୍ଫାଳନ କରି ଯାନ୍ତି ଶବ୍ଦମାନେ
ମୋର ଉଦଗ୍ର ଉନ୍ମାଦନା ସବୁ
ଲିପି ହୋଇ ଓହ୍ଲାଇ ଆସନ୍ତି ନାହିଁ
ସମ୍ମୋହିତ କାଗଜ ଉପରକୁ
ଅକ୍ଷରଙ୍କ ଅଦଭୁତିରେ ଅଣନିଶ୍ୱାସୀ
ରୂଢ଼ିର ଜାଲରେ ଛଟପଟ
ମୁଁ ବସି ରହେ ବିପନ୍ନ ଓ ଅସହାୟ
ଆପଣାର ବିକ୍ଷୋଭର ବଶବର୍ତ୍ତୀ ହୋଇ

ମୁଁ ମାନିନିଏ ଶେଷଥର ପାଇଁ
ଅକ୍ଷର ଆଉ ଆସିବେ ନାହିଁ ମୋ ପାଖକୁ
ମୋର ଅନ୍ତରାତ୍ମାକୁ ପ୍ରତିବିମ୍ବିତ କରି
ମୁଁ ଆଉ ତମକୁ କହି ପାରିବି ନାହିଁ
ଯଥାଯଥ ଓ ଅଭ୍ରାନ୍ତ ଭାବେ
ଯାହାସବୁ ଯେଉଁ ଭଳି ଲେଖିବାକୁ ଚାହୁଁଥିଲି
ମୋର ବଶମ୍ବଦ ଶବ୍ଦାବଳୀକୁ ନେଇ

ତମର ଧୈର୍ଯ୍ୟହାନି ହେବା ପୂର୍ବରୁ
ମୁଁ ତେଣୁ ସନ୍ଧ୍ୟାର ଆକାଶକୁ ଅନାଇ
ମହାଶୂନ୍ୟରୁ ଦିଗ୍‌ଦର୍ଶନ ମାଗେ
ଖୋଜିନିଏ ତମ ପାଖରେ ପହଞ୍ଚିବାର ବିକଳ୍ପ

ତମେ ଯଦି ଏତେବେଳେ ଉପରକୁ ଅନାଅ
ତମେ ସେଠାରେ ଦେଖିପାରିବ
ମୁଁ ଲେଖିପାରି ନଥିବା ଚିଠିର ଶବ୍ଦମାନେ
ମୁଁ ଯେଉଁ ଭଳି କହିବାକୁ ଚାହୁଁଥିଲି
ଠିକ ସେହି ବିନ୍ୟାସରେ ନିଜକୁ ସଜାଇ

ଦଳ ଦଳ ପକ୍ଷୀ ହୋଇ ଉଡ଼ି ଯାଉଥିବେ
ମେଘର ପ୍ରାଣ ପ୍ରାଚୁର୍ଯ୍ୟକୁ ଲଂଘି
ଇନ୍ଦ୍ରଧନୁର ବର୍ଣ୍ଣବହୁଳତାକୁ ଛୁଇଁ
ଆଖି ପାଉ ନଥିବା ଦିଗ୍‌ବଳୟ ଆଡକୁ
ଯାହାର ଅଳସ ବିସ୍ତାର ଉପରେ
ତମେ ଶୋଇ ରହିଥିବ ମାନ କରି
ଅସ୍ତ ସୂର୍ଯ୍ୟ ଉପରେ ମଥାକୁ ରଖି

## ପୁରୁଣା କବିତା

ଶବ୍ଦମାନେ ଯେତେବେଳେ
କଲମମୁନକୁ ଓହ୍ଲାଇବାକୁ ମନା କରିଦିଅନ୍ତି
ମନ ଅସହଯୋଗ କରିଦିଏ ସଂକଳ୍ପ ସହିତ
ଚିନ୍ତାକୁ ଆସେ ନାହିଁ ନୂଆ ରୂପକ ଓ ବିମ୍ବ
ଖାଲିକାଗଜ ହାତକୁ ଫେରାଇଦିଏ
କବି ଫେରିଯାଏ ହତାଶ ହୋଇ
ନିଜର ପୁରୁଣା କବିତାର ଆଶ୍ରୟକୁ
ସେଥିରୁ କିଛି ସ୍ମୃତି ସମ୍ବେଦନା
ଓ ଅନୁପ୍ରେରଣା ଖୋଜି

କାଗଜ ଉପରେ କିନ୍ତୁ
କବିତା ବଦଳରେ ମୁହଁ ଦେଖାଯାଏ
ଶବ୍ଦମାନେ ଆଖି ପାଲଟି
ଦୃଷ୍ଟିକୁ ଅଧିକାର କରି ନିଅନ୍ତି
ବିଭିନ୍ନ ମନସ୍ଥିତିର ଅନୁସ୍ମୃତି ଆସି
ଅସ୍ପଷ୍ଟ କରିଦିଅନ୍ତି ବର୍ଣ୍ଣମାଳାକୁ
ଅକ୍ଷରମାନେ ପୃଷ୍ଠାସାରା ଖେଳିବୁଲି
ଅର୍ଥହୀନ କରିଦିଅନ୍ତି ସମସ୍ତ ବିନ୍ୟାସକୁ

ପୁଣି ଥରେ ଏକନିଷ୍ଠ ହୋଇ
ପଂକ୍ତିମାନଙ୍କୁ ଅନୁଧ୍ୟାନ କଲେ
କିଛି ଶବ୍ଦରୁ ଯନ୍ତ୍ରଣା ବାହାରି ଆସନ୍ତି
କିଛି ଶବ୍ଦରୁ ଉଲ୍ଲାସ କିଛିରୁ ଅବସାଦ
ପୃଷ୍ଠାର ମୁହଁ ଉପରେ ଭାସିଯାଏ
ଏକାଧାରରେ ସୁଖଦୁଃଖ ଆଶା ନୈରାଶ୍ୟର
ବଦଳି ଯାଉଥିବା ରୂପରାଗର ଛାଇ

ଏଥରକ କାଗଜ ଭିତରୁ ବାହାରି
ଯେଉଁ ସାବୟବ ପ୍ରତିମୂର୍ତ୍ତି
ଆଗରେ ଆସି ଠିଆ ହୁଏ
ତାକୁ ଚିହ୍ନି ପାରେ ନାହିଁ କବି
ତା ଆଖିରେ ଆଖି ରଖି
ପ୍ରହେଳୀ ଓ ଦୁରୂହତାରେ ଜଡ଼ି ହୋଇ
ସେ କବିକୁ ଆହ୍ୱାନ ଦିଏ
ତାର ରହସ୍ୟ ଉନ୍‌ମୋଚନର

ଆହୁରି ମନୋଯୋଗିତାର ସହିତ
କାଗଜ ଉପରକୁ ଅନାଏ କବି
ବାରମ୍ବାର ପଢ଼େ ପ୍ରତିଟି ପଂକ୍ତିକୁ
ଶବ୍ଦମାନେ ସେଇଭଳି ରହିଥାନ୍ତି
ଆପଣାର ସ୍ୱତନ୍ତ୍ର ପରିଭାଷା ଖୋଜି
ପଂକ୍ତିମାନେ ନିଜକୁ ସଜାଡ଼ି ନିଅନ୍ତି
ପୃଥକ ପରିଚୟର ଦାବୀରେ
ଯଦି କେଉଁ ମଧ୍ୟବର୍ତ୍ତୀ ପଂକ୍ତିର
କିଛି ବି ଅର୍ଥ ନ ଥାଏ
ଆଉ କେଉଁ ପଂକ୍ତି ପ୍ରତିଥର
ନୂଆ ନୂଆ ଅର୍ଥ ଆଣିଦିଏ

ତାକୁ କିନ୍ତୁ ଆଉ ଥରେ ପଢ଼ିଲେ
ସବୁକିଛି ଅସମ୍ବଦ୍ଧ ହୋଇଯାଏ
ବୁଝିଥିବା ଅର୍ଥ ପୁଣି ହଜିଯାଏ

କବି ମାନିନିଏ ଯେ
କବିତା ଆଉ ତାର ଅଧୀନସ୍ଥ ନୁହେଁ
ସେମାନେ ଆଉ ନୁହନ୍ତି
ତାର ସୃଜନଶୀଳତାର ଉପଜୀବ୍ୟ
ସେମାନଙ୍କର ଏକ ସ୍ୱତନ୍ତ୍ର ଅବସ୍ଥିତି
ଯାହା ତାର ମନନର ବାହାରେ

ନିଜର ପୁରୁଣା କବିତା ଭିତରେ
ବାଟ ଭୁଲିଯାଏ କବି
ବ୍ୟଂଜନାର ଗୋଲକଧନ୍ଦାରେ ହଜିଯାଏ
ଭାବର ସମୁଦ୍ରରେ ଉବୁଟୁବୁ ହୁଏ
ରୂପକକୁ ଅବାକ ହୋଇ ଦେଖୁଥିବା ବେଳେ
ବିମ୍ବ ଆସି ଅନ୍ୟମନସ୍କ କରିଦିଏ
ଅନ୍ତିମ ପଂକ୍ତିର ପୂର୍ଣ୍ଣଚ୍ଛେଦ ପାଖରେ
ଶେଷରେ କ୍ଲାନ୍ତ ହୋଇ ପଡ଼ିଯାଏ କବି
ଅକ୍ଷର ବିବର୍ଜିତ ଶବ୍ଦଶୂନ୍ୟ
ଓ ଭାବଲେଶହୀନ ହୋଇ

## ଅତୀନ୍ଦ୍ରିୟ

ମୋ ଆଖିରେ ଆଖି ରଖି
ତମେ ଦେଖି ପାରିବ
ମୋର କନୀନିକାର ଲୋଲୁପତାକୁ
କିନ୍ତୁ କେବେ ବି ଦେଖିପାରିବ ନାହିଁ
ମୋର ଦୃଷ୍ଟିର ଅନ୍ତରାଳରେ ଲୁକ୍କାୟିତ
ମୋର ଇଚ୍ଛାର ଆଧ୍ୟାତ୍ମିକତାକୁ

ମୋର ପ୍ରତିଟି ହୃତ୍‌ସ୍ପନ୍ଦନରେ
ତମେ କାନ ଦେଇ ଶୁଣିପାରିବ
ମୋର ଆତୁର କାକୁତି ମିନତି
କିନ୍ତୁ ତମର ଅଶୁଣା ରହିଯିବ
ମୋର ଅନ୍ତରାତ୍ମାର ଗଭୀରରୁ
ବିସ୍ଫୋରିତ ହୋଇ ବାହାରିଥିବା
ଉଦ୍‌ବେଗର ଅପାପବିଦ୍ଧ ମୌନ

ତମେ ଆଘ୍ରାଣ କରିପାରିବ
ତମର ସନ୍ନିଧିର ଆନନ୍ଦ ଉତ୍ସବରେ
ମୋର ସମଗ୍ର ସତ୍ତାର
ରାସାୟନିକ ରୂପାନ୍ତରକୁ
କିନ୍ତୁ ତମେ ଅନ୍ତସ୍ଥ କରିପାରିବ ନାହିଁ
କସ୍ତୁରୀ ମୃଗ ଭଳି ଊର୍ଦ୍ଧ୍ୱଶ୍ୱାସ
ମୋର ଉନ୍‌ମାଦନାର ଫାଲ୍‌ଗୁନକୁ

ମୋର ଜିହ୍ୱାଗ୍ରର ଉତ୍ତେଜନାରେ
ତମେ ଆସ୍ୱାଦନ କରିପାରିବ
ମୋର ଏକାଗ୍ରତାର ନିର୍ଯ୍ୟାସ
କିନ୍ତୁ ତମର ଅଜ୍ଞାତ ରହିଯିବ
ମୁଖଗହ୍ୱରର ପରିତୃପ୍ତିରେ
ମୋର ଜଡ଼ତାର ନୈଷ୍କିକତା ସବୁ

ମତେ ଦେହଲଗ୍ନ କଲାବେଳେ
ତମେ ଅନୁଭବ କରିପାରିବ
ମୋର ଲୋମକୂପମାନଙ୍କରୁ ଛିଟିକି ପଡ଼ିଥିବା
ଜିଜୀବିଷାର ସ୍ଫୁଲିଙ୍ଗମାନଙ୍କୁ
ତମର ଦେହର ଉତ୍ତାପ କିନ୍ତୁ

କେବେହେଲେ କଳନା କରିପାରିବ ନାହିଁ
ମୋର ଧମନୀ ଶିରା ଉପଶିରାରେ
ଉତ୍ପ୍ଲାବିତ ହେଉଥିବା
ଶୀତଳ ସନ୍ତୋଷର ଦଶମ ଦଶାକୁ

## ଶୀତରାତି

ରାସ୍ତାଘାଟରେ କେହି କୁଆଡେ ନାହାନ୍ତି
ସମସ୍ତେ ନିଜ ନିଜ ନିବିଡ଼ ମନନର
ନିଘଞ୍ଚ କୋଠରୀମାନଙ୍କରେ ବନ୍ଦ

ଅନ୍ତରୀକ୍ଷଣର ନକ୍ଷତ୍ରପୁଂଜରେ
କିଛି ବି ହଲଚଲ ନାହିଁ
ଅନ୍ଧାରରୁ ଖସି ପଡୁଥିବା ଉଲ୍କା
ଅଟକି ଯାଇଛି ଅଧାବାଟରେ

ପରଲୋକର ପର୍ଯ୍ୟଟନରୁ
ଫେରିଆସିଥିବା ମୃତକ
ହସପିଟାଲ ଭିତରେ ହଜିଗଲା
ଆଦିମ କବିତାର ପଂକ୍ତି ମଝିରେ
ବାଟ ଭୁଲିଯାଇଥିବା ଲୋକଟି
ପ୍ରସ୍ତୁତ ହେଲା ଆତ୍ମହତ୍ୟା ପାଇଁ

ଦର୍ପଣର ପ୍ରତିବିମ୍ବ ଚାଲିଗଲା
ଗୁମ୍ଫା ଭିତରର ପ୍ରତିଧ୍ୱନିକୁ ଖୋଜି

ଦେବଦୂତମାନେ ନିଜ ନିଜର
ଛଦ୍ମବେଶ ଖୋଲି ରଖିଦେଲେ

ଜମାଟ ହେଉଥିବା ନିଷ୍କରୁଣ ଆକାଶର
ସାନ୍ଦ୍ରତା ଭିତରେ ବାଟ ନ ପାଇ
ଭିଖାରୀର ଭୁଲିଯାଇଥିବା ଭୋକ
ପୁଣି ତା ପାଖକୁ ଫେରି ଆସିଲା

ଗଛମାନେ ବାଛିନେଲେ ସେମାନଙ୍କର
ଠିଆ ହୋଇ ରହିବାର ଠିକଣା
ନିଶାଚର ପକ୍ଷୀମାନେ ଦଳ ବାନ୍ଧି
ଦିବାସ୍ୱପ୍ନ ଭିତରକୁ ଉଡ଼ିଗଲେ

ବତୀଖୁଣ୍ଟରୁ ତଳେ ଖସିପଡ଼ିଥିବା
ଆଲୁଅର ଛୋଟ ଛୋଟ ଅଭିଳାଷଙ୍କୁ
ଦୂରାଗତ ପବନ ପୋଛି ନେଇ
ପିଙ୍ଗିଦେଲା ନର୍ଦ୍ଦମା ଭିତରକୁ

କୁହୁଡ଼ି ଘେରା ଜହ୍ନ ଆଲୁଅ ଭଳି
ଅସଜଡ଼ା ଦେହଟିକୁ ନେଇ
ଝିଅଟି କଡ଼ ଲେଉଟାଇଲା
ଅଜଣା ଦ୍ୱୀପର ଅଜ୍ଞାତବାସରେ

# ଏଭଳି ଯଦି

ଏଭଳି ଯଦି ହୁଅନ୍ତା
ମୁଁ ବନାଗ୍ନି ବିଷୟରେ କବିତା ଲେଖିଲେ
କାଗଜଟି ଜଳି ଉଠନ୍ତା
ଏବଂ ବର୍ଷାର କବିତା ଲେଖି
ମୁଁ ତାକୁ ଲିଭାଇବାକୁ ଚେଷ୍ଟା କରନ୍ତି

ମୋର ରାତିର ବର୍ଣ୍ଣନାରେ
ଅନ୍ଧାର ଓହ୍ଲାଇ ଆସନ୍ତା
ନିଜ ବିଷୟରେ ଲେଖିଲା ବେଳେ
ବୟସ ମତେ ଘେରିଯାନ୍ତା
ଭବିତବ୍ୟକୁ ମନେ ପକାଇଲେ
ତମେ ସାକାର ହୋଇଯାନ୍ତ

ମୁଁ ତମକୁ ଅଭିଷିକ୍ତ କରିଦିଅନ୍ତି
ମୋର କବିତାର ଶିରୋନାମାରେ
ତମର ହସ ଚିରସ୍ଥାୟୀ ରହିଯାନ୍ତା
କବିତାର ମଧ୍ୟମ ପଂକ୍ତିରେ ଥିବା
ଏକକ ଶବ୍ଦର ନିଭୃତରେ
ମୁଁ ତମର ଚାଲିଯିବାକୁ
ପ୍ରତିରୋଧ କରିପାରନ୍ତି
କବିତାର ଶେଷ ଛତ୍ରଟି
ଲେଖିବାକୁ ଅସ୍ୱୀକାର କରି ଦେଇ

ତମ ନାଁ ଚାରିପାଖେ
ସାବଲୀଳ ଶବ୍ଦମାନ ଖଂଜି
ମୁଁ ତିଆରି କରନ୍ତି ତମର ଦେହସୌଷ୍ଠବ
ତମେ ତାକୁ ଜୀବନ୍ୟାସ ଦେଇ ଦିଅନ୍ତ
ହଠାତ ମନେ ପଡ଼ିବା ପଦଟିଏ ଭଳି
ମୋ ଆଡକୁ ଅନାୟାସ ଅନାଇ

ଏଭଳି ଯଦି ହୁଅନ୍ତା
ମୁଁ ତମକୁ ନାଁ ଧରି ଡାକିବି
ଏବଂ ମୋର କବିତାର ନ୍ୟୂନତା ଭିତରୁ
ତମେ ବାହାରି ଆସିବ
ମୁଁ ଯେଉଁଭଳି ଭାବରେ
ତମକୁ ବର୍ଣ୍ଣନା କରିବାକୁ ଯାଇ
ସର୍ବଥା ଅସମର୍ଥ ହୋଇଥିଲି
ଠିକ ସେହିଭଳି ରୂପ ସଂପନ୍ନ ହୋଇ

# ଘର ବାହାର

୧

ଘର ଯେତେବେଳେ
ଆତ୍ମଚିନ୍ତନରେ କ୍ଲାନ୍ତ ହୋଇଯାଏ
ନିଜର ବିଶେଷ ଅଂଶମାନଙ୍କୁ
ଖୋଲି ରଖିଦିଏ
ଝରକା କବାଟ କରି

୨

କାନ୍ଥରେ ଦୁଆର ଖୋଲିବା ବେଳେ
ସ୍ଥିର କରିନେବାକୁ ହୁଏ
ତମେ ବାହାରକୁ ଯିବ

ନା ଭିତରକୁ ଆସିବ
ସେଥିରେ କବାଟ ଲଗାଇବା ଆଗରୁ
ବୁଝି ନେବାକୁ ପଡ଼େ
ଆସୁଥିବା ଲୋକର ରାସ୍ତା ବନ୍ଦ କରିବ
ନା ଭିତରେ ଥିବା ଲୋକକୁ
ବାହାରକୁ ଯିବାକୁ ଦେବ ନାହିଁ

୩

ଘର କେବେ ବି
ନିବୁଜ ହୋଇ ନ ପାରେ
ପର୍ଦ୍ଦାରେ ଅଟକାଇ ହୁଏ ନାହିଁ
କବାଟ ପଟାରେ ବନ୍ଦ କରି ହୁଏ ନାହିଁ
ଅନ୍ଧାର ଆଲୁଅ
ଦୃଶ୍ୟ ଅଦୃଶ୍ୟ
ଚେତନା ଅବଚେତନା
ଯିବା ଆସିବା କରୁଥାନ୍ତି
କାନ୍ଥର ଅସ୍ୱଚ୍ଛତା ଦେଇ
ଝରକା ଦେଇ ପାଖର ଗଛ
ଭିତରକୁ ହାତ ବଢ଼ାଏ
ଆଖିର ପକ୍ଷୀ ଉଡ଼ିଯାଇ
ଦୂର ଗଛର ଡାଳରେ ବସେ

୪

କବାଟ ଓ ଝରକା ହିଁ ହେଉଛି
ଘରର ରହିଥିବାର ହେତୁ
ଜଳା ସବୁକୁ ଯଦି
ଇଟା ଚୂନ ଦେଇ

ବନ୍ଦ କରି ଦିଆଯାଏ
ଘରଟି ଭାଙ୍ଗି ପଡ଼ିବ
ନିଜର ଅବିଶ୍ୱାସର ଭାରରେ

୫

ଶେଷ ପର୍ଯ୍ୟନ୍ତ
କେବଳ ସେଇ ଘରଟି
ଠିଆ ହୋଇ ରହେ
ଯାହାର ଦ୍ୱାର ଓ ବାତାୟନକୁ
ସୁରକ୍ଷିତ କରିବା ପାଇଁ
କାନ୍ଥର ତିଆରି

# ସାପେକ୍ଷ

କେହି ବି ସ୍ୱୟଂସଂପୂର୍ଣ୍ଣ ନୁହେଁ
ନିଜ ଭିତରେ କାହାରି ନିଜର ଅସ୍ତିତ୍ୱ ନାହିଁ
ଜଣେ ସବୁବେଳେ ନିର୍ଭର ଥାଏ
ଆଉ ଜଣକର ଚାହିଁବା ଉପରେ
ପଥର ଖୋଜେ ଶିଳ୍ପୀର ନିହାଣକୁ
ବଳିର ପଶୁ ଖୋଜେ ଯୂପକାଠି
ଅଧସ୍ତନ କର୍ମଚାରୀ ହାକିମଙ୍କ ଗାଳି
ଶହୀଦ ଅପେକ୍ଷା କରେ ବନ୍ଧୁକ ଗୁଳିକୁ

କବିତାର ପ୍ରଥମ ଶବ୍ଦଟି ଜାଣେ
ତାର ଉତ୍ପତ୍ତିର ହେତୁ ନିହିତ

ଶେଷ ପଂକ୍ତିର ଅପ୍ରତ୍ୟାଶିତ ବିଳୟରେ
ରାସ୍ତା ହରାଇ ଦେଇଥିବା ସ୍ୱର ଜାଣେ
ତାର ନିର୍ବାଣ ସଂଗୀତର ନିଃଶବ୍ଦରେ
ନିଜର ନିର୍ଦ୍ଧାରିତ ସ୍ଥାନରେ ଅଟଳ
ପାର୍ଶ୍ୱ ଦେବତାର ଧୈର୍ଯ୍ୟକୁ ପ୍ରମାଣ କରେ
ମନ୍ଦିର ଉପରୁ ଖସି ପଡୁଥିବା
ପଥର ଖଣ୍ଡର ଆତ୍ମବିସର୍ଜନ
ବିଦେଶରୁ ଆସିଥିବା ଚିଠି
ସିଦ୍ଧ ଓ ସାବ୍ୟସ୍ତ କରିଦିଏ
ପାରସ୍ପରିକ ଦୂରତ୍ୱର ସନ୍ନିଧାନକୁ

ଅନ୍ଧବିଶ୍ୱାସ ବହିର୍ଭୂତ
କେହି ବି ଈଶ୍ୱର ନଥାନ୍ତି
ଶୁଣିବା ବାହାରେ କୌଣସି ସ୍ୱର ନାହିଁ
କରପୁଟରେ ନିର୍ଭର ସ୍ତନର ସଂପୂର୍ଣ୍ଣତା
ଛାତି ବିନା ହାତର ଉପଲବ୍‌ଧି ନାହିଁ
ଅର୍ଥ ନିଜକୁ ବୁଝିବା ପାଇଁ
ଲାଗି ରହିଥାଏ ଶବ୍ଦର ପଛେ ପଛେ
ଆଖିର ପରିସରରେ ସୀମିତ ଥାଏ
ଦେହର ଅସାମାନ୍ୟ ଅଂଗରାଗ

ଭଲପାଇବାର ବାହାରେ
କୌଣସି ଜିଜୀବିଷା ନାହିଁ
ମରିଯିବାର ମହାନତା ବିନା
ବଞ୍ଚିବାର ଏକମାତ୍ର ପରିଚୟ
ନିଜର ସ୍ଥିତିର ତୁଚ୍ଛତା

# କେତେ ଦିନ ପରେ

କେତେ ଦିନ ପରେ ଦେଖା
ଜୀବନଯାପନର ଗ୍ରହ ଓ ନକ୍ଷତ୍ରମାନେ
ଅନେକ ନୂଆ ନୂଆ ବିନ୍ୟାସରେ
ନିଜ ନିଜକୁ ସଜାଇ ନେଇଥାନ୍ତି
ଏଇ ସମୟର ଅବଧିରେ

ପୁରୁଣା ଚିଠି ବାରମ୍ବାର ପଢ଼ି
ପୁରୁଣା ସ୍ମୃତିର ରୋମନ୍ଥନ କରି
ଫଟୋଗ୍ରାଫକୁ ବାରମ୍ବାର ଛୁଇଁ
ବିତିଯାଇଥିବା ଦିନମାନଙ୍କର
ଅନୁଶୀଳନ ବିଶ୍ଳେଷଣ କରିବା ପରେ
ଏଥର ମନେ ହୁଏ ଯେପରିକି
ଯେ ଆସିବ ସେ ସଂପୂର୍ଣ୍ଣ ଅଜଣା

ଆଉ ମନେ ନଥିବ ଠିକ ଭାବେ
କିଏ କାହାକୁ କଣ କହିଥିଲା
କଣ ସବୁ ଘଟିଥିଲା
ଏବଂ କଣ ସବୁ ଘଟି ନ ଥିଲା

ଆମେ ପରସ୍ପରକୁ ଭେଟିବା
ଦୁହେଁ ଦୁହିଁଙ୍କର ଅପରିଚିତ
ପ୍ରଥମ ସାକ୍ଷାତରେ ଭାବିବାକୁ ହେବ
ସଂପର୍କକୁ କେଉଁଭଳି କେଉଁଠାରୁ
ପୁଣି ଥରେ ଯୋଡ଼ିବାକୁ ହେବ
ସେଇ ଶେଷଥର ପ୍ରତ୍ୟୟର ସହିତ
ହାତରେ ହାତକୁ ଧରିଥିବାରୁ
ନା ପୁଣି ଥରେ ସଂଭ୍ରମର ସହିତ
ନୂଆ ଆଳାପ ପରିଚୟରେ ସୀମିତ

ଆଖିରେ ଆଖିକୁ ସମର୍ପଣ କରି

ଯେତେ ନ ପାଇଥିବା ଚିଠି
ଯେତେ ଆସି ନ ଥିବା ଟେଲିଫୋନ
ସବୁଯାକ ନ ପାଇବାକୁ
ଆଂଜୁଳାରେ ନେଇନେବା ପରେ
ହାତରେ ମୋର ଜାଗା ନଥିବ
ଆଉ କିଛି ବି ଧରିବା ପାଇଁ

ଏତେ ଦିନ ଯାହା ସବୁ ହେଲା
ସେମାନଙ୍କର ଘଟିବାର
ଏକମାତ୍ର ହେତୁ ଓ ନିମିତ୍ତ ଥିଲା
ତାର ବିଶଦ ବିବରଣୀ ଦେବା
କିନ୍ତୁ ଏଇ ଦୀର୍ଘ ଅନ୍ତରାଳର
ତୁଚ୍ଛାତିତୁଚ୍ଛ ସାଧାରଣ ଘଟଣାମାନ
ଯାହା କହିବା ପାଇଁ ମନ ଭିତରେ
ଏତେ ଦିନ ସଯତ୍ନରେ ରଖା ହୋଇଥିଲା
କହିବି କହିବି ହୋଇ
ଶେଷରେ ଅକୁହା ରହିଯିବ

ଅନ୍ତରୀକ୍ଷରେ ଅଟକି ଯାଇଥିବା
ଆପେକ୍ଷିକ ସମୟ ଭିତରେ
ଆମର ଗ୍ରହମାନେ ଭାଗ୍ୟକୁ
ଏପାଖ ସେପାଖ କରି ଦେଇଥିବେ
ପୁଣି କେତେ ଦିନ ପରେ ଦେଖା ହେବ
କେଉଁ ଦେଶ କେଉଁ ନୂଆ କାଳରେ
ରାଶିପୁଂଜର କେଉଁ ପରିପାଟୀରେ
ତାହାରି ବିଚାର ବିବେଚନାରେ କଟିଯିବ
ସାକ୍ଷାତ୍‌କାରର ସଂକ୍ଷିପ୍ତ ସମୟ ସବୁ

# ଭଙ୍ଗା ଖେଳନା

ବାକ୍ସ ଭିତରେ ପଡ଼ି ରହିଥାଏ
ଅତ୍ୟନ୍ତ ଅବିନ୍ୟସ୍ତ ଭାବରେ
ଫାଳେ ଭାଲୁ ଚଢେଇ ଠେକୁଆ
ରୁମ ନ ଥିବା କୁକୁର ଛୁଆ
ପେଟଫଟା ବେଙ୍ଗ ଡେଣାକଟା ପରୀ
ଏବଂ ଚାବି ଚାଲୁ ନଥିବା
ଅଥର୍ବ ସଖି କଣ୍ଢେଇ

ଭଙ୍ଗା ବାକ୍ସ ଭିତରର
ଓଲଟପାଲଟ ପୃଥିବୀରେ
ସମସ୍ତେ ପଙ୍ଗୁ ବିକଳାଙ୍ଗ
କାହାରି ଦେଖାରଖା ବିନା
ଅନାଦରରେ ପଡ଼ି ରହିଥାନ୍ତି
କବନ୍ଧ ଓ ଛିନ୍ନ ହସ୍ତ
ପଶୁପକ୍ଷୀ ପରୀ ଓ ପିତୁଳା
ଅଯତ୍ନର ଧୂଳିଧୂସରତା ଭିତରକୁ
ଆଉ ପଶିପାରେ ନାହିଁ
ରାତିର ଅନ୍ଧାରକୁ ଭେଦି ଯାଉଥିବା କାନ୍ଦ
ସକାଳକୁ ଆଲୁଅ କରି ଦେଉଥିବା ହସ

ଭଙ୍ଗା ଖେଳନାମାନେ ପଡ଼ି ରହିଥାନ୍ତି
ମୁହଁ ମାଡ଼ି ମନ ମାରି

ବିଷଣ୍ଣତାର ଅବତଳ ଭିତରୁ
ସେମାନଙ୍କୁ ଆଦରରେ ଉଠାଇ ନେବା ପାଇଁ
ସେଠାରେ ନ ଥାଏ ଦରୋଟି ହସ
ଅବୁଝା କାନ୍ଦ ଅଝଟ ରାହା

ସେଠାରେ ଏ ଯାଏ ସେମାନଙ୍କର
ବନ୍ଦ ହୋଇ ପଡ଼ି ରହିଥିବାର
ଏକମାତ୍ର ଯଥାର୍ଥତା
କେବେ ସେମାନଙ୍କୁ ଛାତିରେ ଧରିଥିବା
କୁନି କୁନି ଦିଓଟି ହାତ
ଯାହା ନିଜର ବୟସ୍କ ହେବାର ବିଧିରେ
ଭାଙ୍ଗୁଥାଏ ସଜାଡୁଥାଏ
ଭାଙ୍ଗିବା ସଜାଡ଼ିବାରେ ଲାଗିଥାଏ
ଜୀବନର ଏକାଗ୍ର ଲୀଳାଖେଳାରେ
ନିଜର ବିଭିନ୍ନ ଅନୁଭବର
କ୍ଷଣଭଙ୍ଗୁର କ୍ରୀଡ଼ନକମାନଙ୍କୁ

## ପିତୃପକ୍ଷ

ଆକାଶରେ ନୀଳ ଗାରଟିଏ ଟାଣି
ମାଛରଙ୍କା ରାସ୍ତା ଦେଖାଇ ଦିଏ
ରତରତ ବେଳ ଥାଉ ଥାଉ
ଚଲାବାଟର ମୋଡ଼ ଟପିଗଲେ
ବନ୍ଧ ସେ ପାଖରେ ଦେଖାଯାଏ
ହଠାତ ସଂଜବେଳର ଗାଁ
ଆମ୍ବତୋଟାରୁ ବହି ଆସୁଥିବା ସନ୍ଦେଶ

ଉଡାଇନିଏ ବୟସରୁ ବେଶ କିଛି
ନଈ ଅତଡାରେ ଖସିପଡେ
ସବୁ ଅଦରକାରୀ ମାନସଂଭ୍ରମ
ରାସ୍ତା ସରିବା ଆଗରୁ
ଅନ୍ଧାର ହୋଇଯିବା ଭୟରେ
ଆଗକୁ ପାଦ ବଢ଼ାଇଲେ
ହାତ ଖୋଜେ ମୁଠାଇ ଧରିବ
କେଉଁ ପରିଣତ ହାତର ଅବଲମ୍ବନକୁ

କାହିଁ କେତେ ଜନ୍ମର ମୃତ ଆତ୍ମାକୁ ଧରି
ନାଆଟି ଏ ପାରି ସେ ପାରି ହେଉଥାଏ
ଦୂର ପଠାର ଡାକବଚନ ଉପରେ
ଜେଜେ ବାପା ଶୋଇଥାନ୍ତି ନିଶ୍ଚିନ୍ତରେ
କାହାଣୀ ଶେଷରେ ଫୁଲଗଛଟି ମରିଗଲେ
ବୁଢ଼ୀମା ତାରା ହୋଇ ଆକାଶକୁ ଚାଲିଯାଏ
ମାଷ୍ଟ୍ରେ ପାରି ହୋଇଯାନ୍ତି
ତାଳବଣିଆର ତରାସକୁ
ମନେ ମନେ ମାନସାଙ୍କ ଆଉଡାଇ

ସଂଜକୁ ଆହୁରି ଅନ୍ଧାର କରିଦେଇ
ପଲପଲ ନିଶାଚର ଉଡ଼ିଯାନ୍ତି
ନଈତୁଠର ଝଂକା ବରଗଛରେ
ବାଦୁଡ଼ି ହୋଇ ଓହଳି ରହିଥାଏ
ଅଳ୍ପ ବୟସରେ ମରିଯାଇଥିବା
ପିଲାଦିନର ଅଭିନ୍ନ ହୃଦୟ ସାଙ୍ଗଟି
ଦୂରରୁ ଅଚିହ୍ନା ଡାକର ତାଗିଦା ଆସେ
ବାପାଙ୍କ କଠଉର ଶବ୍ଦ ଶୁଭେ
ଲିଭି ଆସୁଥିବା କିଆ ଗୋହିରୀରେ

ଗାଁ ମୁଣ୍ଡରେ ପହଞ୍ଚିଲା ବେଳକୁ
ଘରସବୁ ଢାଙ୍କି ହୋଇ ଯାଇଥାନ୍ତି
ଭାଗବତର ଗହନ ତତ୍ତ୍ୱରେ
ଆଲୁଅରେ ଆସି ଏବେ ଆଉ
ଅନ୍ଧାରରେ ଫେରିବା ସମ୍ଭବ ନୁହେଁ
ଘର ଖୋଜି ନ ପାଇବା ଭୟରେ
ତର ତର ପାଦ ପକାଏ
ଶେଷଥର ପାଇଁ ଘରବାହୁଡ଼ା ଲୋକଟି

ମାଛି ଅନ୍ଧାରର ଗଳିକୁଂଚିରେ
ବାଟ ବଳାଇ ଦେବା ପାଇଁ
ଆଖପାଖରେ ଆଉ କେହି ନ ଥାନ୍ତି
କେବଳ ଚୁପଚାପ କୁକୁରଟିଏ
ତା ପଛେ ପଛେ ଲାଗି ରହିଥାଏ
ପୂର୍ବପୁରୁଷଙ୍କର ବାକି ରହିଯାଇଥିବା
ପାଉଣା ସବୁକୁ ମନେପକାଇ ଦେଇ

## ପାଚେରୀ

ତମେ ଯେତେବେଳେ ଭାବ ଯେ
ତାକୁ ସହଜରେ ଲଂଘି ଯାଇ ପାରିବ
ସେ ଆହୁରି ବଢ଼ିଯାଏ ଅସ୍ୱାଭାବିକ ଭାବେ
ଦୁଃସ୍ୱପ୍ନର ଅବଧି ଭଳି

ତମେ ଯେତେବେଳେ ତାକୁ ଭାଙ୍ଗି
ତା ଭିତରେ ଗୋଟିଏ ଦୁଆର ଖୋଲ
ଆର ପଟେ ଦେଖ ଯେ

ସେହିପରି ଆହୁରି ଗୋଟିଏ
ଅଲଂଘ୍ୟ ପାଚେରୀ ଠିଆ ହୋଇଥାଏ

ତମେ ଧସି ପଶିବାକୁ ଚେଷ୍ଟା କଲେ
ଇଟା ଚୂନ ପଥର ଓ ପରମ୍ପରା
ତମ ଉପରେ ଭାର ହୋଇ
ତମକୁ ପାଚେରୀର ଅଂଶ କରିଦିଅନ୍ତି

ପାଚେରୀକୁ ଦମନ କରିବାର
ଦୁଇଟି ମାତ୍ର ସରଳ ଉପାୟ
ତମେ ଅସରନ୍ତି ସମୟ ଯାଏ
ଧୈର୍ଯ୍ୟ ଧରି ବସି ରହ
ଯେ ପର୍ଯ୍ୟନ୍ତ ପାଚେରୀ ତମ ଆଗରେ
ଭାଙ୍ଗିରୁଜି ନଇଁ ନ ଯାଇଛି
ନଚେତ ଫେରିଯାଅ
ପାଚେରୀକୁ ପଛରେ ରଖି
ସହଜ ଭାବେ ଆଉ କେଉଁ
ଅପ୍ରତିହତ ବିକଳ୍ପ ଜୀବନ ଆଡକୁ

ଯଦି କୌଣସି ଚମତ୍କାର ବଳରେ
ପାଚେରୀ ସବୁକୁ ଏଡାଇ
ତମେ ଆରପାଖରେ ପହଞ୍ଚିଯାଅ
ଅବିଳମ୍ବେ ଆବିଷ୍କାର କରିବ ଯେ
ତମେ ବର୍ତ୍ତମାନ ପହଞ୍ଚିଯାଇଛ
ଏ ଭଳି ଏକ ଅଜଣା ଜାଗାରେ
ଯେଉଁଠାକୁ ତମେ
କେବେ ବି ଯିବାକୁ ଚାହିଁ ନଥିଲ

# ମହାନଗର

ସକାଳୁ ସକାଳୁ ଖବରକାଗଜ ବାଲା
ଝରକା ଦେଇ ଭିତରକୁ ଫିଙ୍ଗିଦିଏ
ଚାରିଟି ହତ୍ୟା ଓ ତିନୋଟି ବଳାତ୍କାର

ଏଠାରେ ଆକାଶର ରଙ୍ଗ ବାରୁଦ
ପବନରେ ପୋଡ଼ା ପେଟ୍ରୋଲର ଗନ୍ଧ
ରାସ୍ତାକୁ ଓହ୍ଲାଇଲେ ଦୁର୍ଘଟଣା
ପଛଗଳିର ଉତ୍କଟ ଅନ୍ଧାର ଭିତରେ
ମୁଖା ପିନ୍ଧି ବସିଥାଏ ସନ୍ତ୍ରାସ
ଅଶ୍ଳୀଳତା ଚଢ଼ିଯାଏ ଝିଅଙ୍କ ବସ୍‌ରେ
ଜୋର କରି ହାତରେ ଛୁରୀ ଧରି

ଏଠାରେ କେହି କାହାରି ନୁହେଁ
ତଥାପି ପରସ୍ପରର ସମ୍ବନ୍ଧ ସବୁ
ଯୋଡା ହେଉଥାଏ ଭଙ୍ଗା ହେଉଥାଏ
କଳକବ୍‌ଜା ଭଳି ଜୀବନ ଚାଲିଥାଏ
ଅଫିସ ଦୋକାନ ବଜାରରେ
ରାସ୍ତାଘାଟରେ ଗଳିକନ୍ଦିରେ
ଭିଡ଼ ଭିତରେ କେହି ଅଟକି ରହେ ନାହିଁ
ଷଡ଼ଯନ୍ତ୍ରକାରୀମାନେ ବସି
ଇତିହାସକୁ ପୁଣି ଥରେ ଲେଖନ୍ତି

ତଥାପି ବସନ୍ତ ଆସେ ନିର୍ଦ୍ଦିଷ୍ଟ ସମୟରେ
ଗଳିରୁ ଗଳିକୁ ବାଟ ବାରି ବାରି
ଶୀତଦିନ ଫୁଲର ପୋଷାକ ପିନ୍ଧେ
ରଙ୍ଗବେରଙ୍ଗ ବିଜ୍ଞାପନର ପଟଭୂମିରୁ

କେତେ ବର୍ଗଇଞ୍ଚର ଆକାଶ ଚମକେ
ବସ ଭିତରୁ ଗୀତ ଉଛୁଳି ପଡ଼େ
ସଂଜ ହେଲେ ଧୂଆଁର କୁହୁଡ଼ି ଭିତରୁ
ନିଅନ ଆଲୁଅର ହସ ଫୁଟି ଉଠେ

ଉଡ଼ା ଖବର ଦଙ୍ଗାହଙ୍ଗାମା କର୍ଫ୍ୟୁ
ଚଢ଼ାଦର ଜନାରଣ୍ୟ ପ୍ରଦୂଷଣ ଭିତରେ
ରାସ୍ତାଘାଟର କୁଟିଳ ଛକାପଂଝାରେ
ତଥାପି ଜୀବନ ଚାଲିଥାଏ
ନିଜର ସ୍ୱୟଂଚାଳିତ ପ୍ରକ୍ରିୟାରେ
ରାସ୍ତା ଉପରେ ପଡ଼ି ରହିଥିବା
ଲୋକଟିର ଦୁଇପାଖ ଦେଇ
ସ୍ୱଚ୍ଛନ୍ଦରେ ଚାଲିଥାଏ ଟ୍ରାଫିକ
ଧଇଁସଇଁ ହୋଇ ସମସ୍ତେ ଧାଇଁଥାନ୍ତି
ନିଜର ପନ୍ଦର ମିନିଟର ପ୍ରସିଦ୍ଧି ପାଇଁ

# ଫେରା

ରାତି ଫେରେ ସକାଳକୁ
କାହାରିକୁ ଖବର ନ ଦେଇ
ପୁରୁଣା ପାପ ଉଡ଼ି ଆସି ବସେ
ଭଙ୍ଗା ଚାଳର ମଥାନ ଉପରେ

ଆକାଶ ଫେରାଇଦିଏ ଶୋକକୁ
ମେଘ ଫେରିଆସେ ପଶ୍ଚାତ୍ତାପ ହୋଇ
ଭକ୍ତି ଫେରିଆସେ ଈଶ୍ୱରଙ୍କ ପାଖରୁ
ପରିତ୍ରାଣ ଫେରାଇଦିଏ ଇନ୍ଦ୍ରଲୋକ

ପାହାଚ ଫେରିଆସେ
ପୁଣି ତୁଠ ପଥର ପାଖକୁ
ନିଜର ସୁକୃତିରେ ପରିତୃପ୍ତ
ଶୁଚି ଶୁଦ୍ଧ ଅତଳକୁ ଛୁଇଁ

କବିତାର ନଦୀ ଫେରିଆସନ୍ତି
ଭାବିବଳାସର ମୁହାଣ ପାଖରୁ
ନିଜ ଉତ୍ସର ଛନ୍ଦପତନ ଖୋଜି
ଅଜଣା ସମୁଦ୍ରର ଯାତ୍ରା ଶେଷରେ
ଯାଯାବର କବି ଫେରିଆସେ
ସଂଜବେଳର ପକ୍ଷୀ ଭଳି
ଆତ୍ମୀୟ ଆଖିର ନୀଡ଼ ଭିତରକୁ
ଦୁଇ ଦଣ୍ଡର ଶାନ୍ତି ପାଇଁ

ପୂର୍ବ ଜନ୍ମର ଋଣୀ ଫେରିଆସେ
ଫଳନ୍ତା ଗଛର ବଦାନ୍ୟତା ହୋଇ
କୁଳପୁରୁଷଙ୍କ ଆତ୍ମା
ପୁରୁଣା ପାଲିଙ୍କି ଚଢ଼ି ଆସେ
ଉତ୍ତରାଧିକାରୀ ସନ୍ଧାନ କରି

ଶ୍ୱେତବର୍ଣ୍ଣ ଫେରି ଆସେ
ଆପଣାର ଅନାବିଳ ଶୁଭ୍ରତାକୁ
ନିଜକୁ ବହୁବିଧ ରଙ୍ଗର କଳଙ୍କରେ
ବିକୀରଣ ବିତରଣ କରି

ପିଲାଦିନ ଫେରିଆସେ
ଜାକିଜୁକି ହୋଇ ଶୋଇଯାଏ
ବୁଢ଼ା ଲୋକର ଗହନ ନିଦ ଭିତରେ

କର୍ମଫଳ ଫେରି ଆସି
ଅସତର୍କ ମୁହୂର୍ତ୍ତମାନଙ୍କରେ
ବିବେକକୁ ଦଂଶନ କରେ
ମଲାଲୋକ ଫେରି ଆସନ୍ତି
ନିଜ ପାପପୁଣ୍ୟର ହିସାବ ଧରି
ଶିଶୁମାନଙ୍କର ସ୍ୱପ୍ନ ଭିତରକୁ

ନିଜର ଭଙ୍ଗାରୁଜା ଜୀବନକୁ
ସଜାଡ଼ିବାକୁ ଚାହୁଁଥିବା ଲୋକଟି
ଭଲଦିନର ଲେଉଟିବାକୁ
ଅନାଇ ବସି ରହିଥାଏ
ଆଗାମୀ ଦିନସବୁ କିନ୍ତୁ
କ୍ଷଣେ ବି ଅଟକି ରହନ୍ତି ନାହିଁ
ଅତୀତକୁ ଫେରିବା ବାଟରେ

## ଦେହରକ୍ଷୀ

ତମେ ଶୋଇଥିବ ଆତପ୍ତ ମହାଦେଶ ଭଳି
ନିଜର ଆରଣ୍ୟକ ଅନ୍ଧାରରେ ଜଡ଼ି ହୋଇ
ଶ୍ୱାପଦ ସଂକୁଳ ରାତିର ସଂକଟରେ
ଯେତେବେଳେ ତମର ଦୁଃସ୍ୱପ୍ନ ଉପରେ
ତମେ ଅଧା ନିଦର କଡ଼ ଲେଉଟାଇବ
ଭୟାନକ ପଶୁମାନେ ମୁଣ୍ଡ ଟେକିବେ
ତମର ସୁଷୁପ୍ତିର ଅସ୍ଥିର ତଟଭୂମିରେ

ଏକ ନିଷ୍ପାପର ଦେହରକ୍ଷୀର
ସମସ୍ତ ଦାୟିତ୍ୱ ଓ ସତର୍କତା ନେଇ
ମୁଁ ସଜଗ ରହି ଅନୁଭବ କରୁଥିବି

ନିଶାର୍ଦ୍ଧର ବିବର୍ତ୍ତମାନ ବିଭୀଷିକାକୁ
ମତେ ଉନ୍ନିଦ୍ର କରି ରଖିଥିବେ
ମୋର ଇଚ୍ଛାର ଉତ୍କଟ ସରୀସୃପମାନେ
ମୁଁ ତମକୁ ସୁରକ୍ଷିତ ରଖୁଥିବି
ଦୃଷ୍ଟି ସୀମାର ନିରାପଦ ପରିଧି ଭିତରେ
ତମର ତନ୍ଦ୍ରା ଭିତରକୁ ଧସି ଆସୁଥିବା
ଜାନ୍ତବ ଅଭିଳାଷମାନଙ୍କର ଆକ୍ରମଣରୁ

ଯେତେବେଳେ ଅସମୟ ଝଡ଼ ଆସି
ବିଭ୍ରାନ୍ତ ବଜ୍ର ଓ ବିଜୁଳିରେ
ମୋର ଏକାଗ୍ରତାକୁ ଆନ୍ଦୋଳିତ କରିଯିବ
ମୋ ନିଜର ଦୁର୍ବଳତାରେ
ଭୟଭୀତ ହୋଇ ତମ ଆଡ଼କୁ
ଶରଣାକୁଳ ହାତ ବଢ଼ାଇଲେ
ତମେ ମତେ ଟାଣି ନେଇଯିବ
ଦେହର ନିରାପଦ ଅଭୟାରଣ୍ୟକୁ
ଆମର ଆଶ୍ରିତ ଓ ଆରକ୍ଷୀର ଭୂମିକାକୁ
ସଂପୂର୍ଣ୍ଣ ରୂପେ ବିପର୍ଯ୍ୟସ୍ତ କରିଦେଇ

## ଆମେ ଦୁହେଁ

ମୁଁ ଯେତେବେଳେ ଘର ଭିତରେ
ଗହନ ନିଦରେ ଶୋଇଥାଏ
ସେ ଖରାତରା ନ ମାନି ଯାଇ ବୁଲୁଥାଏ
କେଉଁ ଅପନ୍ତରାର ସୀମା ସରହଦରେ

ମୁଁ ଯେତେବେଳେ ଏକାନ୍ତରେ ବସି
ନିଜର ଅନ୍ତର୍ଦାହରେ ଛଟପଟ ହେଉଥାଏ
ସେ ତାର ପଲ୍ଲବଗ୍ରାହୀ ବଂଧୁଙ୍କ ଗହଣରେ
ହସଖୁସିରେ ମଶଗୁଲ ରହିଥାଏ

ମୁଁ ତା ସହିତ ଯେଉଁ କଥାବାର୍ତ୍ତା କରେ
ତାର କୌଣସି ଆଦି ଅନ୍ତ ନ ଥାଏ
କାରଣ କାରକ ପ୍ରୟୋଜନ ବିନା
ଆମର ବାର୍ତ୍ତାଳାପ ଚାଲିଥାଏ ଅବିରାମ
କୌଣସି ନିଷ୍କର୍ଷ ନ ଥାଏ ସେଥିରେ
ସବୁ ଯାଥାର୍ଥ୍ୟ ହଜି ଯାଇଥାଏ ଶବ୍ଦରେ

ଖୁସି ହେଲେ ସେ ମଜା କଥା କହେ
କିନ୍ତୁ ତା ଆଡ଼କୁ ବନ୍ଧୁତାର ହାତ ବଢ଼ାଇଲେ
ସେ ଅକାରଣ ମୁହଁ ବୁଲାଇ ନିଏ
କେବେ ଯଦି ଆଗ୍ରହରେ ମୋ ଆଡ଼କୁ ଦେଖେ
ପୁଣି କେବେ ସବୁ କିଛି ଅଶୁଣା କରିଦିଏ
ନିଜକୁ ନିଜ ଭିତରେ ବନ୍ଦ କରିନେଇ

କେବେ କେବେ ଆମେ ଦୁହେଁ
ଗୋଟିଏ ଟ୍ୟାକ୍ସିରେ ଚଢ଼ି
ସକାଳୁ ସକାଳୁ ବାହାରି ଯାଉ
ଆଉ ଗୋଟିଏ ନୂଆ ଦିନ ଆଡ଼କୁ
ମୁଁ ଟିକିଏ ଅନ୍ୟମନସ୍କ ହେଲେ
ରାସ୍ତାର ଲାଲ ବତୀ ପାଖରେ
ସେ କେତେବେଳେ ଓହ୍ଲାଇ ଚାଲିଯାଏ
ମତେ ଅଧା ରାସ୍ତାରେ ଛାଡ଼ି ଦେଇ
ଏକା ଯାଇ ଅଦୃଷ୍ଟକୁ ଭେଟିବାକୁ

ମୋ ସହିତ ମନମାନି କରି
ଦର୍ପଣ ଭିତରୁ ମୁହଁ ମୋଡ଼ିନିଏ
ପାଖ କୋଠରୀ ଭିତରେ ପଶି
ଭିତରୁ କବାଟ ବନ୍ଦ କରିଦିଏ
ପୁଣି ଛାଇ ଭଳି ଲାଗି ରହି
ପାଟିରୁ କଥା ଟାଣିନିଏ
ପାଦକୁ ଅନ୍ୟ ରାସ୍ତାରେ ପକାଏ
ସ୍ୱପ୍ନକୁ ନାରଖାର କରେ
କବିତାରୁ ଅର୍ଥ ବାହାର କରିନିଏ
ଆତୁର ହୋଇ ତାକୁ ଖୋଜିଲା ବେଳେ
ସେ କିନ୍ତୁ ମୋ ପାଖରେ ନ ଥାଏ

ମୁଁ ଯଦି କେବେ ତା ବିରୁଦ୍ଧରେ
ଶତ୍ରୁତାର ହାତ ଉଠାଏ
ସେ ମୋର ଅଜଣା ଅଚିହ୍ନା ହୋଇଯାଏ
ଏବଂ ମୁଁ ପୂରାପୂରି ହାରିଯାଏ
ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ହିଁ
ପୁଣି ଆମେ ହାତ ଧରାଧରି ହୋଇ
ଆଗକୁ ପାଦ ବଢ଼ାଉ
ଆମର ପୃଥକ ଲକ୍ଷ୍ୟମାନଙ୍କ ଆଡ଼କୁ
ଯାହା କେଉଁ ଅଦୃଶ୍ୟ ଲୋକରେ ଯାଇ
ଏକ ଓ ଅଭିନ୍ନ ହୋଇ ଯାଇଥାନ୍ତି

## ସାଧ୍ୟାତୀତ

ତମ ଆଖିକୁ ଦେଖିଲେ
ମୋର ମନେ ହୁଏ
ଏପରି ଅନେକ ଅତଳ ଅଛି
ମୁଁ ଯେଉଁଠାରେ କେବେ ବି
ପହଞ୍ଚି ପାରିବି ନାହିଁ

ତମ ସହିତ କଥାବାର୍ତ୍ତା କଲାବେଳେ
ମୁଁ ହୃଦୟଙ୍ଗମ କରେ ଯେ
ତମକୁ କହିବାକୁ ଚାହୁଁଥିବା
ଅନେକ କିଛି କଥା ପାଇଁ
ମୋ ପାଖରେ କୌଣସି ଶବ୍ଦ ନାହିଁ

ତମ କଥା ଭାବିଲେ ମୁଁ ଜାଣେ
ତମର ଦେହର ଭୂମଣ୍ଡଳରେ
ଲୋକଲୋଚନକୁ ଆସି ନ ଥିବା
ଅନେକ ଅନାବିଷ୍କୃତ ମହାଦେଶ
ଯାହା ମୋ ପାଇଁ ଚିରଦିନ
ରହସ୍ୟମୟ ରହିଯିବେ

ଆକାଶ ଫେରାଇ ଦେଇଥିବା
ମୋର ଦିଗଭ୍ରାନ୍ତ ସ୍ତୋତ୍ରମାନେ
ଯେଉଁ ଆଧାର ଖୋଜୁଥିବେ
ସେମାନେ କେବେ ବି ପାଇ ପାରିବେ ନାହିଁ
ତମର ନିଶ୍ୱାସରେ ଅଟକି ଯାଇଥିବା
ସେଇ ଶୁଭ ମୁହୂର୍ତ୍ତମାନଙ୍କୁ

ମୋର ନଷ୍ଟ ହୋଇ ଯାଇଥିବା
ଜୀବନର ବ୍ୟତୀତ କ୍ଷଣମାନଙ୍କୁ
ତମେ ଯେତେ ଉଦାରତାର ସହିତ

ମାର୍ଜନା କରି ଦେଲେ ବି
ମୁଁ କଦାପି ପହଞ୍ଚି ପାରିବି ନାହିଁ
ତମର ଅନୁଭବର ସୀମାଦେଶରେ

ତମେ ଦେଇଥିବା ଆନନ୍ଦମାନଙ୍କରେ
ମୁଁ ବାରମ୍ବାର ରୁଦ୍ଧଶ୍ୱାସ ହେଉଥିବି
କିନ୍ତୁ କସ୍ମିନ କାଳେ ପାଇବି ନାହିଁ
ପ୍ରାପ୍ତିର ପ୍ରତ୍ୟାଶା ବାହାରେ
ମୋର ଚରିତାର୍ଥ ପରିତୃପ୍ତିକୁ

ତମକୁ ଜାଣିବାର ଆରମ୍ଭ
ଓ ମୋର ମୃତ୍ୟୁ ଅବଧି
ତମେ ଉଦାର ହୃଦୟରେ ଉଜାଡ଼ି ଦେଇଥିବା
ବିଭିନ୍ନ ପ୍ରକାରର ସୁଖାନୁଭବ
କେବେ ବି ସମ୍ଭବ ନୁହେଁ ଏକାଠି କରିନେବା
ମୋର ସମସ୍ତ ସମୟ ଇଚ୍ଛା ଓ ଶ୍ରମ ଦେଇ
ଗୋଟିଏ ମାତ୍ର ଜୀବନକାଳରେ

## ଏକାନ୍ତ

ଆତ୍ମମନନ ଭିତରୁ ଆଖି ଖୋଲି
ଆଗକୁ ଅନାଇଲା ବେଳକୁ
ଚିହ୍ନା ଲୋକସବୁ ଚାଲି ଯାଇଥାନ୍ତି
ଖୋଜୁଥିବା ଭିଡ଼ ଆଉ ନ ଥାଏ
କେଉଁ ଅଜଣା ସହରର
ଛୁଟି ଦିନର ଛକରେ ଠିଆ ହୋଇ

ଆଖପାଖକୁ ଅନାଇଲେ
କିଛି ଆଉ ଦେଖାଯାଏ ନାହିଁ
ବନ୍ଦ ଦୋକାନମାନଙ୍କ ବ୍ୟତୀତ

ରାତି ଆଠଟାର ସମାଚାର
ଘଟଣାରେ ଭରପୂର ଦିନଟିକୁ
ଗୋଟାଇ ନେଇ କେଉଁଆଡ଼େ ଚାଲିଯାଏ
ବାହାରେ ଅନେକ ଜନ୍ମ ଜନ୍ମାନ୍ତର
ଗୁମୁସୁମ ହୋଇ ରହିଥାନ୍ତି
ସମୁଚିତ ସମୟର ଅପେକ୍ଷାରେ
ବନ୍ଦ ଘର ଭିତରେ ଘୁମୁରୁଥାଏ
ବଳକା ଆୟୁଷର ହାହାକାର

କେହି ହେଲେ ଆସୁଥିବ ଭାବି
କବାଟ ଖୋଲି ବାହାରକୁ ଦେଖିଲେ
ଖାଁ ଖାଁ ସଡ଼କ ଦୂରକୁ ଚାଲି ଯାଇଥାଏ
ଆରପାଖର ଛମଛମ ଅନାବାଦୀରେ
ମେଘ ଛାଡ଼ି ଯାଇଥିବା ଆକାଶରୁ ଓହ୍ଲାଇ
ଜହ୍ନ ଆଲୁଅ ଶୋଇ ଯାଇଥାଏ
ଜାକିଜୁକି ହୋଇ ଗୋଟିଏ କଣରେ

ପିଲାଦିନର ଇତିହାସ ବହିରୁ
ଦୁର୍ଦ୍ଦାନ୍ତ ଆକ୍ରମଣକାରୀମାନେ ଆସି
ଛୋଟ ଛୋଟ ଦୈନନ୍ଦିନତାକୁ
ଛିନଛତ୍ର କରିଦେଇ ଯାଆନ୍ତି
ବୟସ୍କ ହେବାର ଉତ୍‌ଥାନ ପତନ ଦେଇ
ନିଜ ଭିତରକୁ ଖୋଜିଲେ

ଜୀବନ ସେଠାରେ ମେଲା ପଡ଼ିଥାଏ
ଜୀର୍ଣ୍ଣ ଓ ନିସ୍ପନ୍ଦ ହୋଇ
ପରିତ୍ୟକ୍ତ ପ୍ରତ୍ନତାତ୍ତ୍ୱିକ ଇଲାକା ଭଳି

ନିଜକୁ ନିଜର ଅସହାୟତା ପାଖରେ
ସଂପୂର୍ଣ୍ଣ ଭାବରେ ସମର୍ପଣ କରିଦେଇ
ଆଖି ଏବେ କେବଳ ଦେଖିପାରେ
ନିଜର ନିର୍ବାଣ ଆଡ଼କୁ ଅନାଇଥିବା
ମହାକାଳର ସୂକ୍ଷ୍ମାତିସୂକ୍ଷ୍ମ ବୁଦ୍‌ବୁଦକୁ
ଅଭାବମାନଙ୍କରେ ପରିପୂର୍ଣ୍ଣ
ଅନ୍ତସ୍ଥଳର ଶୂନ୍ୟ ସ୍ଥାନଟିରେ

## ଦ୍ୱୀପ ନାହିଁ

ଗଛରୁ ପତ୍ରଟିଏ ଖସିପଡ଼ିଲେ
ଅନ୍ତରୀକ୍ଷରେ ହୁଲସ୍ଥୁଲ ହୁଏ
ହାତର ପାପୁଲି ଉପରେ
ରେଖାଟି ସାମାନ୍ୟ ବିଚଳିତ ହେଲେ
ଗ୍ରହ ନକ୍ଷତ୍ରମାନେ ସେମାନଙ୍କର
ଗତିପଥ ବଦଳାଇ ଦିଅନ୍ତି

କେଉଁ ଦୂର ଉପସାଗରର
ଲହରୀର ସାମାନ୍ୟ କଂପନ
ଯାଇ ଗତିଶୀଳତା ଦିଏ
ମେରୁ ଦେଶରୁ ଉଡ଼ି ଆସୁଥିବା
ଦଳ ଦଳ ପକ୍ଷୀଙ୍କ ଡେଣାରେ

କେତେ ଆଲୋକବର୍ଷ ଭେଦି
କେଉଁ ଦୂରଦର୍ଶୀ ମହର୍ଷିଙ୍କର
ଆଶୀର୍ବାଦ ଆସି ଚମକାଇ ଦିଏ
ଏ ପର୍ଯ୍ୟନ୍ତ ଜନ୍ମି ନ ଥିବା
ଶିଶୁମାନଙ୍କର ଭବିତବ୍ୟକୁ

ସାରାଯେଭୋରେ ଚାଲୁଥିବା ଗୁଳି
ଦେଶ ମହାଦେଶକୁ ଲଂଘି
ଆସି ବିଦ୍ଧ କରିଯାଏ
ଶାନ୍ତି ଶୋଭାଯାତ୍ରାରେ ଯାଉଥିବା
ଅଜଣା ଲୋକର ଛାତିକୁ
ସୋମାଲିଆ ଓ କଳାହାଣ୍ଡିର
କେବେ ବି ସରୁ ନ ଥିବା ଭୋକ
ଯାଇ ଅଯାଚିତ ବିଞ୍ଚିପଡ଼େ
ରାଜଧାନୀରେ ବାତାନୁକୂଳିତ ଘରର
ଖାଇବା ଟେବୁଲ ଉପରେ

ଅପାଂକ୍ତେୟ ଦେହର ଜୀବାଣୁ
ସଂକ୍ରମିତ କରିଦିଏ
ନୀଳରକ୍ତର ଆସ୍ପର୍ଦ୍ଧାକୁ
ତୃତୀୟ ପୃଥିବୀର ଦୀର୍ଘଶ୍ୱାସ
ଅକ୍ଷାଂଶ ଦ୍ରାଘିମା ନ ମାନି
ଦୁଃସ୍ୱପ୍ନ ହୋଇ ପଶିଯାଏ
ସମ୍ଭ୍ରାନ୍ତ ମହାନଗରୀର ସୁଖନିଦ୍ରାରେ

ଆଉ କୌଣସି ଦ୍ୱୀପ ନାହିଁ
ଗୋଟିଏ ମାତ୍ର ଲୌକିକ କ୍ରମରେ
ହାତରେ ହାତକୁ ଧରି

ସମସ୍ତେ ଠିଆ ହୋଇ ରହିଛନ୍ତି
ଶୃଙ୍ଖଳାବଦ୍ଧ ହୋଇ
ସବୁଠାରୁ ଅସହାୟ ଲୋକଟିର
ଦୁଃଖରେ ଜଡ଼ୀଭୂତ ହୋଇ

# ମୁକ୍ତ ଛନ୍ଦ

ଇଚ୍ଛା ଛଟପଟ ହେଉଥାଏ
କେବଳ ସ୍ୱର ମନେ ପଡୁଥିବା
କେଉଁ ପୁରୁଣା ଗୀତର
ଆରମ୍ଭ ଖୋଜୁଥିବା ଶେଷଧାଡ଼ି ଭଳି

ସ୍ୱତଃସ୍ଫୂର୍ତ୍ତ କବିତାର ଦେହ
ପ୍ରବହମାନ ରହିଥାଏ
ସାବଲୀଳ ଧାରା ଭଳି
ସ୍ୱରଲିପିର ଉତ୍‌ଥାନ ପତନକୁ
ଶ୍ୱାସ ପ୍ରଶ୍ୱାସରେ ନେଇ

ବ୍ୟାକରଣର ନିୟମ ନ ମାନି
ହାତ ଖୋଜିନିଏ ଛାତି ଭର୍ତ୍ତି ଶବ୍ଦର
ଅଳଙ୍କାରବଦ୍ଧ ଶୃଙ୍ଖଳାକୁ
ଚିତ୍ରକାବ୍ୟ ବନ୍ଧରୁ ବାହାରି
ଦେହ ନିଜର କରିଦିଏ
ଧ୍ୱନି ଲହରୀରେ ହଜିଯାଇଥିବା
ରୂପ ବିନ୍ୟାସର ଆଙ୍ଗିକକୁ

କୌଣସି ବିରାମ ନ ମାନି

ସଂଗୀତ ଅଗ୍ରସର ହେଉଥାଏ
ନିଜର ଅନିବାର୍ଯ୍ୟ ସମାପ୍ତି ଆଡ଼କୁ
ସମୟ ଆଉ ଏକାଗ୍ର ରହି
ତାଳ ରଖି ପାରେ ନାହିଁ
ଆରୋହ ଅବରୋହ ଦେଇ
ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱକୁ ଉତ୍ତୀର୍ଣ୍ଣ
ଦ୍ୱୈତଗାନର ଐକତାନ ସହିତ

ସଂଗୀତର ସର୍ବୋଚ୍ଚ ବିନ୍ଦୁଟି
ପରିପୂର୍ଣ୍ଣତାର ଚରମ ମୁହୂର୍ତ୍ତରେ
କଣ୍ଠରେ ଯାଇ ଅଟକିଯାଏ
ଛନ୍ଦପତନର ଚିତ୍କାର ହୋଇ

# କଳା ଦର୍ଶନ

ନାକ ଉପରକୁ ଖସି ଆସିଥିବା
ଚଷମାକୁ ଠିକ କରିବା ଏକ କଳା
କପାଳ ଉପରେ ଅସ୍ତବ୍ୟସ୍ତ ବାଳକୁ
ସାଉଁଳାଇ ସଜାଡ଼ିବା ଏକ କଳା
ପ୍ରଶ୍ନର ଉତ୍ତରରେ ଓଠରେ ହାତ ଦେଇ
ଦୂରତ୍ୱକୁ ଅନାଇବା ଅନ୍ୟ ଏକ କଳା

ଆଖି ଆଗରେ ସବୁବେଳେ
ଏଇପରି କଳାକୌଶଳ ଚାଲିଥାଏ
ରଂଗ ଛାଡ଼ି ଯାଇଥିବା କାନ୍ଥରୁ
ବିମୂର୍ତ୍ତ ଆଲେଖ୍ୟ ବାହାରି ଆସେ
ଝରକା ବାହାରେ ଏକାକୀ ପକ୍ଷୀଟି
ବିଜୁଳି ତାର ଉପରେ ଆଙ୍କିଦିଏ

ଶରତ ଋତୁର ରେଖାଚିତ୍ର
ଦୂର ଟ୍ରାଫିକ କୋଳାହଳ ଭିତରୁ
ସହଜ ସ୍ୱରଲିପି ଭାସି ଆସେ
ଖବର କାଗଜର ବର୍ଣ୍ଣମାଳା ଭିତରୁ
କବିତାର ଧାଡ଼ି ଉଙ୍କିମାରେ

ନୃତ୍ୟର ମୁଦ୍ରା ଫୁଟି ଉଠେ
ପ୍ରତ୍ୟେକଟି ଅଂଗ ସଂଚାରରେ
ମୁହଁ ଉପରେ କାରୁକାର୍ଯ୍ୟ କରିଯାଏ
ସଂଜର ବାଟଭୁଲା ଆଲୁଅ

କେବଳ ମନ୍ତ୍ରାଚ୍ଛନ୍ନ ଦର୍ଶକ
ବିସ୍ଫାରିତ ଆଖି ଦେଇ ଦେଖୁଥାଏ
ବିଚକ୍ଷଣ କଳାନୈପୁଣ୍ୟର
ଗୋଟିଏ ଗୋଟିଏ ନିଦର୍ଶନ
ଯେପରି ଉଦ୍ଦେଶ୍ୟହୀନ ଭାବରେ
ହାତକୁ ଆଗକୁ ବଢ଼ାଇ
ସମୟକୁ ଅଟକାଇ ଦେବା
ସୀମାନ୍ତ ସ୍ୱପ୍ନମାନଙ୍କୁ ନେଇ
ଆଖି ଭିତରେ ଏକାଠି କରିବା
ପାପୁଲି ଉପରେ ଅନାୟାସ
ଭାଗ୍ୟକୁ ଧରି ନଚାଇବା
ଓ ପୁଣି ହଠାତ
ଅତି ସାଧାରଣ ଦୃଷ୍ଟିପାତରେ
ଏ ସବୁକୁ ସଂପୂର୍ଣ୍ଣ ବିଲୁପ୍ତ କରିଦେବା

# କିଛି ଖରାବେଳେ

କିଛି ଖରାବେଳେ
ଈଶ୍ୱର ହଠାତ ମନେ ପଡ଼ନ୍ତି
ଯେତେବେଳେ ତର୍କ ବିତର୍କ ଶେଷରେ
ସିଦ୍ଧାନ୍ତସବୁ ନିଷ୍ଫଳ ରହିଯାନ୍ତି
ଶେଷ ଗୋଲକଧନ୍ଦା ବାହାରେ

ଅନ୍ଧାର ଆସି ମାଡ଼ିପଡ଼େ
ସୂର୍ଯ୍ୟର କାଳିମାସବୁ ଯେପରି
ମର୍ତ୍ତ୍ୟ ଉପରକୁ ଓହ୍ଲାଇ ଆସନ୍ତି
ନିଜର ଅପରାଧ ବୋଧରେ ନଇଁଯାଇ

ଝଂକା ବରଗଛର ଅବସାଦ ତଳେ
ଗୁମସୁମ ହୋଇ ବସି ରହିଥିବା
ଗ୍ରାମ ଦେବତୀର ବିଗ୍ରହ ଚାରିପାଖେ
ଛୋଟ ଛୋଟ ମନସ୍କାମନାର ଫୁଲ
ନୈରାଶ୍ୟରେ ଝାଉଁଳି ପଡନ୍ତି
ପବନ ସେଠାରୁ ମୁହଁ ମୋଡ଼ି
ନଈ ପଠାର ନିଷ୍ପାପକୁ ଚାଲିଯାଏ

ଅସମୟ ଋତୁମାନଙ୍କର
କୌଣସି ଦାୟିତ୍ୱ ନ ଥାଏ
ମନ ଭିତରର ଅପନ୍ତରା ଉପରେ
ସେମାନେ ଯା ଆସ କରନ୍ତି
ଫୁଲ ଫୁଟିବାର ଓ ମଉଳିବାର
ପର୍ବମାନଙ୍କୁ ଅବଜ୍ଞା କରି

ବିଗତ ଦିନର ଅସମର୍ଥିତ ସମ୍ବାଦ
ରଟିଯାଏ ଶିରା ପ୍ରଶିରାରେ

ଏବଂ ଶେଷରେ କୌଣସି ସାନ୍ତ୍ୱନା ନ ପାଇ
ଦିଶାହୀନ ସ୍ରୋତ ଭଳି ହଜିଯାଏ
ବିଚାର ବିଶ୍ଳେଷର ବାଲିଚରରେ

କେଉଁ ଆବହମାନ ଅପମାନରୁ
ପଳାଇ ଆସି ଆଶ୍ରୟ ଖୋଜୁଥିବା
କାନ୍ଦମାନଙ୍କୁ ଫେରାଇ ଦିଏ
ଅନୁଭବ କରିବାର ଅସାମର୍ଥ୍ୟ

କିଛି ଖରାବେଳେ
ଏପରି ସବୁ କଥା ମନକୁ ଆସନ୍ତି
ଯାହା କସ୍ମିନ କାଳେ
ଈଶ୍ୱରଙ୍କୁ ମଧ୍ୟ କୁହାଯାଇ ପାରିବ ନାହିଁ

# ଭୋକ

ଭୋକକୁ ନିଦ ହୁଏ ନାହିଁ
ଭୋକ ସାରାରାତି ଉଜାଗର ରହିଥାଏ
ସହରର ଖୋଲା ଫୁଟପାଥରେ
ଓ ଜଂଗଲର ପତ୍ର କୁଡ଼ିଆରେ

ଭୋକ ହାଇଁ ପାଇଁ ହେଉଥାଏ
ଖାଙ୍କର ପେଟରେ ରଙ୍କଣା ଆଖିରେ
କଙ୍କାଳର କାକୁତି ମିନତିରେ

ଭୋକ ରାହା ଧରି ଆସେ
ଫଟା ମାଟିରୁ ଶୁଖିଲା ନଈରୁ
ଭିଖାରୀର ଛିଣ୍ଡା କନାର ଛିଦ୍ରରୁ
ଚୁଲିର ଥଣ୍ଡା ହୋଇଯାଇଥିବା ପାଉଁଶରୁ

ଭୋକ ବାହାରିଆସେ ଲୁହରୁ ଉତୁରି
ଅନ୍ତନାଳୀକୁ ଆଉଟି
ଭଙ୍ଗା ଦେହରୁ ଉଲୁରା ମନରୁ
ଉଜୁଡ଼ି ଯାଇଥିବା ଘରକରଣାରୁ
ଭୋକ ଖୋଜିବୁଲେ ଆତୁର ହୋଇ
ଚେର ମୂଳ କଇଁଆ ପତ୍ର
ଖପରା ଅଇଁଠା ଖାଲି ହାଣ୍ଡି
ପେଜ ମୁନ୍ଦା ତୋରାଣି ପାଣି
ପୁଣି ପୂର୍ଣ୍ଣିମାର ପୋଡ଼ା ରୁଟି
ଓ ପାଣି ଉପରେ ବିଞ୍ଚି ପଡ଼ିଥିବା
ଖରାର ମୁଠା ମୁଠା ଭାତ

ଭୋକ କୁକୁର ସାଙ୍ଗରେ କଳି କରେ

ପିଲା ହାତରୁ ଖାଇବା ଛଡାଇ ନିଏ
ଭୋକ ସିଝା ଅସିଝା ବାରେ ନାହିଁ
ତାର ବାଛ ବିଚାର ନାହିଁ
ଭଲ ମନ୍ଦ ଶିଷ୍ଟାଚାର ନାହିଁ
ମଣିଷତା ନାହିଁ ଆତ୍ମା ନାହିଁ
ଭୋକ କେବଳ ରକ୍ତ ଆଉ ମାଂସ
ଭୋକ କହେ ମୁଁ ହିଁ ଈଶ୍ୱର
ଏବଂ ମଣିଷ ହେଉଛି ମୋ ପାଇଁ
ମୁଁ ହେଉଛି ଚରମ ସତ୍ୟ
ମୁଁ ହେଉଛି ମୋକ୍ଷ ଲଭିବାର
ନିର୍ଜଳା ଉପବାସ

ଭୂଗୋଳ ଇତିହାସ ନିର୍ବିଶେଷ
ଭୋକ ଥାଏ ପ୍ରସ୍ତର ଓ ମଧ୍ୟଯୁଗରେ
ନଅଙ୍କରେ ତେୟାଳିଶ ମସିହାରେ
ଭୋକ ଛଟପଟ ହେଉଥାଏ
ଏକବିଂଶ ଶତାବ୍ଦୀର ଆଖେପାଖେ

ଆଣବିକ କଳାମେଘ ଭଳି
ଭୋକ ପରିବ୍ୟାପ୍ତ ହୋଇଯାଏ
କାଳ ଅକାଳରୁ ମହାକାଳକୁ
କଳାହାଣ୍ଡିର ନିରନ୍ନ ଅନ୍ଧାରରୁ
ବାଏଫ୍ରାର ବନ୍ଧ୍ୟା ଉଷରତାକୁ
ଏବଂ ସ୍ୱତଃସିଦ୍ଧ କରିଦିଏ
ଭୋକର କୌଣସି ଜାତିବର୍ଣ୍ଣ ନାହିଁ
ଭୋକର କୌଣସି ଦେଶ କାଳ ନାହିଁ

## ଡେଣା

ପକ୍ଷୀ ତାର ଗୀତ ବଦଳରେ
ତୋଳିନିଏ ଦୁଇଟି ଧାନ ଶିଷା
ଲେଉଟିଯାଏ ଆକାଶର
ନିବିଡ଼ ନୀଡ଼ ଭିତରକୁ

ଅପହଞ୍ଚ ଅନ୍ୱେଷାର ଆଖି
ଦିଗ୍‌ବଳୟର ବିରାଗକୁ ଛୁଇଁ
ଫେରି ଆସେ ପୁଣି ନିଜର
ଅଭୀଷ୍ଟର ଶେଷ ଆଶ୍ରୟକୁ

ଡେଣା ସମତୁଲ କରୁଥାଏ
ଦୂରରୁ ଦୂରକୁ ଘୁଞ୍ଚିଯାଉଥିବା
ନୀଳର ଉଦାର ସାନ୍ଦ୍ରତା
ଓ ଫେରିପାଇବାର ଆସ୍ଥାରେ
ନିଶ୍ଚେଷ୍ଟ ହୋଇ ରହିଥିବା
ସବୁଜର ସ୍ପର୍ଦ୍ଧାକୁ
ସହଜ ଯିବା ଆସିବାର
ଭାରସାମ୍ୟକୁ ଭାଙ୍ଗିଦେଇ

ଦୃଷ୍ଟି ପରିସରର ଦିଗ୍‌ବିଦିଗରୁ
କଳରବମାନେ ଫେରିଯାନ୍ତି
ଧାନକ୍ଷେତର ଅପେକ୍ଷାକୁ ଛୁଇଁ
ପୁନଶ୍ଚ ଇଚ୍ଛାର ଊର୍ଦ୍ଧ୍ୱକୁ
ମହାକାଶର ମଧ୍ୟବିନ୍ଦୁରେ
ସ୍ଥିର ଓ ସନ୍ତୁଳିତ ରହିଥିବା
ପ୍ରତ୍ୟୟର ଏକନିଷ୍ଠତାକୁ

ଜୀବନ ବିବର୍ତ୍ତିତ ହେଉଥାଏ

ସମୟର ଅରାଜକତାରେ
ଉପଲବ୍ଧିମାନେ ଯାଇ ଆଶ୍ରୟ ଖୋଜନ୍ତି
ଉଡ଼ନ୍ତା ଜିଜ୍ଞାସାର ଯୁଗ୍ମ ଆଧାରରେ

## ଅଲେଖା କବିତା

ଏପରି କିଛି କବିତା ଅଛନ୍ତି
କେବେହେଲେ ବି ଯେଉଁମାନେ
କାଗଜ ଉପରେ ଧରାଦିଅନ୍ତି ନାହିଁ
ଅତି ବାଧ୍ୟବାଧକତା କଲେ
ସେମାନେ ନିଜର କୋଳାହଳର
ସମସ୍ତ ଛନ୍ଦ ଓ ବ୍ୟୁତ୍ପତ୍ତି ହରାଇ
ନିର୍ବାକ ଓ ନିସ୍ପନ୍ଦ ହୋଇଯାନ୍ତି

ମୃତଭାଷାର ବ୍ୟାକରଣରେ ଥିବା
ସମସ୍ତ ସର୍ବନାମଙ୍କୁ ଆୟତ୍ତ କରି
କବି ଅକ୍ଷରମାନଙ୍କୁ ଶବ୍ଦ କରି ସଜାଏ
ଶବ୍ଦମାନଙ୍କୁ ବିନ୍ୟାସ କରେ ପଂକ୍ତିରେ
କିନ୍ତୁ ସେ ଯେତେବେଳେ
କବିତାକୁ ଆବାହନ କରି
ସେମାନଙ୍କ ପାଖରୁ ଅର୍ଥ ମାଗେ
ଶବ୍ଦମାନେ ମନା କରିଦିଅନ୍ତି
ଜୀବନ୍ୟାସ ନେବା ପାଇଁ

କାଗଜ ଉପରେ ତଲ୍ଲୀନ ରହିଥିବା

ଖୋଜୁଥିବାର ଆଖିକୁ
ଚିହ୍ନିବାର କୌଣସି ସୂଚନା ମିଳେନାହିଁ
କାହାରି ମୁହଁ ଭାସି ଆସେ ନାହିଁ
ଅକ୍ଷର ସମୁଜ୍ଜ୍ୱଳ ପୃଷ୍ଠା ଉପରକୁ
କବିତା କେଉଁଠି କିପରି
ସନ୍ତର୍ପଣରେ ଚାଲିଯାଇଥାଏ
ବ୍ୟାକରଣକାରଙ୍କ ନୀତିନିୟମ
ଓ ଆର୍ଷ ପ୍ରୟୋଗର ଚୋରା ଗଳି ଦେଇ

କାଗଜକୁ ଅଲଗା ରଖିଦିଏ କବି
ପାଖକୁ ଆସୁ ନଥିବା କବିତାକୁ
ଅନୁନୟ ବିନୟରେ ଆକୁତିମିନତି କରେ
ପାଖକୁ ଆସିବାକୁ ଡାକେ
ଏକାକୀ ପାଖରେ ଚାହେଁ
ରାସ୍ତାରେ ସହଯାତ୍ରୀ ହେବାକୁ ଖୋଜେ
ନିଦ ନ ଆସିବାବେଳେ ମନେପକାଏ
ସ୍ୱପ୍ନରେ ଦେଖିବାକୁ ଚେଷ୍ଟା କରେ

ଶେଷରେ ହାରିଯାଏ କବି
ସମସ୍ତଙ୍କୁ ଦୂର କରିଦିଏ
କବିତା ଓ ନିଜ ମଝିରୁ
ମନମାରି ପଡ଼ି ରହେ ଏକା ଏକା
ସ୍ୱପ୍ନ ଦେଖେ ଚୁପ ରହେ
ପଳାଇଯାଏ ଫେରିଆସେ
ଯାହା ପାଏ ସେତିକିକୁ ନେଇ
ନିଜକୁ ସାନ୍ତ୍ୱନା ଦିଏ
ନିଜର ଉପଲବ୍ଧିମାନଙ୍କରୁ
କାଗଜ ଉପରେ କିଛି ଲେଖି ରଖେ
ଏବଂ ଆହୁରି ଅନେକ କବିତାକୁ

# ଛାଡ଼ି ଆସିଥିବା ଦିନ

ପଛରେ ଛାଡ଼ି ଆସିଥିବା ଦିନମାନେ
ସେହିଭଳି ନିଶ୍ଚେଷ୍ଟ ପଡ଼ି ରହିଥାନ୍ତି
କାହିଁ କେଉଁ ନିସ୍ତରଙ୍ଗ ଅତଳରେ
ମୃଣ୍ମୟୀ ଦେବୀର ବିସର୍ଜିତ ଅସ୍ଥିପଂଜରା ଭଳି
ସ୍ମରଣରେ ସେମାନଙ୍କୁ ଟୋଳି ଆଣି
ଜୀବନର ରଙ୍ଗ ଦେଇହୁଏ ନାହିଁ

କିଛି ଆଉ ନାହିଁ ହାତ ମୁଠାରେ
ସେଥିରୁ କେବେ କେଉଁଠି ଝଡ଼ି ପଡ଼ିଥାଏ
ଚଲାପଥରୁ ଉଠାଇ ଆଣିଥିବା
ଅନ୍ତରଂଗତାର ସ୍ୱର୍ଣ୍ଣରେଣୁ ସବୁ
ଆଉ ମୁକୁଳାଇ ଆଣି ହୁଏ ନାହିଁ
ସୁଖ ପାଖରେ ବନ୍ଧା ପଡ଼ି ରହିଥିବା
ସଂପୂର୍ଣ୍ଣତାର ଉଜ୍ଜ୍ୱଳ ମୁହୂର୍ତ୍ତମାନଙ୍କୁ
ଅବିସ୍ମୃତିର ଲଗ୍ନ ସବୁ
ନିଜକୁ ସ୍ୱୟଂସଂପୂର୍ଣ୍ଣ କରି
ନିଶ୍ଚିନ୍ତ ରହିଥାନ୍ତି
ନିଜ ନିଜର ନୂଆ ଠିକଣାରେ

ଅଜଣା ଯନ୍ତ୍ରଣାମାନେ ଆସି
ଛାତି ଉପରେ ଭାର ହୋଇଯାନ୍ତି
ବିପର୍ଯ୍ୟସ୍ତ କରିଦିଅନ୍ତି

ଦେହ ମନରେ ବସା ବାନ୍ଧି ରହିଥିବା
ପୁରୁଣା ଉନ୍ମାଦନାର ଯାତନାମାନଙ୍କୁ

ବଂଚିବାର ନିଜସ୍ୱ ନିୟମକୁ ମାନି
ଜୀବନ ଚାଲିଥାଏ ତାର
ନିଜର ଗତିଶୀଳତାର ଅଭ୍ୟାସରେ
ସୂର୍ଯ୍ୟ ଉଠେ ପ୍ରତ୍ୟେକଟି ସଂଯୋଗ ପଛରୁ
ଓ ଅସ୍ତଯାଏ ପ୍ରତିଟି ଦୁର୍ଘଟନାରେ
ପ୍ରତିଟି ସଂପର୍କକୁ ଆକାଶ ପ୍ରଶ୍ନ କରେ
ତାର ଉତ୍ତରାଧିକାରକୁ ନେଇ
ମେଘ ଲୁଚାଇଦିଏ ସ୍ୱପ୍ନମାନଙ୍କୁ
ରାତି ହଜାଇଦିଏ ଗୋପନୀୟ କଥାର
ଅନ୍ତରଂଗ ଭଗ୍ନାଂଶସବୁ

ପାଦ ଝୁଣ୍ଟେ ମନ ଭାଙ୍ଗିଯାଏ
ଖୋଜୁଥିବା ହାତ ଫେରିଆସେ
ତଥାପି ଆଖି ଅନାଇ ରହିଥାଏ
ସମସ୍ତ ଯୁକ୍ତିତର୍କକୁ ଅଗ୍ରାହ୍ୟ କରି
ସମୟ ଅସମୟର ପହୁଞ୍ଚ ବାହାରେ
କେଉଁ ଅନ୍ୟ ଦିଗବଳୟ
ତଳେ ପଡ଼ିଯାଇଥିବା ଫୁଲଟି
କେଉଁ ଇନ୍ଦ୍ରଜାଲ ବଳରେ
ପୁଣି ଆସି ଖୋସି ହୋଇଯିବ
ଡାଳର ସବୁଜ ପ୍ରତ୍ୟାଶା ଭିତରେ

ଛାଡ଼ି ଆସିଥିବା ଦିନମାନ
ମନ ଭିତରେ ସେଇଭଳି ପଡ଼ି ରହିଥାନ୍ତି
ନିର୍ଜୀବ ନିଶ୍ଚେଷ୍ଟ ଓ ବିସର୍ଜିତ
ସେମାନଙ୍କୁ ଖୋଜୁଥିବା ଲୋକଟି

ଥକା ହୋଇ ବସିପଡ଼େ
ନିଜର ଛଳନାର ବୈରାଗ୍ୟ ଭିତରେ

## ଠିକଣା

ରେଲ ଲାଇନ ତଳକୁ ରାସ୍ତା
ସେଠାରେ ଟିଣ ଛାତର ଘର
ତାର ସବୁଜ ରଂଗର କବାଟ ବାହାରେ
ଅପେକ୍ଷା କରି ରହିଥାଏ ଝିଅଟି

ଡାକବାଲା ଷ୍ଟେସନରେ ଓହ୍ଲାଇ
ସେଇ ରାସ୍ତା ଦେଇ ଯାଏ
ଝିଅଟି କିନ୍ତୁ ସେଠାରେ ନାହିଁ

ରେଲଗାଡ଼ିର ଧୂଆଁ ଓ ସିଟି
ଟେଲିଗ୍ରାଫର ଛନ୍ଦାଛନ୍ଦି ତାରରେ ଲାଗି
ଛିନ୍ନ ଭିନ୍ନ ହୋଇ ତଳକୁ ଖସିପଡ଼ନ୍ତି
ତାର ଅସ୍ୱଚ୍ଛତା ଦେଇ ଦୂରରୁ ଦୂରକୁ
ସବୁଜର ବିସ୍ତାର ହିଁ ଦେଖାଯାଏ
ସେଠାରେ ଆଉ ଟିଣ ଛାତର ଘରଟି ନାହିଁ

ମଉଳି ଯାଇଥିବା ମୁହୂର୍ତ୍ତରେ
ଅପନ୍ତରା ଓହ୍ଲାଇ ଆସେ
ଘାସ ପଡ଼ିଆର ବିଷଣ୍ଣତା ଉପରକୁ
ଗ୍ରହ ନକ୍ଷତ୍ରମାନେ ଋତୁର ତାରତମ୍ୟରେ

ନିଜ ନିଜର ଗତିପଥ ବଦଳାଇ ନିଅନ୍ତି
ସେଠାରେ ଆଉ ଟ୍ରେନ ଅଟକେ ନାହିଁ

ଉପରେ ଧାଡ଼ି ଧାଡ଼ି ତାରର ଦୀର୍ଘଶ୍ୱାସରେ
ଖବର ଯିବାଆସିବା କରୁଥାଏ
ଏକାଠି କରିବାରେ ଲାଗିଥାଏ
ଜଣା ଅଜଣାର ଦୂର ଓ ନିକଟକୁ
ତଳେ ଅଟକିଥିବା ଭଙ୍ଗା ପୋଲଟି କିନ୍ତୁ
କାହାରିକି କେଉଁଠି ଯୋଡ଼େ ନାହିଁ
କେହି ବି ଚିଠି ଲେଖନ୍ତି ନାହିଁ
ଆଉ ସେଇ ପୁରୁଣା ଠିକଣାରେ
ଡାକବାଲା ବାଟ ଭାଙ୍ଗି ଚାଲିଯାଏ
ସେଠାରେ ଆଉ ରେଳ ଲାଇନ ବି ନାହିଁ

## ଅରଣ୍ୟ

ଗଛମାନେ ଆତ୍ମ ନିମଗ୍ନ ରହିଥାନ୍ତି
ସହଜ ସାଧନାର ଭଙ୍ଗୀରେ
ପବନ ନିଜର ନିର୍ବାଣ ଖୋଜୁଥାଏ
ଛାଇ ଆଲୁଅର ଗୋଲକଧନ୍ଦାରେ

ବୁଢ଼ାଗଛର ଚୋରାକୋଠରୀ ଭିତରୁ
ବାହାରି ଆସନ୍ତି ଆଦିମ ଦେବତାଙ୍କ ସଦିଚ୍ଛା
ସରୀସୃପ ଦେହରୁ ଖୋଲି ଛାଡ଼ିଯାଏ
ଜର୍ଜର ହିଂସ୍ରତାର ନିର୍ମୋକ

ଏକାକୀ ବାଟୋଇ ପାଦ ମିଳାଏ

ନିଛାଟର ପ୍ରାଚୀନ ତାଳରେ
ଖଣ୍ଡି ଉଡା ନେଇ ଛୋଟ ଚଢ଼େଇଟି
ସ୍ୱଚ୍ଛ ସମୟକୁ ନିଜର କରିଦିଏ

ଝରଣା ପାଣିର ନିଥର ଦର୍ପଣରେ
ଲତାଟିଏ ଅନାଇ ରହେ ନିଜକୁ
ଖରାର ନିଶ୍ୱାସରେ ଖସି ପଡୁଥିବା ପତ୍ର
ଘୂର୍ଣ୍ଣୀ ପାଖରେ ନିଜକୁ ସମର୍ପଣ କରିଦିଏ

ନିର୍ଭୟରେ ବୁଲୁଥାନ୍ତି ଅସ୍ଥିର ଇଚ୍ଛା ସବୁ
ଶ୍ୱାପଦସଂକୁଳ ମୋହମୁକ୍ତିର ଆଖେପାଖେ
ଥକାମନ ଯାଇ ଅଜାଣତ ବସିପଡ଼େ
ବିଶଲ୍ୟକରଣୀର ଆଶ୍ୱାସନା ତଳେ

ବନସ୍ପତିର ନିଘଞ୍ଚକୁ ଭେଦି
ଗଛକଟାଳିର ପାଦଶବ୍ଦ ଶୁଭେ
ସହଜ କଲରୋଳର ଅବିରତ ଛନ୍ଦ
ହଠାତ ବନ୍ଦ ହୋଇଯାଏ
ଇତିହାସର ଶେଷକଥା ଭଳି

## ପଛକୁ ଫେରିବା

ଇତିହାସର ଭଙ୍ଗା ଡାଳ ଉପରେ
ଖଂଜା ହୋଇଥିବା ପତ୍ର ପୁଷ୍ପ ସବୁଜତା
ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡନ୍ତି
ନିଜର ଅପ୍ରତ୍ୟୟର ଭାରରେ

ସ୍ରୋତଟି ଆଉ ଏକା ଭଳି ନଥାଏ

କେତେ ନୂଆ ଅଭାବ ଚାଲିଯାଇଥାନ୍ତି
ତାର ନିର୍ଲିପ୍ତତା ଉପରେ ଉଜାଣି କାଟି
ସେତୁର ଅସ୍ଥି ପଂଜରରେ ମାଡ଼ି ଯାଇଥାଏ
ଉଚ୍ଛନ୍ନ ଆସ୍ଥାର ଲତାଗୁଳ୍ମ

ଆଗକୁ ବଢ଼ାଇଥିବା ହାତ
କାହା ଅଙ୍ଗୁଳିର ଶୀତଳତାକୁ ଛୁଇଁ
ଫେରି ଆସେ ନିରାଶ୍ରୟ ଓ ଭୟଭୀତ
ପୁଣି ନିଜର ଶିଥିଳ ଅବସ୍ଥିତିକୁ

ଧସି ପଡୁଥିବା ଧ୍ୱଂସାବଶେଷରେ
ପ୍ରତିଟି ଦୃଷ୍ଟିପାତରେ ଜମି ଯାଉଥିବା
ପରସ୍ତ ପରସ୍ତ ମନସ୍ତାପ ତଳେ
ଯେତେ ଖୋଜିଲେ ବି ଆଉ ମିଳନ୍ତି ନାହିଁ
ସୁଖ ସମ୍ବଳିତ ସ୍ୱପ୍ନର ଭଗ୍ନାଂଶମାନ

ଦୀର୍ଘଶ୍ୱାସର ମୃତ ଉପତ୍ୟକାରେ
ପଛକୁ ଫେରିଯିବାକୁ ଖୋଜୁଥାଏ
ଲିଭି ଆସୁଥିବା ଆଖିର ଉଷ୍ମା
ଯାହା ଶେଷରେ ଯାଇ ହଜିଯାଏ
ବୟକ୍ରମର ନିରୁତ୍ତାପ ଉଦାସୀନତାରେ

କେବଳ କ୍ରମିକ ମୁହୂର୍ତ୍ତମାନେ
ଯାହାର କେଉଁଆଡକୁ ଯିବାର ନାହିଁ
ପଛକୁ ଅନାଇ ଅନାଇ
ନିଜକୁ ନିଃଶେଷ କରିଦିଅନ୍ତି

# କବିତାର ଅପେକ୍ଷା

୧

କବିତା କେହି ତିଆରି କରେ ନାହିଁ
ଅଲେଖା କବିତା ଛପି ରହିଥାଏ
ଆବିଷ୍କାରର ଅପେକ୍ଷାରେ
ତାକୁ ଖୋଜି ବାହାର କରିବାକୁ ହୁଏ

କେଉଁଠି ଲୁଚିଥାଏ କବିତା
ଜହ୍ନରାତିର ପରିପୂର୍ଣ୍ଣ ଅନ୍ଧାର ଭିତରେ
ନା ସକାଳର ଅସ୍ୱଚ୍ଛ ଦର୍ପଣ ପଛରେ
କ୍ଷୁଧାତୁର ଆଖିରେ ପ୍ରତିଫଳିତ
ମେଘହୀନ ଆକାଶର ଫଳକରେ
ନା ଭୁଲ ବୁଝାମଣାରେ ଛଟପଟ
ସ୍ୱର୍ଣ୍ଣକାତର ମଧ୍ୟାହ୍ନର ଶୂନ୍ୟରେ

କେଉଁଠି ଲୁଚିଥାଏ କବିତା
ମାନିନୀ ରାଧାର ଉତ୍କଣ୍ଠାରେ
ନା ଅନାବୃଷ୍ଟିରେ ଝାଉଁଳି ପଡ଼ିଥିବା
ଭଙ୍ଗା ମଣିଷର ବିବଶତାରେ
କାହାର ପ୍ରତୀକ୍ଷାରେ ଥାଏ କବିତା
ସଦାଶୟ ଦେବତାର ପାଦଶବ୍ଦର
ନା ଧାନକେଣ୍ଡା ଭିତରେ ବଢ଼ୁଥିବା
ଶସ୍ୟବୀଜର ପରିପୁଷ୍ଟିର

କୌଣସି ଉଦ୍‌ବେଗ ନାହିଁ କବିତାର
କେହି ନା କେହି କେବେ ନା କେବେ
ତାକୁ ଖୋଜିବ ହିଁ ଖୋଜିବ

୨

ଶବ୍ଦଟି ଉଚ୍ଚାରିତ ହୋଇଯିବା ପରେ
ପଂକ୍ତିଟି ଲେଖା ହୋଇ ସାରିବା ପରେ
ପୁଣି ନିଜକୁ ଲୁଚାଇନିଏ କବିତା
ନିଜର ବ୍ୟଂଜନାର ଗୋଲକଧନ୍ଦାରେ
କବିତା ହଜିଯାଏ ନିଜର ଶବ୍ଦ ଓ ଛନ୍ଦରେ

କବିତା ପୁଣି ଅପେକ୍ଷା କରି ରହେ
ନିରବଧି କାଳ ଆଡ଼କୁ ଅନାଇ
ବ୍ୟୁତ୍ପତ୍ତିର ଅପେକ୍ଷା ଓ ଆଶାରେ
କବିତାକୁ ନିଶ୍ଚିତ ଜଣା ଯେ
ଆଜି ଏଇ ମୁହୂର୍ତ୍ତରେ
ଅଥବା କେଉଁ ସୁଦୂର ଭବିଷ୍ୟତରେ
କେଉଁ ଅଜ୍ଞାତ ସମାନଧର୍ମା ଆସି
ତାକୁ ଆପଣାର କରିବ ହିଁ କରିବ

## ଖୋଜା

ରାତି ଖୋଜେ ସ୍ୱପ୍ନ
ଝିଂକାରୀ ଅନ୍ଧାରର ନିଃସ୍ୱନ
ଖଣ୍ଡ ଖଣ୍ଡ ମେଘ ଖୋଜେ
ମରୀଚିକାର ହାହାକାର
ବାଲି ଖୋଜେ ଇତିହାସର ପାଦ

ପ୍ରେମ ଖୋଜେ ବନ୍ଧନରୁ ମୁକ୍ତି
ମନ ଖୋଜେ ଦେହର ଆଶ୍ରୟ

ଦେବଶିଶୁ ମୃତ୍ୟୁ ଖୋଜେ
ଶାନ୍ତି ଖୋଜେ ଅନନ୍ତ ସମୟ
ତୃଷ୍ଣା ଖୋଜେ ମହାର୍ଣ୍ଣବ
ମୋକ୍ଷ ଖୋଜେ ଆଦିମ ସଂଶୟ

ଲଜ୍ଜା ଖୋଜେ ଛିଣ୍ଡା କନା
ଭୋକ ଖୋଜେ ମୁଠାଏ ମର୍ଯ୍ୟାଦା
ଭୟ ଖୋଜେ ଅଜ୍ଞାତବାସ
ଶୋକ ଖୋଜେ ସୁଖ ନିଦ୍ରା
ସର୍ବହରା ଅଭୟ ଆଶ୍ୱାସ

ପ୍ରତ୍ନତତ୍ତ୍ୱବିଦ ଖୋଜେ
ମୃତଲିପିର ବ୍ୟାଖ୍ୟା
କବି ଖୋଜେ ଦର୍ପଣ ଭିତରେ
ତାର ସ୍ୱପ୍ନର ପ୍ରତିଶବ୍ଦ
ବ୍ୟାକରଣ ଖୋଜେ ବ୍ୟତିକ୍ରମ
କବିତାର ଅନ୍ତ ତାର ସଂଜ୍ଞା

କିଛି ବି ଆଉ ନଥାଏ
ଯେଉଁ ଠାରେ ଖୋଜିବାର ଶେଷ
କେବଳ ଏକ ନିବିଡ଼ ଅନୁପସ୍ଥିତି
ନିଜ ଭିତରେ ଛଟପଟ ହେଉଥାଏ
ପୁନର୍ଜନ୍ମର ଅପେକ୍ଷାରେ

# ଅକାଳ

ତୃଷାର୍ତ୍ତ ଦେବଦେବୀମାନେ
ମେଘରୁ ପାଣି ଶୋଷି ନିଅନ୍ତି
ଜଳାଶୟର ଗର୍ବ ଶୁଖିଯାଏ
କରୁଣାମୟଙ୍କ ତପ୍ତ ନିଶ୍ୱାସରେ
ଧାନକେଣ୍ଡା ଶୁଖି ଝଡ଼ିପଡ଼େ
କିଆରୀ କିଆରୀ ଫସଲ ଜଳିଯାଏ
ପ୍ରାର୍ଥନାସବୁ ଆକାଶରୁ ଫେରିଆସନ୍ତି
ମରଣାନ୍ତକ ଅଭିଶାପ ହୋଇ

ଗାଁର ଭିଟାମାଟି ଭଙ୍ଗା କୁଡ଼ିଆ
ଜଳିଯାଇଥିବା କ୍ଷେତକୁ ପଛରେ ପକାଇ
ମଣିଷ ଓ ଗୋରୁଗାଈଙ୍କ ଶୋଭାଯାତ୍ରା
ଚାଲିଥାନ୍ତି ଦୁର୍ଭାଗ୍ୟର ସହର ଆଡ଼କୁ
ପଛରେ ପଡ଼ି ମରିଯାଉଥିବା
ଆତ୍ମୀୟଙ୍କ ଆଡ଼କୁ ମୁହଁ ନ ଫେରାଇ
ବାଟ ଦେଖାଇବାକୁ କେହି ନ ଥାନ୍ତି
ମାଳ ମାଳ ଶାଗୁଣାଙ୍କ ବ୍ୟତୀତ

ଅନ୍ନଛତ୍ରକୁ ଯାଉଥିବା ଲୋକଟି
ନିଜର କର୍ମଫଳ ଉପରେ ଝୁଣ୍ଟିପଡ଼େ
ପୁଣି ଉଠି ଆଗକୁ ଯାଏ
ଶେଷ ମୁଠାକ ଜୀବନ ପାଇଁ
ବଞ୍ଚିବାର ଜାନ୍ତବ ଇଚ୍ଛା ଉପରେ
ନିଜର ଅସ୍ଥି ପଂଜରାକୁ ଭରା ଦେଇ

ରାସ୍ତାକଡ଼ର ଖପୁରୀମାଳ ମଝିରେ
ଆଉ ମାତ୍ର କେତେ ପଳ ପାଇଁ
ବଞ୍ଚି ରହିଥିବା କଙ୍କାଳର ଓଠ
ତଥାପି ସ୍ଫୁରିତ ହେଉଥାଏ
କେବଳ ଗୋଟାଏ ପାଣି ପାଇଁ

ଦେବତାମାନଙ୍କର ଡାକକୁ ଅଶୁଣା କରିଦେଇ

## କିଛି ନାହିଁ

କେଉଁଠି କେତେ ଦୂରରେ ଭବିଷ୍ୟତ
ଅଭିଳାଷମାନେ ମୁହଁ ଫେରାଇ ନିଅନ୍ତି
କିଛି ଆଉ ମନେ ପଡ଼େ ନାହିଁ
ନିଜର ସ୍ମୃତିର ଅବଧି ବ୍ୟତୀତ

କେଉଁଠି କିଛି ବି ହଲଚଲ ନାହିଁ
ସ୍ୱର୍ଗର ଦେବଦେବୀ ସ୍ଥବିର ରହିଥାନ୍ତି
ଅଭିଶାପ ଓ ବରଦାନର ଅନୁଶାସନରେ
ସକାଳର ଆଲୁଅ ଆସି ନିସ୍ପନ୍ଦ କରିଦିଏ
ପୂଜାର ପ୍ରଥମ ଫୁଲଟିକୁ

ବ୍ରହ୍ମାରଣ୍ୟରେ ରହିଥାନ୍ତି ବ୍ରତାଚାରୀ
ନିଜ ସଂଯମର କଠୋରତା ଭିତରେ
ଈଶ୍ୱରମାନେ ନିଜକୁ ବାଣ୍ଟିଦିଅନ୍ତି
ନୂଆ ନୂଆ ମନ୍ଦିରର ବେଢ଼ାମାନଙ୍କରେ

ଆକାଶର ଶୀର୍ଷରେ ତରବାରୀ ଧରି
ଠିଆ ହୋଇଥାଏ କାଳପୁରୁଷ
ଦୁଃସମ୍ବାଦ ଛପି ରହିଥାଏ
ପ୍ରାଚୀନ ଧ୍ୱଂସାବଶେଷ ପଛପାଖେ
ପୁନର୍ଜନ୍ମ ନେବାର ଭୟରେ

ସାମାନ୍ୟ ଘଟଣାସବୁ
ମୁହଁ ପୋତି ଦୂରକୁ ଚାଲିଯାନ୍ତି
ଇତିହାସର ବିଡ଼ମ୍ବନାମାନଙ୍କ ଉପର ଦେଇ

ସକାଳଟି କୁଆଡ଼େ ଚାଲିଯାଏ
ଦର୍ପଣ ପଛରେ ମୁହଁ ଲୁଚାଇ
ଦିନର ପରିକଳ୍ପନାସବୁ
ଯାଇ ଛିନଛତ୍ର ହୋଇଯାନ୍ତି
ମନସ୍କାମନାର ଶୂନ୍ୟ ମଧ୍ୟାକାଶରେ

ଆଉ କେଉଁଠି କିଛି ନାହିଁ
କେବଳ ଚୈତ୍ରର ଅମାନିଆ ହାଓ୍ୱା
ଖରାର ଆକଟ ନ ମାନି ଧାଇଁ ବୁଲୁଥାଏ
ଉଦୁଉଦିଆ ଦି ପହରେ
କୌଣସି ବି ଉଦ୍ଦେଶ୍ୟ ନ ଥାଇ
ଅପନ୍ତରାରୁ ଅପନ୍ତରାକୁ

# ଯିବା ବେଳେ

ବିଦାୟ ନେଇ ଯିବାବେଳେ
ସେସବୁ କଥା ଅନୁଚ୍ଚାରିତ ରହିଯାଏ
ଯାହା କହିବାର ପ୍ରସ୍ତୁତିରେ
ଅପେକ୍ଷାର କ୍ଷଣସବୁ ସମର୍ପିତ ଥିଲା

କେବେ ବି ନ କହିବାକୁ ଚାହୁଁଥିବା କଥା
ହଠାତ ଓଠରୁ ବାହାରି ଆସନ୍ତି
ଅବୁଝାମଣାର ଅନ୍ଧାରକୁ ଭେଦି

ବୃତ୍ତାନ୍ତମାନଙ୍କର ପ୍ରେତାତ୍ମା ଆସି
ହାତରୁ ଖୋଲିନିଅନ୍ତି ହାତକୁ
ମଝିରେ ବସି ରହନ୍ତି ପାଚେରୀ ହୋଇ

ଅଳ୍ପ ସମୟର ସାକ୍ଷାତକୁ
ଆହୁରି ସଂକ୍ଷିପ୍ତ କରିଦିଏ
ଟେବୁଲ ଉପରେ ସ୍ଥିର ରିକ୍ତତା
ଉପରେ ପଂଖାର କର୍କଶ ବିରକ୍ତି
ଚାରିପାଖେ ପ୍ଲେଟ ଚାମଚର ବିକ୍ଷୋଭ
ପର୍ଦା ଦୋହଲୁଥାଏ ରାଗରୁକ୍ଷାରେ
ଝରକା ବାହାରେ ଅନ୍ୟମାନଙ୍କ ପୃଥିବୀ
ଖାଲି ଚା କପ ସୂଚାଇଦିଏ
ଏଥରକ ଯିବାର ବେଳ

ନିଜ ନିଜର ଜୀବନ ମରଣକୁ ଧରି
ବାହାରକୁ ପାଦ ବଢ଼ାଇଲେ
ଦି ପାଖକୁ ଯାଉଥିବା ରାସ୍ତା
ପୁଣି ଥରେ ସ୍ମରଣ କରାଇ ଦିଏ
କିଛି ବି ସମୟାତୀତ ନୁହେଁ
କେତୋଟି ଛୋଟ ଛୋଟ ଘଟଣା
ଓ ଅବିନ୍ୟସ୍ତ କଥାବାର୍ତ୍ତାର
କ୍ଷଣଭଙ୍ଗୁରତା ବ୍ୟତୀତ

# ଅବିସ୍ମୃତି

ଅତୀତ ଫେରିଆସେ ଅଜାଣତରେ

ଚିନ୍ତା ଚେତନାକୁ ଅବସର ନ ଦେଇ
ମିଶିଯାଏ ଦୃଶ୍ୟରେ ଶବ୍ଦରେ ପ୍ରାଣରେ
ପୁରୁଣା ମୁହୂର୍ତ୍ତଟିଏ ଦେହ ଧରି
କାନ୍ଥରେ ଲାଖିଯାଏ ଚିତ୍ରପଟ ହୋଇ

ଝରକା କବାଟ ସବୁ ଖୋଲିଦେଇ
ଖରା ତାକୁ ଭିତରକୁ ନେଇଆସେ
ରବିବାରର ଅଳସ ସକାଳ
ତା ପାଇଁ ଜାଗା ଛାଡ଼ିଦିଏ
ଖବରକାଗଜର କ୍ରୋଡ଼ପତ୍ରରେ
ତାର ରୂପରସ ଭରିଯାଏ
ଘରର ଅସଂଖ୍ୟ ଶୂନ୍ୟସ୍ଥାନମାନଙ୍କରେ

ମନର ନିଭୃତତମ ଅନ୍ତରାଳକୁ ଯାଇ
ତାତ୍କାଳିକ ଧ୍ୟାନମନନକୁ ନିର୍ବାସିତ କରେ
ଦୃଷ୍ଟି ପରିଧିର ସବୁ ଉପାଦାନ ଉପରେ
ପୁରୁଣା ସମୟର ପୁଟ ବୋଳିଦିଏ
କବିତା ବହିର ପୃଷ୍ଠା ଭିତରକୁ ପଶି
ପଂକ୍ତିମାନଙ୍କରେ ନୂଆ ମର୍ମ ସଜାଏ

ଗୋଟିଏ ଆବଦ୍ଧ ସଂଗୀତର ସ୍ୱର
ସବୁ ସମୟରେ ଆସି ଆନ୍ଦୋଳିତ କରେ
ଯାହା ବି ଉଚ୍ଚାରଣ କଲେ
ଗୋଟିଏ ନାଁ ଫେରିଆସେ
ବାରମ୍ବାର ପ୍ରତିଧ୍ୱନି ହୋଇ
ଯେଉଁ ଅନ୍ଧାରକୁ ଅନାଇଲେ
ତାକୁ ଉଦ୍‌ଭାସିତ କରୁଥାଏ
ଗୋଟିଏ ଚିରନ୍ତନ ମୁହଁର ଆକୃତି

ଆଖି ଅନାଏ କେବଳ ପଛକୁ
ହାତ ଛୁଏଁ ମୁଠାରୁ ଖସି ଯାଇଥିବା ହାତ
ପବନ ଉଡ଼ାଇ ଆଣେ ବିଗତ ଫାଲ୍‌ଗୁନକୁ
ସ୍ୱପ୍ନ ଧକ୍କା ଖାଏ ଛାଡ଼ି ଆସିଥିବା ଦେହରେ

ନିଜର ଅର୍ଥସବୁ ହରାଇ ଦିଅନ୍ତି
ବଞ୍ଚି ରହିବାର ପ୍ରତ୍ୟେକଟି ଦଶା
ପ୍ରତି ନିଶ୍ୱାସ ନିର୍ଭର କରି ରହେ
ଗୋଟିଏ ଉତ୍ତୀର୍ଣ୍ଣ ଦୀର୍ଘଶ୍ୱାସ ଉପରେ
ଭବିଷ୍ୟତର କୌଣସି ସମ୍ଭାବନା ନାହିଁ
ବ୍ୟତୀତ ହିଁ ବର୍ତ୍ତମାନର ନିୟାମକ

# ମନେ ରଖ

ମନେରଖ
ଆମେ କେବେ ବି ଜାଣି ନଥିଲେ
ଜଣେ ଆଉ ଜଣକୁ

କାହିଁ କେତେ ବୃତ୍ତାନ୍ତ ଦୂରରେ
ଆମେ କେବେ ଦେଖିଥିବା ନିର୍ଜନ ଦ୍ୱୀପଟି
ଇତିହାସର ଏକ ନିର୍ମମ ପାଦଟୀକା ଥିଲା
ଜହ୍ନରାତିର ଭ୍ରମ ଆଣୁଥିବା ଅନ୍ଧାର ଥିଲା
ଏକ ଚିରନ୍ତନ ସୂର୍ଯ୍ୟାସ୍ତର ବିଳାପଧ୍ୱନି

ଭୁଲିଯାଅ ଦର୍ପଣର ମୁହଁରେ ଦେଖିଥିବା
ହଳଦିଆ ଅପରାହ୍ଣର ହସକୁ
ସେଠାରେ ଦେଖ ଆସି ଅଟକି ରହିଛି
ଆଉ ବାହାରକୁ ଯିବାର ବାଟ ପାଉ ନଥିବା

ଅନ୍ୟମନସ୍କ ଖରାର ମନସ୍କାମନା

କେଉଁ ଏକ କରୁଣ ସଂଗୀତର ଲୟରେ
ଆମର କୋଠରୀଟି ଏବେ ଭାରାକ୍ରାନ୍ତ
ତମର ଆଖିର ଦୀପଶିଖାରେ
ଘରର ଯେଉଁ କୋଣଟି ଆଲୋକିତ ହେବ
ସେଠାରେ କେବଳ ଗୋଟିଏ ଛୋଟ ହତାଶା
ମୁହଁ ପୋତି ବସି ରହିଥିବ
ମୁଁ ଯେତେବେଳେ ଝରକା ବାହାରକୁ ଅନାଇବି
ଗଛର ଘନିଷ୍ଠ ଶାଖାପ୍ରଶାଖାରୁ
ଛାଇ ସବୁ ଡେଣା ମେଲି ଉଡ଼ି ଚାଲିଯିବେ

ତମ ମୁହଁ ଉପରେ ଜଡ଼ି ଯାଇଥିବା
ମୋର ଓଠର ଆଦର ସବୁ
ହାହାକାରରେ ପାଲଟି ଯିବେ
ଜୀବନର ସମସ୍ତ ଆୟୁଷ ଯାଇ
ଅସଂଖ୍ୟ ତାରାରେ ବାଣ୍ଟି ହୋଇଯିବେ
କର୍ମଫଳର ଅନୁଦାର ଆକାଶରେ

ଚଟାଣର ଅବ୍ୟକ୍ତ ଅନ୍ଧାରରେ
ବିଞ୍ଚି ହୋଇପଡ଼ିଥିବା ପାଉଁଶ ଉପରେ
ନିଜର ଧୈର୍ଯ୍ୟ ପରୀକ୍ଷା କରୁଥିବେ
ଦିକଦିକ କେତୋଟି ଅଙ୍ଗାର
ମନେ ରଖ
ସେମାନେ ବି ଅବିଳମ୍ବେ ଲିଭିଯିବେ

## ସଂଜ ପହର

ଶେଷ ଆଳୁଅକୁ ଧୂଳିରୁ ସାଉଁଟି

ଗାଁ ଦାଣ୍ଡ ଆଡ଼କୁ ଉଡ଼ାଇ ନିଅନ୍ତି
ଗୋଠରୁ ଫେରୁଥିବା ଗାଈ ପଲ

ଚାଳ ଉପରୁ ଉଠୁଥିବା ଧୂଆଁ
ମଳିନ ପଡ଼ି ଆସୁଥିବା ଆକାଶକୁ
ଆହୁରି ଉଦାସ କରିଦିଏ

ଅନାବନା ବୁଦା ଜଙ୍ଗଲରେ
କିଆ ଗୋହିରି ବାଟ ଭୁଲିଯାଇ
ଫେରିଆସେ ନିଜର ଦୋଦୋପାଞ୍ଚକୁ

କୁଳୁକୁଳୁ ପାଣି ଭିତରୁ
ଝିଂକାରୀର ସ୍ୱର ପହଁରିଆସି
ନିର୍ଜନରେ ହାଲିଆ ହୋଇ ରହିଯାଏ

ଝଂକା ଗଛର ଗହଳ ଡାଳରୁ
ମାଳମାଳ ପକ୍ଷୀ ଉଡ଼ିଯାଇ ମିଶିଯାନ୍ତି
ଦୂର ଦେଉଳର ଘଣ୍ଟା ଧ୍ୱନିରେ

କଣ୍ଟାବଣିଆ ଉହାଡ଼ରୁ
ଜୁଳୁଜୁଳିଆ ପୋକ ବାହାରି ଆସି
ଅନ୍ଧାରକୁ ଆହୁରି ଗହନ କରିଦିଅନ୍ତି

ପୁଷ୍ପମାସର କଳନା କରୁକରୁ
ଧାନଚାରା ଅବଶ ହୋଇ ଶୋଇପଡ଼େ
ଚାଷୀ ଆଖିର ଓଦା ମାଟିରେ

ବୁଢ଼ୀ ମା ଗପର ଅସୁରୁଣୀ
ପିଲାଟିର ସ୍ୱପ୍ନ ଭିତରକୁ ପଶି
ତାକୁ ଚମକାଇ ଦେଇଯାଏ

ଗାଡ଼ିଆ କୂଳରେ ଏକୁଟିଆ ବେଙ୍ଗଟି
କିଟିକିଟି ଅଜଣାର ଡରରେ
ଡେଇଁପଡ଼େ ଆପଣାର ରଡ଼ି ଭିତରକୁ

ସଂଜ କାନ ପାରି ରହିଥାଏ
ମହାନିଶାର ଗର୍ଜନ ଆଡ଼କୁ
ଅଦୃଷ୍ଟର ଅନ୍ଧାରରୁ ବାହାରି
କାଳବତାସ ଧସି ଚାଲିଯାଏ
ଗାଁ ଶୋଇପଡ଼େ ଥକାମରା ହୋଇ
ନିଜର ସୁଖଦୁଃଖର ଭାଗବତ ଭିତରେ

## ଲତା

ମୋର ପ୍ରତିଟି ଅନୁଭୂତିରେ
ତମର ଅନିବାର୍ଯ୍ୟ ଉଦ୍‌ଗୀତି
ମୋର ପ୍ରତି କ୍ଷଣକୁ ଆଲୋକିତ କରେ
ତମର ଜ୍ୟୋତିର୍ମୟ ଗୁଂଜନ
ମୋର ପ୍ରତିଟି ଅବସ୍ଥା ପାଇଁ
ଅବଧାରିତ ରହିଛି ତମର
ଗୋଟିଏ ଗୋଟିଏ ସ୍ୱତନ୍ତ୍ର ସ୍ୱର ଲହରୀ

ମୋର ପ୍ରଥମ ପ୍ରେମର ଅନୁରଣନ
ମୋର ସୁଖଦୁଃଖର ରାଗ ରାଗିଣୀ
ମୋର ଆନନ୍ଦର ଆତିଶଯ୍ୟକୁ

ସହଜ କରି ଦେଉଥିବା କୋମଳ ଗାନ୍ଧାର
ଏବଂ ମୋର ଆସନ୍ନ ବିଷାଦକୁ
ଘନୀଭୂତ କରି ଦେଉଥିବା ତୀବ୍ର ମାଧ୍ୟମ

ବର୍ତ୍ତମାନ ପଛକୁ ଅନାଇବାବେଳେ
ସେହି ଗୋଟିଏ ନୈସର୍ଗିକ ସ୍ୱର
ଅନାୟାସ ଉନ୍ମୋଚିତ କରିଯାଏ
ମୋର ଜନ୍ମମୃତ୍ୟୁ ପରିବେଶର
ପ୍ରତିଟି ଅଜ୍ଞାତ ଅତଳକୁ
ଆତ୍ମଘାତୀ ମୁହୂର୍ତ୍ତମାନଙ୍କରେ
ତମର ଅମିୟ ଧ୍ୱନି
ମନ ଗହନରେ ସଂଚରିଯାଏ
ଜିଜୀବିଷା ହୋଇ

ମୁଁ ନିଃସନ୍ଦେହ ରହିଥାଏ
ଅପେକ୍ଷାର ଅସନ୍ତୋଷ ଭିତରେ
ମୋର ବୟସନ୍ଧିର ଅତିକ୍ରମଣକୁ
ଶେଷରେ କିପରି ସୁଗମ କରିଦେବ
କାହାର ପୂର୍ବନିର୍ଦ୍ଧାରିତ ମୁହଁ ସହିତ
ତମର ଅବଶ୍ୟମ୍ଭାବୀ ପାର୍ଶ୍ୱସଂଗୀତ

# ଅସମୟ

ମୋର ସୁଖ ନିଦ୍ରା ହଠାତ ଭାଙ୍ଗିଯାଏ
ମୋର ଘଡ଼ି ଅଟକି ଯାଇଥାଏ

ବାରମ୍ବାର ଦୁଃସ୍ୱପ୍ନର ପୁନରାବୃତ୍ତି ଭଳି
ରାତିର ଠିକ ସେଇ ଶେଷ ପ୍ରହରରେ
ଦୁର୍ଭାଗ୍ୟ ଭିତରୁ ବାହାରି ଆସିଥିବା
ସେଇ ଗୋଟିଏ ଅଶୁଭ କ୍ଷଣରେ

ମୋର ସୁଖ ସବୁ ବିଛଣାରୁ ଉଠି
ଅନାୟାସ ବାହାରି ଚାଲିଯାନ୍ତି
କୋଠରୀ ବାହାରର ଅନ୍ଧାର ଭିତରକୁ
ସ୍ୱପ୍ନର ଭଗ୍ନାଂଶମାନଙ୍କୁ
ପାଦ ତଳେ ଖିନଭିନ କରିଦେଇ
ପଛକୁ ଟିକିଏ ବି ନ ଅନାଇ

ମୋର ପ୍ରଥମ ଦୃଷ୍ଟିପାତରେ
ଖଣ୍ଡିବିଖଣ୍ଡ ହୋଇ ଖସିପଡ଼େ
ମନପ୍ରାଣ ଦେଇ ଯେଉଁ ସତ୍ତାଟିକୁ
ମୁଁ ମୋର ସ୍ମରଣ ଭିତରେ ଗଢ଼ିଥିଲି
ମୋର ହାତ ଲାଗି ନିଶ୍ଚିହ୍ନ ହୋଇଯାଏ
ତାର ଦେହର ପ୍ରତିଟି ଅଙ୍ଗ ପ୍ରତ୍ୟଙ୍ଗ
ମୋର ମନେ ପକାଇବାର ପ୍ରଚେଷ୍ଟାରେ
ସେ ସମ୍ପୂର୍ଣ୍ଣ ଅପ୍ରତ୍ୟକ୍ଷ ହୋଇଯାଏ

ମୋର କୋଠରୀର ସଂକୀର୍ଣ୍ଣ ଆୟତନ
ଓ ଅପଶକୁନମାନଙ୍କରେ ତିଆରି
ତାର ଛାତର ବିବର୍ଣ୍ଣ ଆକାଶରେ
ଇଚ୍ଛାମାନେ ନିଷ୍ପ୍ରଭ ହୋଇଯାନ୍ତି
ଚଟାଣର ଅତଳରେ ବୁଡିଯାନ୍ତି
ଆକାଙ୍‌କ୍ଷାର ଉଜ୍ଜ୍ୱଳ ଉପବନସବୁ
ଅଣନିଶ୍ୱାସୀ ପବନ ଉଡ଼ାଇ ନେଇଯାଏ
ଆଶ୍ରୟ ଖୋଜୁଥିବା ପ୍ରାୟଶ୍ଚିତ୍ତମାନଙ୍କୁ

ଭଗ୍ନ ସ୍ୱାସ୍ଥ୍ୟ ଅବଶ ଦେହପିଂଜର
ମୁଁ ପଡ଼ି ରହେ ଉତ୍ଥାନ ଶକ୍ତିରହିତ
ଏକ ଅଦ୍‌ଭୁତ ଚରାଚରର ଚଉହଦିରେ
କୌଣସି ବି ପ୍ରତ୍ୟାଶା ନ ଥିବା ଆଖିରେ
ମୁଁ ଯେତେବେଳେ ଅଚଳ ସମୟକୁ ଅନାଏ
ତାର ଅପ୍ରସନ୍ନ ମୁହଁ ଭିତର ଦେଇ
ମତେ କେବଳ ଦୃଶ୍ୟମାନ ହୁଏ
ଏକ ଅଜଣା ରାସ୍ତାର ବର୍ଦ୍ଧମାନ ଛାଇ
ଯାହା ଆଗକୁ ଯାଇ ଅଟକି ଯାଇଥାଏ
ଅନ୍ଧଗଳିର ଶେଷ କାନ୍ଥ ପାଖରେ

# ଆକାଶ

ଆକାଶ ଯଦି କେବେ କେବେ
ନିଜର ବର୍ଣ୍ଣ ବିସ୍ତାରର ପ୍ରଶାନ୍ତି
ପ୍ରାଚୀନତା ଭଳି ସମୟ ଭଳି ଧ୍ୟାନ ଭଳି
କେବେ ପୁଣି ଅସମ୍ଭବ ଅସ୍ଥିର ଚଞ୍ଚଳ
ପୃଥିବୀ ଭଳି ଭବିଷ୍ୟତ ଭଳି
ଆମର ଅବିଶ୍ୱସ୍ତ ଜୀବନ ଯାପନ ଭଳି

ସୂର୍ଯ୍ୟ ଚନ୍ଦ୍ର ମେଘ ପବନକୁ ନେଇ
ଖେଳୁଥାଏ ଚିରକାଳର ଆକାଶ
କୌଣସି କ୍ଷୋଭ ନାହିଁ ଉଦ୍‌ବେଗ ନାହିଁ
ଆପଣାର ଗତିରେ ଚାଲିଥାଏ
ରାତିକୁ ଅନ୍ଧକାର ପୃଥିବୀକୁ ରଂଗ

ଓ ସମୁଦ୍ରକୁ ଗଭୀରତା ଦେଇ

ମେଘ ଯେତେବେଳେ ସଘନ ହୋଇ
ତାକୁ ସମ୍ପୂର୍ଣ୍ଣ ନିରାଶାରେ ଭରିଦିଏ
ତାର ସବୁ ରଂଗର ଦମିତ ଦ୍ୟୁତି
ବିଦ୍ରୋହ କରି ବାହାରି ଆସନ୍ତି ବିଜୁଳି ହୋଇ

ନିଜର ସାର୍ବଭୌମ ଅସ୍ମିତା ଭିତରୁ
କେବେ କେବେ ଓହ୍ଲାଇ ଆସେ ଆକାଶ
ବର ଓ ଅଭିଶାପ ହୋଇ
ସମୁଦ୍ରରେ ପ୍ରତିବିମ୍ବ ହୋଇ ମିଶିଯାଏ
ତାରାଙ୍କର ଅନ୍ଧାରରେ ହଜିଯାଏ
ମଧ୍ୟାହ୍ନର ଆଲୁଅରେ ଅଦୃଶ୍ୟ ହୋଇଯାଏ

ନୀଳବର୍ଣ୍ଣର ସ୍ପର୍ଦ୍ଧାକୁ ଭାଙ୍ଗିବାକୁ ଯାଇ
ଇନ୍ଦ୍ରଧନୁରେ ନିଜକୁ ସଜାଇଦିଏ ଆକାଶ
ପ୍ରମାଣିତ କରିଦିଏ ଯେ
ତାର ରଙ୍ଗ କେବଳ ଆକାଶ ହିଁ
ଆଉ କିଛି ନୁହେଁ

ସ୍ୱପ୍ନମାନେ ଊର୍ଦ୍ଧ୍ୱମୁଖୀ ହୋଇ
ଅସୀମତାକୁ ଆହୁରି ବିସ୍ତାରିତ କରିଦିଅନ୍ତି
କିନ୍ତୁ ଆକାଶ ଯେତେବେଳେ
ସେମାନଙ୍କୁ ଅସ୍ୱୀକାର କରିଦିଏ
ଅନନ୍ତ ଶୂନ୍ୟରେ ଧକ୍କା ଖାଇ
ସେମାନେ ପୁଣି ଫେରି ଆସନ୍ତି
ନିଜ ନିଜ ପୃଥିବୀର ସଂକୁଚିତ ସୀମାନ୍ତକୁ

ଯେ ଯେଉଁଭଳି ଚାହେଁ
ତାକୁ ସେଇଭଳି ଦେଖାଦିଏ ଆକାଶ

ନିଜର ବର୍ଣ୍ଣବହୁଳତା ଭିତରେ
ସବୁ ପ୍ରଶ୍ନର ଉତ୍ତର ଗୋପନ ରଖି
ଅଦୃଷ୍ଟ ଭଳି ଦେହମନକୁ
ଘେରି ରହିଥାଏ ଆକାଶ
କେବଳ କେବେ କେବେ
ନିଜକୁ ସମ୍ପୂର୍ଣ୍ଣ ବିବର୍ଣ୍ଣ କରିଦେଇ
ସମସ୍ତଙ୍କୁ ମନେପକାଇ ଦିଏ ଯେ
ଏପରି କେତେ ଜୀବନ ଅଛି
ଯେଉଁଠାରେ କିଛି ବି ଘଟିବ ନାହିଁ

## ଛୋଟ ମୋର ଗାଁ

ଛୋଟ ମୋର ଗାଁଟି
ଆଉ ଅଜଣା ହୋଇ ରହିନାହିଁ
ଭୂଗୋଳର ପୋଥି ପତ୍ର
ଓ ଆନ୍ତର୍ଜାତିକ ଖବରକାଗଜରେ
ଚଢ଼ି ସାରିଲାଣି ତାର ନାଁ
ଆମର ଦରକାର ନାହିଁ
ପୃଥିବୀର ମାନଚିତ୍ର ବାହାରେ
ଆଉ କୌଣସି ପରିଚୟ

କେତେ ଭଙ୍ଗାଗଢ଼ା ଭିତର ଦେଇ
ମୋ ଗାଁର ଧୂଳିମାଟି ଉପରେ
କେତେ ଇତିହାସ ତିଆରି ହେଲାଣି
ତାର ଛୋଟ ଚଉସୀମା ଭିତରେ
ବର୍ଗୀ ଚାଲିଗଲେ ଘୋଡ଼ା ଝପଟାଇ
ଧାନକ୍ଷେତରେ ପଙ୍ଗପାଳ ଭଳି

ଘର ଭିତରକୁ ଧସି ଆସି
ରକ୍ତ ସହିତ ମାନମହତ ଶୋଷିନେଲେ
ଜମିଦାରଙ୍କ ପିଆଦା ପାଇକ ଲାଠିଆଳ

ବନ୍ୟା ବାତ୍ୟା ମରୁଡ଼ି ମଡ଼କରେ
ଆମର ଘର ଜମିବାଡ଼ି ସଂସାର
ଭାସିଗଲା ଉଡ଼ିଗଲା
ଜଳିଗଲା ଭାଙ୍ଗିଗଲା ଉଜୁଡ଼ିଗଲା
ଯାହା କିଛି ବାକି ରହିଥିଲା
ତାକୁ ଆସି ଲୁଟି ନେଲେ
ପୋଲିସ ଅମଲା ଦଲାଲ
ଆମ ପାଖରେ ରହିଗଲା କେବଳ
କିଛି ବି ନ ଥିବା ସହିତ
ଇତିହାସର ପ୍ରବଞ୍ଚନା ସବୁ

ଆମେ ମୃତ୍ୟୁର ସନ୍ତାନ
ମରଣ ମୁହଁରୁ ବାରମ୍ବାର ଫେରି ଆସି
ଆମେ ପୁଣି ସଜାଡ଼ି ଦେଉଥିଲୁ
ଆମର ଭଙ୍ଗା ଉଜୁଡ଼ା ଛୋଟ ଗାଁଟିକୁ
ଆମେ ପୁଣି ଡାକରା ଦେଉଥିଲୁ
ସଂବର୍ତ୍ତକ ମେଘ ଓ କାଳବୈଶାଖୀକୁ
କ୍ଷେତ ଉପରେ ବର୍ଷୁଥିବା ଅଗ୍ନିକଣାକୁ
ମାଡ଼ି ଆସୁଥିବା ପ୍ରଳୟର ପୟୋଧିକୁ
କେବେ ବି ନ ସରୁଥିବା ମନ୍ୱନ୍ତରକୁ

ଏଥର କିନ୍ତୁ ଯେତେବେଳେ
ଆମର ପିଲା ମାଇପ ବାପ ଅଜା
ଭାସିଗଲେ ହଜିଗଲେ ମରିଗଲେ
ଆମେ ଯେଉଁମାନେ ରହିଗଲୁ
ଆମର ଦୈବ ଦଶା ଭିତରୁ
ବାହାରି ଆସିବା ଆଗରୁ ହିଁ

ଆମ ଗାଁରେ ଆସି ଡେରା ପକାଇଲେ
ବିଲୁଆ ଓ ଶାଗୁଣାମାନଙ୍କ ସହିତ
ସାମ୍ବାଦିକ ସ୍ୱେଚ୍ଛାସେବୀ ଦେଖଣାହାରି
ଆମେ ତାଙ୍କୁ ବି ଆଦରି ନେଲୁ
ଆମର ଦୁଃଖ ଯନ୍ତ୍ରଣା ଶୋକର
ଉତ୍ତରାଧିକାର ସହିତ

ସେମାନଙ୍କ କୃପାରୁ ଆଜି
ଆମେ ଆଉ ଆମ ମଫସଲ ଗାଁର
ଛୋଟ ପରିଧି ଭିତରେ ବନ୍ଦ ନାହୁଁ
ଆମେ ବିଶ୍ୱ ପରିବାରର ସଦସ୍ୟ
ଆମର ଘର କଥା ସର୍ବସାଧାରଣ ସଂପତ୍ତି
ନିଜ ନିଜ ଘରେ ବସି ଟେଲିଭିଜନରେ
ଆମର ନିର୍ଲଜ୍ଜ ଦୁଃଖକୁ ଦେଖୁଛନ୍ତି
ଦୂର ଦୂରାନ୍ତର ଲୋକମାନେ
ଆମର ଲଙ୍ଗଳା ପିଲାଙ୍କର ଚିତ୍ର
ବିଦେଶର ଖବରକାଗଜ ମଣ୍ଡନ କରୁଛି
ଆମର ପଡ଼ୋଶୀ ଆମକୁ ଭୁଲିଗଲେଣି
କିନ୍ତୁ ଆମ ପାଇଁ ଭିଖ ଆସୁଛି
ଇଉରୋପ ଓ ଆମେରିକାରୁ
ଆମର ଅଭାବର ସାର୍ବଭୌମ ଆଲେଖ
ଆଜି ଆମର ଅମୂଲ୍ୟ ମୂଳଧନ

ଆମେ ବର୍ତ୍ତମାନ ନିଶ୍ଚିନ୍ତ
ଆଜି ଆମର ସମସ୍ତ ଦାୟିତ୍ୱ
ନେଇ ନେଇଛି ସମଗ୍ର ପୃଥିବୀ
ଆମେ ନିଜକୁ ସମର୍ପଣ କରି ଦେଇଛୁ
ମଣିଷ ଜାତିର ମହାନୁଭବତା ଉପରେ
ଆମ କଥା ବୁଝୁଛନ୍ତି ପ୍ରଥମ ବିଶ୍ୱର ଲୋକ

ମୋ ଭାଇର ଶବ ଉଠାଇବା ପାଇଁ
ମୁର୍ଦ୍ଦାଫରାଶ ଆସୁଛନ୍ତି ଅନ୍ୟ ସହରରୁ
ଆମ ଗାଁ ମୁଣ୍ଡର ଅନ୍ନଛତ୍ରରେ
ବାହାରର ଲୋକ ଆସି ଭାତ ରାନ୍ଧୁଛନ୍ତି
ଆମେ ଗଛ ଛାଇ ତଳେ
ତାସ ଖେଳି ବସି ରହିଛୁ
ରୋଷାଇ ସରିବାର ଅପେକ୍ଷାରେ
ଆମେ ଏଥରକ ମାଗଣା ଖାଇବା ସହିତ
ଅନାୟାସରେ ଉଦରସାତ କରିଦେବୁ
ଆମର ଲଜ୍ଜା ଓ ବୁଦ୍ଧି ବିବେକକୁ

ଯଦିଓ ଆମେ ଜାଣୁ ଯେ
ଆମ ଘରେ କଣାଏ ଦାନା ନାହିଁ
ଆମ ଚୁଲିର ପାଉଁଶ ଶୀତଳ
ଆମ ଦେହରେ ଲୁଗା ନାହିଁ
ଆମର ପିଲାମାନେ ରୋଗରେ ଛଟପଟ
ଆମର ବିଶ୍ୱାସ କିନ୍ତୁ ଅଟଳ
ଏବଂ ଆମେ ମାନି ନେଇଛୁ
କିଛି ଚିନ୍ତା କରିବାର ନାହିଁ ଆମର
ଆମ ଭିକ୍ଷାଥାଳ ଖାଲି ରହିବ ନାହିଁ
ବିଦେଶରୁ ଅଦିନରେ କମ୍ବଳ ଆସିବ
ଅଦରକାରୀ ଔଷଧ ଆସିବ
ଟିଣ ଡବାରେ ଖାଇବା ଆସିବ

ଆମର କୌଣସି ଅଭାବ ନାହିଁ
ଯେ ପର୍ଯ୍ୟନ୍ତ ପୃଥିବୀରେ
ଦୟାମୟ ଲୋକ ଅଛନ୍ତି
ଏବଂ ଆମେ ଆମର
ପରନିର୍ଭରତାରେ ସ୍ୱୟଂ ସଂପୂର୍ଣ୍ଣ

ଆମର କୌଣସି ଦାୟିତ୍ୱ ନାହିଁ
ଇତିହାସର ନୀତି ନିୟମ ପାଇଁ
ଆମେ କେବଳ ଚାହୁଁ
ମାନଚିତ୍ରରେ ସୂଚ୍ୟଗ୍ର ଅବସ୍ଥିତି
ଆମର ଆଂଜୁଳାବଦ୍ଧ ହାତ
ସ୍ୱଚ୍ଛଳ ସଦୟ ଜନସମାଜର
ବଦାନ୍ୟତାର ସାଧନ
ଆମର ଭିକ୍ଷାପାତ୍ରର ମାଧ୍ୟମରେ
ପ୍ରଥମ ବିଶ୍ୱର ଅପରାଧୀ ବିବେକ
ନିଜକୁ ଭାରମୁକ୍ତ କରିଦେବ
ଆମେ ସ୍ୱେଚ୍ଛାରେ ହଜିଯିବୁ
ନିଜସ୍ୱକୁ ବିସର୍ଜନ କରି
ସେମାନଙ୍କର ଅପାର କରୁଣାରେ

ଗାଁ ଦାଣ୍ଡରେ ପଡ଼ିଥିବା
ମରଣମୁଖୀ ଲୋକଟି ଚାରିପାଖେ
ବର୍ତ୍ତମାନ ଆମେ କେହି ନାହୁଁ
ଆମ ବଦଳରେ ତାକୁ ଘେରି ରହିଛନ୍ତି
ସମାଜସେବୀ ସାମ୍ବାଦିକ ଫଟୋଗ୍ରାଫର
ସମାଜର ସମସ୍ତ ଋଣ ଶୁଝିଦେଇ
ସେମାନେ ତାର ଅନ୍ତିମ ସମୟକୁ
ତୋଳି ନେଇ ଅମର କରିଦେବେ

ସେଇ ହେବ ଆମ ମୃତ ଆତ୍ମାର ସ୍ୱର୍ଗ
ସେଇ ହିଁ ହେଉଛି ଆମର
ଖାଲି ପେଟ ଖୋଲା ଦେହ ମଲାମନରେ
ମଣିଷ ଭଳି ବଞ୍ଚିଥିବା ନ ଥିବାର
ଶେଷ ଆଶା ଓ ଭବିଷ୍ୟତ

# ଅନ୍ଧାର

ବେଳେ ବେଳେ ନିଜକୁ ସଂକୁଚିତ କରି
ମନ ଭିତରେ ପଶିଯାଏ ଅନ୍ଧାର
ତାର ସଘନତା ଭିତରେ ଲୁଚିଯାଏ
ଗର୍ବ ଅହଙ୍କାର ଅସ୍ମିତାର
ପ୍ରତିଫଳିତ ଆଲୋକ ପୁଂଜ ସବୁ

ପୁଣି ଅନ୍ଧାର ଯେତେବେଳେ
ନିଜର ପରସ୍ତ ପରସ୍ତ ଖୋଲି ରଖିଦିଏ
କାନ୍ଥମାନଙ୍କୁ ଭାଙ୍ଗି ଦେଇ
ପ୍ରତିଟି କୋଠରୀକୁ ପରିଣତ କରିଦିଏ
ଗୋଟିଏ ଗୋଟିଏ ଅଜ୍ଞାତ ମହାକାଶରେ
ତାର ବ୍ୟାପ୍ତି ଭିତରୁ ଅସମ୍ଭବ ଖୋଜିବା
ପ୍ରତି ଗୃହସ୍ଥର ସଯତ୍ନ ସଂଚିତ ସ୍ୱପ୍ନଙ୍କୁ

ଦ୍ୱିତୀୟାର ଜହ୍ନ ସହିତ ପ୍ରତିଯୋଗିତା କରି
ଦଉଡୁଥାଏ ଅଧାରାତିର ଏକ୍ସପ୍ରେସ ଟ୍ରେନ
ଅନ୍ଧାର ଲିଭାଇ ଦିଏ ଗୋଟିଏ ଗୋଟିଏ କରି
ଜନପଦ ନଗର ଓ ଚରାଚର
ତାର ପ୍ରହେଳିକାକୁ ଭେଦ କରି
ଆଖିର କୌତୂହଳ ପହଞ୍ଚି ପାରେ ନାହିଁ
ଆଗାମୀ ସକାଳର ଶେଷ ଷ୍ଟେସନରେ

ଇତସ୍ତତ ତାରାଙ୍କର ତମସାରେ
ଗ୍ରହ ନକ୍ଷତ୍ରରାଶି ଲୁଚିରହି

ଭବିଷ୍ୟତକୁ ନିୟତିର ପୂର୍ବାଭାସ ଶୁଣାନ୍ତି
ସୂର୍ଯ୍ୟର କାଳିମା ଆସି
ଦୃକ ଶକ୍ତିକୁ ଉଖାରି ନେଇଯାଏ

ଅନ୍ତସ୍ତଳର ଅତଳ ନିରାଲୋକରେ
ହଜିଯାଏ ଅସଂପୂର୍ଣ୍ଣ ପିଲାଦିନ
ରାତିର ଶୀର୍ଷରୁ ଭାଙ୍ଗି ଖସିପଡ଼େ ମନ
ମୃତ ଉଲ୍‌କାର ଅବଶେଷ ଭଳି
ଅପ୍ରେମର ଊଷର ଉପରେ
ଦର୍ପଣରୁ ଅସ୍ପଷ୍ଟ ହୋଇ ଲିଭିଯାଏ
ଶବ୍ଦର ହାଲୋଳ ପ୍ରତିବିମ୍ବ
ସମୟର ଉଜାଣି କାଟି
ଜଳପ୍ରପାତ ଫେରିଯାଇ ପହଞ୍ଚେ
ନିଜର ଅସହାୟତାର କ୍ଷୀଣ ଉତ୍ସରେ
ଧର୍ମ ଫେରିଯାଏ ନିଜର କୃଚ୍ଛ୍ର ସାଧନାକୁ

ଅନ୍ଧାର ଅନାଇ ରହିଥାଏ
ନିଜର ଅୟୂତ ଅଦେଖା ଆଖି ଦେଇ
ଅସ୍ତବ୍ୟସ୍ତ ଅକ୍ଷରମାନଙ୍କର
ମାଳମାଳ ନିଶାଚର ପକ୍ଷୀ
ନିଜର ବ୍ୟୁତ୍ପତ୍ତିର ଡେଣା ଝପଟାଇ
ନିରବଚ୍ଛିନ୍ନ ଚେଷ୍ଟାରେ ରହିଥାନ୍ତି
ଦୁରୂହତାକୁ ସହଜ କରିବାକୁ
କବି ବାହାରି ପଳାଇଯାଏ
କବିତାର ଶେଷ ଦୁଇଟି ଧାଡ଼ି ଭିତରେ
ଅଭିପ୍ରାୟର ଅଜଣା ଭିତରେ ବାଟ ଖୋଜି

ଏପରି ଏକ ଶ୍ୱାସରୁଦ୍ଧ ଅବସ୍ଥିତିକୁ
ଯେଉଁଠାରେ ଅନ୍ଧ ଶବ୍ଦମାନେ ଛଟପଟ ହେଉଥାନ୍ତି
ଅଭାବର ଅବତଳ ବ୍ୟାପ୍ତିରେ

ଅର୍ଥ ନାହିଁ ବ୍ୟାଖ୍ୟା ନାହିଁ ନିଷ୍କର୍ଷ ନାହିଁ
ପ୍ରେମ ନାହିଁ ମୃତ୍ୟୁ ବି ନାହିଁ
କେବଳ ବର୍ତ୍ତମାନର ଅନ୍ଧାରରେ ନିହିତ
ଅପ୍ରମେୟ ପ୍ରାଚୀନ ଅନ୍ଧାର

# ମାନି ନେବା ପରେ

ଅନାଗତ ସକାଳକୁ ଅପେକ୍ଷା ନ କରି
ଫେରିଯିବାର ରାସ୍ତା ଖୋଜିନିଏ
ଅମୃତର ସନ୍ଧାନରେ ବାହାରିଥିବା
ଦୁଃସାହସୀ ପଦାତିକ

ସ୍ୱପ୍ନର ସରସ୍ୱତୀ ତଟରେ
କାହିଁ କେତେ କାଳରୁ
ଆଶା ଧରି ବସି ରହିଥିବା ଲୋକଟି
ଆକାଶରେ ଘେରି ଆସୁଥିବା
ବର୍ଷଣ ମୁଖର ମେଘ ପାଖରୁ
ମୁହଁ ଫେରାଇ ନିଏ
ନିଜର ଆଜନ୍ମ ଶୋଷକୁ ଭୁଲିଯାଇ

ଦୁର୍ବିନୀତ କ୍ରାନ୍ତିକାରୀ
ହାତ ମୁଠାକୁ ଶିଥିଳ କରିଦିଏ
ମୁହଁକୁ ତଳକୁ ପୋତି ଶୁଣିନିଏ
ବିଚାରକର ଅତି ଅଯୌକ୍ତିକ ନିର୍ଣ୍ଣୟ
ନିର୍ଲିପ୍ତ ଓ ନିର୍ବିକଳ୍ପ ହୋଇ
ହସପିଟାଲର ଜୀବାଣୁମୁକ୍ତ ଶେଯରେ
ବନ୍ଧା ପଡ଼ିଥିବା ବ୍ୟାଧିଗ୍ରସ୍ତ ଲୋକଟି

ପୂରାପୂରି ଅସ୍ୱୀକାର କରିଦିଏ
ବିନ୍ଦୁ ବିନ୍ଦୁ ରକ୍ତର ଆଶ୍ୱାସନାକୁ
ନିଜ ହାତରେ ଟାଣି ଛିଣ୍ଡାଇ ଦିଏ
ଜୀବନ ସହିତ ତାକୁ ଯୋଡ଼ି ରଖିଥିବା
ଯାନ୍ତ୍ରିକ ଶିରା ପ୍ରଶିରାକୁ

ରାସ୍ତାର ନିର୍ଜନ ଅନ୍ଦିକନ୍ଦି ଦେଇ
ଅନ୍ଧାରର ଉଜୁଡ଼ା ସ୍ୱର ଆସି
ବାୟୁମଣ୍ଡଳର ଶୂନ୍ୟତାକୁ
ଆହୁରି ସଘନ କରିଦିଏ
ନିଜର ଚିତ୍କାରକୁ ଫେରାଇ ନିଏ
ଉନ୍ମାଦନାରେ ଅସ୍ଥିର ଅଦିନ ଝଡ଼

ଡାଳ ଉପରେ ଛଟପଟ ପକ୍ଷୀ
ଶେଷଥର ପାଇଁ ଅନାଏ
ଆଖପାଖର ଶବ୍ଦର ଉତ୍ସକୁ
ବର୍ଣ୍ଣମାନଙ୍କର ଆତିଶଯ୍ୟରେ
କିଛି ଆଉ ବୋଧଗମ୍ୟ ହୁଏ ନାହିଁ
ସେ ପୁଣି ଫେରିଯାଏ ତାର
ଆକାଶର ଅଜଣା ଭିତରକୁ

ପ୍ରେମ ନାହିଁ ଅପ୍ରେମ ନାହିଁ
ଦୁହେଁ ମୁହାଁମୁହିଁ ବସିଥାନ୍ତି
ଭଦ୍ରତାର ସୁରକ୍ଷା କବଚ ଭିତରେ
ଥଣ୍ଡା ହେଉଥିବା ଚା କପ୍‌ର ଧୂଆଁ
ଟେବୁଲ ଉପରର ନିରାସକ୍ତ ଦୂରତ୍ୱକୁ
ରେଖାଙ୍କିତ କରୁଥାଏ
ବାର୍ତ୍ତାଳାପ ଅବ୍ୟାହତ ରହିଥାଏ

ସୌଜନ୍ୟର ବାକ୍ୟାଂଶମାନ ଦେଇ
ସମୟ ତିଳ ତିଳ କଟୁଥାଏ
ନ କହିବାକୁ ଚାହୁଁଥିବା ଶବ୍ଦକ୍ରମରେ
ଉଭୟ ଭଲଭାବେ ଜାଣନ୍ତି ଯେ
କାହାରି ଆଉ କିଛି କହିବାର ନାହିଁ

## ଏକା ଏକା

ଖାଲି ଶେଯ ପଡ଼ି ରହିଥାଏ
ନିଜର ଶୂନ୍ୟତା ଉପରେ ଆଉଜି
ପରସ୍ପରର ଅପେକ୍ଷାହୀନ ଅବଧି
ଘରସାରା ଉଡ଼ିବୁଲି
ଶେଷରେ ଯାଇ ନିଜକୁ ଲୁଚାଇ ଦିଏ
ନିଃସଂଗତାର ଅନ୍ତରଂଗ କୋଣରେ

ବାହାରେ ଆଚମ୍ବିତ ବିଜୁଳି
ନିଦରୁ ଚମକି ପଡ଼େ
ଅଧାରାତିକୁ ମନେ ପକାଇ ଦିଏ
କାହିଁ କେତେଦିନ ତଳର ଅଂଗୀକାର
ଯାହାର କଠୋର ସର୍ତ୍ତ ସବୁ
କେବେ ପୂରଣ ହେବାର ନଥିଲା
ମେଘ ନିଜକୁ ସଂକୁଚିତ କରି
ତଳକୁ ଓହ୍ଲାଏ ଅପ୍ରତିଭ ହୋଇ

ଘରର ଚାରି ସୀମାନାକୁ ଛାଡ଼ି

ବର୍ଷା ଆଉ କେଉଁଆଡ଼େ ଯାଏ ନାହିଁ
ବର୍ତ୍ତମାନକୁ ଅଦୃଶ୍ୟ କରିଦେବା ପାଇଁ
କୋଠରୀ ଭିତରେ ଛାଇ ଘେରି ଆସନ୍ତି
ସମୟ କିନ୍ତୁ କିଛି ବି ବୁଝେ ନା
କେବଳ ଛଟପଟ ହେଉଥାଏ
ଅତୀତରୁ ବାହୁଡ଼ି ଆସିଥିବା
ଇନ୍ଦ୍ରିୟାନୁଭୂତିର ଉଚ୍ଚାଟ ଭିତରେ

ଭୁଲିଯାଇଥିବା ଦିନସବୁ
ନିଜକୁ ଆଶ୍ୱାସନା ଦେଉଥାନ୍ତି
ଆକାଶ ଓ ପୃଥିବୀ ବାର୍ତ୍ତାଳାପରେ ବ୍ୟସ୍ତ
ବର୍ଷା ମେଘ ପାଖକୁ ଯାଇ
ପୁଣି ଫେରିଆସେ ତଳକୁ
ଧାରାପତନର କରାଘାତକୁ ଅଶୁଣା କରି
ଖଟ ତଳର ଏକାନ୍ତ କୋଣମାନଙ୍କରେ
ଗହନ ନିଦର ଶୋଇଯାଇଥାନ୍ତି
ପ୍ରାଚୀନ ସ୍ୱରଶବ୍ଦର ଅସ୍ଥିକଂକାଳ
କୋଠରୀ ନିଜକୁ ବିମୁକ୍ତ କରିଦିଏ
ବାହାରେ ଗଢ଼ି ଉଠୁଥିବା କଥାନକରୁ

ଇଚ୍ଛାର ଅସ୍ୱସ୍ତି ଭିତରେ
ଦେହମାନଙ୍କ ଦାବୀର କୋଳାହଳ
କିଛି ଅକିଂଚନ ସ୍ମୃତି ଆତଙ୍କିତ ହୋଇ
ଯାଇ ଆଶ୍ରୟ ଖୋଜନ୍ତି
ଖାଲି ଶେଯର ଶୀତଳ ନିର୍ଲିପ୍ତତା ଭିତରେ

# ସ୍ମୃତି ସତ୍ତା

ପଛ କଥାରୁ ମୁହଁ ଫେରାଇ ଆଣିଲେ
ଆଖି ଆଗରେ ସବୁ କିଛି ବିପର୍ଯ୍ୟସ୍ତ
ପବନରେ ଉଡୁଥାଏ ସାମ୍ରାଜ୍ୟର ଦିନଲିପି
ମଦଳାପାଂଜିର ଜୀର୍ଣ୍ଣ ପୃଷ୍ଠାରୁ ଝଡ଼ି ପଡେ
ସିଦ୍ଧି ଓ ସାଫଲ୍ୟର ଭଗ୍ନାଂଶମାନ
ଅଶ୍ୱମେଧର ଘୋଡା କିମ୍ବଦନ୍ତୀକୁ ଝୁଣ୍ଟେ
ମାଟି ପୋତିଦିଏ ଦିଗ୍‌ବିଜୟର ମହାକାବ୍ୟକୁ

ଦଧିନଉତିରୁ ଖସିପଡ଼େ ଜୈତ୍ର ପତାକା
ନୀଳଚକ୍ର ଉଡିଯାଏ କାଳବୈଶାଖୀରେ
ନର୍ତ୍ତକୀର ପାଦ ପଥର ହୋଇଯାଏ
ଲୁଣ ପାଣି କୋରିଖାଏ କାରୁକଳାର ଦମ୍ଭ
ବାଲି ତଳେ ହଜିଯାଏ ପରଂପରାର ପ୍ରାଚୀନ ଶିଖର

ଫସଲ ଅନାଇ ରହେ ଶୁଖିଲା ଶୂନ୍ୟକୁ
ବାଲି ଚରିଯାଏ ଶ୍ୟାମଳ ସମ୍ଭାବନା ଉପରେ
ବାତ୍ୟାରେ ଉଜୁଡ଼ିଯାଏ ସ୍ୱପ୍ନର କୁଡ଼ିଆ ସବୁ
କେବଳ ଅନ୍ଧାରର ଭୟଙ୍କର ଲହରୀରେ
ଅନନ୍ତକାଳର ପତ୍ରଟି ବିଚଳିତ ହେଉଥାଏ

ଯୁଦ୍ଧ ଭୂମିର ଶୀତଳ ପାଉଁଶ ଉପରେ
କଂକାଳ ନିଦରେ ଶୋଇଯାଇଥାଏ
ଜଂକ ଲାଗିଯାଇଥିବା ତରବାରୀକୁ
ଅଳସ ହାତ ମୁଠାରେ ଧରି
ତା ଆଡ଼କୁ ନ ଅନାଇ
ଆଗାମୀ କାଲିର ରାସ୍ତା
ଅନ୍ୟ ଦିଗକୁ ବାଟ ଖୋଜିନିଏ

ଶୃଙ୍ଖଳା ଗଡ଼ଖାଇର ସୀମାନ୍ତ ଦେଇ

ଅନ୍ଧ ହୋଇଯାଇଥିବା ଲୋକଟି
ଛକ ଉପରେ ଠିଆ ହୋଇ
ସ୍ୱର୍ଣ୍ଣଯୁଗକୁ ବାଟ ଖୋଜୁଥାଏ
ଅକାଳ ସମୟ ଆସି ଧକ୍କା ଖାଉଥାଏ
ସ୍ଥାଣୁ ହୋଇ ରହିଥିବା ଘଡ଼ିସନ୍ଧିରେ
ଇତିହାସ ଛଟପଟ ହେଉଥାଏ
କଠୋର ସତ୍ୟର ବର୍ତ୍ତମାନ ଉପରେ
ଅତୀତ ଆଡ଼କୁ ଅନାଇ ବସି ରହିଥିବା ବେଳେ
ଭବିଷ୍ୟତ ପୂରାପୂରି ପାଶୋରି ହୋଇଯାଏ

# ପୋଖରାନ

ଆଦୌ ସହଜ ସାପେକ୍ଷ ନୁହେଁ
ସେଠାକୁ ବାଟ ଖୋଜି ପହଞ୍ଚିବା
ପୋଖରାନ ଯିବାକୁ ହେଲେ
ଅନେକ କିଛି ତ୍ୟାଗ କରିବାକୁ ହୁଏ
ପଛରେ ଛାଡ଼ି ଆସିବାକୁ ହୁଏ
ମାନବିକତାର ମୂଲ୍ୟ ମାନ୍ୟତା
ଓ ଜୀବନଯାପନର ଯୁକ୍ତିମାନ
କ୍ଷୁଧା ଅନାହାର ରିକ୍ତତା ଦେଇ
ଇତିହାସର ପୋଡ଼ାଭୂଇଁ ଉପରେ ତିଆରି
ସେଠାକୁ ଯିବାର ରାସ୍ତା

ପୋଖରାନ ଯିବାବେଳେ
ରାସ୍ତାରେ ଅବଶ୍ୟ କାରଗିଲ ପଡ଼ିବ
ଯଦି ସେଠାରେ ଅଟକି ନ ଯାଇ
ଅନ୍ଧ ଭବିଷ୍ୟତକୁ ଆଖିରେ ରଖି
ଆଗକୁ ଆହୁରି ଆଗକୁ ଯାଅ
ଖୁବ ବେଶି ଦୂର ନୁହେଁ
ପୋଖରାନରୁ ହିରୋଶିମା

ପୋଖରାନ ହେଉଛି
ବିଶ୍ୱରୂପର ପ୍ରଜ୍ୱଳିତ ମୁଖଗହ୍ୱର
ସେଠାରେ ଲୋକ କ୍ଷୟକରୀ
ଅସମୟର ରାଜତ୍ୱ
କୌଣସି ସଂଜୀବନୀର ସମ୍ଭାବନା ନାହିଁ
ତାର ବିଷାକ୍ତ ଭୂମଣ୍ଡଳରେ
ସେଠାରେ ଅକାଳ ହିଁ ନିୟାମକ

ସର୍ବଗ୍ରାସୀ ଆଲୋକର ନିର୍ମମ ଜ୍ୟୋତି
ଆଖିରୁ ଦୃଷ୍ଟିଶକ୍ତିକୁ ଟାଣିନିଏ
ସହସ୍ର ସୂର୍ଯ୍ୟର ବିସ୍ଫୋରଣରେ
ଅନ୍ଧାର ହୋଇଯାଏ ଚରାଚର
ମୃତ ନିସ୍ତରଂଗ ସମୁଦ୍ର
ଓ ପ୍ରଜ୍ୱଳିତ ବାୟୁମଣ୍ଡଳ ବାହାରେ
ଜୀବନର କୌଣସି ଚିହ୍ନବର୍ଣ୍ଣ ନାହିଁ
ଧୂଆଁ ଓ ପାଉଁଶର ଅବଶେଷ ଭିତରୁ
ଅଟ୍ଟହାସର ପୈଶାଚିକତାରେ ଜଡ଼ି
ସର୍ବନାଶର କଳା ଘୋଡା ଚଢ଼ି ଆସେ
ଆସନ୍ନ କଲ୍‌କି ଅବତାର

ଜୀବିକାର ସନ୍ଧାନୀ ଲୋକଟି
ବିମୂଢ଼ ହୋଇ ରହିଯାଏ

ଆଖିକୁ ଅନ୍ଧ କରି ଦେଉଥିବା
ଆଲୁଅର ମହୋତ୍ସବ ଆଗରେ
ଆଛନ୍ନ ଦିନଟି ଶେଷରେ
ସେ ମୁହଁପୋତି ଫେରିଆସେ
ତାର ଭଙ୍ଗାରୁଜା କୁଡ଼ିଆର
ନିରନ୍ନ ଅନ୍ଧାର ଭିତରକୁ

## ଚିତ୍ରଲେଖା

ସବୁବେଳେ ଆଖି ଆଗେ ଆଗେ ରହିଥାଏ
ଚେତନା ଅବଚେତନାର ପ୍ରତିଟି ମୁହୂର୍ତ୍ତରେ
ନିଜକୁ ଶବ୍ଦରେ ବର୍ଣ୍ଣରେ ସଜାଇ
ଦେହମନକୁ ଆଛନ୍ନ କରି ରଖିଥାଏ
ମଣିଷର ଅନ୍ତରଙ୍ଗ ଭବିତବ୍ୟ ଭଳି

ଖୋଜୁଥିବାର ବିଭିନ୍ନ ପର୍ବମାନଙ୍କୁ ଦେଇ
ଭାବବିହ୍ୱଳ ଦିନଟି ସରିଆସେ
ହାତରୁ ଖସି ତଳେ ପଡ଼ିଯାଏ
ସ୍ୱପ୍ନର ପ୍ରାଚୀନ ପାଣ୍ଡୁଲିପି
ଆଖିର ଆତୁରତା ହଜାଇ ଦିଏ
ଆସ୍ଥାର ଶେଷ ଆଲିଂପନକୁ
ଆକାଶରେ ଖଂଜି ହୋଇଯାନ୍ତି
ଭାସ୍କର୍ଯ୍ୟର ଭଂଗୁର ପଂକ୍ତିମାନ
ଅକ୍ଷର ଭିତରୁ ଉଙ୍କିମାରେ
କବିତାର ବିବର୍ଣ୍ଣ ସାୟାହ୍ନ

କଳ୍ପନା ବିଳାସର ମୋଡ଼ ଉପରେ
ଅଟକି ରହିଥିବାର ଅସ୍ଥିର କ୍ଷଣରେ
ଆନମନା ପାଦ ନିଜେ ନିଜେ ଖୋଜିନିଏ
ଆପଣାର ଅତୀତ ଉପରେ ରେଖାଙ୍କିତ
ଆଗକୁ ଯିବାର ଅଜଣା ରାସ୍ତାକୁ

ଏଠାରେ ପ୍ରତ୍ୟୟ ଓ ପ୍ରତିଶ୍ରୁତିର
ଅସମ୍ଭବ ସମାବେଶ ଭିତରେ
କେହି କାହାରି ବଶବର୍ତ୍ତୀ ନୁହନ୍ତି
ନା କଳ୍ପନା ନା ଶବ୍ଦ ନା ରଂଗ
ଏଠାରେ କେବଳ ପାଇବାର ଚେଷ୍ଟା
ସେହି ଅମୂର୍ତ୍ତ ଶରୀରକୁ
ଯାହା କେବେ ବି କେଉଁଠାରେ ବି
ସହଜରେ ଧରାଛୁଆଁ ଦିଏ ନାହିଁ
ନା କବିତାରେ ନା ଚିତ୍ର ପ୍ରତିମାରେ

## କାଶୀପୁର

ଏଥର କଳାହାଣ୍ଡିକୁ ଭୁଲିଯାଅ
ପର୍ଯ୍ୟଟନର ମାନଚିତ୍ରରେ
ଏ ବର୍ଷର ତୀର୍ଥ ହେଉଛି କାଶୀପୁର

ଏଠାରେ ଇନ୍ଦ୍ରଦେବତା ପ୍ରସନ୍ନ
ଧାନକ୍ଷେତରେ ସବୁଜ ବିପ୍ଳବର ଲହରୀ
ଗୋଦାମ ଘରେ ଉଛୁଳି ପଡୁଥିବା ଶସ୍ୟ ସମ୍ଭାର

ହାଟ ବଜାରରେ ଆହାରର ଅତିରେକ

ଏଠାରେ ଲୋକମାନଙ୍କର ତତ୍ତ୍ୱାବଧାନ ପାଇଁ
ସ୍ୱେଚ୍ଛାସେବୀ ସଂସ୍ଥାମାନେ ପ୍ରତିଯୋଗୀ
ଏ ଇଲାକାକୁ ଶିଳ୍ପସମୃଦ୍ଧ କରିବା ପାଇଁ
ଉନ୍ନତ ପୃଥିବୀର ଲୋକ ବଦ୍ଧପରିକର

ତଥାପି ରହି ରହି ଭୋକ ଚିତ୍କାର କରୁଛି
ଭଙ୍ଗା ଚଟାଣ ତଳୁ ଉଠି ବସୁଛି କଂକାଳ
ମା କୋଳରେ ଛୁଆର ଶବ କାନ୍ଦୁଛି
ଆଖିର ତାରା ସବୁ ଲିଭି ଯାଉଛନ୍ତି
ଫସଲ ଭିତରୁ ବାହାରି ଆସୁଛି ଅକାଳ
ମଶାଣି ମାଡ଼ି ଆସୁଛି ଜନବସତି ଭିତରକୁ

ବିଶ୍ୱାୟନର ପ୍ରବକ୍ତାମାନେ କିନ୍ତୁ
ଆଶ୍ୱାସନା ଦେଇଯାଉଛନ୍ତି
ସୁନାବର୍ଣ୍ଣର ଆଗାମୀ କାଲିର
କଳକାରଖାନାରେ ଫଳୁଥିବା ସୁଖର
ସହରରୁ ଆମଦାନୀ ହେଉଥିବା ଉନ୍ନୟନର

ଆଉ କୌଣସି ଅନ୍ତରାୟ ରହିବ ନାହିଁ
ଊର୍ଦ୍ଧ୍ୱଗାମୀ ଉନ୍ନତିର ପଥରେ
ନା ପାହାଡ଼ ନା ନଈନାଳ
ନା ଅନଗ୍ରସର ମଣିଷ
ଆଦିମ ଅଧିବାସୀ ଉଦ୍‌ବାସ୍ତୁ ହୋଇଯିବ
ତାର ଆଦି ଆସ୍ଥାନରୁ
ପ୍ରଗତିର ଅଗ୍ରଦୂତମାନେ ଆସି
ମୃତ ଆତ୍ମାମାନଙ୍କର ଉଜ୍ଜ୍ୱଳ ସ୍ୱପ୍ନ ଭିତରୁ
ତାକୁ ଟାଣି ନେଇ ଫିଙ୍ଗିଦେବେ

ସହରର ଅନ୍ଧନର୍ଦ୍ଦମା ଭିତରକୁ

ତେବେ ପରବାସୀ ପର୍ଯ୍ୟଟକର
ଏତେ କଣ ଜାଣିବା ଦରକାର
କାହାର ଭିଟାମାଟି ଗଛଲତା ପାଣିପବନ
କେଉଁ ପୂର୍ବ ପୁରୁଷ କିଏ ତାଙ୍କର ଦାୟାଦ
କାହାର ଫସଲ କାହା ଝାଳ କାହା ରକ୍ତ
ସମୃଦ୍ଧିର ଶିଖରକୁ ଉଠିବା ପାଇଁ
କାହା ଭଙ୍ଗା ପିଠିର ପାହାଚ

## ରାସ୍ତା

ନିଃସଂଶୟ ଆଗକୁ ଯାଉଥିବା ବେଳେ
କେଉଁ ଅଜଣା ଦୂରତ୍ୱରେ
ଆଖି ଆଗରେ ହଠାତ ଅଦୃଶ୍ୟ ହୋଇଯାଏ
ଯେତେ ଯେଉଁଆଡ଼େ ଖୋଜିଲେ ବି
ଆଉ ମିଳେନାହିଁ ସେଇ ରାସ୍ତା

ଆଉ କେଉଁଠାରେ ପୁଣି
ସାମନାର ମୋଡ଼ ପାରି ହେଲେ ହିଁ
ଦୁଇ ଭାଗ ହୋଇଯାଏ ରାସ୍ତା
ଗୋଟିକରେ ସହଜ ହସଖୁସି
ଆରଟିରେ ଆବୁଡ଼ା ଖାବୁଡ଼ା ଅପ୍ରୀତି
ତିମୁହାଣିରେ ନିର୍ଣ୍ଣୟ ନେବାବେଳେ
କୌଣସି ବି ଉପାୟ ନାହିଁ ଜାଣିବାର
କେଉଁଆଡ଼େ ଯାଏ କେଉଁ ରାସ୍ତା
କାହା ସାଙ୍ଗରେ କିଏ ଯାଇ ମିଶେ

କିଏ କେଉଁ ଜାଗାରେ ବାଟ ଭାଙ୍ଗେ
କିଏ ଅଲଗା ହୋଇ ହଜିଯାଏ
ଏବଂ କିଏ କେତେବେଳେ କେଉଁଠି ପହଞ୍ଚେ

କେଉଁ ଦୂରନ୍ତ ରାଜପଥର
ଜନାକୀର୍ଣ୍ଣ ବିସ୍ତୃତି ଉପରେ
ଅସ୍ତବ୍ୟସ୍ତ ହୋଇ ଧାଇଁଥାନ୍ତି ସମସ୍ତେ
ଦୂରରେ ଚମକୁଥିବା ଆକାଶରୁ
ଅପ୍ରାପ୍ତିର କୁସୁମ ତୋଳିନେବାକୁ
ପୂରା ରାସ୍ତାଟି ଜନପଦ ପାଲଟିଯାଏ

ଅନ୍ୟ ରାସ୍ତାର ନିକାଞ୍ଚନରେ
ଏକାକୀ ପଥିକ ଚାଲିଥାଏ
ମୁହଁକୁ ପୋତି ଧୀର ପଦପାତରେ
ନିଜର କିଛି ନ ଚାହୁଁଥିବାକୁ ଆଶ୍ରା କରି
ସୂର୍ଯ୍ୟ ଅସ୍ତଯାଏ ତାର ଭାଳେଣି ଭିତରେ
ଧ୍ରୁବତାରାର ଅନ୍ଧାର ଘୋଟିଯାଏ

ବାଟବଣା ହୋଇଯାଇଥିବା ବାଟୋଇ
ଯେଉଁ ଅଜଣାରେ ଯାଇ ପହଞ୍ଚେ
ତାକୁ ହିଁ ବିଚରା ଆଦରି ନିଏ
ନିଜର ଇହ ଓ ପରର ରାହା ବୋଲି

ନିଜର ଦ୍ୱିଧାରୁ ବାହାରି ପାରୁନଥିବା
ଅନ୍ତର୍ମୁଖୀ ବିଭ୍ରାନ୍ତ ଲୋକଟି
ନିଜର ଆସ୍ଥାର ମାନଚିତ୍ର ଉପରେ
ଗାରକାଟି ନକ୍ସା ତିଆରି କରେ
ଆଉ ତାର ଗୋଲକଧନ୍ଦା ଭିତରେ
ଅନେକ ରାସ୍ତା ପାରି ହୋଇ

ପୁଣି ଫେରି ଆସେ ନିଜ ଭିତରକୁ

ମାଇଲ ମାଇଲ ଊଷର ଅପନ୍ତରାର
ବନ୍ଧୁର ପରିବ୍ୟାପ୍ତି ଉପର ଦେଇ
ଅଗଣିତ ଲୋକ ଚାଲିଥାନ୍ତି
କେଉଁ ଲୁପ୍ତ ଇତିହାସର ସନ୍ଧାନରେ
ଗନ୍ତବ୍ୟସ୍ଥଳରେ ପହଞ୍ଚିବାର
କୌଣସି ବି ନିଶ୍ଚୟ ନଥାଇ
କେତେ ପ୍ରଜନ୍ମ ପରେ କିନ୍ତୁ
ସେମାନଙ୍କର ଉତ୍ତରାଧିକାରୀମାନେ
ଅତି ଅନାୟାସରେ ପାରି ହୋଇଯିବେ
ସହଜ ସୁଗମ ହୋଇ ଯାଇଥିବା
ସେଇ ରାସ୍ତାଟିର ଛାତି ଉପର ଦେଇ

# ଯେ ଯାହା

କାଗଜ ଉପରେ ଧରି ରଖିବ ସମ୍ଭବ ନୁହେଁ
ସେ ସବୁ ସ୍ମୃତି ଓ ସମ୍ଭାବନା
ଯାହାର ଉପଲବ୍ଧି କେବଳ ଇନ୍ଦ୍ରିୟମାନଙ୍କୁ
ସେ ସବୁର କୌଣସି ରଂଗ ନାହିଁ
ଯାହା ମନ ଭିତରର ଅବଚେତନ ପ୍ରତୀତି
ଶବ୍ଦରେ ସେମାନଙ୍କୁ ବାନ୍ଧି ହେବ ନାହିଁ
ଯାହା ଆସେ ପ୍ରତିଧ୍ୱନି ହୋଇ
ହୃଦୟାତୀତ ଅନୁରଣନରେ

କାହାରି କୌଣସି ବିଶେଷଣ ନାହିଁ
ଯେ ଯେତିକି ସେ ସେତିକି
ଲୋହିତ ସୂର୍ଯ୍ୟର ଯେତିକି ଚାକ୍ଷୁସ ପ୍ରତିଶବ୍ଦ
ଧୀର ସମୀରଣର ଅସ୍ଥିରତାରେ
ହୃଦୟସ୍ପର୍ଶୀ ଯେତେକ ପରିଭାଷା
ଓଠ ଓ ଓଠର ଉନ୍ମୁଖ ସମାର୍ଥ
ସମୁଦ୍ରର ପର୍ଯ୍ୟାୟବାଚୀ ଅସ୍ଥିରତା
ଭୁଲିଯିବାରେ ଯେତିକି ସ୍ମାରକୀ ସମ୍ଭାବନା
ଓ ଭୋକର ଯେଉଁଭଳି ଆକଣ୍ଠ ପରିମାଣ
ଯେ ଯାହା କେବଳ ତାକୁ ହିଁ ବୁଝାଏ

କାହାରି କୌଣସି ବିକଳ୍ପ ନାହିଁ
ଯେ ଯାହା ସେ ତାହା ହିଁ
ପାଦରେ ପଦ୍ମ ଆଖିରେ ଖଂଜନ
ଓଠରେ ବିମ୍ବ ଅଂଗୁଳିରେ ଚଂପକ
ସବୁ କେବଳ କଥାର କଥା
କ୍ଷୁଧା କେବଳ ପରିତୃପ୍ତିହୀନ ଅଗ୍ନି
ଦେହ କେବଳ ଦେହ ଯାହା ବିଦେହ ନୁହେଁ
ଦିବ୍ୟଦୃଷ୍ଟି ବୋଲି କିଛି ନାହିଁ
ଈକ୍ଷଣ ହିଁ ଚକ୍ଷୁର ଏକମାତ୍ର ଲକ୍ଷଣ
ଏବଂ ଦେଖିବା କେବଳ ଦେଖିବା
ପ୍ରଜ୍ଞାର କୌଣସି ବି ଅଧିକାର ନାହିଁ
ଯେ ଯାହାର ସେ ତାହାର

ଇନ୍ଦ୍ରିୟରୁ ଅଜାତ ଆଉ କିଛି ନାହିଁ
ଯାହା ଜଣାଯାଏ ବୁଝିହୁଏ ସେତିକି
କବିତାର କୌଣସି ବିଶେଷଣ ନାହିଁ
ବିକଳ୍ପ ନାହିଁ ନିର୍ଯ୍ୟାସ ନାହିଁ

କବିତା ଅର୍ଥର ବଶୀଭୂତ ହୁଏ ନାହିଁ
ସେ ସେଇଭଳି ଦୋଦୁଲ୍ୟମାନ ରହିଥାଏ
ଜଣାଅଜଣାର ସଂକ୍ଷିପ୍ତ ଧାର ଉପରେ
ଧରା ନ ଦେବା ଦୂରତ୍ୱରେ

# ବିପ୍ରଲମ୍ଭ

ଖବରକାଗଜର ଛନ୍ଦହୀନ ସ୍ତମ୍ଭରେ
ଶୁଷ୍କ ସମାଚାର ଅନ୍ତରାଳରୁ
ଉଙ୍କିମାରେ ଦୁଇଟି କାବ୍ୟିକ ବ୍ୟଂଜନା
ଟେଲିଫୋନର ଅଶରୀରୀ ଅତଳକୁ
ସହଜରେ ଭେଦ କରି ଭାସିଆସେ
ରୂପକରେ ବିମଣ୍ଡିତ ବାକ୍ୟାଂଶ
ଆଖାପାଖର ପ୍ରାତ୍ୟହିକ ଆବହରେ
ଶବ୍ଦ ଧ୍ୱନି ଭାଷା ଓ ଭାବ
ଅସମ୍ଭବ ସମନ୍ୱୟରେ ଏକୀଭୂତ
କବିତା କିନ୍ତୁ ଏସବୁର ବାହାରେ ରହିଥାଏ

ଶବ୍ଦର ଝରକା ବାହାରକୁ ଅନାଇଲେ
ଲାଲ ଝଡ଼ର ଆକାଶ ଭାଙ୍ଗିପଡ଼େ
ଅପ୍‌ସରାମାନେ ମୁହଁକୁ ଲୁଚାଇ ନିଅନ୍ତି
ଦେବଲୋକର କ୍ଳୀବ ଊଷରତା ଭିତରେ
ଏକ ଅଶାନ୍ତ ନୀହାରିକା ପ୍ରସାରିତ ହୋଇଯାଏ
ଅସମର୍ଥ ଅନ୍ତଃସ୍ଥଳର ମୌନ ଦେଇ
ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଯାଏ

ସ୍ତିମିତ ତାରାଙ୍କର ଶିଥିଳ ହସ ଭିତରେ
ଅମାବାସ୍ୟାର ଉତ୍କୀର୍ଣ୍ଣ ମଧ୍ୟାହ୍ନ ହଜିଯାଏ
ମୋର ପରିଚୟର ପ୍ରିୟ ବର୍ଣ୍ଣମାଳା
ଅବସନ୍ନ ହୋଇ ପଡ଼ି ରହିଥାଏ
ନିଜର ବିବିକ୍ତ ସ୍ୱର ଓ ବ୍ୟଂଜନକୁ ନେଇ

ବହି ଥାକରୁ ଆଖିର କୁତୂହଳ ଖୋଜିନିଏ
ଶିରୋନାମାର ଅନବଦ୍ୟ ଶବ୍ଦସମ୍ଭାରକୁ
ଓ ତାକୁ ସଜାଇବାରେ ଲାଗିଯାଏ
ବହୁରୂପରେ ସଂଯୋଜନ କରି
ଉଡୁଥିବା ପୃଷ୍ଠାର ଅନ୍ତରାଳରୁ
ସମ୍ଭାବନାରେ ଭରପୂର ଖଣ୍ଡକାବ୍ୟଟି
ନିଜକୁ ପରିପାଟୀରେ ପ୍ରସାଧିତ କରି
ଆଗରେ ଆସି ଅଳସ ଭାଙ୍ଗେ
ଆଖି ତାକୁ ତୋଳିନେବା ଆଗରୁ କିନ୍ତୁ
ସେ ଯାଇ ଲୁଚି ଯାଇଥାଏ
ଅକ୍ଷର ସଂକୁଳ ଅପନ୍ତରାରେ

ଶେଷରେ ସ୍ୱୀକାର କରିବାକୁ ହୁଏ
ହାତରେ ଆସି ଖସିପଡୁଥିବା ଆକାଶକୁସୁମ
ସ୍ୱୟଂ ରୂପ ନେଇ ସମ୍ଭବ ହେଉଥିବା ସ୍ତବକ
ଆପେ ଆପେ ଆସି ଦେହରେ ଲୋଟିଯିବା ଇପ୍‌ସିତା
ସାକାର ହେଉଥିବା ସକାଳର ସ୍ୱପ୍ନ
ସମସ୍ତେ ଅପ୍ରେମରେ ଅଭିଶପ୍ତ କିନ୍ନରର
ପ୍ରାରମ୍ଭରେ ପ୍ରତିବନ୍ଧ କଳ୍ପନା ବିଳାସ

ଅସମ୍ଭବ ଶବ୍ଦ ଅସମ୍ବନ୍ଧ ପଂକ୍ତି
ଆକୁଳ ବିକଳ ମନର ଲୁପ୍ତ ଉପକଣ୍ଠରେ
ଛିନ୍ନ ବିଚ୍ଛିନ୍ନ ପଡ଼ି ରହିଥାନ୍ତି

ସ୍ମୃତି ସମ୍ବଳିତ ପୁରୁଣା ପ୍ରେମର ଭଗ୍ନାଂଶ ଭଳି
କୌଣସି ପୁନର୍ଜନ୍ମର ପ୍ରତିଶ୍ରୁତି ନ ନେଇ

କଲମର ମୁନ ଏକ ଅପହଞ୍ଚ ଦୂରତ୍ୱ
ସେଠାରେ ଯୁଗ ଯୁଗ ଧରି ରହିଥାଏ
ଏକ ସୀମାହୀନ ଶୂନ୍ୟତାର ଛାଇ
ଯାହା ଆସିବାର ଅଂଗୀକାର ନେଇ
ସବୁବେଳେ ଉଭା ହୋଇ ରହିଥାଏ
ତାହାରି ଅପେକ୍ଷା ହିଁ ସମୟ

# ଗୁଜରାତ ପରେ

ଗୁଜରାତ ପରେ କଣ
ଆଉ କବିତା ଲେଖିବା ସମ୍ଭବ
କବିତା ଲେଖିବା କଣ ସମ୍ଭବ ଥିଲା
ଆଲେକଜାଣ୍ଡ୍ରିଆ ଜଳିଯିବା ପରେ
ନାତ୍‌ସି ଗ୍ୟାସ କୋଠରୀ ପରେ
ହିରୋଶିମା ପରେ ଭିଏତନାମ ପରେ
ଏମରଜେନ୍‌ସି ଓ ବାବରି ମସଜିଦ ପରେ
ନ ଏଗାର ପରେ ଇରାକ ପରେ

କବିତାକୁ କିନ୍ତୁ ନିର୍ବାସିତ କରିବା ସହଜ ନୁହେଁ
କବିତା ଅନାୟାସ ଫେରି ଆସିପାରେ
ପ୍ଳେଟୋଙ୍କର ଗଣରାଜ୍ୟକୁ
ଷ୍ଟାଲିନର ସାଇବେରିଆକୁ
ପୋଖରାନକୁ କଳାହାଣ୍ଡିକୁ

କବିତା ଲିପିବଦ୍ଧ କରିଯାଏ
ହିଂସା ଓ ପତନର ପାଦଚିହ୍ନକୁ
କବିତାର ଅବସାନ ନାହିଁ
ଯେଉଁପରି ଇତିହାସର ଅନ୍ତ ନାହିଁ

କବିତା ଲେଖାହୁଏ
ନିଷେଧାଜ୍ଞା ଫତୱା ଗୁଲାଗ ସତ୍ତ୍ୱେ
ମୌଳବାଦୀଙ୍କର ଭ୍ରୂକୁଟି
ଓ ସେନସର୍‌ର ନୀଳ ପେନସିଲକୁ ନ ମାନି
କବିତା ଲେଖା ହେଉଥାଏ
ବହିର ବହ୍ନ୍ୟୁତ୍ସବର ଅନ୍ତରାଳରେ

ଗୁଜରାତ ପରେ କବିତା ଲେଖାଯିବ
ସେଇ ଗୁଜରାତ ବିଷୟରେ
ସେ କବିତା ଆରମ୍ଭ ହେବ
ଅଯୋଧ୍ୟାର କଳଙ୍କିତ ଅଧ୍ୟାୟରୁ
ଏବଂ ଯାଇ ପହଞ୍ଚିବ
ଗୋଧ୍ରା ଗୁଜରାତ ଦେଇ ମୁମ୍ବାଇରେ

ବାବରି ପୁଣି ଠିଆ ହେଲେ
କବିତା ଘୋଷଣା କରିବ ଯେ
ରକ୍ତରେ ନାମଙ୍କିତ ଇଟା
ଓ ହିଂସାରେ ଖୋଦିତ ପଥର ଦେଇ
ମନ୍ଦିର ତିଆରି ହୁଏ ନାହିଁ
ମନ୍ଦିର ତିଆରି ହୁଏ କବିତା ଭଳି
କଳ୍ପନା ଦେଇ ନିଷ୍ଠା ବିଶ୍ୱାସ ଦେଇ
ମଣିଷର ଛାତି ଭିତରେ

ଗୁଜରାତ ପରେ
ଏପରି କବିତା ଲେଖାଯିବ

ଯାହା ନିଃସନ୍ଦେହ ପ୍ରମାଣ କରିବ ଯେ
ଅଯୋଧ୍ୟାର କୌଣସି ଅବସ୍ଥିତି ନ ଥିଲା
ଆଦିକବିଙ୍କର କଳ୍ପନାର ବାହାରେ

## ଲେଖି ନ ପାରିବା

କବିତା ନ ଲେଖିବାର
ସର୍ବମୋଟ ସାତଟି କାରଣ ଅଛି
ପ୍ରଥମରେ
କେହି ବି କବିତା ପଢ଼ନ୍ତି ନାହିଁ
ଦ୍ୱିତୀୟରେ
କିଛି ବି ସମ୍ଭବ କରେ ନାହିଁ କବିତା
ଇତ୍ୟାଦି ଇତ୍ୟାଦି
ଏପରିକି ଅନେକ ପ୍ରମୂର୍ତ୍ତ କାରଣ ମଧ୍ୟ ଅଛି

ଯେପରିକି ନାତ୍‌ସି ଗ୍ୟାସ କୋଠରୀ
ଏବଂ ହିରୋଶିମା ଓ ଇରାକ

ପୃଥିବୀରେ କିଛି ବି ଅଟକି ଯାଇ ନାହିଁ
କବିତାର ଅବର୍ତ୍ତମାନତାରେ
ଯେ ଯାହାର ଯା ଆସରେ ବ୍ୟସ୍ତ
ନିତ୍ୟ ନୈମିତ୍ତିକ ସଚରାଚରରେ
ଶ୍ମଶାନରୁ ଫେରୁଥିବା ଲୋକଙ୍କର ଉଚ୍ଚ ହାସରେ
ଫଟା ଭୂଇଁରୁ ଶସ୍ୟ ଅଙ୍କୁରି ଉଠୁଛି
ଛୋଟ ଛୁଆଟିର କାନ୍ଦ ମଝିରେ
ମେଘ ଘୁଞ୍ଚିଯାଉଛି ଜହ୍ନମାମୁ ଚାରିପାଖରୁ

କାହାରି ଆଡ଼କୁ ନ ଅନାଇ
ଫୁଲରୁ ଫୁଲକୁ ଉଡ଼ି ବୁଲୁଛନ୍ତି ଶବ୍ଦ
ଶବ୍ଦ ପଲ୍ଲବିତ ହେଉଛି ଅପନ୍ତରା ଉପରେ
ଡାଳରେ ଡାଳରେ ଖୋଷି ହୋଇଯାଉଛି ଶବ୍ଦ
ଭଙ୍ଗା କାନ୍ଥ ଭିତରୁ ଉଙ୍କି ମାରୁଛି ସବୁଜ ଶବ୍ଦ
ପକ୍ଷୀର ଡେଣାରେ ଶୋଇଯାଇଛି ଶବ୍ଦ
ଅଚାନକ ଇନ୍ଦ୍ରଧନୁ ହୋଇ
ଶବ୍ଦ ଚମକି ଉଠୁଛି ଆକାଶରେ
ଅର୍ଥର ଧାରାପାତ ବନ୍ଦ ହେଉ ନାହିଁ

ଏ ସବୁର ଊର୍ଦ୍ଧ୍ୱରେ ଥାଇ
କେଉଁଠି କିଏ କାହାର ନିର୍ବିଶେଷ
କବିତା ଅବିଚଳିତ ରହିଥାଏ
ଅଦିନ ମେଘର ଉଜ୍ଜ୍ୱଳ ସୀମାରେଖାରେ
କବିତା ଜାକିଜୁକି ବସିଥାଏ
ନିଶ୍ଚିନ୍ତ ହୋଇ ସକାଳ ବସର ଭିଡ଼ରେ
ମନଗହନର ଅପହଞ୍ଚକୁ ହାତରେ ଧରି

କବିତା ରହିଥାଏ ଅତ୍ର ତତ୍ର ସର୍ବତ୍ର
ଅଧା ଦେଖିଥିବା ସ୍ୱପ୍ନର ବଳକା ସ୍ମରଣରେ
ଦୈନନ୍ଦିନ ଘରକରଣାର ଆକସ୍ମିକତାରେ
ସୁଦୂରର ଭୁଲିଯାଇଥିବା ଅମୂର୍ତ୍ତତାରେ
ଆଖି ଆଗରେ ନ ଘଟୁଥିବା ବର୍ତ୍ତମାନରେ
ଅଲେଖା କାଗଜର ଆୟତ ଅବିସମ୍ବାଦରେ

କାରଣ ଖୋଜି କିଛି ବି ଲାଭ ନାହିଁ
କେବେ କେବେ କାହା କାହା ପାଖରେ
କିପରି ଆସି ଧରା ଦିଏ କବିତା
ଟେବୁଲ ଉପର ବହି ଥାକରୁ
ଅଭିଧାନ ଖୋଲି ଦେଖିପାରିବ ଯେ
କାରଣ ଓ ଛଳ ସମାର୍ଥକ ନୁହନ୍ତି
ଯେ କବିତାର ଅଯୋଗ୍ୟ
କବିତା କେବେ ବି ତାର ନ ଥିଲା
ଏବଂ କସ୍ମିନ କାଳେ ତାର ହେବ ନାହିଁ

ତଥାପି ତମେ ଯଦି
କବିତା ନ ଲେଖି ପାରୁଥିବାର
ଉପଯୁକ୍ତ କାରଣ ଖୋଜୁଥାଅ
ନିଜର ଶବକୁ ପଚାରି ଦେଖିପାର
ଯଦି ତା ପାଖରେ କୌଣସି ଉତ୍ତର ଥାଏ

# ଫକୀର ମୋହନ

କାଗଜର ଉଷର ଅଭାବ ଉପରେ
ପଲକରେ ଅପସରି ଯାଉଛନ୍ତି
ମାସ ବର୍ଷ ବୟସ ଓ ଶତାବ୍ଦୀ
ସବୁ ଲିପିବଦ୍ଧ କରିବାକୁ ହେବ
ବଂଶଧରଙ୍କ ଭବିଷ୍ୟତ ପାଇଁ
ସିନ୍ଦୂକରେ ବନ୍ଦ ପଡ଼ିଥିବା ସଦାଚାର
ସମୁଦ୍ରରେ ହଜିଯାଉଥିବା ହିତୋପଦେଶ
ଇତିହାସ ଏଡ଼ିଯାଇଥିବା ଘଟନାଚକ୍ର
ସ୍ମୃତିଶକ୍ତି ଲୋପ ପାଇବା ପୂର୍ବରୁ
କେହି ଆସି ବିଶ୍ୱାସଘାତ କରିବା ପୂର୍ବରୁ

ମହାକାବ୍ୟର ନାୟକମାନେ ବାହୁଡ଼ି ଗଲେଣି
ସ୍ୱଧର୍ମର ସୁବିନ୍ୟସ୍ତ ନୀତି ନିୟମକୁ
ଗୋରାକବରର ସମାଧି ପଥର ଉପରେ
ଶିଉଳି ଲାଗି ଲିଭାଇ ଦେଉଛି
ଗାଁ ଅବଧାନର ସିଦ୍ଧିରସ୍ତୁ
ଉପନିବେଶର ଅନ୍ଧ ମୁହାଣ ଆଡ଼କୁ
କୃତ ସଂକଳ୍ପ ହୋଇ ଚାଲିଛନ୍ତି
ଗୋରା ଫଉଜ ପିଆଦା ବରକନ୍ଦାଜ
ଜମିଦାରଙ୍କ ଥାଟବାଟ ପାଲିଙ୍କି ପଲଟଣ
ରାଜ ଉଆସର ଅନ୍ଧାର ଅଳିନ୍ଦରେ
ଆଣ୍ଠୁ ଭାଙ୍ଗି ଠିଆ ହୋଇଛି
କଳଙ୍କି ଲାଗିଯାଇଥିବା ଦୁଃସମୟ
ଅଝାଲ ଟେକି ଜାହାଜ ଚାଲିଯାଉଛି
ସ୍ୱଚ୍ଛ ସ୍ୱପ୍ନର ଅଜଣା ସୀମାନ୍ତକୁ
ଅଲୋଡ଼ା ପିଲାଦିନଟିଏ
ଆନମନା ହୋଇ ଘୂରି ବୁଲୁଛି

ବାଲି ଉପରେ ପାଦକୁ ପାଦ ମାପି
ଉହାଡ଼ରେ ରହି ଅକାଳ ଚରିଗଲାଣି
ପିତୃପୁରୁଷଙ୍କ ସାହାଭରସା
ଉଜୁଡ଼ା ଧାନକ୍ଷେତ ଭିତରୁ
ଏକ ଶୃଙ୍ଖଳା ଦୀର୍ଘଶ୍ୱାସ ଆସି
ବାରମ୍ବାର ଚେତାବନୀ ଦେଇଯାଉଛି
ପ୍ରତିଫଳର ଅନିବାର୍ଯ୍ୟତାକୁ

ଦୋଳି ଦୋଳି ଚାଲିଥିବା ରୂପକଥାକୁ ଟପି
ଛାଇଟିଏ ଚାଲିଗଲା ଘୋଡା ଝପଟାଇ
ଲୁଣି ପବନ କୋରି ଖାଇଗଲା
ଚାଳିରେ ଖୋଷା ବଂଶାବଳୀକୁ
ଗ୍ରାମଦେବୀଙ୍କ ସିନ୍ଦୂର ତଳେ ପୋଛିଗଲା
ଶାସ୍ତ୍ରୀୟ ପଦ୍ଧତିର ପ୍ରବାଦ ସବୁ
ସ୍ୱର୍ଗରୁ ଅନାଇ ରହିଥିବା ଆଖିରେ
କରୁଣାର ବିନ୍ଦୁମାତ୍ର ନାହିଁ
ଗାଁ ମୁଣ୍ଡର ସିରସ୍ତାରେ ବସି
ଶେଷ ବିଚାରର ଅପେକ୍ଷା ବେଳରେ
ନାହାକ ଆଣି ବାଣ୍ଟି ଦେଇଯାଉଛି
ଛୋଟ ଛୋଟ ବୁଝାମଣାର ପାଉତି

ମାଟିର ବାତ୍ସଲ୍ୟକୁ ପଛରେ ପକାଇ
ପିଲାମାନେ ଚାଲିଗଲେ ପ୍ରବାସକୁ
ଆଉ ଜାଣି ହୁଏ ନାହିଁ
ବେଶି ଦୁଃଖଦାୟକ କେଉଁଟି
ବାଧକୀ ଦେହର ନିଃସଙ୍ଗ ଯନ୍ତ୍ରଣା
ନା ମନଗହନରେ ମେଳି କରୁଥିବା
ଶୋକାତୁର ମୁହଁମାନଙ୍କର ଆକ୍ରୋଶ
ବନ୍ଧା ପଡିଥିବା ସମୟ ଆସି

କପାଳ ଉପରେ ଲେଖିଦେଇ ଯାଉଛି
ସ୍ଥବିର ହାତର ଅସରଳ ରେଖାମାନ
ଅନୁକୂଳ ନକ୍ଷତ୍ରର ଆଶୀର୍ବାଦ ଖୋଜି
ପଥର ହୋଇ ଯାଉଛି ପ୍ରତ୍ୟାଶା
ବଳକା ଆୟୁଷ ଖୋଜି ବୁଲୁଛି
ବଞ୍ଚିବାର ଏକ ବୃହତ୍ତର ନିମିତ୍ତ
କାଗଜର ଉଦାସୀନତା ଭରି ଯାଉଛି
ଖସିପଡୁଥିବା ପତ୍ରର ନିରର୍ଥକତାରେ

ଏକାକୀତ୍ୱ ହିଁ ଏକମାତ୍ର ସଖା ଓ ସୁହୃଦ
କେବଳ ଅକ୍ଷର ହିଁ ଅବଲମ୍ବନ
ଶେଷ ଅଧ୍ୟାୟଟି ସଂପୂର୍ଣ୍ଣ ହେବା ପର୍ଯ୍ୟନ୍ତ

## ଓଡ଼ିଆ

ସବୁବେଳେ ସବୁଠାରେ ଥାଏ ଓଡ଼ିଆ
ମୋର ସତ୍ତାର ଦିଗ୍‌ବିଦିଗକୁ ଅବରୋଧ କରି
ମୋର ଅନ୍ତରାତ୍ମାର ମଧ୍ୟ ବିନ୍ଦୁରେ
ମୁହୂର୍ତ୍ତରୁ ମୁହୂର୍ତ୍ତ ବିହ୍ୱଳ କରି
ଧ୍ୱନିତ ପ୍ରତିଧ୍ୱନିତ ହେଉଥାଏ ଓଡ଼ିଆ
ମୋର ଚେତନାର ଅତଳତଳରେ
ମତେ ଆବେଶରେ ଆଚ୍ଛନ୍ନ କରି ରଖିଥାଏ
ମନର ପ୍ରତ୍ୟେକଟି ଅନୁଶାସନ ଦେଇ

ମୁଁ ତାକୁ ଦେଖିପାରେ

ଅଜଣା ବୋଲିର କିଚିରିମିଚିରିରୁ
ବାହାରି ଆସୁଥିବା ଶବ୍ଦମାଳାରେ
ମୁଁ ତାକୁ ଆଘ୍ରାଣ କରିପାରେ
ଇଂରେଜୀ ଅଭିଧାନର ଅପଚିତ ଅକ୍ଷରଲିପିରୁ
ମୁଁ ତାକୁ ଅନାୟାସ ଛୁଇଁପାରେ
ନୀଳ ଆଖି ବିଦେଶିନୀର
ଗୋଲାପୀ ଓଠରୁ ନିସୃତ ସ୍ୱର ତରଙ୍ଗରେ
ମୁଁ ତାକୁ ପ୍ରତ୍ୟକ୍ଷ କରେ
ହିନ୍ଦୀ ସିନେମା ଗୀତର ଶେଷ ଲହରୀରେ
ହୃଦୟର ଯେତେ ଗୋପନୀୟ କଥା
ଯେତେ ଭାଷାରେ ଲେଖା ଯାଇ ଥାଉ ପଛେ
ମୁଁ ତାକୁ ସବୁ ଶୁଣିପାରେ ଓଡ଼ିଆରେ

ମୋ ପାଇଁ ପକ୍ଷୀ ଗୀତ ଗାଏ ଓଡ଼ିଆରେ
ମୋ ପାଇଁ ଲହରୀ ଅତଡ଼ା ଖାଏ
ଆକାଶରୁ ବର୍ଷା ଅଜାଡ଼ି ପଡ଼େ ଓଡ଼ିଆରେ
ବେଙ୍ଗ ରଡ଼ିକରେ ଫେରେଣ୍ଡା ଭୁକେ
ଛୁଆ ରାହା ଧରେ ଫେରିବାଲା ଡାକେ ଓଡ଼ିଆରେ
ସବୁ କିଛି ଲିପିବଦ୍ଧ ହେଉଥାଏ ଓଡ଼ିଆରେ
କଳ କୂଜନ କାକଳୀ କୁହୁ
ରିମଝିମ୍ ରୁମଝୁମ୍ ଟୁପୁର ଟାପର
ସନସନ ଟିକଟିକ କୁଆଁ କୁଆଁ ଓ ଝିଲମିଲ

ଓଡ଼ିଆ ନିତ୍ୟ ନୂତନ ରହିଥାଏ
ଶିଳାଲିପି ଓ ତମ୍ବା ପଟାରେ ଲେଖା
ଅସମତଳ ପ୍ରଶସ୍ତିର ଅତିକଥନରେ
ତାଳପତ୍ର ପୋଥିର ଶୃଙ୍ଗାରୀ ଚେତନାରେ
ହରତାଳୀ କାଗଜର କରଣୀ କୁହୁକରେ
କମ୍ପ୍ୟୁଟର ପର୍ଦ୍ଦା ଉପରେ ଝଲସୁଥିବା

ସମତୁଲ ବର୍ଣ୍ଣମାଳାର ବର୍ତ୍ତୁଳତାରେ

ବାରମ୍ବାର ଆସି ବିବ୍ରତ କରେ ଓଡ଼ିଆ
କଳାହାଣ୍ଡି ନଅଙ୍କର ପେଜ ଦିଅ ମା
କାନ୍ଦଣାର ଅନୁନାସ ଦହଗଂଜ
ବାଟ ଭୁଲି ଛଟପଟ ହେଉଥିବା ଜଣାଣ
ବାତ୍ୟାର ଛାତ ଉଲୁରା ଚିତ୍କାର
ଭାଗବତ ଟୁଙ୍ଗୀର ଦଦରା ଛନ୍ଦପତନ
ଓ ହରିବୋଲର ଚରମ ବିଳୟରେ

ଓଡ଼ିଆ ଆଉଁଶି ଦେଇଯାଏ
ପଥର ମୂର୍ତ୍ତିରୁ ସ୍ଫୁରିତ ସପ୍ତସ୍ୱରରେ
ଓଡ଼ିଆ ଓଦା କରିଦିଏ
ପ୍ରଥମ ବର୍ଷାର ନାନାବାୟା ଗୀତରେ
ଓଡ଼ିଆ ଉଲୁସାଇ ଦିଏ
ଚୋରା ଚାହାଣୀର ଆଳିମାଳିକାରେ
ପିଲାଦିନକୁ ଚମକାଇ ଦିଏ ଓଡ଼ିଆ
ଅବଧାନଙ୍କ କଠାଉରେ ପ୍ରତିଧ୍ୱନିତ ପଣିକିଆରେ
ବର୍ଣ୍ଣବୋଧର ସହଜ ସ୍ୱର ଓ ତୀକ୍ଷ୍ଣ ବ୍ୟଂଜନରେ

ବିଜ୍ଞାପନ ପଟା ଉପରେ ଉଡ଼ି ଯାଉଥିବା
ନାନା ଜାତି ପକ୍ଷୀଙ୍କ କଳରୋଳ
ପ୍ରେମିକ ପ୍ରେମିକାଙ୍କ ଆଖିର ଭାଷା ଉପଭାଷା
ଅଧା ରାତିରେ ଶୂନ୍ୟର ସାଇଁ ସାଇଁ
ଦୂରଗାମୀ ଟ୍ରେନର ଅପସୃୟମାନ ବିଳାପ
ଗର୍ଭଗୃହର ଗାୟତ୍ରୀ ମସଜିଦର ଅଜାନ
ଦୂର ମନ୍ଦିରର ମନ୍ଦ୍ରିତ ଘଣ୍ଟଧ୍ୱନି
ଚାଟୁ ଶଶିଠାର ଓ ଉଢବାଚ
ଇଷିକାର ଓ ସ୍ତନିତ ଶୀତ୍କାର
ଟଗରର ହସ ଝାଉଁ ଗଛର କାନ୍ଦ

ହାୟ ହାୟ ରାଉ ରାଉ ହାଇଁ ପାଇଁ
ସବୁ ଶୁଣାଯାଏ ଓଡ଼ିଆରେ
ଆଃ ଉଃ ଓଂ ଓ ଏ ଐ ଓଃ

ବୈଦିକ ମନ୍ତ୍ରୋଚ୍ଚାରଣରୁ ବାହାରି
ଓଡ଼ିଆ ଚାଲିଯାଏ ଗାଁ ଗହଳକୁ
ଆଦିବାସୀର ପତର କୁଡ଼ିଆରେ
ରନ୍ଧା ମଦ ବାସନାରେ ଟଳମଳ ହୁଏ
ଚାଳ ଭାଡ଼ିରେ ବସି ଘୁମୁରେ
ପାଉଁଜରେ ଝୁମ ଝୁମ ହୁଏ
ପୁଆତୀ ଘରୁ ରାହା ଦିଏ ଗୁହାଳରୁ ହମାଳେ
ପତରା ଝାଡ଼ ଉହାଡ଼ରୁ କୁହାଟେ
ଓଡ଼ିଆ ଚଳଚଞ୍ଚଳ ରହିଥାଏ
ହୁଳୁହୁଳି ଓ ହରିବୋଲର ହାଲୋଳରେ
ଆକାଶର ବ୍ୟାକରଣରେ ପକ୍ଷୀର ସ୍ୱଚ୍ଛନ୍ଦତା ନେଇ
ଯେତେବେଳେ ମୋ ପାଇଁ
ସୃଷ୍ଟିର ବିଲୋପ ହେବ
ଯେଉଁ ମୁହୂର୍ତ୍ତରେ ସବୁଯାକ ସ୍ୱର
ନିଃଶେଷ ହୋଇ ଅନନ୍ତରେ ମିଶିଯିବେ
ମୁଁ ଜାଣେ ଯେ ଯେଉଁ ଶବ୍ଦମାଳା
ମୋ ପାଖରେ ଶେଷ ପର୍ଯ୍ୟନ୍ତ ରହିଥିବେ
ଅପାର୍ଥିବ ରାଗ ସମ୍ବଳିତ ହୋଇ
ସେମାନେ ଥିବେ ଓଡ଼ିଆ ଓଡ଼ିଆ ଓଡ଼ିଆ

# କାଲିର କବି

ପୂର୍ବପୁରୁଷଙ୍କ ଋଣରୁ ସ୍ୱଚ୍ଛନ୍ଦ ରହି
ସେମାନେ କବିତା ଲେଖିବାର ସ୍ପର୍ଦ୍ଧା କରନ୍ତି

ସେମାନଙ୍କର ଜନ୍ମ ଏମରଜେନ୍ସିର ନିଶାର୍ଦ୍ଧରେ
ସିଂହ ସେମାନଙ୍କର ବାହନ
ସେମାନଙ୍କର ପାଦରେ ବିଜୁଳି
ସେମାନଙ୍କର ପକେଟ୍‌ରେ କିଛି ନାହିଁ
ଦରଫୁଟା ସମ୍ଭାବନାର ଆସ୍ଥା ବ୍ୟତୀତ
ମଲାକବିଙ୍କର ମଶାଣି ଦେଇ ତାଙ୍କର ରାସ୍ତା
ସେମାନେ ଚନ୍ଦ୍ରଲୋକର ଠିକଣା ଖୋଜୁଛନ୍ତି
ସେମାନେ ଯୋଜନା କରୁଛନ୍ତି
ଯାଇ ପିକ୍‌ନିକ୍ କରିବେ ବାଜିରାଉତର ଗାଁରେ
ସେମାନେ ପିତୃତର୍ପଣ କରୁଛନ୍ତି ଚିୟର୍ସ କହି
ସେମାନେ ରାସ୍ତା ଉପରୁ ଘୁଞ୍ଚିବାକୁ ନାରାଜ
ସେମାନେ ହଲପ କରିଛନ୍ତି
ସେମାନେ ପୁନର୍ଜନ୍ମ ନେବେ କଳିଙ୍ଗନଗରରେ

ସେମାନେ ପରସ୍ପରକୁ ଖୋଜୁଛନ୍ତି
ରୁପାଲି ଛକର ଆତୁର ଆଲୁଅରେ
ସେମାନେ ଜାଣନ୍ତି କାଲି ବୋଲି କିଛି ନାହିଁ
ସେମାନଙ୍କ ହାତରେ କଲମ ଓ କଟାର
ସେମାନେ ବସିଛନ୍ତି ଗାନ୍ଧୀ ଟୋପି ପିନ୍ଧି
ଆନ୍ନାଙ୍କର ଅବିଚଳିତ ପ୍ରତିଜ୍ଞାକୁ ଆଉଜି

ହଳଦିଆ ପଡ଼ିଯାଇଥିବା କାଗଜକୁ
ସେମାନେ ଟୁକୁରା ଯୁକୁରା କରି ଫିଙ୍ଗି ଦେଉଛନ୍ତି
ସେମାନେ ଲାବଣ୍ୟବତୀକୁ ଭେଟିବାକୁ ଚାହାନ୍ତି
ସେମାନେ ନ ମରିବାର ଶପଥ ନେଇଛନ୍ତି
ସେମାନେ ବିୟୋଗାନ୍ତ ଛବି ଦେଖି କାନ୍ଦନ୍ତି
ସେମାନଙ୍କର ପ୍ରିୟବନ୍ଧୁ ସମସ୍ତେ କଳାହାଣ୍ଡିରେ

ସେମାନେ ପହଁରୁଛନ୍ତି ସ୍ରୋତର ଉଜାଣି
ସେମାନେ ପ୍ରଶ୍ନ କରି ଚାଲିଛନ୍ତି
ଉତ୍ତରର ଅପେକ୍ଷା ନ ରଖି
ସେମାନେ ଅଭ୍ୟାସ କରୁଛନ୍ତି
ଖୁର ଧାର ଉପରେ ଦଉଡ଼ି ଯିବାର

ସେମାନେ ପଦ୍ମାସନରେ ବସିଛନ୍ତି
ମହାବାତ୍ୟାର ମଧ୍ୟବିନ୍ଦୁ ଉପରେ
ସେମାନେ ନିଜକୁ ସମର୍ପଣ କରିଦେଉଛନ୍ତି
ନିଜ ଅଙ୍ଗୁଳିର ସମ୍ମୋହିତ ବିମର୍ଶ ପାଖରେ

ସେମାନେ ଦର୍ପଣକୁ ଭାଙ୍ଗିଦେଲେ
ସେମାନେ ପଚାରିଲେ ଗାନ୍ଧି କିଏ ବୋଲି
ସେମାନେ ଜହ୍ନରାତି ହେବାକୁ ଚାହିଁଲେ
ସେମାନେ ଚାରି ଦଉଡ଼ିକୁ ଛିଣ୍ଡାଇ ଦେଲେ
ସେମାନେ ହାଇକମାଣ୍ଡକୁ ଜବାବ ଦେଲେ
ସେମାନେ ଛଟପଟ ହେଲେ ଇଚ୍ଛାର ଉଷ୍ମାରେ
ସେମାନେ ଲାଞ୍ଚ ନେଉଥିବା ହାତକୁ କାଟିଦେଲେ
ହସ୍‌ପିଟାଲ୍‌ର ଝରକା ଖୋଲି
ସେମାନେ ମୃତ୍ୟୁକୁ ଦ୍ୱନ୍ଦ୍ୱଯୁଦ୍ଧର ଡାକରା ଦେଲେ

ସେମାନେ କହିଲେ ଶାସ୍ତ୍ରସଂହିତା ଋତ୍ୱିକ ମିଛ
ସେମାନେ ପୁଣ୍ୟର କାଳିମାକୁ ପୋଛିଦେଲେ
ସେମାନେ ପକ୍ଷୀଙ୍କର କଳରବରେ ସ୍ୱର ମିଳାଇଲେ
ସେମାନେ ମୁଦ୍ରାସ୍ଫୀତିକୁ ଟାପରା କଲେ
ସେମାନେ ଅପ୍ରତିଭ ଆଖିରେ ଆଶ୍ରୟ ଖୋଜିଲେ
ସେମାନେ ଚାଲିଗଲେ ବିଜୁଳିର ବ୍ୟୂହ ଭିତରକୁ
ସେମାନେ ଧଉଳିଗିରିରେ ରକ୍ତ ଦେଇ ଆସିଲେ

ସେମାନେ ଯାଇ ଆମ୍ବେଦକରଙ୍କ ମୂର୍ତ୍ତିରୁ
ଜୋତାମାଳ ବାହାର କରିଦେଲେ
ସେମାନେ ଲାଲ୍‌ମାଟି ଉପରେ ପତାକା ପୋତିଲେ
ସେମାନେ ନିଜକୁ ଚାରିଦିଗରେ ବୁଣିଦେଲେ
ସେମାନେ ଉଡ଼ାଇନେଲେ ସୂର୍ଯ୍ୟାସ୍ତରୁ ଡେଣାକୁ
ସେମାନେ ଗୁଣ୍ଡା ପ୍ରାର୍ଥୀଙ୍କୁ ନିର୍ବାଚନରେ ହରାଇଦେଲେ

ସମସ୍ତେ ସେମାନଙ୍କର ଜଣା ଅଜଣା
ସେମାନଙ୍କ ପାଖରେ ସମୟ ନାହିଁ
ସକାଳର ଅପେକ୍ଷାରେ

ସେମାନେ ବସିଛନ୍ତି ନିୟମଗିରିର ଶୀର୍ଷରେ
ସେମାନେ ଭାଗ୍ୟକୁ ଟାଇପ୍ କରୁଛନ୍ତି
କମ୍ପ୍ୟୁଟରର ଝଲମଲ ପର୍ଦାରେ
ସେମାନେ ଭାସିଯାଉଛନ୍ତି ଅଯଥା ଆବେଗରେ
ସେମାନେ କଥା କହୁଛନ୍ତି ଶଶିଠାରରେ
ସେମାନେ ଅଛନ୍ତି ବଢ଼ୁଥିବା ବୟସର ଅଭୟାରଣ୍ୟରେ

ସେମାନେ ଲେଖୁଛନ୍ତି ଖବରକାଗଜର ହେଡ୍‌ଲାଇନ୍
ସେମାନେ ଲେଖୁଛନ୍ତି ଇସ୍ତାହାର ପ୍ରେମପତ୍ର ନିବେଦନ
ସେମାନେ ଲେଖୁଛନ୍ତି ବୋମା ରକ୍ତ ସମ୍ବେଦନା
ସେମାନେ ଲେଖୁଛନ୍ତି ଭୋକ ଭୟ ଉଲ୍ଲାସ
ସମୟର ଅସ୍ଥିର ଘଡ଼ିସନ୍ଧି ଉପରେ ବସି
ସେମାନେ ପ୍ରତିଜ୍ଞାପତ୍ରରେ ଲେଖିଦେଉଛନ୍ତି
ସେମାନେ କବିତା ଲେଖିବେ
ସେମାନେ କାଲି ପାଇଁ କବିତା ଲେଖିବେ

# ଦେଶ

## ୧. ଦେଶାତ୍ମବୋଧ

ନିଜର ଘର ପରିବାର ପାଇଁ
ଅନ୍ନ ସଂସ୍ଥାନର ଜୀବିକା ଖୋଜି
ସବୁ ବନ୍ଦ ଫାଟକମାନଙ୍କରେ
ବାରମ୍ବାର ଧକ୍କା ଖାଇବା ପରେ
ଗରିବ ଘରର ପିଲାଟି
ଶେଷରେ ଭର୍ତ୍ତି ହେଲା ସେନାବାହିନୀରେ

ଅଳ୍ପ କେତୋଟି ଦିନରେ ହିଁ
ସେ ଶହୀଦ ହୋଇଗଲା
କାରଗିଲର ଶୀତଳ ପ୍ରବାସରେ
ଜୀବନକୁ ଭେଟିବା ପୂର୍ବରୁ

## ୨. ଦେଶ ଦ୍ରୋହ

ପକ୍ଷୀମାନେ ଜାତୀୟ ସଂଗୀତ ଗା'ନ୍ତି ନାହିଁ
ନଈ ବହିଯାଏ ନାହିଁ
ମାନଚିତ୍ରର ସରଳରେଖା ଉପର ଦେଇ
କ୍ଷେତରେ କାମ କରୁଥିବା ଲୋକ ପାଇଁ
ଗଣତନ୍ତ୍ର ଦିବସର ଛୁଟି ନାହିଁ
ଜୀବନ ସହିତ ଯୁଦ୍ଧ କରୁଥିବା ଲୋକ
ବନ୍ଦେ ମାତରମ୍‌ର ତାଳ ଭୁଲିଯାଏ

# ନାଟର ଗୋବର୍ଦ୍ଧନ

ବେଙ୍ଗ କରୁଥାଏ କଟର କଟର
ହାତୀ ଚଢ଼ିଯାଏ ମଟର,
ଗଛ କୋରଡ଼ରେ ପେଚା ଓ ମାଙ୍କଡ଼ୀ
ଗୋବର୍ଦ୍ଧନ ସବୁ ନାଟର

# ବିଲୁଆ ନନା

ଖରା ହେଉଥିଲା ବର୍ଷା ହେଉଥିଲା
ବରବେଶ ହୋଇ ବିଲୁଆ ନନା
ବାହା ହେବ ବୋଲି ବାହାରିବା ବେଳେ
କିଏ ସେ କହିଲା ପଛକୁ ଅନା

ପଛକୁ ଅନାଇ ବିଲୁଆ ଦେଖିଲା
ଘରଟି ତାହାର ଗଲାଣି ପୋଡ଼ି
ଠିକ କଲା ତେଣୁ ଏଥର ସେ ଯିବ
ଫାୟାର୍ ବ୍ରିଗେଡ୍ ଗାଡ଼ିରେ ଚଢ଼ି

# ଭାଗୀରଥି ଭାଇନା

ଭୀମଖୋଲର ଭାଗୀରଥି ଭାଇନା
ବାହାରିଥିଲେ ଯିବେ ବୋଲି ଚାଇନା
        ପାଇଲେ ନାହିଁ ଭିସା
        ତଥାପି ବୁଲା ନିଶା
'ଜୁ'ରେ ଯାଇ ଦେଖି ଆସିଲେ ହାଇନା

## ସଦାନନ୍ଦ ଶତପଥୀ

ଶରଣକୁଳର ବାବୁ ସଦାନନ୍ଦ ଶତପଥୀ
ଯାଉଥିଲେ ଚଢ଼ି ଦିନେ ତାଙ୍କ ନୂଆ ଫଟଫଟି
ଟ୍ରାଫିକ୍ ଆଲୁଅ ଲାଲ
ତାକୁ ସିଏ ହେଲେ ପାର
ଏପରି ଭାବରେ ବାବୁ ପାଇଗଲେ ସଦ୍‌ଗତି

## ଦୁଇ ଦାସ

ଜାତି ପ୍ରେମ ବହ୍ନିରେ ଦେଲେ ଝାସ
ମିଷ୍ଟର ଦାସ
ଦେଶ ମାଟିରେ ମିଶାଇ ଦେଲେ ପ୍ରାଣ
ଦାସ ଆପଣ

## ଡର

ଛାଗର ଡର ବାଘକୁ
ଫାଗକୁ ଡରେ ବାଘ
ଫାଗ ଡରିଥାଏ ଛାଗକୁ
ତିନିହେଁ ତିନିଙ୍କି ଆଗ

## ଖଣ୍ଡା ନାକ

ଖଣ୍ଡା ଭଳି ନାକ
ସେ ହେଉଛି ନାୟକ
ନାକ ଉପରେ ଖଣ୍ଡା
ସେ ହେଉଛି ଗଣ୍ଡା

## ଚିଠି

ଟଙ୍କା ପାଇଁ ବାପାଙ୍କୁ ସେ ଲେଖିଥିଲା ବିକଳେ
ଚିଠିଟି ପଠାଇଥିଲା ଏକ୍‌ସପ୍ରେସ୍ ଡାକରେ,
          ତିନିମାସ ଚାହିଁ ଚାହିଁ
          ଅନେକ ମୋହର ନେଇ
ସେଇ ଚିଠି ପହଞ୍ଚିଲା ଫେରି ତା ପାଖରେ

## ବୁଲୁ ପଟନାୟକ

ବଲାଙ୍ଗୀରପାଟନାର ବୁଲୁ ପଟନାୟକ
ଯାଇଥିଲା ବମ୍ବେକୁ ହେବା ପାଇଁ ନାୟକ
          ହିରୋ ହେବା ନୋହିଲା
          ତଥାପି ସେ ରହିଲା
ହୋଇ ଯାଇ ପାରେ ଯଦି ପ୍ଲେବ୍ୟାକ ଗାୟକ

## ଓତା ବାବୁ

ଆସିକାର ଓତାବାବୁ ଖୋଲିଥିଲେ କମ୍ପାନୀ
ନାଁରୁ ଭାବିଲେ ଲୋକେ ଓସାକାର ଜାପାନୀ;
ଅତି ଖୁସି ହୋଇ ଓତା
ଶିଖିଲେ ଜାପାନୀ କଥା
ଓହାଇଓ ଗୋଜାଇମାସୁ ଆରିଗାତୋ ତାମାନୀ

# ତିନି ରାୟ

ତିନି ଜଣ ରାୟ ଥିଲେ ଓଡ଼ିଶାରେ ଏକଦା
କଲମ ତାଙ୍କର ଚାଲୁଥିଲା ସଦା ସର୍ବଦା
ଲେଖିଲେ ରାମଶଂକର କାଞ୍ଚିକା-
ବେରୀ ଏବଂ ରାଧାନାଥ ଚିଲିକା
ଗୌରୀଶଙ୍କରଙ୍କର ଦୀପିକା
କହିଲେ ଓଡ଼ିଆ ଲୋକେ : ବାହା ବା ! ବାହା ବା !

# ଜନ୍ତୁ ପରନ୍ତୁ

ଘୁଷୁରି ଘୁଷୁରୁଥାଏ ବାର ବାଜେ ବାର୍‌ହାର
ଚିତା ବାଘ ଚିତା କାଟେ ପାରା ଚଢ଼େ ପାରାର
ଶାଗୁ ଖାଏ ଶାଗୁଣା କୁଆ କୁଆମଇତା
ମାଙ୍କଡ଼ ମାଙ୍କଡ଼ଚିତ ଭରତିଆ ଭରତା
ଚଟିଯାଏ ଚଟିଆ ଓଲୁ ବନେ ଉଲୁକ
ଗଧ ଯାଏ ଗାଧୋଇ ପେଚ କଷେ ପେଚକ
କପି ବସି କପି କରେ ବୁଲୁଥାଏ ବୁଲବୁଲ
ହାତ କରି ନିଏ ହାତୀ ମଶା ହୁଏ ମଶଗୁଲ
ଝିଙ୍କି ନିଏ ଝିଙ୍କ ଓଟ ନିଏ ଓଟାରି

ହଂସା ଉଡ଼େ ହଂସର ଶାରୀ କହେ, ସରି

## ଉତ୍ତମ ମଧ୍ୟମ

କେଉଁ ଡାକଟି ସବୁଠୁ ଖର
କୁକୁର କହିଲା, ଭୋ ଭୋ
କେଉଁ ତମାଖୁ ସବୁଠୁ ଭଲ
ବିଲୁଆ କହିଲା, ହୁକା ହୋ

କେଉଁ ଗୀତଟି ସବୁଠୁ ମିଠା
ବେଙ୍ଗ କହିଲା, କଟର କେଁ
କେଉଁ ମାସଟି ସବୁଠୁ ଚିଟା
ଛେଳି କହିଲା, ମେ ମେ

## କାଉ କାଉ

ଭୀଷଣ ଭୋକରେ ହାଉଁ ହାଉଁ
କାଉ କରୁଥିଲା ରାଉ ରାଉ
କବି ତା ପାଇଁ ଖୋଜି ଆଣି ଦେଲା
ଚୀନା ହୋଟେଲରୁ ଚାଉ ଚାଉ
କାଉ ବି ଚାଲାକ କବି ମନ ବୁଝି
ଖାଇ ଦେଲା ତାକୁ ଟାଉ ଟାଉ

# ତିନି ମଞ୍ଜିକା

              ତିନି ମଞ୍ଜିକା
ପର୍ବତ ଉପରେ ବସି ରହିଥାଏ
              ସଞ୍ଜି ସଞ୍ଜିକା
ଦୁଇ ଦୁବଳିଆ ପାଖରେ ପାଇଲେ
              ଚୋବାଇ ଖାଏ
ଚାରି ଚୂଳିଆକୁ ଦୂରରୁ ଦେଖିଲେ
              ପଳାଇ ଯାଏ
              ଘୁଞ୍ଜି ଘୁଞ୍ଜିକା
ପର୍ବତ ଖୋପରେ ଲୁଚି ରହିଥାଏ
              ତିନି ମଞ୍ଜିକା
              ତିନି ମଞ୍ଜିକା

# ପ୍ରଫେସର କର

ଥିଲେ ଖର ପ୍ରକୃତିର ପ୍ରଫେସର କର
ପିତ୍ତ ଚଢୁଥିଲା ସଦା ମଥାକୁ ତାଙ୍କର
              ରାଗେ ହୋଇ ଗରଗର
              ମୁଣ୍ଡରୁ ଛିଣ୍ଡାନ୍ତି ବାଳ
ଅତି ଶୀଘ୍ର ହୋଇଗଲେ ସମ୍ପୂର୍ଣ୍ଣ ଟାଙ୍ଗର

## ନାମ ବନାମ

ସିଂହର ଶିଂଘ ନାହିଁ
ହାତ ନାହିଁ ହାତୀର
ବଳଦର ବଳ ନାହିଁ
ପାତ ନାହିଁ ପାତିର

ଛାର ନୁହେଁ ଛାରପୋକ
ଥୋଡ଼ ନାହିଁ ଥୋଡାର
ଭଲ ନୁହେଁ ଭଲ୍ଲୁକ
ଖାଲି ଦେହ ଘୋଡ଼ାର

ଗଣ୍ଡା ପାଖରେ ନାହିଁ
କଡ଼ାଏ ବି କଉଡ଼ି
ବସି ରହିଥାଏ ଶୁଆ
ଗୋ ଆସେ ଦଉଡ଼ି

## ଡାକବଙ୍ଗଳାରେ ରାତି

ବିଛଣା ଉପରେ ଶୋଇ ଲିଭାଇଛି ଲଣ୍ଠନ
ଓହ୍ଲାଇଲେ ଦେଢ଼ ଲକ୍ଷ ମଶାଙ୍କର ସ୍କ୍ୱାଡ୍ରନ
ଧରିଲେ ଉଡ଼ାଇ ନେବେ ସାଥିରେ
ଭାଗ୍ୟକୁ ମତେ ଟାଣି ରଖିଲେ
ବିଛଣାର ଦୁଇ ଲକ୍ଷ ଓଡ଼ଶଙ୍କ ପଲଟଣ

## ପରୀକ୍ଷା

ସଂସ୍କୃତ ପରୀକ୍ଷାରେ ଗୋ
ମହିଷାଦି ଥିଲେ ପଶୁ ସକଳ
ମାଷ୍ଟ୍ରଙ୍କୁ କହିଲା, ଭୋଃ !
ପାସ୍ କଲା ଏକମାତ୍ର କୁକୁର

## ପଠାଣି ସାମନ୍ତ

ପଠାଣି ସାମନ୍ତ
ଲେଖୁଥିଲେ ଦେଖୁଥିଲେ ଯାହା ଯେମନ୍ତ
ପୃଥିବୀ ସ୍ଥିର, ସୂର୍ଯ୍ୟ ବୁଲୁଥାଏ
ଦେଖିଲେ ଷୋଳ ପଣ
ଚାକ୍ଷୁସ ପ୍ରମାଣ ନେଇ ଲେଖିଲେ
ସିଦ୍ଧାନ୍ତ ଦର୍ପଣ

## ପୋଷା ଭାଷା

ବିଲାତୀ କୁକୁର କହିଲା, ବାଓ ଓ୍ୱାଓ
ତା ସାହେବ କହିଲେ, ନାଓ ନାଓ
ଦେଶୀ କୁକୁର କହିଲା, ଭୋ ଭୋ
ତା ଖାଉନ୍ଦ କହିଲା, ଓଃ ହୋ

## ଯୋଡ଼ା କପାଳ

ଯେତେ ତାକୁ ଶିଖାଇଲେ କୁକୁଡୁ କୁଁ
କହିଲା ସେ କକ୍-ଏ-ଡୁଡଲ୍-ଡୁ
ଫୁଟାଣିଆ କୁକୁଡ଼ା
ଖାଉ ଥା ଉଖୁଡ଼ା
ତନ୍ଦୁରୀ ଭାଗ୍ୟରେ ନାହିଁ ତୁ ହେବୁ ସ୍ଟୁ

## ରାଷ୍ଟ୍ର ଭାଷା

ରାଷ୍ଟ୍ର ଭାଷା ଶିଖି ନୂଆ ନୂଆ
ବିଲୁଆ କହିଲା, କ୍ୟା ହୁଆ
ପେଚା କହିଲା, ହାଁ ହାଁ ହୁଁ
ବିରାଡ଼ି କହିଲା ମେଁ ଆଉଁ ?

## ଛ ମାଣ ଆଠ ଗୁଣ୍ଠ

ଫକୀର ମୋହନ ସେନାପତି
ଦେଖିଲେ ତିନି ଦୁଷ୍ଟମତି

ରାମଚନ୍ଦ୍ର ମଙ୍ଗରାଜ
ଅତି ବଡ଼ ମାମଲାବାଜ
ଚମ୍ପା ସାନ୍ତାଣୀ ହରକଳା
ମୁଣ୍ଡରେ ପାପ ବୁଦ୍ଧି ଭରା

ତାର ଅନୁଚରୀ
ଗୋବିନ୍ଦ ଭଣ୍ଡାରୀ

ଯାହାକୁ ଯେପରି ଶାସ୍ତି
ମଙ୍ଗରାଜର ମୁଣ୍ଡ ପିଟି
ଚମ୍ପା ସାନ୍ତାଣୀ ତଣ୍ଟି କାଟି
ଗୋବିନ୍ଦକୁ ଦେଇ କୁମ୍ଭୀର ପାଟି,
ତିନିଙ୍କର କଲେ ପରମଗତି
ଫକୀର ମୋହନ ସେନାପତି

## ଚାତକ ଚକୋର

ଚାତକ ଚକୋର ଦୁହେଁ
ପକ୍ଷୀ ଅତି ଭିନ୍ନ
ଜଣେ ଯଦି ମେଘ ଚାହେଁ
ଆନ ଚାହେଁ ଜହ୍ନ

## ଦାଢ଼ିବାଲା ବୁଢ଼ା

ଥିଲା ଏକଦା ବୁଢ଼ା ସେ ଦାଢ଼ିବାଲା
କହିଲା, 'ଯାହା ଡରୁଥିଲି ମୁଁ ହେଲା
ଦୁଇଟି ପେଚା କୁକୁଡ଼ା ଏକ,
ଚାରିଟି ଚିଲ ଗୋଟିଏ ବକ,
ଦାଢ଼ିରେ ମୋର ପକାଇଲେଣି ଡେରା'
(ଏଡ଼ୱାର୍ଡ ଲିଅରଙ୍କ ଲିମେରିକର ଅନୁବାଦ)

## ପାଗଳ କବି

ଆଜ୍ଞା, ମୁଁ ମାନୁଛି ଅଛି ବିଧାନ
ସବୁ କବିମାନେ ପାଗଳ ମତି
କିନ୍ତୁ ଆପଣ ତ ନିଜେ ପ୍ରମାଣ
ପାଗଳ ସମସ୍ତେ କବି ନୁହନ୍ତି
(ଇଂରେଜୀରୁ ଅନୁବାଦ)

## କଥା ଉଠେ

ଛୁରୀ ଚାଲେ ହାଟ ବସେ
ଷଣ୍ଢ ଖାଏ ହାଙ୍କଡ଼
ପେଟ କାଟେ ଦେହ ଜଳେ
ପୋଡ଼ିଯାଏ କପାଳ

ମେଘ ଉଠେ ଖରା ପଡ଼େ
ଉଠେ ପଡ଼େ ବଜାର
ମଉଜ ବାହାରି ଯାଏ
ଛାତି ଫାଟି ହଜାର
ଛାଇ ଲେଉଟିଲେ ବେଳ ଗଡ଼ିଯାଏ
ରାତି ମାଡ଼ିପଡ଼େ ମନ ମରିଯାଏ

## ସରଳାର୍ଥ

ଦିନ ମାନେ ଅହ୍ନ କାକମାନେ ବାୟସ
ମୁଖ ମାନେ ବଦନ ମାଂସ ତରସ
ଓଟମାନେ ଧୂସକ ପେଚା ମାନେ ଧୂକ
ସାପମାନେ ଜିହ୍ମଗ ହେଟା ବାଘ ବୃକ
ବାର୍ହା ମାନେ ଘୃଷ୍ଟି ବଗ ମାନେ କହ୍ୱ
ମାଙ୍କଡ଼ ପ୍ଲବଗ ମୟୂର ବର୍ହି
ଅଧୀନ ନିଘ୍ନ ଓ କଠୋର ତିଗ୍ମ
ପାଠ ସବୁ ଏଥରକ ସରଳ ଅଜିହ୍ମ
(ଫକୀର ମୋହନ ସେନାପତିଙ୍କ ଆତ୍ମଜୀବନୀରେ ଥିବା
'କୌଣସି ଦିନରେ ବି ଗୋଟିଏ ଅହ୍ନ'ରେ ଦ୍ୱରା ଅନୁପ୍ରାଣିତ।)

## ନବରଙ୍ଗ ମହାନ୍ତି

ବାରଙ୍ଗର ବଡ଼ଲୋକ ନବରଙ୍ଗ ମହାନ୍ତି
ତାଙ୍କ ଘର ଖୋଜିଗଲେ ପ୍ରଥମରେ ବାଁ ହାତି,
ତା ପରେ ଡାହାଣକୁ ପୁଣିଥରେ ବାଁ
ଯାହାକୁ ପଚାର ଜାଣେ ବାବୁଙ୍କର ନାଁ
ପହଞ୍ଚି ଦେଖିବ କିନ୍ତୁ ବାବୁ ଘରେ ନାହାନ୍ତି

## ଜବରବକ

ବିରିଲଗ ବେଳେ ଯେତେ ତବ ଆଉ ସଳଥି
କରୁଥିଲେ ଗିର ଗିମବଳ ଥାଇ ବବରେ
ବରଗବମାନେ ଥିଲେ ଅତିଶୟ ମିମସି
ମୋମରାଥ ଥିଲେ ସବୁ ନିଜ ଅଟରବରେ

"ଜବରବକକୁ ଥା ସାବଧାନ, ପୁଅରେ !
ଜବଡ଼ା ତା ଝୁଣି ନେବ, ଝାମ୍ପି ନେବ ପଂଝା
ଜବଜବ ଚଢ଼େଇକୁ ସାବଧାନ, ଦୂରରେ
ଦୂରେ ରଖ ରାଗରାକ୍ଷ ବନଡରସଂଚା"

ବରପାଳ ଖଣ୍ଡା ସେ ଉଠାଇଲା ହାତରେ
ଖୋଜିଲା ଅନେକବେଳ ମାନସମ ବଇରି
ଆଉଜି ବସିଲା ଯାଇ ଟମଟମ ଗଛରେ
କିଛି ବେଳ ଠିଆ ହେଲା ଭାବନାରେ ପହଁରି

ଠିଆ ହୋଇଥିଲା ଯେବେ ଭାବନାରେ ଉଫଳ

ଆସିଲା ଜବରବକ, ନିଆଁହୁଳା ଆଖିରେ,
ଟଲଗି ବନକୁ ଭାଙ୍ଗି ହଫା କରି ସକଳ
ବରବଳ କରିଦେଲା ସବୁ ଆଖ ପାଖରେ !

ଏକ, ଦୁଇ ! ଏକ, ଦୁଇ ! ବେଗରେ ପ୍ରଚଣ୍ଡ
ଛମ ଛମ ଛୁଟିଲା ତା ବରପାଳ ଖଣ୍ଡା !
ପକାଇଲା ମାରି ତଳେ, ଧରି କଟା ମୁଣ୍ଡ
ଫେରିଲା କଦମଜିତ ଉଠାଇ ସେ ଝଣ୍ଡା

"ଜବରବକକୁ ତୁ କି ମାରିଦେଲୁ ସତରେ
ମୋ ପାଖକୁ ଆ ମୋର ବୀରବଳ କୁମର
କି ଖୁସିବାସ ଏ ଦିନ ! ଡାକ ହୋ, ଡାକ ରେ"
ଖେଦିଗଲା, ହଜିଗଲା ଖୁସିରେ ସେ ବିଭୋର

ବିରିଲଗ ବେଳେ ଯେତେ ତବ ଆଉ ସଳଥି
କରୁଥିଲେ ଗିର ଗିମବଳ ଥାଇ ବବରେ
ବରଗବମାନେ ଥିଲେ ଅତିଶୟ ମିମସି
ମୋମରାଥ ଥିଲେ ସବୁ ନିଜ ଅଟରବରେ
(ଲୁଇସ କ୍ୟାରଲଙ୍କ 'ଦାବରଓ୍ୱଙ୍କ' ଅନୁସରଣରେ)

## ସତ୍ୟାସତ୍ୟ

ଏକମାତ୍ର ସତ୍ୟ କଥା ଶୁଣିନିଅ
ହେ ମୋର ଅପତ୍ୟ
ମୁଁ ତମକୁ ଯାହା ସବୁ କହୁଚି ତା
ସଂପୂର୍ଣ୍ଣ ଅସତ୍ୟ

ନାନାବାୟା

କକବାୟା କୋକମିନା କୋକୁଆ
ଧୂସରଧୂମାକୁ ଦେଖି ଭକୁଆ
ଚିରଗୁଣୀ ପିଶାଚିନୀ ଡାହାଣୀ
କୁଣ୍ଡାଭୂଷୁଣ୍ଡୀ ଆଗ ଚୋରଣୀ

ଯାହାର ପ୍ରଳାପ ଶୁଣି
ପଳାନ୍ତି ଏ ସମସ୍ତେ
ସେଇ ୟେତିକୁ ବାବା
ନମସ୍ତେ ନମସ୍ତେ

## ୟେତିର ପ୍ରଳାପ

ତସରିପୁ ନମାସନ
ରଦ ଚାଲି କସ୍ତୁୟାବ
ହୁତ ଫିକ ଇବାନ ସତ
ଘଟ ସଙ୍ଗ ସ୍ନୀ ହୁ

## ନେପାଳର ବୁଢ଼ା

ଏକଦା ବୁଢ଼ାଟି ଥିଲା ଘର ତାର ନେପାଳ
ଘୋଡ଼ାରୁ ପଡ଼ିଲା ଦିନେ ହୋଇଗଲା ଦି ଫାଳ
ଅତି ଟାଣ ଅଠା ଆଣି
ଯୋଡ଼ି ଦେଲେ ତାକୁ ପୁଣି

ହୋଇଗଲା ଠିକଠାକ ଏପରି ତା କପାଳ
(ଏଡ଼ୱାର୍ଡ ଲିଅରଙ୍କ ଲିମେରିକର ଅନୁବାଦ)

## ଗୁଲମାର୍ଗର ଟୋକା

ଥିଲା ଏକଦା ଗୁଲମାର୍ଗରେ ଟୋକା
ବରଫ ତଳେ ପଡ଼ିଗଲା ସେ ବୋକା
'ଥରୁଛୁ କିରେ' ପଚାର ଯେବେ
ଜବାବ ଦିଏ, 'ହଁ ଯେ, ତେବେ
ଆମ ଆଡ଼େ ଏ ଶୀତରେ ନୁହେଁ ଲେଖା'
(ରିଡୟାର୍ଡ କିପଲିଙ୍ଗଙ୍କ ଲିମେରିକର ଅନୁସରଣରେ)

## ଜାପାନୀ ହାଇକୁ

ପୁରୁଣା ପୋଖରୀ
ବେଙ୍ଗଟି ଡେଇଁ ପଡ଼େ
... ଧପ୍
(ମାତସୁୟୋ ବାଶୋଙ୍କ ହାଇକୁର ଅନୁବାଦ)

## ଦଳ ବଦଳ

ବିରୋଧୀ ଦଳର ବିଧାୟକ
ଦଳ (ଖ)ରୁ ଗଲା ଦଳ (କ)
ମନ୍ତ୍ରୀ ହୋଇ ନ ପାରି
କହିଲା ସେ, ବୁଝିଲି
କଖଗଘ କିଛି ନାହିଁ ଫରକ

## ମଧୁସୂଦନ ରାଓ

ମଧୁସୂଦନ ରାଓ
ପାଠକଙ୍କୁ କହିଲେ, ଯାଅ-
ଆଖି ବୁଜି ବସ ପଦ୍ମାସନ,
ତା ହେଲେ ପାଇବ ମୋର କବିତାର ଜ୍ଞାନ

## ଢେଙ୍କାନାଳ

ଛାଡ଼ି ମୁଁ ଆସିଲି ଢେଙ୍କାନାଳ
ରାସ୍ତା ଥିଲା ଅତି ଅସମତଳ
ଗରମ ଦେଶର ଝଡ଼ ପ୍ରବଳ
ମୂଷଳ ଧାରାରେ ଢାଳିଲା ଜଳ
ଚାରିପାଖୁ ଘେରି ଢେଙ୍କାନାଳ
ରଡ଼ି କଲେ ହେଟା ବିଲୁଆ ଦଳ
ଢେଙ୍କାନାଳର ରାସ୍ତା କୁଟିଳ

ପାଖ ଦେଇ ଯାଏ ଘନ ଜଂଗଲ
କୁଂଜ ଉପବନ ଅତି ଶ୍ୟାମଳ
ବିଛିଦିଏ ଏକ ବାସ ନିର୍ମଳ
(ଜନ ବୀମ୍‌ସ୍‌ଙ୍କର ଫରାସୀ କବିତାର ଅନୁବାଦ)

## ବାଲେଶ୍ୱରର ଝିଅ

ଥିଲା ଏକଦା ଝିଅଟି ବାଲେଶ୍ୱରେ
ବାଘ ଉପରେ ଚଢ଼ିଲା ଯାଇ ଥରେ
          ଫେରିଲେ ଯେବେ ସରିଲା ବୁଲା
          ଝିଅଟି ବାଘ ପେଟରେ ଥିଲା
ହସଟି ଥିଲା ବାଘର ଓଠ ତଳେ
(ପ୍ରସିଦ୍ଧ ଲିମେରିକ (ଲେଡ଼ି ଅଫ ରିଷା'ର ଅନୁସରଣରେ)

## ନଈ ପାରି

ବାଘ ମାଝି ପାନ ଛେଳି
ଚାରି ପଦାର୍ଥ ହେବେ ପାରି
ଛୋଟ ନାଆରେ କେତେ ପାଳି ?
          ଛେଳି ଖାଇଲା ପାନ
          ମାଝି ଖାଇଲା ଛେଳି,
          ମାଝିକୁ ଖାଇ ବାଘ
          ନାଆରେ ଗଲା ଚଢ଼ି
ଚାରିହେଁ ହେଲେ ନଈ ପାରି

ଏକା ଥରକେ ଏହିପରି ।

## କଟକର ଯୁବକ

ରହୁଥିଲା ଜଣେ ବେକାର ଯୁବକ କଟକରେ
କୁଳଉ ନଥିଲା ଘର ଚଳିବାର ଅଟକଳେ
ଦଉଡ଼ି ଦଉଡ଼ି ଛିଣ୍ଡିଗଲା ଚଟି
ତଥାପି ନ ମିଳେ ଚାକିରୀ କେଉଁଠି
କଲିକତା ଯାଇ ଶେଷକୁ ରହିଲା ଚଟକଳେ ।

## ରାମ

ରାମ ନାମ ସତ୍ୟ ହୈ
ରାମ ନାମ ଜପନା
ଆୟା ରାମ ଗୟା ରାମ
ପରାୟା ମାଲ ଅପନା
ଆଲା ରୋଜା ହର୍‌କୁଲେସ୍
ଓଲ୍‌ଡ୍ ମଙ୍କ୍ ଟ୍ରିପଲ୍ ଏକ୍ସ
ଜନମଭୂମି ଫଳ ଧନୁ
ଧନୁ ଶିଆଳ କେରୀ
ଶିଂଘା ବାଣ ନାମ ନବମୀ
ରାଜ୍ୟ ଖଡ଼ି ଛେଳି

## ସ୍ୱାଦ୍ୟ

ମତେ ଭଲ ଲାଗେ ଗଦ୍ୟ
ମନ୍ଦ ଲାଗେ ନା ପଦ୍ୟ
ଯେଉଁଟି କିନ୍ତୁ ଅତି ଭଲ ଲାଗେ
ସେଇଟି ହେଉଛି ମଦ୍ୟ

## ଭଂଜ କବି

କବି ଉପଇନ୍ଦ୍ର ଭଂଜ
ଗୀତ ଲେଖୁଥିଲେ ସକାଳ ସଂଜ
ଛନ୍ଦ ମିଳିବାକୁ କରି ସଂଧାନ
ପାଇଲେ ସେ ଜାନ୍ତ ଏ ଶବ୍ଦମାନ;
କରଂଜ ପରଂଜ କଂଜ ଖଂଜ

## ରାତି ଅଧରେ

ସୁରୁଜ ଚମକୁଥିଲା ମହୋଦଧି ଉପରେ
ଚମକୁଥିଲା ସେ ଅତି ପ୍ରବଳ

ପ୍ରାଣପଣେ ଲାଗିଥିଲା କିପରି ସେ କରିବ
ଲହରୀଙ୍କୁ ଚକମକ କୋମଳ
ଏ କଥା ଅଜବ ଥିଲା କାହିଁକି ନା ସମୟ
ଥିଲା ଠିକ ରାତି ଅଧା ପହର।

ଚନ୍ଦ୍ରମା ଚମକୁ ଥିଲା ରୁଷି ମୁହଁ ଫୁଲାଇ
ଭାବୁଥିଲା ଏ ସୁରୁଜ କିପରି
କେଉଁ ଗରଜରେ ଥିବ ଏତେବେଳେ ଏଠାରେ
ଦିନ ସରି ରାତି ଯେବେ ଦି' ଘଡ଼ି
'ଏ ଅତି ଖରାପ କଥା', କହିଲା ସେ ଶେଷରେ
'ମାଟି କଲା କଉତୁକ ସବୁରି।'
(ଲୁଇସ କବାରଲଙ୍କ କବିତାର ଅନୁବାଦ)

# ବୃତ୍ତି ପ୍ରବୃତ୍ତି

ମାଛ ଖାଇବ ଇଲିଶି
ଚାକିରି କରିବ ପୁଲିସ

ଫଳ ଖାଇବ କମଳା
ଚାକିରି କରିବ ଅମଲା

ମଦ ପିଇବ ବିଅର
ହେବ ଇଂଜିନିଅର

ପାଣି ପିଇବ ତୋରାଣି

ଚାକିରି କରିବ କିରାଣି

ରହିବ ଯଦି ଭୋକିଲ
କାମ କରିବ ଓକିଲ

## ସ-ମାନ

ସ୍ୱର୍ଗରୁ ଡ଼କରା
ତାଲବ୍ୟ ଶ ଶମନ
ଯାହା ମାନେ ଯମ
କଚେରୀରୁ ହକରା
ଦନ୍ତ୍ୟ ସ ସମନ
ଯମରୁ ନୁହେଁ କମ

ଏତିକି ପ୍ରଶମନ
ନାହିଁ କୌଣସି ମୂର୍ଦ୍ଧନ୍ୟ ଷ ଷମନ

## ପୁରୀର ଝିଅ

ଏକଦା ଗୋଟିଏ ଝିଅ ଥିଲା ପୁରୀ ସହରେ
ତା' ଭଳି ଏତେ ଲାଜ ନ ଥିବ କା ଦେହରେ
            ଶାଢ଼ୀ ଖୋଲିବାକୁ ଯାଇ
            ଆଲୁଅ ଦେଲା ଲିଭାଇ

ସର୍ବଦ୍ରଷ୍ଟା ଦେଖିଦେବେ କାଳେ ସେଇ ଭୟରେ
(ବର୍ଟରାଣ୍ଡ ରସେଲଙ୍କ ଲିମେରିକର ଅନୁସରଣରେ)

## ପେଚା ଓ ମାଙ୍କଡ଼ୀ

ଗଛଡ଼ାଳେ ରହୁଥିଲେ ପେଚା ଆଉ ମାଙ୍କଡ଼ୀ
କଥାବାର୍ତ୍ତା ବନ୍ଦ କଲେ ଦିନେ ଅଭିମାନ କରି
ଦୁହେଁ ହୋଇ ଦୁଃଖମନ
କାଟିଲେ ସାତଟି ଦିନ
ଏଥିରେ କେବଳ ଯାହା କ୍ଷତି ହେଲା ତାଙ୍କରି

## ନାନା ଜାତି

ଉଡ଼ି ଉଡ଼ି ଯାଏ ଚଷାପୁଅ
ବଣିଆରେ ମାଡ଼େ ଲଟା
ଲାଲ ଟୁକୁଟୁକୁ ସାଧବ ବୋହୂ
କରଣୀ ଅକ୍ଷର ଛଟା

ଜାକିଜୁକି ରହେ ତେଲୁଣୀ
ଡମଣୀ ଲାଗଇ ଚଉକାଠ
କଟର କଟର ବାହୁଣୀ
ହାଡ଼ିଆଣି କହେ ସତ ସତ

## ଦାସେ

ଦାସେ
ପାଣିଲେ ବୁଡ଼ିଲେ ମାସେ
ପାଣି ହେଲା କାକର
ଦାସେ ହେଲେ ମାଙ୍କଡ଼

ଦାସେ
ପାଣିରେ ବୁଡ଼ିଲେ ବର୍ଷେ
ପାଣି ହେଲା ବରଫ
ଦାସେ ହେଲେ ଜିରଫ

## ଇଟିକିଲି ମିଟିକିଲି

ଅଇରି ମଇରି ଉଦୁଉଦୁମା
ତାଇ ତାଇ ଥେଇ ଘଟରଘୁମା
ଅରଗଡ଼ ମରଗଡ଼ ଏକନ ଦୋକନ
ଇଟିକିଲି ମିଟିକିଲି ଟକଲ ଟାଇଁ,
ଆଲୁକୁଟି ମାଲୁକୁଟି ତିଉକ ଚେକନ
ଇଞ୍ଚିଡ଼ି ମିଞ୍ଚିଡ଼ି ଚିଡ଼ି ଚିଡ଼ି ଧାଇଁ

ଇଲି ମିଲି ଖିଲି କାତି
ମାମୁଁ ଘର ଚଉଁରୀ
ଚୁନୁ ମୁନୁ ରୁନୁ ଝୁନୁ
ଚକା ଚକା ଭଉଁରୀ

## କଲିକତାର ବୁଢ଼ା

ଏକଦା ଗୋଟିଏ ବୁଢ଼ା ଥିଲା କଲିକତାରେ
ଲହୁଣୀ ଲଗାଇଦେଲା ନେଇ ଗଲା ଉପରେ
ଘୁଂଘୁଡ଼ିର ସ୍ୱର ତାର
ଆଉ ନୁହେଁ ଘର୍ଘର
ଏଥର ତା ନରମ ଓ ମୁଲାୟମ ସତରେ
(ଅଗଡ଼େନ ନାଶଙ୍କ ଲିମେରିକ ଅନୁସରଣରେ)

## ପଦକାର

ଥିଲେ ଜଣେ ପଦକାର ପଣ୍ଡିତ ମଦାଳସ
ଜୀବନଟି ତାଙ୍କର ପଦେ ପଦେ ପଦାଳସ
ପ୍ରିୟ ଜାଗା ବନାରସ
ପ୍ରିୟ ଫଳ ଅନାରସ
ପ୍ରିୟ ଘୋଡ଼ା ପେଗାସସ ପ୍ରିୟ ବହି ଥେସାରସ

## ପ୍ରେମର ପ ବର୍ଗ

ପଡ଼ୋଶୀ ପରିକ୍ରମା ପ୍ରତୀକ୍ଷା
ପରିଚୟ ପ୍ରେମପତ୍ର ପରୀକ୍ଷା
ଫୁଲାଫାଙ୍କିଆ ଫଟା କପାଳ
ଫଟୋ ଫାଣ୍ଡି ଫଲିଡ଼ଲ
ବାଇସ୍କୋପ ବାତାୟନ ବାହାନା
ବାପା ବିପଦ ବିଚରା ବଞ୍ଚନା
ଭଗାରିହସା ଭଗ୍ନ ମନୋରଥ
ଭର୍ତ୍ସନା ଭାଳେଣୀ ଭୟାର୍ତ୍ତ
ମୂର୍ଚ୍ଛା ମୃଗୀ ମୋହ ମୌନ
ମାନ୍ଦା ମନଦୁଃଖ ମଦ୍ୟପାନ

## ଇଂରେଜୀ ଟେଷ୍ଟ

ଚଢ଼େଇ ପଶୁଙ୍କୁ ଥରେ ଇଂରେଜୀ ଟେଷ୍ଟରେ
ହୁ ଆର୍ ୟୁ ବୋଲି ପଚାରିଲେ ମାଷ୍ଟ୍ରେ
କୁକୁଡ଼ା କହିଲା : କକ୍ କକ୍
କୋଇଲି କହିଲା : କୁହ୍ କୁ;
ଛେଳି କହିଲା : ମି, ମି
ପେଚା କହିଲା : ହ୍ୱାଟ୍ ? ହୁ?
କୁକୁଡା ପାଇଲା ଏ କୋଇଲି ବି

ଛେଳି ପାଇଲା ସି ପେଚା ଡି

## ଅନୁବାଦ

ପାଠରେ ମିଳାଇ ପାଠ ଚରଣରୁ ଚରଣ
ଯାହା ସେ ତିଆରି କରେ କରି ଅନୁସରଣ
ଦିଅଁ ଭଳି ନାହିଁ ଦିଶେ
ମାଙ୍କଡ଼ ନୁହେଁ ବି ସେ
ଦିଅଁ ମୁହାଁ ମାଙ୍କଡ଼ ଏଭଳି ତା ଗଢଣ

## ରମାକାନ୍ତ ରଥ

ରମାକାନ୍ତ ରଥ
କରିଥିଲେ ବ୍ରତ
ହୋଇଗଲେ ବେଶ କିଛି ସ୍ପଷ୍ଟ ଛନ୍ଦ
ନିଶ୍ଚୟ ଲେଖିବେ ଏକ ପୃଷ୍ଠବନ୍ଧ

## ସମୀକ୍ଷକ

ପ୍ରତି ପୃଷ୍ଠାରେ ଖୋଜି କିଛି କିଛି ଛିଦ୍ର
ବହିଟି ପଢ଼ାରେ କାଟେ ରାତିଟି ବିନିଦ୍ର
ଲେଖେ ଯେଉଁ ଆଲୋଚନା
ବହି କଥା ଥାଏ ଊଣା
ଇଂରେଜୀ ଉଦ୍ଧୃତି ଉପଦେଶ ବି.ଦ୍ର

## ଏ ବି ସିଡ଼ି

ପେଚା ଖୋଲିଥିଲା ସ୍କୁଲ ଇଂରେଜୀ ପାଠର
କୋରଡ଼ରେ କ୍ଲାସ, ତାକୁ ସିଡ଼ି ଥିଲା କାଠର
ସିଡ଼ି ଚଢ଼ି ଆସୁଥିଲେ ତା ପାଖକୁ ନେଉଳ
ଗୁଣ୍ଡୁଚି ଠେକୁଆ ଓଧ କେବେ କେବେ ଶେଉଳ
ପହଞ୍ଚିଲା ଦିନେ ଆସି ମୂଷା ଖରା ବେଳରେ
ସିଡ଼ିରେ ନ ଚଢ଼ି ଗଲା ଡେଇଁ ଡେଇଁ ଡାଳରେ
ପେଚା ଯେତେବେଳେ ତାକୁ ଅନାଇଲା ବିଗିଡ଼ି
ଡାଳକୁ ଦେଖାଇ ମୂଷା କହିଲା, ଏ ବି ସିଡ଼ି

## ଲୋମହର୍ଷକ

ଶାନ୍ତିରେ ରଖେ ନାହିଁ ଏଭଳି ସେ ଶାସକ

ନିରୀହର ରକ୍ତରେ ବଞ୍ଚେ ସେ ଶୋଷକ
ଯେତେ କର ଚିତ୍କାର
ନାହିଁ ତାର ପ୍ରତିକାର
ସରକାର ? ପୋଲିସ୍ ? ନା ନା - ମଶକ

## ଉପଧା ମିଳନ

ପଦ ମିଳାଇବାକୁ ଥିଲା ସୌରଭ
କେତେ ଆଉ ଲେଖିବେ ଗୌରବ ରୌରବ
ବିରକ୍ତ ହୋଇ କବି ଧାଡ଼ିଟି କାଟିଦେଲା
ପରେ ଦେଖାଯିବ ଯାହା ହୌହବ

## ଲିମେରିକ

କବିତା ଲେଖିବା ପାଇଁ ବସିଥିବ ତମେ ଠିକ
ପ୍ରେରଣାର ବହି ପଢ଼ି ଇଂରେଜୀ ଆମେରିକ
ପଦରେ ପଦକୁ ଯୋଖି
ଯାହା ସବୁ ଯିବ ଲେଖି
ପାଞ୍ଚଟି ଧାଡ଼ିରେ ତାହା ହୋଇଯିବ ଲିମେରିକ

## ହାଇକୁ

କଣ କରିବି ବୋଲି ଯେତେବେଳେ
              ପଚାରିଲା ସିଏ ଭାଇକୁ
ସେ କହିଲା, ତୁ ପୂରା ଅପଦାର୍ଥ
              ଏତେ କମ୍ ତୋର ଆଇ.କ୍ୟୁ
ରୁଷି ଯାଇ ତେଣୁ ଘରୁ ଚାଲିଯାଇ
ଲେଖିଲା ସେ ବସି ହାଇକୁ

## ଲିମେରାଇକୁ

ଥିଲା, ତିରିଲାକୁ ନେଇ ଗରିଲା
ଚରିଲା ଫୁଲ ଗଛଟି ମରିଲା
ମୋ କଥାଟି ସରିଲା

## ବିଲାତ ଫେରନ୍ତା

ମଫସଲ କଲେଜର ସଂସ୍କୃତ ମାଷ୍ଟ୍ରେ
ବିଲାତରେ ପଢ଼ିସାରି ଦର୍ଶନ ଶାସ୍ତ୍ର
              ଫେରିଲେ ସେ ଜେଟ୍ ସେଟ୍
              ନେଇ ସାଥେ ଆକସେଣ୍ଟ୍
କାଣ୍ଟ କିଏର୍କଗାର୍ଡ଼ ହେଗେଲ ଓ ସାର୍ତ୍ର

## ଦନ୍ତ୍ୟ

କିଛି ପୀଡ଼ା ଶାରୀରିକ
କିଛି ମାନସିକ କିଛି ଆର୍ଥିକ
            କିନ୍ତୁ ଯେ ପୀଡନଟି
            ଏ ସବୁର ଅନ୍ତ୍ୟ
ତା ହେଉଛି ଦନ୍ତ୍ୟ
(ଅଗଡେନ ନାଶ୍‌ଙ୍କର କବିତାର ଅନୁସରଣରେ)

## ନବ କାଳିକା ଲାଳିକା

ଦେଖି ମିରିକାଳିକା କାଟି ଫାଳିଫାଳିକା
            ଭାଳି ଭାଳିକା ଅନ୍ତ ଧରି
ରନ୍ଧା କେମନ୍ତ କରି କରିବା ମାଛ 'କରି'
ରାତିକି ଏମନ୍ତ ବିଚାରି ସେ ବୃକୋଦରୀ
            ଭାବେ ସଞ୍ଚିଲେ ଏ ଫାଳକୁ
            ଅଧା ଥିବ କାଲି ସକାଳକୁ
(ଉପେନ୍ଦ୍ର ଭଂଜଙ୍କର 'ଲାବଣ୍ୟବତୀ'ର କିଛି ଧାଡ଼ିର ଲାଳିକା)

# ଉଡ଼ା ଖବର

ଉଡ଼ିଗଲା ଗେଣ୍ଡାଳିଆ ଝାଡ଼ି ଦେଲା ପର
ଭଦଭଦଳିଆ ଗଲା ଭଦ୍ରଖରୁ ସୋରୋ
ଖେଳରେ ରେଫରି କଲେ କଜଳପାତିକୁ
ମାଛରଙ୍କା ଝାମ୍ପ ଦେଲା ମଗର ପାଟିକୁ
କୁମ୍ଭାଟୁଆ ଗୀତ ଗାଏ ଆକାଶ ବାଣୀରେ
ପାଣିକୁଆ ବୁଡ଼ିଗଲା ଆଣ୍ଠୁଏ ପାଣିରେ
ଶଂଖଚିଲ ମରିଗଲା ହୋଇ ଦୁର୍ଘଟଣା
କାଠହଣା ଜଙ୍ଗଲକୁ ଆସିବାକୁ ମନା
ଦେବାଳିଆ ହୋଇଗଲା ହଳଦୀବସନ୍ତ
ହାଡ଼ଗିଳା କଲିକ୍‌ରେ ହୁଏ ହନ୍ତସନ୍ତ
ଖୋଲିଛି କୋଚିଲାଖାଇ ଔଷଧ ଦୋକାନ
ପାତିହଂସ ପାଇଗଲା ପଦ୍ମ ବିଭୂଷଣ

# କିଏ କେମିତି ଗଲା

ଶତପଥୀ ଗଲେ ଫଟଫଟିରେ
ପିଟର ଚାଲିଲା ସ୍କୁଟର ଧରି
ମାଇକେଲ ଗଲା ସାଇକେଲରେ
ମଟୁ ବାବୁ ଗଲେ ମଟର ଚଢ଼ି ।

ରାମ ବାବୁଙ୍କର ଟ୍ରାମ ସୁବିଧା
ବାସୁ ବାବୁଙ୍କର ଟାଉନ୍ ବସ୍
ପ୍ଲେନରେ ଉଡ଼ିଲେ ମିସେସ ସେନ
ଚାଲି ଚାଲି ଗଲା ଚରଣ ଦାସ ।

# ବିଲେଇ ନାନୀ

ବିଲେଇ ନାନୀ କରିଛି ଓଷା
ଏ ଯାଏ ଖାଇଛି ଗୋଟିଏ ମୂଷା
ଦୁଇଟି ପୋକ, ତିନିଟି ଜୋକ
ତଥାପି ଲାଗୁଛି ଆହୁରି ଭୋକ ।

ଚାରି ଝିଟିପିଟି ପାଞ୍ଚଟି ବଣି
କେମିତି କୋଉଠୁ ଖାଇବ ଆଣି
ଅନେଇ ବସିଛି ବିଲେଇ ନାନୀ ।

# ମାଛ ଧରାଳୀ

ପୋଖରୀ ବନ୍ଧରେ ଛଅ ଜଣ ସାଙ୍ଗ ବନ୍‌ଶୀ ନେଇ
ପାଖାପାଖି ହୋଇ ବସିଥିଲେ ମାଛ ଧରିବା ପାଇଁ ।

ରାମର କଣ୍ଟାରେ ବାଳିଆ ପଡ଼ିଲା
ଶ୍ୟାମର କଣ୍ଟାରେ ଭାକୁର
ହରକୁ ମିଳିଲା ମିରିକାଳି ମାଛ
ହରିକୁ ମିଳିଲା ମାଗୁର ।

ଆଉ ଦି ଜଣଙ୍କୁ ମିଳିଥାନ୍ତା ହେଲେ
ମୀନ ଦଣ୍ଡକିରି ଚିଙ୍ଗୁଡ଼ି
ତୋଡ଼ି ଅବା ଗେଣ୍ଡା କୋଚିଆ ଶାମୁକା
କିଛି ବି ନ ହେଲେ ବେଙ୍ଗୁଲି !

କପାଳ ଖରାପ ଯଦୁ ବନ୍‌ଶୀରେ
ଧରାଦେଲା ପଚା ଆପଲ
ମଧୁ ବିଚରାର କଣ୍ଟାରେ ଉଠିଲା
ପୁରୁଣା ହାୱାଇ ଚପଲ ।

# ଛୋଟ

ଛୋଟ କଂସା ତାଟିଆ
ଛୋଟ ଥାଳି ଥାଳିଆ
ଛୋଟ ଖଟ ଖଟିଆ
ଛୋଟ ଚାଳ ଚାଳିଆ ।

ଛୋଟ ଘର କୁଡ଼ିଆ

ଛୋଟ ଡଙ୍କା ଚାମୁଚା
ଛୋଟ ପୁଡ଼ା ପୁଡ଼ିଆ
ଛୋଟ ଲୁଗା ଗାମୁଛା ।

ଛୋଟ ହାଣ୍ଡି ଆଟିକା
ଛୋଟ ତାଡ଼ ତାଡ଼ିଆ
ଛୋଟ କୋଠା ବାଟିକା
ଛୋଟ ଦୀଘି ଗଡ଼ିଆ ।

ଛୋଟ କୁଲା କୁଲେଇ
ଛୋଟ ବାଘ ବିଲେଇ
ଛୋଟ ଝିଅ ଫୁଲେଇ ।

# ଘର

ରଜା ରହିଥାଏ ରାଜବାଟୀରେ
ଜେଲ ଘରେ ରହେ ଚୋର
ଦଦରା କୋଠାରେ ବାବନା ଭୂତ
ଚଷାର କୁଡିଆ ଘର ।

ସାପ ରହିଥାଏ ଉଇ ହୁଙ୍କାରେ
ଡାଳରେ ଚଢ଼େଇ ବସା
ପଙ୍କ ଗାଡ଼ିଆରେ ବେଙ୍ଗର ଘର
ଗାତ ଖୋଳି ରହେ ମୂଷା ।

ମହୁମାଛି ଥାଏ ମହୁଫେଣାରେ

ଦେଉଳ ହେଉଛି ଦିଅଁଙ୍କ ଘର
ଗୁମ୍ଫାରେ ରହନ୍ତି ମୁନି ଋଷି ଭାଲୁ
ଗୁଣ୍ଡୁଚିର ଘର ଗଛ କୋରଡ଼ ।

ନିଜ ନିଜ ଘର ଗେଣ୍ଡା କଇଁଛ
ବସ୍ତାନି ବହିର ଘର
କୁନି ପିଲା ଘର ମା'ର କୋଳ
ସପନର ଆଖି ତଳ ।

କିନ୍ତୁ,
ଫୁଟପାଥ ନୁହେଁ ମଣିଷର ଘର
ବାଘ ଘର ନୁହେଁ ଚିଡ଼ିଆ ଖାନା
ପଂଜୁରୀ ନୁହଇ ଚଢ଼େଇର ବସା
କାହା ଘର ନୁହେଁ ପୁଲିସ ଥାନା ।

## ଆଠଗଡ଼ର ପିଲା

ନିଘୋଡ଼ ନିଦରେ ଶୋଇ ରାତି ଆଠଟାରେ
ସ୍ୱପ୍ନରେ ଦେଖିଲା ଯାହା ହେଉଛି ସେଠାରେ :

ଆଠଜଣ କାଠୁରିଆ କାଟୁଛନ୍ତି କାଠ
ଆଠ ଗୋଟିପୁଅ ମିଶି କରୁଛନ୍ତି ନାଟ ।

ଅକ୍ଟୋପସ ବସିଅଛି ଆଠ ହାତ ଖୋଲି
ଆଠଟି ସମୁଦ୍ର ଜୀବ ଧରିନେବ ବୋଲି ।

ସମ୍ମୁଖରେ ଅଷ୍ଟଧାତୁ ଦେବୀ ପ୍ରତିମାର

ଅଷ୍ଟ ଅବଧାନୀ କରେ ସାଷ୍ଟାଙ୍ଗ ଜୁହାର ।

ଏତେବେଳେ ଆଠଜଣ ଚିରଗୁଣୀ ଆସି
ଆଠଟି ଡାହାଣୀ ଆଠ ଭୂତ ସଙ୍ଗେ ମିଶି
ଡ଼ରାଇଲେ ନାଚିକୁଦି ତା ସ୍ୱପ୍ନ ଭିତରେ
ଚମକି ଉଠିଲା ପିଲା ନିଦ ବାଉଳାରେ ।

ଆଖିଖୋଲି ଦେଖିନେଲା ଚାରିଆଡ଼େ ତାର
ଜଗି ରହିଛନ୍ତି ତାକୁ ଆଠ ଦିକ୍‌ପାଳ ।

ଏଥରକ ଆଉ କିଛି ଭୟ ନାହିଁ ଜାଣି
ନିଦରେ ନିଦକ ହୋଇ ଶୋଇଗଲା ପୁଣି ।

## ପୁଷି ବିଲେଇ

ପୁଷି ବିଲେଇ ରେ ପୁଷି ବିଲେଇ
ଏତେ ଦିନ ଥିଲୁ କୋଉଠି ଯାଇ ?

ଚାଲି ଯାଇଥିଲି ଦରିଆ ପାରି
ବିଲାତୀ ରାଣୀକୁ ଦେଖିବି ବୋଲି ।

ପୁଷି ବିଲେଇରେ ପୁଷି ବିଲେଇ
କି ଭଳି ସେଠାରେ ରାଣୀର ଛଇ ?

ଯୁବରାଣୀ ହେଲା ଘର ବୁଢ଼େଇ

ରାଣୀ ବସିଥିଲେ ମୁହଁ ଫୁଲେଇ ।

ପୁଷି ବିଲେଇରେ ପୁଷି ବିଲେଇ
ମନାଇଲୁ ତାଙ୍କୁ କି କଥା କହି ?

କିଛି ନ କହି ମୁଁ ଆସିଲି ଫେରି
ବିଲାତ ଦେଶକୁ ଜୁହାର କରି ।

# ଆଖି ମେଲା ସପନ

ଦରିଆ ଉପରେ ରେଳଗାଡ଼ି ଯାଏ
ଆକାଶରେ ଉଡ଼େ ବଳଦ ଗାଡ଼ି
ମୂଷା ଦଉଡ଼ିଛି ବିରାଡ଼ି ପଛରେ
ନେଉଳ ରହିଛି ସାପକୁ ଡରି ।

ମାହୁନ୍ତ ଉପରେ ହାତୀ ଚଢ଼ିଯାଏ
ଦିନ ଦି ପହରେ ଚମକେ ତାରା
ଘାସ ଖାଇଗଲା ଗାଈ ବାଛୁରୀକୁ
ରାତିରେ ପଡୁଛି ଡାହାଣୀ ଖରା ।

ପଥର ଭାସୁଛି ପୋଖରୀ ଉପରେ
ଦୁଇ ଦୁଇ ମିଶି ହୋଇଲା ତେର
ମଲା ଲୋକ ବସି ସିଗାରେଟ ପିଏ
ପୁଲିସ ବାଲାକୁ ଧରିଲା ଚୋର ।

ଅଧାରାତି ହେଲା ନିଦ ଆସୁନାହିଁ

ଆଖି ମେଲା କରି ଖଟରେ ପଡି
ଦୁନିଆ ଯାକର ବାଜେ କଥା ସବୁ
ସପନକୁ ମୋର ଆସୁଛି ମାଡ଼ି ।

## ଜୀବ ଅଜୀବ

ଅତି ଭୋକେ ଲୋକ ଖାଇଲେ କୋଇଲି
ଚୋର ନେଇଗଲା କଜଳପାତି
ମାଙ୍କଡ଼ ଆସିଲା ମାଙ୍କଡ଼ି ଲଗାଇ
ବନ୍ଧୁକ ଘୋଡାକୁ ଟିପିଲା ପାତି
ଘୁଷୁରି ଘୁଷୁରି କିଛି ବାଟ ଯାଇ
ହାତୀଅନ୍ଧ ପାଖେ ମରିଲା ହାତୀ ।

## ଗଧ କାଉ

ଗଧ କହିଲା, ରେ କାଉ
କେଡ଼େ ସୁନ୍ଦର ତୁ ଗାଉ
ମନ ପୂରି ଯାଏ ଗଳା ଶୁଣି ତୋର
ଯେବେ କରୁ ରାଉ ରାଉ ।

କାଉ କହିଲା, ରେ ଗଧ

ମୁହଁ ତୋ ପୁନେଇ ଚାନ୍ଦ
କି ଭଳି ସୁନ୍ଦର ରୂପକୁ ପାଇଛୁ
ଦେଖି ଦେଲେ ମନ ବୋଧ ।

## ଓଟ

ଓଟରେ ଓଟ
ବେକ ପିଠି ତୋର ଛୋଟ କି ମୋଟ ?

ନଡ଼ ବଡ଼ ଚାଲି ଲହଲହକା
ଯୁଆଡୁ ଦେଖିଲେ ଦିଶଇ ବଙ୍କା

ବେଢଙ୍ଗ ବେଢ଼ବ ବେଜାର ମାପ
କିଏ ଦେଲା ତତେ ଏ ଭଳି ରୂପ ?

## ଘୋଡ଼ା

ଏକମାତ୍ର ଜନ୍ତୁ ମିଛିମିଛିକା
          ଡିମ୍ବ ଦିଏ ବୋଲି ଜଣା
କିଣା ହୋଇଥାଏ ଛ' ଟଙ୍କାରେ କିନ୍ତୁ
          ଖାଏ ନ' ଟଙ୍କାର ଦାନା ।
ସରି ନୁହେଁ ସିଏ ଯୋଡ଼ାକୁ
ଦେଖିଚ ଏ ଭଳି ଘୋଡ଼ାକୁ ?

## ଦେଖରେ ଦେଖ

ଦେଖରେ ଦେଖରେ ଦେଖ
କାନ୍ଥରେ ଘଡ଼ି ଏକ ।

ମୂଷା ଗଲା ତାକୁ ଚଢ଼ି
ଏକ ବଜାଇଲା ଘଡ଼ି
ମୂଷା ଗଲା ତଳେ ପଡ଼ି
ପଳାଇଲା ଡରି ମରି ।

କାନ୍ଥରେ ଘଡ଼ି ଏକ
ଦେଖରେ ଦେଖରେ ଦେଖ ।

# ଅଜବ ଜୀବ

ଓଟକୁ ଯଦି ଭାବୁଚ ତମେ
ଅଜବ ଜୀବ ଏକ
ଓକାପି ଲ୍ଲାମା ଜିରାଫ ୟାକ
ହିପୋପଟାମସ ଦେଖ ।

# ଠେକୁଆ କଇଁଛ

ଠେକୁଆ କଇଁଛ ବାହାରିଲେ ଦିନେ ଦୌଡ଼ରେ ନେଇ ଭାଗ
ପ୍ରାଇଜ ପାଇବ ସେ ପାଖରେ ଯାଇ ପହଞ୍ଚିବ ଯିଏ ଆଗ ।

ଦଉଡ଼ି ଦଉଡ଼ି ଅଧାବାଟ ଯାଇ ଦେଖି ବରଗଛ ଛାଇ
କଇଁଛ ରହିଛି ଅନେକ ପଛରେ ଠେକୁଆ ପଡ଼ିଲା ଶୋଇ ।

ଧୀରେ ଅତି ଧୀରେ କଇଁଛ ଚାଲିଛି ହୋଇଗଲା ବାଟ ଅଧା
ବରଗଛ ତଳେ ଠେକୁଆକୁ ଟପି ଆଗକୁ ଚାଲିଲା ସିଧା ।

ଦେଖୁଥିବା ଲୋକେ କହିଲେ ଏଥର କଇଁଛ ଜିଣିବ ଏକା
ମଠ ହେଉ ପଛେ ଲାଗି ରହିଥିଲେ ଜିତାପଟ ତାକୁ ଲେଖା ।

ଏତେବେଳେ ଠିକ ଠେକୁଆ ହାତରେ ବାଜିଲା ଆଲାର୍ମ ଘଡ଼ି
ଧଡ଼ପଡ଼ ହୋଇ ଗହନ ନିଦରୁ ଉଠିଲା ସେ ଆଖି ମଳି ।

ଦେଖିଲା ଯାଉଛି କଇଁଛ ଆଗରେ ପାଦରେ ପାଦକୁ ମାପି
କୁଦା ମାରି ଗଲା ଠେକୁଆ ତାହାକୁ ସହଜରେ ଗଲା ଟପି ।

ଠେକୁଆର ହେଲା ଜିତାପଟ, ଗଲା କଇଁଛ ବିଚରା ହାରି
ନୀତି କଥା ଯାହା ଶୁଣିଥିଲେ ଲୋକେ ସବୁ ଗଲା ଜଳି ପୋଡ଼ି ।

ନୂଆ ନୀତିଶିକ୍ଷା :
ଦଉଡ଼କୁ ଦଉଡ଼ ଆରାମକୁ ଆରାମ
ଜିତାପଟ ହେଲା ଯାର ତା ନାଁ ଆଲାର୍ମ ।

## ଲୋକଟି

ତରତର ହୋଇ    ଗଲାବେଳେ ଦିନେ
ନିତି ଦିନିଆ ମୋ ବାଟରେ
ସେଇ ଲୋକଟିକୁ    ଭେଟିଲି ମୁଁ ଯିଏ
ନ ଥିଲା ସେ ଦିନ ସେଠାରେ ।

ଆଜି ବି ନ ଥିଲା    ସେ ବାଟରେ ସିଏ
କେଜାଣି କି ହେବ କାଲିକି
ମରୁଛି ମୁଁ ଭାବି    କିଏ ସେଇ ଲୋକ
ମୋ ପଛେ ଲାଗିଛି କାହିଁକି !

## ହାତ ଦେଖା ହାତୀ

କଳା କନା ବାନ୍ଧି ଆଖିରେ ତାର
ପଚାରିଲେ ତାକୁ କେ ଅଛି ଆଗରେ
ଛୁଇଁ ଦେଇ ଖାଲି କହି କି ପାର ?

ଛୁଇଁଲା ସବୁ ସେ ହାତକୁ ବଢାଇ
ଆଗ ପଛ ବାଁ ଡାହାଣ ହାତି
ଅନେକ ବିଚାରି    କହିଲା ଶେଷକୁ
ଏଇଟି ଗୋଟିଏ ବିରାଟ ହାତୀ ।

ଆଖିରୁ ଖୋଲିଲା କଳାକନା ଯେବେ
ଅନାଇ ଦେଖିଲା ଭଲାରେ ଭଲା
ଆଗରେ ରହିଛି କାନ୍ଥ, ଚାରି ଖମ୍ବ

ଗୋଟିଏ ଦଉଡ଼ି ଦୁଇଟି କୁଳା !

ବୁଝିଲା ସେ ଏକ ଗଧ
ବୁଦ୍ଧି ବିଚାରରେ ନିପଟ ଜଳକା
ଆଖି ଥାଉ ଥାଉ ଅନ୍ଧ ।

## ରମା ଓ ରାମ

ସକାଳେ ଦିନେ କୂଅ ମୂଳକୁ
ପାଣି ଆଣିବା ପାଇଁ
ବାଲଟି ଧରି ଭାଇ ଭଉଣୀ
ଦି ଜଣ ଥିଲେ ଯାଇ ।

ଗୋଡ଼ ଖସଡ଼ି ପଡ଼ିଲା ରାମ
ଉଠିଲା ନାହିଁ ଜମା
ଘରକୁ ଦୁଇ ବାଲଟି ପାଣି
ଆଣିଲା ଏକା ରମା ।

କିଏ କୁଆଡ଼େ ଗଲା
ଅ ଗଲା ଅଠରନଳା ଦେଖିବ ବୋଲି ରଥ
ଆ ଗଲା ଆଠଗଡ଼ କାଟିବ ବୋଲି କାଠ ।

ଇ ଗଲା ଇରମ ସେଠି ଖାଇବ ଲୁଣ ରାନ୍ଧି
ଉ ଗଲା ଉମରକୋଟ ଓଭରକୋଟ ପିନ୍ଧି ।

ଏ ଗଲା ଏରସମାକୁ ଚୂଡ଼ା ଚାଉଳ ନେଇ

ଓ ଗଲା ଓଲଟପୁର ହାତ ଯୋଡ଼ିବା ପାଇଁ ।

ସୁବିଧା ନାହିଁ ଆଖ ପାଖରେ ରଖିବା ପାଇଁ ପାଦ
ଔ ତେଣୁ ପଳାଇ ଗଲା ଔରଙ୍ଗାବାଦ ।

## ଡିନର

ନାଁ ମିଷ୍ଟର କକ୍, ନୁହେଁ ସାମାନ୍ୟ ସେ ପକ୍ଷୀ
ଲାଲ ଟୋପି ପିନ୍ଧି ମୁହଁ ଉପରକୁ ଟେକି
ଆଖି ତାର ଜକ ଜକ
କରୁଥିଲା ବକ ବକ
ଚାଲୁଥିଲା ଧପ ଧପ ତଳକୁ ନ ଦେଖି ।

କିଏ ପଚାରିଲା, ଭାଇ, କିଆଁ ତରତର
ମୁହଁ ବଙ୍କାଇ କହିଲା, ଅଛି ମୋ ଡିନର
ରାତି ଠିକ ଆଠ ବେଳେ
ଫାଇଭ ଷ୍ଟାର ହୋଟେଲରେ
ବାଜେ କଥା ଏତେବେଳେ ଆଉ ନ ପଚାର ।

ଏଇ ଭଳି ମିଷ୍ଟର କକ୍ ଠିକ ସମୟରେ
ସିଧା ପହଞ୍ଚିଲେ ଯାଇ ଟେବୁଲ ଉପରେ ।

## ଭେକ

ସିଂହ ସେ ନୁହେଁ ବସେ ରାଜା ଭଳି ଠାଣିରେ
ମାଛ ନୁହେଁ ରହିପାରେ ପୋଖରୀର ପାଣିରେ ।

ବାଘ ନୁହେଁ ଜାଗା ଜାଗା କୁଦା ମାରି ଯାଏ
ନେଉଳ ନୁହେଁ ସେ ହେଲେ ବୁଦା ପାରି ଥାଏ ।

ଚୋର ନୁହେଁ ସାରା ରାତି ଶୁଏ ନାହିଁ ଜମା
ବାବାଜୀ ନୁହେଁ ସେ ଥାଏ ଜପରେ ନିକମା ।

ନଈରେ ପହଁରି ପାରେ ନୁହଇ ସେ ଚେଙ୍ଗ
ଅଦ୍‌ଭୁତ ଭେକ ତାର ସେ ହେଉଛି ବେଙ୍ଗ ।

## ଯୋଡ଼ାକୁ ଘୋଡ଼ା

ଦିଅଁ ଗଢୁ ଗଢୁ    ମାଙ୍କଡ଼ ହେଲା
ବଡ଼ ହୋଇଗଲା ଛୋଟ
ଚାରିଜଣ ମିଶି    ଆଙ୍କିଲେ ଘୋଡ଼ା
ଦିଶିଲା ସେ ଠିକ ଓଟ ।

# ଅ ର ଚୋର

ଲେଖୁ ଲେଖୁ ବସି ମୋ ପଢ଼ା ଘରେ
ଶୋଇ ଯାଇଥିଲି ଗାଢ଼ ନିଦରେ।

କେତେବେଳେ ଆସି ଚୋରଙ୍କ ଦଳ
ରାତିରେ ପଶିଲେ ଘର ଭିତର।

ଯେତିକ ଜିନିଷ ଥିଲା ମୋ ଘରେ
ସବୁ ପୋଛି ନେଲେ କଳା କନାରେ।

ଶେଷରେ ଚୋରାଇ ନେଲେ ସେ ଚୋର
କବି ରୁ ମୋର କିଛି ଅକ୍ଷ ।

# ପଣ୍ଡିତଙ୍କ ମୁଣ୍ଡ

ଦିନ ରାତି ପାଠ ପଢ଼ି
ପଣ୍ଡିତଙ୍କ ମୁଣ୍ଡ ଭାରୀ
ତାଳ ରଖି ପାରେ ନାହିଁ
ତାଙ୍କ ଅତରଛରେ,
ପଣ୍ଡିତେ ଯା'ନ୍ତି ଆଗ
ତର ତର ଡଗ ଡଗ
ମୁଣ୍ଡ ତାଙ୍କ ରହିଥାଏ
ଦୁଇଫୁଟ ପଛରେ ।

# ପାଣିପାଗ ବାଲା

କହିଲା ସେ ହେବ ପ୍ରବଳ ଖରା
ବରଷିଲା ମେଘ ମୂଷଳ ଧାରା ।

କହିଲା ସେ ହେବ ଗରମ ଭାରି
ହାଡ଼ ଭଙ୍ଗା ଶୀତ ଆସିଲା ମାଡ଼ି ।

ଦେହରେ ଗଲାନି ଏଠାରେ ପାଣି
ଯାହା ସେ କହିଲା ଗଲା ଉଜାଣି ।

ଜାଣିଲା ଏଥର ବୁଡ଼ିବ ଭେଲା
ତେଣୁ ସେ ଛ'ମାସ ଛୁଟିରେ ଗଲା ।

# ମେଳ ଅମେଳ

ହାଇନା ପାଖରେ ମଇନା
ଶେଉଳ ପାଖରେ ନେଉଳ;
ଜେବରା ପାଖରେ ଗୋବରା
କୁକୁର ପାଖରେ ଚକୋର;
ଠେକୁଆ ପାଖରେ ଚକୁଆ
କିନ୍ତୁ
ମେଳ ନାହିଁ ଲୋକ ଲୋକର ।

# ସାପ ନିଶାପ

ସାପ ହେଉଥିଲା ଭୋକରେ ବିକଳ
ଖାଇଲା ଲାଂଜକୁ ପାଟିରେ ନେଇ,
ପୂରା ଖାଇଦେଲା ନିଜକୁ ଏଥର
କିଛି ବି ବଳକା ରହିଲା ନାହିଁ।

# ପଣ୍ଡିତଙ୍କ ଫଂଟ

ଜଣେ ପଣ୍ଡିତ ଅତି ପତଳା ଆଉ ଜଣକ ମୋଟା
ଠାରେ ବସି ପେଟ ପୂଜାରେ ଚଢ଼ାଉଥିଲେ ପିଠା
ଦେଖିବ ଯଦି କିଏ କେତିକି ସରୁ କେତିକି ମୋଟ
ଉପର ଧାଡ଼ି ଦୁଇ ପାଖରେ ଅଛି ତାଙ୍କର ଫଂଟ।

(କବିତାର ଦ୍ୱିତୀୟ ଧାଡ଼ିର ଠା ଠା )

# ସବ୍‌ଜାନ୍ତା

ଏକାଥରେ କରିପାରେ
ମ୍ୟାଉଁ ମ୍ୟାଉଁ ମେଁ ମେଁ ଭୋ ଭୋ
କା’ କା’ ହୁଁ ହାଁ ହୁକେ ହୋ ।
ଭୁକେ ରଡ଼େ କୁହାଟେ ଓ ବୋବାଏ
ଗରଜେ ଘୁମୁରେ ରାବେ ବୋବାଏ।
ଏଭଳି ଗୋଟିଏ ଜୀବ
ନୁହେଁ ସେ ମାମୁଲି କେଉଁ ଜନ୍ତୁ ବା ଜୁନ୍ତା
ସହରର ସଭାଘରେ ବକ୍ତୃତା ଦେଉଥିବା
ସିଏ ସବ୍‌ଜାନତା।

# ଲେଖା ପଢ଼ା

ଜାଣେନା କବିତାମାନେ କେଉଁଠାରେ ଥାଇ
କିପରି ଆସନ୍ତି ମୋର ସ୍ୱପ୍ନକୁ ଓହ୍ଲାଇ।
ପାଖରେ ମୁଁ ରଖିଥାଏ କଲମ କାଗଜ
କବିତା ଲେଖିବା ତେଣୁ ମୋ ପାଇଁ ସହଜ।

ଏଇପରି ଥିଲି ଦିନେ ନିଶାରେ ଅତଳ
ବହିଗଲା ମୋ ଛାତିରେ କବିତାର ଝର।
ଭାଙ୍ଗିଦେଲା ନିଦ ମୋର ପରଲୋକବାସୀ
ଉଠିପଡ଼ି କବିତାକୁ ଲେଖିନେଲି ବସି।
ସନ୍ତୋଷରେ ଶୋଇଗଲି ଉଠିଲି ସକାଳେ

ଦେଖିଲି ସୁନ୍ଦର ଭାବେ କାଗଜ ଉପରେ
ନିଟୋଳ ଅକ୍ଷର ନେଇ ରହିଛି ସଜାଡ଼ି
ଦୀର୍ଘ ଏକ କବିତାର ଚଉବନ ଧାଡ଼ି ।

ଶତ ଚେଷ୍ଟା କରି କିନ୍ତୁ ହେଲି ଅସଫଳ
ପଢ଼ିବାକୁ, ହାୟ, ମୋର ନିଜ ହସ୍ତାକ୍ଷର ।

(ଇଂରେଜୀ କବିତା Kubla Khan ଏହାର ପ୍ରେରଣା । ଦିନେ ରାତିରେ ଅଫିମ ନିଶାରେ ଶୋଇଥିବା କେଳେ କବି Samuel Taylor Coleridge ମନେମନେ ୨୦୦ରୁ ୩୦୦ ଧାଡ଼ିର କବିତାଟି ତିଆରି କରିଥିଲେ । ସକାଳୁ ଉଠି ସ୍ୱପ୍ନରେ ଦେଖିଥିବା କବିତାର ୫୪ଧାଡ଼ି ଲେଖିସାରିବା ବେଳକୁ Porlockରୁ ଜଣେ ଲୋକ ଆସି ତାଙ୍କୁ ଦେଖାକଲା । ଏଥିରେ ତାଙ୍କର ଚିନ୍ତାଧାରା ବାଧା ପାଇଲା ଏବଂ କବିତା ଆଉ ଆଗକୁ ବଢ଼ିଲା ନାହିଁ ।)

## ଭୁଲା ଚଲା

ସଡ଼କରେ ଯାଉ ଯାଉ ଚମକିଲି ଦେଖି
ନାକରେ ଚଷମା ଅଛି ନାହିଁ ମୋର ଆଖି ।
ଚାଲିଛନ୍ତି ମଚ ମଚ ମୋର ଜୋତା ଯୋଡ଼ି
ଯଦିଓ ପାଦକୁ ଘରେ ଆସିଛି ମୁଁ ଛାଡ଼ି ।

# ପାରିବାର ପରିବାର

ପାରିବାର ଘର ମୋର
ହାତୀ ମୋର ସାଥୀ,
ସାପ ମୋର ବାପ ଆଉ
ପାତି ମୋର ନାତି ।

ମୂଷା ମୋର ମାଉସୀ
ମଇଁଷୀ ମୋ ମାଉସୀ
ହାଇନା ମୋ ଭାଇନା
ପୁଷି ମୋର ପିଉସୀ ।

ତଥାପି ନ ଡର ଯଦି
ଶୁଣି ନିଅ ଏଥର
ହେଟା ମୋର ବେଟା ଆଉ
ଅସୁର ମୋ ଶଶୁର ।

# ଅବୋଲକରା

ରମ୍‌ରେ ମିଶାଅ ପାଣି କହିଲେ ସେ
ପାଣିରେ ମିଶାଏ ରମ୍
କମ୍ ବେଶି ଦିଅ କହିଲେ ସେ ଆଣି
ଦେଇଯାଏ ବେଶି କମ୍ ।

ମୁଁ କହିଲେ ତାକୁ ଚା ଓ ବିସ୍କୁଟ
ସେ ଆଣେ ବିସ୍କୁଟ ଚା
ସେଠିକି ଯିବା ମୁଁ ଯଦି କହେ ତାକୁ
ସେଠାରୁ ସେ କହେ ଆ।
ପାଦ ପୂରଣ ସେ କରେ କବିତାର
ଆଗ ଧାଡ଼ିଟିକି ଯୋଖି
ମୁଁ ତାକୁ ଦେଖାଏ ଯଦି କବିତାର
ଶେଷ ଧାଡ଼ିଟିକି ଲେଖି।

## ନନ୍ଦକିଶୋର ବଳ

ନନ୍ଦ କିଶୋର ବଳ
ନ ପାଇଲେ ଥଳକୂଳ;
ଭୁଲି ଯାଇ କାଉ କଥା
ଲେଖିଲେ କନକଲତା।

## ସହରକୁ ରାସ୍ତା

ଏପରି ଗୋଟିଏ ପିଲା ଥିଲା ଯେ କଟକରେ
ନାନାଦି ସହର କଥା ପଢ଼ି ପୁସ୍ତକରେ
ବାହାରିଲା ଘର ଛାଡ଼ି
ନାକ ସିଧା ଚାଲି ଚାଲି
ପହଞ୍ଚିଲା ଶେଷେ ଯାଇ ଭ୍ଲାଡ଼ିଭସ୍ଟକରେ।

## ଓଲଟପୁରର ଲୋକ

ରାତିରେ କରନ୍ତି କାମ ଶୁଅନ୍ତି ଦିନରେ
ଆଖିରେ ଶୁଣନ୍ତି ଆଉ ଦେଖନ୍ତି କାନରେ

ଶୀତ ଦିନେ ଖାଲି ଦିହ ଖରାରେ କମ୍ବଳ।
କ' ଖ' ନୁହେଁ ତାଙ୍କ ପାଠ ହଯବରଳ।

ମୁଣ୍ଡରେ ରଖନ୍ତି ଜୋତା ପଗଡ଼ି ପାଦରେ
ଖଟ ତଳେ ଆରାମରେ ଶୁଅନ୍ତି ନିଦରେ।

ଖୁସିରେ କାନ୍ଦନ୍ତି ଅଉ ହସନ୍ତି ଦୁଃଖରେ
ତାଙ୍କ ଭଳି ସୁଖୀ ଲୋକ ନଥିବେ ଭୂତଳେ।

## ନବଗୁଂଜର

ମୁଣ୍ଡଟି କୁକୁଡ଼ା ଭଳି ବେକଟି ମୟୂର,
ସିଂହ କଟୀ ସାପ ଲାଂଜ ବୃଷଭର ଚୂଳ,
ତିନିଗୋଟି ଗୋଡ଼ ଘୋଡ଼ା ହାତୀ ଓ ବାଘର,
ଆହୁରି ଗୋଟିଏ ଗୋଡ଼ ହାତ ମଣିଷର।

ଏଭଳି ଗୋଟିଏ ଜୀବ ଦେଖିଛ କି ଅଛି କେଉଁଠାରେ
ମୁଁ ବି କେବେ ଦେଖିନାହିଁ ଚିତ୍ରକାର କଳ୍ପନା ବାହାରେ।

## ରଂଗ ବେରଂଗ

ବାଇଗଣୀ ଆଉ ଘନନୀଳ ନୀଳ
ସବୁଜ ହଳଦୀ କମଳା ନାଲି,
ଯେତେବେଳେ ତମେ ଖୋଜି ବୁଲୁଥିବ
କାହାକୁ କେଉଁଠି ଦେଖିବ ବୋଲି,
ଆକାଶରେ ଯାଇ ସବୁ ହୋଇଯିବ
ଗୋଟିଏ ଇନ୍ଦ୍ରଧନୁର ହୋଲି।

## ଶାଠେ ଶାଠ୍ୟମ୍

ଦୀର୍ଘଦିନ ଅକର୍ମଣ୍ୟ ଅସହାୟ ଭୋକରେ ଉଚ୍ଚାଟ
ନଖ ଦନ୍ତହୀନ ବ୍ୟାଘ୍ର ବସିଥିଲା ତଡ଼ାଗର ତଟ।
ଡାକୁଥିଲା ପଥିକଙ୍କୁ ହାତେ ଧରି ସୁବର୍ଣ୍ଣ କଙ୍କଣ
ପହଞ୍ଚିଲା ତା ପାଖରେ ଅବିଳମ୍ବେ ଲୁବ୍‌ଧକ ବ୍ରାହ୍ମଣ।
ଲଗାଇଲା ନିଶ୍ଚେତକ ଶାର୍ଦ୍ଦୁଳକୁ କରିଲା କବଳ
ବ୍ୟାଘ୍ର ଚର୍ମ ପାଇବାର ଏହା ଥିଲା ସହଜ କୌଶଳ।

# ଅର୍ଦ୍ଧବିରାମ

ବନ୍ଧନୀର ବାହୁ ପାଶେ ବନ୍ଦ ରହି କବି
ଡାକୁଥିଲା ତ୍ରାହି ତ୍ରାହି କେବେ ମୁକୁଳିବି ।

ଛାଡ଼ ପାଇ ଲେଖି ବସେ ଅତି ସରାଗରେ
ଅକ୍ଷରକୁ ରଖେ ନେଇ ଅକ୍ଷର ଆଗରେ ।

ଶବ୍ଦରେ ଆହୁରି ଶବ୍ଦ ଆଦରେ ସଜାଡ଼ି
ଚାଲିଥାଏ ସବୁ ଠିକ, ଧାଡ଼ି ପରେ ଧାଡ଼ି ।

ହଠାତ୍ କୁଆଡ଼େ ମନ ଚାଲିଗଲା ଭାସି
କଲମ ଅଟକି ଗଲା କମା ପାଖେ ଆସି ।

(ଅର୍ଦ୍ଧ ବିରାମ : ଅର୍ଦ୍ଧବିରାମ = Comma; ବନ୍ଧନୀ = Bracket)

# ବିଲାତୀ ଜନ୍ତୁ

ହୋ ହୋ ହୋଇ ହସୁଛି ହାଇନା
କୁକୁର ଧକାଏ ଥକି,
ଜେବ୍ରା ଚାଲୁଛି ସହର ଛକରେ
ପଟା ପଟା ଦାଗ ଦେଖି ।

ବିଲେଇ ଯାଉଛି ଚୋରି କରିବାକୁ
ଠେକୁଆ ମାରିଲା ମୁଥି,
କୋକିଶିଆଳୀର ଡାକ୍‌ଧ୍ୱନ୍ ଦେଖି
ହେଟାବାଘ ଦେଲା ସିଟି ।
କୁମ୍ଭୀର କାନ୍ଦୁଛି ସକ ସହ ହୋଇ

ଆଖିରେ ଆଖିଏ ଲୁହ,
ଦି ହାତରେ ଭାଲୁ ଜାବୁଡ଼ି ଧରିଛି
କେମିତି ଖସିବ କହ।

(ବିଲାତି ଜନ୍ତୁ : ଇଂରେଜୀରେ କୁହାଯାଇଥାଏ laughing hyena, dog-tired, zebra crossing, cat burglar, rabbit punch, fox trot, wolf whistle, crocodile tears, bear hug)

# ଲଙ୍କାରେ ରହି ନାମ

ଦଙ୍ଗା ଲାଗିଛି ଜୋର
ଚାରିଆଡ଼େ ପୋଡ଼ା ଜଳା
ହରିବଲ୍ ! ହରିବୋଲ ।

ଛକରେ ଫୁଟିଲା ବମ୍
ଜଲଦି ଘରକୁ ପଳା
ହରି ହୋମ୍ ! ହରି ଓମ୍ ।

# ବାଜେ କଥା

ମନ୍ଦିରରେ ଘଣ୍ଟି ବାଜେ ଗାଲରେ ଚାପୁଡ଼ା
ଘଣ୍ଟାରେ ସମୟ ବାଜେ ବାଜେ ତାନପୁରା।
ଘରେ ନ ପଶୁଣୁ ମୁଣ୍ଡ ବାଜିଲା ଚାଳରେ
ଲେଖୁଛି ସେ କଥା ବସି ବାଜେ କାଗଜରେ।

(ବାଜେକଥା : ବାଜେ କାଗଜ = ବେଦରକାରୀ ବା ରଦ୍ଦି କାଗଜ)

## କର୍ମଫଳ

ଆଗେ ଭାବୁଥିଲି ମରିବା ପରେ
ପୋତା ହେବି କି ପୋଡ଼ା ହେବି
କର୍ମ କଥା ଶୁଣି ଏବେ ମୋ ଚିନ୍ତା
ତୋତା ହେବି କି ଘୋଡ଼ା ହେବି।

## ବୋଲକରା

ପୁରୁଣା ଦୀପକୁ ଘଷି କହିଲି ମୁଁ
ଏକ ଦୁଇ ତିନ
ହଠାତ ଆଗରେ ଆସି ଠିଆ ହେଲା
ବୋଲକରା ଜିନ।

ସେଇଦିନୁ ରହିଛି ସେ ପାଖେ ପାଖେ
ଛାଇ ପରି ମୋର
ସବୁ କାମ କରିଦିଏ କଥା ହେଲେ
ପାଟିରୁ ବାହାର।

ନିଦରୁ ଉଠାଇ ଦିଏ, ଚା' ଦିଏ
ଝାଡୁ ମାରେ ଘରେ
ରାନ୍ଧେ ଓ ପରଶିଦିଏ, ରାତିରେ ସେ
ଶୁଆଏ ନିଦରେ।

ଆରାମରେ ଅଛି ମତେ ପଡ଼େ ନାହିଁ
କରିବାକୁ କିଛି
ମତେ କିନ୍ତୁ ପଚାରନି ଏ ଗୀତଟି
କିଏ ସେ ଲେଖିଛି ।

(ବୋଲକରା : ଜିନ = djinn; ପ୍ରେତ)

# ବରଯାତ୍ରୀ

ବିଲୁଆ ନନାର ବାହା ବରାତୀ
ଆସିଗଲେ ଜାତି ଭାଇ ଭଉଣୀ
ନେଉଳ ଭାଇର ଶେଉଳ ସାଥୀ
ବାଘ ମାମୁ ମାଇଁ ବିଲେଇ ନାନୀ ।

ପହଞ୍ଚିଲେ ସବା ଶେଷକୁ ଆସି
କଣା ମାମୁ ଆଉ ଟାଙ୍ଗୀ ମାଉସୀ ।

(ବରଯାତ୍ରୀ  : ଶେଷ ଦୁଇଜଣ ବହିର ଚରିତ୍ର । କଣା ମାମୁ  ଲକ୍ଷ୍ମୀକାନ୍ତ
ମହାପାତ୍ରଙ୍କର ସେହି ନାମ ଉପନ୍ୟାସରୁ  ଏବଂ ଟାଙ୍ଗୀ ମାଉସୀ ଫକୀର
ମୋହାନ ସେନାପତିଙ୍କ ଛ ମାଣ ଆଠଗୁଣ୍ଠରୁ)

# ରାମ ଔର ଶ୍ୟାମ

ରାମ ଓ ଶ୍ୟାମ ଜାଆଁଳା ଭାଇ
ଗାଁରେ ଡାକ ନାମ
ଅଜବ ସବୁ କାମ ତାଙ୍କର
ବିଧି ତାଙ୍କର ବାମ ।

ରାମ ଠକିଲେ ଶ୍ୟାମକୁ ଠିକ
ଛ' ମାସ ହୁଏ ଜେଲ
ପରୀକ୍ଷା ଦିଏ ରାମ ତଥାପି
ଶ୍ୟାମ ହିଁ ହୁଏ ଫେଲ ।

ଏପରି ହୋଇ ଗଡ଼ିଲା ଦିନ
ପଡ଼ିଲା ତାଙ୍କ ଦିହ
ଶେଷରେ ଆଉ ବାହା ହେବାକୁ
ମିଳିଲେ ନାହିଁ ଝିଅ।

ଗାଁରୁ ଯିବେ ପଳାଇ ବୋଲି
ଭାବିଲେ ମନେ ମନେ
ବିନା ଟିକେଟ ଟ୍ରେନରେ ଚଢ଼ି
ବସିଲେ ଯାଇ ଦିନେ।

ଛତ୍ରପତି ଶିବାଜୀ ଠାରେ
ଟ୍ରେନ ରହିଲା ଆସି
ବଲିଉଡ୍‌ରେ ଦି ଭାଇ ଏବେ
ଦିହିଁକି ଦିହେଁ ଖୁସି।

## ଲାଂଜ

ଦନ୍ତାବଳ ପଛେ ବଳଦ ରହିଛି
ଠେକୁଆ ପଛରେ କୁଆ,
ଚକୋଇ ପଛରେ କୋଇଲି ଲାଗିଛି
ଜଟିଆ ପଛରେ ଟିଆ,
ଲାଂଜ ଅଛି ବୋଲି କୁକୁର ପଛରେ
କୁରଙ୍ଗ ହୋଇଛି ଠିଆ।

## ଶୀତ ଯେ ଶୀତ

ଦାରିଙ୍ଗିବାଡ଼ିରେ ଶୀତ ଯେ ଶୀତ
କୋଲ ମାରିଯାଏ ଦିହ ଓ ହାତ।


ବାହାରିଲେ କଥା ପାଟିରୁ ଯାଇ

ବସିଯାଏ ସବୁ ଜମାଟ ହୋଇ ।

ଶୁଣୁ ସେ କଥାକୁ ଘରକୁ ଆଣି
କଡ଼େଇରେ ତାକୁ ତେଲରେ ଛାଣି ।

## ଦେଖା

ରାତିରେ ଦେଖନ୍ତି ବାଘ ଓ ବିଲୁଆ
ଚୋର ଖଣ୍ଟ ପେଚା ପୁଷି,
ବିଦ୍ୱାନ ଦେଖନ୍ତି କାମଳ ଆଖିରେ
ଦିବ୍ୟ ଲୋଚନରେ ଋଷି ।

(ଦେଖା : କାମଳ ଆଖି = jaundiced eye )

## ଧନ୍ଦା

ଖାଇବା ଟେବୁଲ ଉପରେ ଥୁଆ
ତିମି, ହାଡ଼, ମାଛ, କୋଚିଲା, କୁଆ ।
କହି ପାରିବ କି ଏଥିରୁ ଖୋଜି
କାହା ପାଇଁ ଥିଲା ଏ ଭଳି ଭୋଜି ?

( ଧନ୍ଦା : ଟେବୁଲ ଉପରେ ଖାଇବା ପାଇଁ ଥିବା ପାଞ୍ଚଟି ଜିନିଷରୁ ପ୍ରଥମ ଜିନିଷ 'ତିମି' ଥିଲା 'ତିମିଙ୍ଗିଳ' ପାଇଁ । ତିମିଙ୍ଗିଳ ହେଉଛି ତିମିକି ଗିଳି ଦେଲା ଭଳି ଅତି ବୃହତ୍ କାଳ୍ପନିକ ସାମୁଦ୍ରିକ ଜନ୍ତୁ ।)

## କାଇଲା ଝିଅ

ଯେ ଯାହା ଦେଲା ଖାଇଲା
ଯେଉଁଠି ହେଲେ ଶୋଇଲା
ନିଆଁରେ ଜଳି ଘାଇଲା
ବାପ ଘରକୁ ଯାଇଲା ।

## ଖରା ଯେ ଖରା

ଝାରସୁଗୁଡ଼ାରେ ଗରମ ଅତି
ଖଇ ଫୁଟୁଥାଏ ଏ ଭଳି ତାତି ।

ସେ ଦିନ ଦେଖିଲି ମଝି ସଡ଼କ
ଧପାଲି ଚାଲିଛି ଗୋଟିଏ ଲୋକ ।

ଦିନ ଦି ପହରେ ପ୍ରବଳ ଖରା
ତରଳି ଗଲାଣି ଦେହଟା ପୂରା,

ତଥାପି ଆଗକୁ ଯାଇଛି ମାଡ଼ି
ତରତର ତାର ଚୁଟିଟି ଖାଲି ।

## ଲୁଚାଛପା

ଚୁପଚାପ ରହିଥାଏ କାହାକୁ ମୁଁ ନ ଜଣାଏ କିଛି
କାହିଁକି କହିବି କହ କାହା ସାଙ୍ଗେ କଥା ମିଛାମିଛି ?
ତମେ ଯଦି ପଚାରିବ ଜାଣିବାକୁ କ'ଣ ମୋର ନାମ
ମୁଁ କହିବି, "କହିବିନି କେବେ ହେଲେ ମୋର ନାଁ ରାମ ?"
ତମେ ଯଦି ପଚାରିବ ଜାଣିବାକୁ କେତେ ମୋ ବୟସ

ମୁଁ କହିବି, "କିସ ହେବ ଜାଣିଲେ ମୋ ବୟସ ତେଇଶ।"
କ'ଣ କରୁଛି ବୋଲି ଲାଗିଛ ମୋ ପଛେ, ଆଚ୍ଛା ଲୋକ !
ହେଲା, ନିଅ, ଶୁଣ ଏଇ କବିତାର ଆଠ ଧାଡ଼ି ଯାକ।

## ଜନଗଣ

ବଙ୍ଗଳାରେ ବସି ଅନାଇ ଦେଖ
କିଏ ଯାଏ କାହିଁ କି ଭଳି ଭେକ :

ବାବୁ ଯାଉଛନ୍ତି ପଂଜାବୀ ପିନ୍ଧି
ତସ୍କର ଯାଉଛି କାଟିବ ସିନ୍ଧି।
ଗୁଜୁରାତୀ ଖାଇ କେ କରେ ମଜା
ଆସାମୀକୁ ହେଲା ଛ ମାସ ସଜା।
ତାମିଲି ବସିଛି ଦୋକାନ ଖୋଲି
ଓଡ଼ିଆଣୀ ନାଇ ଆସୁଛି ଗୋରୀ।

## ରାଜା

ଇତିହାସ ଭୁଲିଯିବ ତଥାପି
କିଛି ରାଜା ରହିଯିବେ ନିହାତି
କଳାପାନ ନାଲିପାନ
ପୁରୀ, ବାଲି, ବିଲାତୀ।

(ରାଜା : 'ବାଲିରାଜା' କାହ୍ନୁଚରଣ ମହାନ୍ତିଙ୍କର ଉପନ୍ୟାସ)

# ମାତ୍ରାଧିକ

ବିସର୍ଗ :
ଭୋଃ ଭୋଃ ହାଃ ହାଃ
ଓଃ ହୋଃ ବାଃ ବାଃ

ଚନ୍ଦ୍ରବିନ୍ଦୁ :
ମାଇଁ ଗାଁ ନାଁ ଅଁଳା
କଇଁଛ ମାଉଁସ କଅଁଳା ।

ଅନୁସ୍ୱାର :
କଂଗାରୁ ଓରାଂଓଟାଂ
ସିଂହ ଦେଖି ଚିତ୍‌ପଟାଂ ।

(ମଧୁସୂଦନ ରାଓଙ୍କୁ ନିବେଦିତ। ତାଙ୍କର ବର୍ଣ୍ଣବୋଧ ଏହାର ପ୍ରେରଣା)

অনুবাদ কবিতা

# ସ୍ୱପ୍ନ ବିଚାର

# (୨୦୦୦)

ଓ୍ୱେର୍ନର ଆସ୍ୱେନଷ୍ଟ୍ରମ (୧୯୧୮-୧୯୯୭)

ସ୍ୱିଡେନର ଏକ କୃଷକ ପରିବାରରେ ଜନ୍ମିତ ଓ୍ୱେର୍ନର ସ୍ୱିଡିଶ ଭାଷାର ଅଗ୍ରଗଣ୍ୟ କବି। ସେ ସ୍ୱିଡେନର ଅଧିକାଂଶ ସାହିତ୍ୟିକ ପୁରସ୍କାର ପାଇଥିଲେ ଏବଂ ୧୯୮୦ରୁ ସ୍ୱିଡିଶ ଏକାଡେମିର ସଭ୍ୟ ଥିଲେ।

# ସ୍ୱୀକାରୋକ୍ତି

ସ୍ତ୍ରୀଟି ଗଲା ନିଜର ଚର୍ଚ୍ଚକୁ;
ପୁରୁଷଟି ଗଲା ନିଜ ସମୁଦ୍ର କୂଳକୁ।

ସ୍ତ୍ରୀଟି ଯେଉଁ ପାନୀୟ ପିଇଲା ରକ୍ତ ପାଲଟି ଗଲା;
ପୁରୁଷଟି ଯେଉଁ ଲହରୀଙ୍କୁ ଦେଖିଲା
ତା ପାଣି ପାଲଟି ଗଲା।

ଲହରୀ ଭିତରେ ଆଲୁଅ ଖେଳୁଥାଏ-
ପବନରେ କଣ ଛାଇ ପଡ଼େ ଈଶ୍ୱରଙ୍କ ମୁହଁର ?
ଆମେମାନେ ଆଉ କଣ ଦେଖୁ,
ଛୋଟ ଛୋଟ ଲହରୀ ବ୍ୟତୀତ ?
ଆମେ ନିଜେ ଆଉ କଣ ?
ସେ ଦୁହେଁ ଆଲୋଚନା କଲେ
ଏସବୁ କଥା ଅଧାରାତି ଯାଏ।

ତା ପରେ ସ୍ତ୍ରୀ ଗଲା ନିଜର ଚର୍ଚ୍ଚକୁ;
ପୁରୁଷ ଗଲା ନିଜର ସମୁଦ୍ର କୂଳକୁ।

# କୁତୂହଳୀ ଝିଅ

ସ୍କୁଲକୁ ନ ଯାଇ
କୁତୂହଳୀ ଝିଅଟି ପାଣି ପାଖକୁ ଗଲା;
ମାଛ ଭଳି କିପରି

ପାଣି ଭିତରେ ରହି ନିଶ୍ୱାସ ନେଇ ପାରିବ
ସେ କଥା ଶିଖିବାକୁ।

## ନିଜେ ନିଜର

ସମସ୍ତେ ନିଜେ ନିଜର;
ତମେ ତମର।

ମୁକ୍ତ ବିଚରଣ କରୁଥିବା ପକ୍ଷୀ
ଏ ପର୍ଯ୍ୟନ୍ତ ଜନ୍ମ ନେଇ ନାହିଁ।

ସାତୋଟି ଅଣ୍ଡା ଥିଲା –
ଗୁଣ୍ଡୁଚି ମୂଷା ତାକୁ ନେଇ ନିଜ ଭାରିଜାକୁ ଦେଲା;
ସେ ଚାରିଟି ଅଙ୍କ ସିଝାଇଲା,
ଦୁଇଟି ଭଲ କରି ସିଝାଇଲା,
(ଗୋଟିଏ ତଳେ ପଡ଼ି ଭାଙ୍ଗିଗଲା)
ଶିଆଳ କହିଲା,
ମୁଁ ତତେ କଞ୍ଚା ଖାଇବି।

ସମସ୍ତେ ନିଜ ନିଜର
ମୁଁ ମୋର।

ନିଆଁ ନେଇଗଲା
ଶିଆଳ ଓ ତାର ଲାଞ୍ଜ ସମେତ ଜଙ୍ଗଲକୁ;
ସେ ସବୁ ତା'ର।

# ଆନନ୍ଦ

ଧୂସର ଦିନଟି ଖୁଣ୍ଟରେ ଆସି ଧକ୍କା ଖାଏ;
ବାସୁଥାଏ ପ୍ରାଚୀନତା ଓ ଦୁଃଖ ଭଳି।

ହୃଦୟର ଗୋଟିଏ କୋଣରେ କ୍ରୋଧ ଥାଏ,
ଅନ୍ୟ କୋଣରେ ମୃତ୍ୟୁ ବସି ହାଇ ମାରୁଥାଏ।

ହଠାତ ଏ କଥା ସମ୍ଭବ ହୁଏ-
ଆନନ୍ଦ ଆସି ନିଜର ରୂପ ଦେଖାଏ
ସକାଳ ଭଳି ଉଦ୍ଧତ,
ଏବଂ ଖତ ଗଦା ଉପରେ ଠିଆ
କୁକୁଡ଼ା ଭଳି ଜାକଜମକରେ।

# ଧଳା ଧୂଆଁ

ଶୀତ ଦିନର ଝରଣା ଉପରେ
ଧଳା ଧୂଆଁ ଭାସୁଥାଏ।

ତୃତୀୟ ଥର ପାଇଁ
ମୁଁ ମଲାଲୋକଟିକୁ ବିଦାୟ ଜଣାଏ।

କିଏ ଆସି ବୁଝାଇ ଯାଏ
ଘାସ ଓ ଚଢେଇଙ୍କ ବିଷୟରେ -
ଯାହା ହେଉଛି
ବଞ୍ଚିବାର ଚର୍ବିତ ଚର୍ବଣ ନୀତିକଥା।

## ଭୋର ବେଳା

ଦିନେ ଭୋର ବେଳା,
ଇନ୍ଦ୍ରିୟ ଓ ଆଲୁଅର ସକାଳେ
ତମର ଓ ପୃଥିବୀ ଭିତରେ
କୁହୁଡ଼ି ନ ଥିଲା, ପର୍ଦ୍ଦା ନ ଥିଲା।
ଏବେ ଭଳି ଆକାଶ ଥିଲା ଦୁର୍ବୋଧ୍ୟ,
ଆହୁରି ଉପରେ, କିନ୍ତୁ ଦୂରରେ ନୁହେଁ।

ତମର କଣ ଜନବସତି କଥା ମନେ ଅଛି ?
ସେ ସବୁ ପୃଥିବୀର ଏତେ ପାଖରେ ଥିଲେ !
ପଥରମାନ ଗଭୀର ନିଶ୍ୱାସ ନେଉଥିଲେ;
ଘୋଡ଼ା ଗଛ ତଳେ ଠିଆ ହୋଇ ସ୍ୱପ୍ନ ଦେଖୁଥିଲେ।
ପକ୍ଷୀମାନଙ୍କ ପାଇଁ, ସଙ୍ଗୀତ ପାଇଁ
ନୀଡ଼ ଓ ଆଶ୍ରୟସ୍ଥଳ ଥିଲା।
ଏପରିକି
ସହର ମଧ୍ୟ ନିରାପଦ ଥିଲା ସେତେବେଳେ,
ଚାରି କାନ୍ଥ ଭିତରେ ଆବଦ୍ଧ ରହି।

## ଚାରି ଧାଡ଼ି

ଏ କଣ ପୀତମଣି ଓ ତାର ସୁବର୍ଣ୍ଣ ଶିରା ପ୍ରଶିରା
ନା କେଉଁ ସ୍ତ୍ରୀର କାନ୍ଧ ଉପରେ ସବୁଜ-ନୀଳ ପ୍ରତିଛାୟା ?
ରଙ୍ଗ ବିଷୟରେ ମତେ କହ ଏଇ ଜୁନ ମାସ ସଂଧ୍ୟାରେ,
ଆକାଶ ଯେତେବେଳେ ବିସ୍ତାରିତ ହୋଇଯାଇଛି ପାଣି ଉପରେ।

# ସ୍ୱପ୍ନ ବିଚାର

ଜଣେ ବୃଦ୍ଧା ମୋ ସ୍ତ୍ରୀର ସ୍ୱପ୍ନରେ
ଆସି କହିଲା, 'କେବେ ନୁହେଁ,
ଏବଂ ସବୁବେଳେ।'
ମୋ ସ୍ତ୍ରୀ ବ୍ୟସ୍ତ ହେଉଛି ତା'ର ଅର୍ଥ କଣ?

ମୁଁ ଭାବୁଛି ଏହାର ସରଳ ଅର୍ଥ ହେଉଛି
ଆମେ ଯାହାସବୁ ଆଗରୁ ଜାଣିଛୁ।

ଆମେ ଦେଖୁ ସମୁଦ୍ରର ଲହରୀ
ସ୍ନାନରତ ଶିଶୁମାନଙ୍କର
ଶିରଚ୍ଛେଦ କରିଦିଏ।
ସେମାନେ ପୁଣି ମୁଣ୍ଡ ଉଠାନ୍ତି,
ଲହରୀ ତାଙ୍କର ମୁଣ୍ଡ କାଟିଦିଏ
ଏବଂ ସେମାନେ ପୁଣି ମୁଣ୍ଡ ଉଠାନ୍ତି।

ସେଠାରେ ଥାଇ ଶିଶୁମାନେ ଦେଖନ୍ତି;
ଆମେ ଅଦୃଶ୍ୟ ହେଉ
ପୁଣି ଦୃଶ୍ୟ ହେଉ
ପୁଣି ଅଦୃଶ୍ୟ ହୋଇଯାଉ,
ଏକ ପ୍ରକାରେ ଚିରକାଳ ପାଇଁ,
ଏବଂ କେବେ ବି ନୁହେଁ।

# ଡାକଘରକୁ ଯିବାବେଳେ

ସ୍ତ୍ରୀଲୋକଟି ଇଲେକ୍ଟ୍ରିକ ଇସ୍ତ୍ରିକୁ
ବନ୍ଦ କରିଦେଇ ଆସିଛି ତ?

ଅନେକ ସମୟରେ ସେ ଏକଥା ଭୁଲିଯାଇଥାଏ।
ସେ ପାଣି ନଳ ବନ୍ଦ କରିଛି ତ?
ସେ ବଡ଼ ଅସାବଧାନ।

ଚିଠି ଲେଖା ସରିଲା?
ଘର ଭଡ଼ା ଦିଆ ହେଲାଣି?

ଡାକଘର ଆଡ଼କୁ ଯିବାବେଳେ
ଗୋଟିଏ ଗହମ କ୍ଷେତ ଦେଖାଯାଏ;
ଗହମର କେଣ୍ଡା ସତରେ ହାତ ଠାରୁଥାନ୍ତି।
ସ୍ତ୍ରୀ ଲୋକଟି ନିଜର ଆଖିରେ
କାଟିନିଏ ସେ ଫସଲକୁ,
ତାକୁ ଚୂନା କରେ ନିଜର ଲାଳସାରେ,
ନିଜ ଚିନ୍ତାରେ ବଡ଼ ରୁଟିଟିଏ ସେକେ
ଏବଂ ତାକୁ ଧୀରେ ଧୀରେ ଖାଏ।

ତା ପରେ ସେ ଭିତରକୁ ଯାଇ
ନିଜର ଘରଭଡ଼ା ଦେଇଦିଏ।

# ତମେ ମୁଁ ଓ ପୃଥିବୀ

ଏ କଥା ପଚାର ନାହିଁ
ତମେ କିଏ ଏବଂ ମୁଁ କିଏ
କିମ୍ବା କାହିଁକି ଏସବୁ ଜିନିଷ।
ପ୍ରଫେସରମାନେ ଏହାର ସମାଧାନ କରନ୍ତୁ-
ସେମାନେ ଏଥିପାଇଁ ଦରମା ପାଆନ୍ତି।

ରୋଷାଇ ଘରର ତରାଜୁକୁ
ଟେବୁଲ ଉପରେ ରଖିଦିଅ;

ତା ଉପରେ ନିଜକୁ ନିଜେ
ଓଜନ କରୁଥାଉ ବାସ୍ତବତା।
କୋଟ ପିନ୍ଧି ନିଅ,
ବାରଣ୍ଡାର ଲାଇଟ ଲିଭାଇ ଦିଅ,
ଦରଜା ବନ୍ଦ କରିଦିଅ;
ମଲାଲୋକ କବର ଦିଅନ୍ତୁ ମଲାଲୋକଙ୍କୁ।

ଆମେ ଚାଲୁଛେ ଏଠାରେ; ବର୍ତ୍ତମାନ।
ତମେ ପିନ୍ଧିଛ ଧଳା ରବର ଜୋତା,
ମୁଁ ପିନ୍ଧିଛି କଳା ରବର ଜୋତା।
ଏବଂ,
ଆମ ଦୁହିଁଙ୍କ ଉପରେ ଯେଉଁ ବର୍ଷା ପଡୁଛି,
ସେ ହେଉଛି ବର୍ଷା।

## ଆଖି

ଅନେକ ବର୍ଷ ଧରି
ମୋର ଗୋଟିଏ କୋଠରୀ ଥିଲା,
ଯାହାର ମୁହଁ ଥିଲା ଉତ୍ତର ଦିଗକୁ
ଏବଂ ଲୋକମାନଙ୍କର ଆଖି
ମତେ ବ୍ୟତିବ୍ୟସ୍ତ କରୁଥିଲେ।
(ଏ କଥା ଏହିପରି ଥିଲା।)

ତା ପରେ ମୋର ଗୋଟିଏ କୋଠରୀ ହେଲା
ଯାହାର ମୁହଁ ଥିଲା ପୂର୍ବକୁ
ଏବଂ ଲୋକମାନଙ୍କର ଆଖି
ମତେ ବ୍ୟତିବ୍ୟସ୍ତ କରୁଥିଲେ।
(ଏହା ମୋର ନିଜର ଦୋଷ ଥିଲା।)

ବର୍ତ୍ତମାନ ମୋର ଗୋଟିଏ କୋଠରୀ ଅଛି
ଯାହାର ମୁହଁ ଦକ୍ଷିଣ ଦିଗକୁ
ଏବଂ ଲୋକମାନଙ୍କର ଆଖି
ମତେ ବ୍ୟତିବ୍ୟସ୍ତ କରୁଛନ୍ତି।
(ଏହାକୁ ବଦଳାଇବା ସମ୍ଭବ ନୁହେଁ
ଏତେ ବିଳମ୍ବରେ।)

ଆଜି ଅସମ୍ଭବ ଶୂନଶାନ-
ଉପର ମହଲାରେ କିଏ କାନ୍ଥରେ କଣ୍ଟା ପିଟି
ହାତୁଡ଼ି ତଳେ ରଖି ସାରିଲାଣି।

ଦେବଦାରୁ ଜଙ୍ଗଲର ମର୍ମର ଛୁଇଁଯାଏ
ଚଉକାଠ ଓ ଦେହଳୀ;
ଏବଂ ଖାଇବା ଟେବୁଲ
ଯାହାକୁ ମୋର ଭାଇ କେବେ ତିଆରି କରିଥିଲା।

କାଠର ଗଣ୍ଠିସବୁ ଆଖି ହୋଇ
ମୋ ଆଖିରେ ଆଖି ମିଳାଇବାକୁ ଚାହୁଁଛନ୍ତି,
ମୁଁ ଯେଉଁଭଳି ତାଙ୍କ ଆଖିକୁ ଚାହୁଁଛି।

ଜଣେ ଲୋକ,
ଯାହାର ସମୟ ନ ଥିଲା, କହିଥିଲା :
'ଯଦି ମୋର ସମୟ ଥାନ୍ତା,
ମୁଁ ସବୁ ବୁଝାଇ କହିଥାନ୍ତି।'
ମୋର ସମୟ ଥିଲା,
କିନ୍ତୁ ମୁଁ କିଛି କଥା ବୁଝାଇ ପାରିଲି ନାହିଁ।

## ବରଫ ବାଘ

ବରଫରେ ରହୁଥିବା ଚିତାବାଘର ଖୋଜ
ସବୁବେଳେ ଗୁମ୍ଫା ଆଡ଼କୁ ଥାଏ।
ଗୁମ୍ଫାରେ ସବୁବେଳେ ଜଣେ ସାଧୁ ବସି ଜପୁଥାଏ:
'ଏଇଟି ଏହା ନୁହେଁ।'
ଗୋଟିଏ ପର୍ବତ ଅନ୍ୟ ପର୍ବତ ବି ହୋଇପାରେ।

ଆମ ଭିତରେ ବି ଏବଂ ଆମଠାରୁ ଅନେକ ତଳେ
ସୂର୍ଯ୍ୟ ଝଲକୁଥାଏ ନିଜର ବ୍ୟସ୍ତତାରେ;
ରାତିର ଚନ୍ଦ୍ର ଛଳ କରୁଥାଏ ନିଜର ଚମକରେ।
ସହରଟି ବୋଧହୁଏ ଅନ୍ୟ ଏକ ସହର।

ମୁଁ ଖୋଜୁଛି ବରଫର ବାଘ ନୁହେଁ
ଗୋଟିଏ ମେଣ୍ଢା ଜଗୁଥିବା କୁକୁର
ଯେ ମୋର ଛାଇକୁ ଆକଟ କରିବ।
ଯାହା ବିବଦମାନ ନୁହେଁ,
ତା ଚାରିପାଖେ ସୁଦୃଢ଼ ପାଚେରୀ:
'ଏଇଟି ହିଁ ଏହା।'

ଯଦି ଏଇଟି ପର୍ବତମାନଙ୍କ ଭିତରେ
ସବୁଠାରୁ ଛୋଟ ହୋଇଥାନ୍ତା,
ମାତ୍ର ଗୋଟିଏ ବାଲିଗରଡ଼ା !

## ଅଧିକ ଜଣା ନାହିଁ

ମୁଁ ପୁଣି ଥରେ ତାକୁ ଦେଖେ,
ସୀମାନ୍ତର ଚଢ଼େଇଟିକୁ
ଅଧା ଆଲୁଅ ଅଧା ଛାଇରେ।

ଯୁଗ୍ମ ସ୍ୱର ଶୁଣେ
ଗୋଟିଏ ବିଭକ୍ତ ପକ୍ଷୀର,
ଗୋଟିଏ ପକ୍ଷ କଳା,
ଅନ୍ୟଟି ପକ୍ଷଟି ଧଳା,
ମୁହୂର୍ତ୍ତକ ପାଇଁ ଉଡୁଛନ୍ତି
ସମାନ୍ତରାଳ ହୋଇ।

ଗୋଟିଏ ବିଶ୍ୱାସ ଖୋଜୁଥିବା ଲୋକ
ଦୁଇଟି ସଂଶୟରେ ଥାଏ।

ମତେ ଆଉ ଅଧିକ ଜଣା ନାହିଁ
ଯଦିଓ ବସନ୍ତ ଶେଷ
ଏବଂ ଗ୍ରୀଷ୍ମ ଉଡ଼ିଗଲାଣି।

# ଆଲୋକ ବୃତ୍ତର ବାହାରେ

ସୂର୍ଯ୍ୟ ନିଜର ଆଲୁଅ ଚନ୍ଦ୍ରକୁ ଧାର ଦେଲା
ଚନ୍ଦ୍ର ନିଜର ଆଲୁଅ ସମୁଦ୍ରକୁ ଧାର ଦେଲା।
ସମୁଦ୍ର ମତେ ତାର ପ୍ରତିବିମ୍ବ ଯାଚିଲା,
କିନ୍ତୁ ମୁଁ ନ ନେଇ ଫେରି ଆସିଲି।
ତମେ ଠିକ ଜାଣ ଯେ ତମେ ପ୍ରତାରିତ ହୋଇଛ।
ମୋର ଆସ୍ଥା ମତେ ଉପରକୁ ନେଇଯିବ ନାହିଁ
ପ୍ରଶଂସାର ଗୀତ ଗାଇବା ପାଇଁ;
ମୋର ଦୁଃଖ ମତେ ମୂକ କରିଦେବ ନାହିଁ।

ସମୁଦ୍ର ପକ୍ଷୀ ଭଳି ଚିତ୍କାର କରିବା
ଶେଷରେ ସନ୍ତୁଷ୍ଟ କରିବ
କେବଳ ସମୁଦ୍ରର ପକ୍ଷୀକୁ ହିଁ।

ମୋର ତମକୁ ପ୍ରାର୍ଥନା,
ସହୃଦୟ ଦୀପମାନଙ୍କ ଭିତରକୁ ଫେରିଯାଅ।
ନିରୁଦ୍ଧାର ଭାବେ ମୁଁ ଚାଲି ବୁଲୁଥିବି
ଭୌତିକ ଘାସ ପଡ଼ିଆ ଉପରେ,
ମୋର ହଁ ଓ ନାହିଁକୁ
ଅସ୍ପଷ୍ଟ ସ୍ୱରରେ ଆବୃତ୍ତି କରି କରି।

# ପ୍ରଜାପତି

ଅସ୍ଥିର ପକ୍ଷଚାଳନା ଶୈଳୀକୁ
କେହି ବିଶେଷତ୍ୱ ଦିଅନ୍ତି ନାହିଁ;
କିନ୍ତୁ ପ୍ରଜାପତି ଏହା ବ୍ୟବହାର କରେ।

ଷ୍ଟକହମ ଗୋଟିଏ ସୁବ୍ୟବସ୍ଥିତ ସହର
ଇଟା ଓ ଲୁହା ଧାରଣାରେ ତିଆରି।

ତମେ ରାସ୍ତା ଉପରେ ଚାଲିଲେ
ତାହା ଝୁଲିବାକୁ ଆରମ୍ଭ କରେ;
ଅଦ୍‌ଭୁତ ପବନର ଝଲକା ତମକୁ ଭେଟନ୍ତି।

ତମେ ଆଶ୍ଚର୍ଯ୍ୟ ହୁଅ :
କିଏ ନିଜ ପିଠି ଉପରେ ଧରି ରଖିଛି
ପଥରର ସ୍ତୂପ, ପ୍ରସ୍ତ ପ୍ରସ୍ତ ସଂସ୍କୃତି
ଓ ଆମର ପୃଥିବୀକୁ !

କଣ ଗୋଟିଏ ପ୍ରଜାପତି,
ଯେ କି ଶୂନ୍ୟରେ ଭାସି ବୁଲୁଥାଏ
ନିଜର ବିଶେଷତ୍ୱହୀନ ଶୈଳୀରେ ?

## ଘରଚଟିଆ

ଘରଚଟିଆ ଗୋଟିଏ ଅଦ୍‌ଭୁତ ପକ୍ଷୀ
ନିଜକୁ ଲୁଚାଇ ରଖିଥାଏ
କ୍ଷେତରେ ପୋତା ହୋଇଥିବା ବୀଜ ଭଳି।

ତାର ଏକ ବିରାଟ ଯୋଜନା ଅଛି;
ଆହୁରି ଗୋଟିଏ ଦିନ ବଞ୍ଚିବା
ଏବଂ ଆହୁରି ଗୋଟିଏ ରାତି ବଞ୍ଚିବା
ଏବଂ ଆହୁରି ଗୋଟିଏ ଦିନ...

## ବରଫ କଣା

ବୃଦ୍ଧା ସ୍ତ୍ରୀ ଲୋକଟି ଭାବିଲା,
ମୁଁ ତା ଭଳି ମରିପାରନ୍ତି କି,
ଚୁପଚାପ,
ପ୍ରିୟ ପରିଜନ ଘେରି ରହିଥିବା ବେଳେ!

ତା ପରେ ବରଫ କଣା ଅନୁତାପ କଲା
ଏବଂ ପଛକୁ ଡେଇଁ ପଡ଼ିଲା,
ଛାତର ଧାର ପର୍ଯ୍ୟନ୍ତ,
ଘୂରି ବୁଲି ଭୂଜ ଗଛ ଚାରିପାଖେ
ଖାଲି ଝରକା ଡେଇଁ
ଖାଲି ଘରେ ପୋତି ହୋଇଯିବା ପୂର୍ବରୁ।

# ଜୋତା

ସେତେବେଳେ ବଜ୍ର ପଡ଼ୁଥିଲା
ବର୍ତ୍ତମାନ ସବୁ ଚୁପଚାପ।

ମୋର କୁକୁର ନାହିଁ
କିନ୍ତୁ କାଠର ଜୋତା ଅଛି।

ଜୋତା ଭୁକୁଛନ୍ତି
କବାଟ ପାଖରେ ଠିଆ ହୋଇ
ବାହାରକୁ ଯିବା ପାଇଁ।

# ପାର୍କରେ ଗୋଟିଏ ଋତୁ

ଋତୁ କାଳ ଦେଖି
ଫୁଆରା ସବୁ ବନ୍ଦ କରି ଦିଆଯାଇଛି।
ମଣିଷ ଋତୁନିଷ୍ଠ ଜୀବ ନୁହେଁ,
ସେ ବର୍ଷ ସାରା ପରିପୂର୍ଣ୍ଣ ଥାଏ।
ସମୟ ଚାହିଁ ରାସ୍ତା ଯାଏ
ନିଜର ସର୍ପିଳ ଗତିରେ,
କେବେ ଫୁଲର ସୀମାନ୍ତରେ
ତ କେବେ ବରଫର ସ୍ତୂପ ଦେଇ।

ଯେଉଁ ମଣିଷ ଏଠାରେ
ଅନନ୍ତକାଳ ପଦଚାରଣା କରିଛି,
ସେ ଅଧିକାଂଶ ସମୟ
ନିଜ ସହିତ ହିଁ ଆଳାପ କରିଛି;

କଦବା କେବେ ଆଉ କାହା ସହିତ,
ଏପରିକି କେବେ କୁକୁର ସହିତ।
ଯେଉଁ କୁକୁର ଏଠାରେ
ଏକା ଏକା ଲକ୍ଷ୍ୟହୀନ ବୁଲୁଥାଏ
ନିଜେ ନିଜେ ଭୁକୁଥାଏ
କିମ୍ବା ଆଘ୍ରାଣରେ ଖୋଜିନିଏ
ବଂଧୁ, ଅନ୍ୟ ଗୋଟିଏ କୁକୁର।

କେବଳ ଜଳରାଶି ଫେରାଇ ଆଣେ ନିଜକୁ
ଏକଥା ଭାବିବା ପାଇଁ ଯେ
ସେ କଣ କହିବ,
କି ଭଳି କିଛି ନିର୍ବିବାଦ
ଏବଂ ଆଶ୍ଚର୍ଯ୍ୟଜନକ କଥା,
ସାର୍ବଜନିକ ପାର୍କରେ, ଏପ୍ରିଲରେ
ବା ବେଶି ହେଲେ ମେ ମାସରେ।

# ସାଧାରଣ

କ୍ରମାଗତ ଦୁଇରାତି ଧରି
ମୋ ସହରରୁ ବାହାରି
ମୁଁ ପାଦରେ ଚାଲିଗଲି
ମହାସାଗର ଉପରେ,
ଭାସମାନ ବରଫଖଣ୍ଡ
ଓ ତୈଳ ଉତ୍ପାଦନ ଯନ୍ତ୍ରପାତି ଦେଇ,
ଉତ୍ତେଜିତ କଥାବାର୍ତ୍ତା କରି
ଢେଉମାନଙ୍କ ସହିତ,
ଯେଉଁମାନେ ମତେ ସାନ୍ତ୍ୱନା ଦେଲେ
ଏ କଥା କହି ଯେ
ଆମେ ମଧ୍ୟ ସାଧାରଣ।

## ଜହ୍ନ

କିଛି ଲୋକ କହନ୍ତି,
ଜହ୍ନ ଏକ ଯୁବକ ମାଛ ଧରାଳୀ
ପାଣି ଉପରକୁ ନିଜର ଜାଲ ଫିଙ୍ଗୁଥାଏ।

ଅନ୍ୟମାନେ କହନ୍ତି,
ଜହ୍ନ ଏକ ବୃଦ୍ଧା ବିଧବା
ଚକମକ କଣ୍ଟା ନେଇ
ନିର୍ଜନତାର ଲମ୍ବା ଶାଲ ବୁଣୁଥାଏ।

ମୁଁ ଜାଣେ ନାହିଁ।
ମୁଁ ଆଚମ୍ବିତ ରହିଯାଏ
ଏତେ ନିଶ୍ଚଳତା ଦେଖି;
ମୁଁ ଆଚମ୍ବିତ ରହିଯାଏ
ରାତି କିଭଳି ବନ୍ଦ ହୋଇଗଲା ଦେଖି।

## ପାଦୁକା

ମହାନ ସମାଧାନର ରାଜପୁତ୍ର କହିଲେ,
ଚମଡ଼ା ଦେଇ ଘୋଡ଼ାଇ ଦିଅ
ଖାଲଢ଼ିପ କଣ୍ଟାଳଟାର ସମଗ୍ର ସାମ୍ରାଜ୍ୟକୁ।
ଜନ୍ତୁ ଓ ମେଷପାଳକମାନେ ଡରିଗଲେ।

ତାପରେ, ଅନ୍ଧ ସମୟରେ
ଏବଂ ନୋବେଲ ପୁରସ୍କାର ଯୁଗ ପୂର୍ବରୁ
ଆସି ପହଞ୍ଚିଲା

ବୁଦ୍ଧିମାନ ସାଧାରଣ ଲୋକଙ୍କର ପାଦୁକା
ଛୋଟ ଛୋଟ ଚମଡ଼ା ଖଣ୍ଡର କବିତା,
ଯାହା କଣ୍ଟାଲଟା ଉପର ଦେଇ
ରାସ୍ତା ସମ୍ଭାଳି ନେଲା ।

## ହାମଲେଟ୍‌ର ଉଚିତ ଥିଲା

ନୀରବ ପର୍ବତଗଣ,
କିଛି ଅନ୍ତତଃ କହ-
ମତେ,
ନ ହେଲେ ପରସ୍ପରକୁ ।

ଏକାଠି କଥା କହ, ସରଳ ଭାବରେ
ଦୁଧ ଦୋକାନରେ ସ୍ତ୍ରୀମାନଙ୍କ ଭଳି
ପାଣିପାଗ, ପବନ ଓ
ତମର ତୁଷାରଜନିତ ଅସୁସ୍ଥତା ବିଷୟରେ ।

ପ୍ରତିଟି ସ୍ୱଗତୋକ୍ତି
ନିଜକୁ ନିଜେ ଖାଇଦିଏ,
ଶ୍ୱାସରୁଦ୍ଧ ହୁଏ,
ହ୍ରଦରୁ ସବୁ ପାଣି ପିଇ ନେଇଥିବା
ମାଛ ଭଳି ପଚିଯାଏ ।

ହାମଲେଟ୍‌ର ଉଚିତ ଥିଲା
ପ୍ରଥମ ଅଙ୍କରେ ମରିଯିବା ।

କିଛି ଅନ୍ତତଃ କହ,
ମତେ, ନ ହେଲେ ପରସ୍ପରକୁ ।

# ଗୁମ୍ଫା

ନା, ଗ୍ରାମାଞ୍ଚଳକୁ ଫେରିଯିବା ନୁହେଁ
ଅଥବା ଶୋଇଥିବା ପଶୁମାନଙ୍କ ଆଡ଼କୁ।
ସହରକୁ ବି ନୁହେଁ,
ଯେଉଁଠାରେ ଫଟୋଗ୍ରାଫରମାନେ
ପରସ୍ପରର ପ୍ରତିକୃତି ତିଆରି କରୁଥାନ୍ତି।

କେଉଁଠାରେ ତମେ ତିଆରି କରିବ
ଗୋଟିଏ ନୂଆ ଆବାସ
କେଉଁ ନୂଆ ସାମଗ୍ରୀ ଦେଇ,
କେଉଁ ପବନର ବରଫ ଘର ?

ଅସମ୍ଭବର ଚିନ୍ତା ତା ମନରେ ବସା ବାନ୍ଧେ;
ତା ଭିତରକୁ ଖାଇଯାଏ।
ଶେଷରେ ସେ ନିଜେ ଗୁମ୍ଫା ପାଲଟିଯାଏ,
ଏପରି ଏକ ମଣିଷ
ଯାହାର ପ୍ରତିକୃତି ନାହିଁ, ବିଶ୍ୱାସ ନାହିଁ।

# ବିରାଡ଼ି

ଡୋରିଆ ବିରାଡ଼ିଟି
କାନ ଟେକି ସତର୍କ ହୁଏ।
ଡୋରିଆ ବିରାଡ଼ିଟି
ଖଟ ଉପରୁ ତଳକୁ ଡେଇଁ ପଡ଼େ।
କଳା ଡୋରି ସବୁ ଛପି ଛପି
କବାଟ ଆଡ଼କୁ ଚାଲିଯା'ନ୍ତି।

ସତର୍କ କାନ ଦେଇ
ସିଢ଼ି ଉପରେ ପାଦଶବ୍ଦ ଶୁଣନ୍ତି।
କ୍ରମବର୍ଦ୍ଧମାନ ପିତୁଳାମାନେ
କାହାକୁ ଆସିବାର ଦେଖନ୍ତି।
କଳା ଡ଼ୋରି ସବୁ
ନିଜକୁ ସିଧା କରି ନିଅନ୍ତି।

ମୋର ମସ୍ତିଷ୍କ ଜାଣେ
କେହି ବି ଆସୁନାହିଁ।
ମୋର ବୁଦ୍ଧି ହେଉଛି
ଅପ୍ରତିବାଦ୍ୟ ଓ ଅକାଟ୍ୟ
ସେ ଦିନ ରାତିରେ ତ
ଭଲଟେୟାରଙ୍କ ସହିତ ଚେସ୍ ଖେଳି
ମୁଁ ଜିତିଲି।

ଭୂତମାନଙ୍କ ବିଷୟରେ ସିଦ୍ଧାନ୍ତସବୁ
କେବେହେଲେ ସମର୍ଥିତ ହୋଇ ନାହାନ୍ତି।
ଡ୍ରାକୁଲା ଦେଶର ବାଦୁଡ଼ି
ରକ୍ତପାୟୀ ନୁହନ୍ତି।
ମୁଁ ଏବେ ବି
ବିଛଣାରେ ଶାନ୍ତ ହୋଇ ପଡ଼ିଛି
ଏବଂ ଭୟରେ ଥରୁଛି।

## ମୋ ପାଖରେ ବସ

ଲହରୀକୁ କେହି କହେ ନାହିଁ:
ନାବିକଗଣ, ନିଜର କର୍ତ୍ତବ୍ୟ କର!
କିମ୍ବା,
ଶିଷ୍ୟଗଣ, ସତ୍ୟର ସନ୍ଧାନ କର!

ପଥରକୁ କେହି ପଚାରେ ନାହିଁ
କିମ୍ବା ପଥର ପଥରକୁ ପଚାରନ୍ତି ନାହିଁ:
ତମେ ମତେ ଭଲପାଅ ?
କିମ୍ବା,
ମୁଁ କାହିଁକି ଜନ୍ମ ନେଲି ?

ଅଜ୍ଞାତରେ,
ଏବଂ ଜାଣିବାର କୌଣସି ଇଚ୍ଛା ନ ଥାଇ,
ରାସ୍ତାର ବତୀ ଆମକୁ ଲକ୍ଷ୍ୟ କରନ୍ତି।
ଆମେ ସ୍ୱର୍ଗରୁ ଘରକୁ ଫେରିଆସୁ
ଗୋଟିଏ କାନ୍ଦଣା ନେଇ।
ଗୋଟିଏ ପ୍ରାର୍ଥନା ନେଇ
ଅଥବା, କେବଳ ଗୋଟିଏ ଚୁପଚୁପ କଥା:
ମୋ ପାଖରେ ବସ...

## ରବିବାର

ଆଉ କେବେହେଲେ ଫେରିବ ନାହିଁ
ଏହି କାରଣରୁ ଯେ
ଏଇଟି ଗୋଟିଏ ସ୍ମରଣୀୟ ଦିନ ଥିଲା।

ସୂର୍ଯ୍ୟ ପୂର୍ବ ଦିଗରେ ଉଇଁ
ପଶ୍ଚିମରେ ଅସ୍ତ ଗଲା
ଆକାଶକୁ ତାରାଙ୍କ ପାଇଁ ଛାଡ଼ି ଦେଇ
ଗୋଟିଏ ଅନ୍ତରୀଣ ଯାନ ଭାସୁଥିବା ବେଳେ।

ଖୋଲା ଝରକା ଦେଇ
ଶାଶ୍ୱତ ଲାଲ ଫୁଲ ପଛରେ
ରେଡ଼ିଓ କଥା କହି ଗୀତ ଗାଉଥିଲା।
ଜଣେ ସ୍ତ୍ରୀ ଲୋକ ଆସି

କେତେ ଗୁଚ୍ଛ ଅଙ୍ଗୁର କାଟି
ତାକୁ ରୋଷେଇ ଘରକୁ ନେଇଗଲା।

ବାହାରେ ଅଗଣାରେ ରେଡ଼ିଓରେ
ସନ୍ଧ୍ୟାବେଳର ଖବର ଆସୁଥିବା ବେଳେ
ପିଲାଟିଏ ତାର ମଟର ସାଇକେଲ ପାଖରେ
ବସି ଖୁସି ହେଉଥିଲା
ସ୍ପାର୍କ ପ୍ଲଗ୍‌ର ସ୍ଫୁଲିଙ୍ଗକୁ ଅନାଇ।

## ତ୍ରାଣକର୍ତ୍ତା

ବାପା ଛାଡ଼ି ଚାଲିଯାଇଥିବା ଜାଗାରେ
ଗୋଟିଏ ମଟରଗାଡ଼ି ରହୁଛି।
ରୋଷେଇ ଘରେ
ମା ଛାଡ଼ି ଚାଲିଯାଇଥିବା ଶୂନ୍ୟତାକୁ
ପୂରଣ କରୁଛି ଗୋଟିଏ ରେଫ୍ରିଜରେଟର।

ଚଉକି ନେଇଗଲେଣି
ଭାଇ ଭଉଣୀଙ୍କ ଜାଗା;
ଘାସ ଜାଗାରେ ବର୍ତ୍ତମାନ
କାନ୍ଥରୁ କାନ୍ଥ କାର୍ପେଟ।

ସୂର୍ଯ୍ୟଠାରୁ ବେଶି ଆଲୁଅ ଦିଏ
ଟେବୁଲ ଲ୍ୟାମ୍ପ;
ସବୁ ସ୍ୱର ଲିଭାଇଦିଏ ରେଡ଼ିଓ;
ପୃଥିବୀକୁ ଚିତ୍ରଣ କରୁଥାଏ ଟେଲିଭିଜନ।

ଶେଷରେ ମୁକ୍ତି।
ତମର ନାଭି ହେଉଛି ଗୋଟିଏ କ୍ଷତ
ଯାହା ସମୟକ୍ରମେ ପୂରିଯାଏ

## ସାଧାରଣ ଫୁଲ

ଗ୍ରୀଷ୍ମଋତୁ ଓ ଫୁଲର ପ୍ରଥମ ଦିନ
ଗାଁ ଲୋକମାନେ ଲାଜ ପାଇ ପଳାଇ ଯାନ୍ତି,
କାରଣ ସେମାନେ ସୌନ୍ଦର୍ଯ୍ୟ ସହିତ
ଏ ପର୍ଯ୍ୟନ୍ତ ପରିଚିତ ନୁହନ୍ତି।

ଅନ୍ଧାର ହେଲେ ସେମାନେ ବାହାରି ଆସି
ଅକୁଶଳ ହାତରେ କେତୋଟି ଡାଳ ଭାଙ୍ଗି ନିଅନ୍ତି।

## ଘଟଣା ସ୍ଥଳରେ

ଏ ଦେଶରେ ଏବେ କୌଣସି ଯୁଦ୍ଧ ନାହିଁ।
ସୀମାନ୍ତରେ ଯେଉଁ ପୋଲ ଅଛି
ତାକୁ ବାରୁଦରେ ଉଡ଼ାଇ ଦିଆଯିବ ନାହିଁ।

ସମୁଦ୍ରର ପକ୍ଷୀ ପୋଲ ଉପରେ
ଏବଂ ଚାରିପାଖକୁ ଚାହିଁ ଦେଖୁଛି
ଯେପରିକି କେହି ନିର୍ଦ୍ଦେଶକ
ବିସ୍ଫୋରଣର ଏକ ଚଳଚିତ୍ର ତିଆରି କରିବ !

ଦୁଇଜଣ କିଶୋର କିଶୋରୀ ଚାଲିଗଲେ
ଗହଳ ବାଳ ଭିତରେ ପରସ୍ପରକୁ ଚୁମ୍ବନ ଦେଇ
ଏମିତି, ଅନାୟାସ ବନ୍ଧୁ ଭଳି,
ଯେପରିକି ଏକ ନୂଆ ଶୈଳୀ ଖୋଜୁଛନ୍ତି।

କିଏ ଆସି ପାଣି ଭିତରକୁ
ଖବରକାଗଜଟି ଫିଙ୍ଗି ଦେଲା।
ଏଇଟି ସାଙ୍ଗେ ସାଙ୍ଗେ ବୁଡ଼ିଗଲା ନାହିଁ
କିନ୍ତୁ, ବୁଡ଼ିଗଲା।